ଶୃଙ୍ଖଳି.. ଶୃଙ୍ଖଳ.. ନପାରିଲ ଥିଲି...

# ଜଣେ ବିରଳ ବିପ୍ଳବୀର କାହାଣୀ



ପ୍ରମୋଦ ପାଣିଗ୍ରାହୀ

# ଚାଲିଛି... ଚାଲିବି ନପଡ଼ିବି ଥକି...

## ଜଣେ ବିରଳ ବିପ୍ଳବୀର କାହାଣୀ

(ସଂଗ୍ରାମୀ ଅବନୀ ବରାଳଙ୍କ ଜୀବନୀ)



ପ୍ରଦୋଷ ପଟ୍ଟନାୟକ





ସଂଘମିତ୍ରା ପବ୍ଲିକେଶନ୍ସ
୪୩, ଭୌମନଗର, ଭୁବନେଶ୍ୱର-୭୫୧୦୦୧

## ଚାଲିଛି... ଚାଲିବି ନପଡ଼ିବି ଥକି (ଜଣେ ବିରଳ ବିପ୍ଳବୀର କାହାଣୀ)


**ଲେଖକ : ପ୍ରଦୋଷ ପଟ୍ଟନାୟକ**

**ପ୍ରକାଶକ :** ସଂଘମିତ୍ରା ପବ୍ଲିକେଶନ, ୪୩, ଭୌମନଗର, ଭୁବନେଶ୍ୱର- ୧

**ଅକ୍ଷର ସଜ୍ଜା :** ସସ୍ମିତା, ଶିକ୍ଷକ ମହାସଂଘ, ୪୩ -ଭୌମନଗର, ଭୁବନେଶ୍ୱର

**ମୁଦ୍ରଣ :** ବିଏନ୍. ପ୍ରିଣ୍ଟ ହାଉସ୍, ୟୁନିଟ୍-୪, ମାର୍କେଟ କମ୍ପ୍ଲେକ୍ସ, ଭୁବନେଶ୍ୱର

**ମୂଲ୍ୟ :** ଟ. ୧୫୦.୦୦ (ଦେଢ଼ଶହ ଟଙ୍କା) ମାତ୍ର


## JANE BIRALA BIPLABIRA KAHANI


**Author : Pradosh Patnaik**

**Publisher :** Sanghamitra Publication, 43, Bhoumanagar, Bhubaneswar

**Letter Setting :** Sasmita, Shikshak Mahasangha, 43, Bhoumanagar, Bhubaneswar

**Printer :** BN. Print House, Unit - IV, Market Complex, Bhubaneswar

**Price :** Rs. 150.00 (One Hundred Fifty Rupees) Only

# ॥ ସୂଚୀ ॥





# ଏ ପୁସ୍ତକ କାହିଁକି ?

ଅବନୀ ବରାଳଙ୍କ ଏକ ପୂର୍ଣ୍ଣାଙ୍ଗ ଜୀବନୀ ଲେଖିବାକୁ ନଳିନୀ (ସଂଘମିତ୍ରା) ଯେତେବେଳେ ପ୍ରଥମେ ପ୍ରସ୍ତାବ ଦେଲା ତାକୁ ଧରାଛୁଆଁ ଦେଇନଥିଲି । କାରଣ ଛ'ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟର ଏକ କର୍ମମୟ ଓ ସାଧନାମୟ ଜୀବନର ମୂଲ୍ୟାୟନ କରି ସମସ୍ତ ଘଟଣାବଳୀକୁ କାଗଜ କଲମରେ ସଜାଇବା ସହଜ ବ୍ୟାପାର ନୁହେଁ ବୋଲି ମୁଁ ଭଲ ଭାବରେ ଜାଣିଥିଲି । କିନ୍ତୁ ନଳିନୀ ଛାଡ଼ିବାର ଝିଅ ନୁହେଁ, ଜୀବନୀ ଲେଖିବାକୁ ବାରମ୍ବାର ମୋତେ ଉତ୍ସାହ ଦେଇଚାଲିଲା । ଶେଷରେ ଅବନୀ ବରାଳ ଜୟନ୍ତୀ କମିଟିର ବୈଠକରେ ତାଙ୍କର ଏକ ଜୀବନୀ ଲେଖିବାକୁ ସର୍ବସମ୍ମତିକ୍ରମେ ପ୍ରସ୍ତାବ ଗୃହୀତ ହୋଇ ମୋତେ ସେହି ଦାୟିତ୍ୱ ଦିଆଗଲା । ବଡ଼ ସନ୍ତର୍ପଣରେ କାମରେ ଆଗେଇଲି । ତେବେ ଅବନୀ ବାବୁଙ୍କ ଘଟଣା ବହୁଳ ଜୀବନ କାହାଣୀକୁ ମୁଁ ଯେତିକି ଯେତିକି ଅଧ୍ୟୟନ ଓ ଅନୁଶୀଳନ କଲି, ସେତିକି ଆଗ୍ରହ ଓ ଉତ୍ସାହ ବଢ଼ିଚାଲିଲା । ବଡ଼ ରୋମାଞ୍ଚକର ଅନୁଭୂତିରେ ପରିପୂର୍ଣ୍ଣ ତାଙ୍କର ଜୀବନ । ବହୁମୁଖୀ ପ୍ରତିଭାର ଅପୂର୍ବ ସମାହାର ଘଟିଛି ତାଙ୍କ ବ୍ୟକ୍ତିତ୍ୱରେ । ତାଙ୍କ ଜୀବନର ସମସ୍ତ ଘଟଣାବଳୀକୁ ପୁସ୍ତକରେ ସ୍ଥାନ ଦେବା ଯଦିଓ ସମ୍ଭବପର ନୁହେଁ, ତଥାପି ଯେତେଦୂର ସମ୍ଭବ ଅନେକ ଦିଗକୁ ଛୁଇଁବା ପାଇଁ ଯଥାସାଧ ଉଦ୍ୟମ କରିଛି । ଓଡ଼ିଶାର ଶିକ୍ଷକ ଆନ୍ଦୋଳନ, ସାମ୍ୟବାଦୀ ଆନ୍ଦୋଳନ, ବିଭିନ୍ନ ଗଣସଂଗ୍ରାମ, ସାହିତ୍ୟ, ସଂସ୍କୃତି, ଶିକ୍ଷାକ୍ଷେତ୍ରରେ ଅବନୀ ବାବୁଙ୍କ ମହତ୍ତ୍ୱପୂର୍ଣ୍ଣ ଭୂମିକା ଉପରେ ଆଲୋକପାତ କରିବାକୁ ଉଦ୍ୟମ କରିଛି । ମୁଁ ଜାଣେନା କେତେ ଦୂର ଏହି ଉଦ୍ୟମରେ ସଫଳ ହୋଇଛି । ରାଜ୍ୟର ପାଠକମାନେ ହିଁ ହେବେ ତାହାର ସର୍ବୋତ୍କୃଷ୍ଟ ବିଚାରକ । ଅବନୀ ବାବୁଙ୍କ ଜୀବନୀକୁ ନେଇ ଅନ୍ୟ ଲେଖକଙ୍କ ଦ୍ୱାରା ପରବର୍ତ୍ତୀ ସମୟରେ ହୁଏତ ଅଧିକ ପୁସ୍ତକ ରଚନା କରାଯାଇପାରେ, କିନ୍ତୁ ପ୍ରଥମ ଜୀବନୀ ପୁସ୍ତକର ରଚୟିତା ଭାବରେ ମୁଁ ଏଥିପାଇଁ ନିଜକୁ ଗୌରବାନ୍ୱିତ ମନେକରୁଛି ଏବଂ ନଳିନୀ ମୋତେ ପ୍ରେରଣା ଦେଇଥିବାରୁ ତାକୁ ଧନ୍ୟବାଦ ଜଣାଉଛି । ଅବନୀ ବରାଳ ଜୟନ୍ତୀ କମିଟିର କର୍ମକର୍ତ୍ତା ଓ ସଭ୍ୟମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ପୁସ୍ତକ ପ୍ରକାଶନରେ ମୋତେ ସହଯୋଗ କରିଥିବା ଅଜୟ କୁମାର ସାହୁ, ଏସ୍.ନାଗେଶ୍ୱର ରାଓ (ଦେବ), ସନ୍ତୋଷ ଏବଂ ସସ୍ମିତା ସାହୁଙ୍କୁ ଏହି ଅବସରରେ ଧନ୍ୟବାଦ ଜଣାଉଛି ।

ପ୍ରମୋଦ ପାଣିଗ୍ରାହୀ



ପର୍ତ୍ତୁଗାଲର ରାଜଧାନୀ ଲିସବନ୍ ଠାରେ ଆର୍ନ୍ତଜାତିକ ସମ୍ମିଳନୀ ଅବସରରେ, ଅବନୀ ବରାଳ, ପାଲେଷ୍ଟାଇନ ପ୍ରତିନିଧି ଜାମିଲ୍ ସାହାଦା, ରୁଷିଆର ପ୍ରତିନିଧି ଦିମିତ୍ରିତୁର୍ସାନିନୋଭ ଏବଂ ପର୍ତ୍ତୁଗାଲର ପ୍ରତିନିଧି



ଦିଲ୍ଲୀ ନୋଇଡ଼ାର ଟେରି ହଲଠାରେ ଏଜୁକେସନ ଇଣ୍ଟର ନ୍ୟାସନାଲ ସହଯୋଗିତାରେ ଅନୁଷ୍ଠିତ ଆର୍ନ୍ତଜାତୀୟ ଶିକ୍ଷା ଆଲୋଚନା ଚକ୍ରରେ ଅବନୀ ବରାଳ ବିଭିନ୍ନ ସଂଗଠନର ପ୍ରତିନିଧିମାନଙ୍କ ସହିତ ।



'ଶାନ୍ତି ପାଇଁ ଶିକ୍ଷା' ବିଶ୍ୱ ସମ୍ମିଳନୀରେ ଲେଖକ ।





Development Academy of the Philippines
"Tagaytay City"

ଫିଲିଫାଇନ୍ସର ତାଗାତ୍ୟେ ଛୋଟିଆ ଆଗ୍ନେୟଗିରି ଥିବା ସହରର ଡେଭଲପ୍‌ମେଣ୍ଟ ଏକାଡେମୀ ଠାରେ ୟୁନେସ୍‌କୋ ପକ୍ଷରୁ ଆୟୋଜିତ ଆର୍ନ୍ତଜାତିକ 'ସମସ୍ତଙ୍କ ପାଇଁ ଶିକ୍ଷା' ସେମିନାରରେ ଅଧ୍ୟାପକ ଅବନୀ ବରାଳ ପ୍ରତିନିଧି ସଭାରେ ।




୧୯୭୭ ମସିହାରେ 'ଇସ୍ପାତ' ଅନୁବାଦ ଉପନ୍ୟାସ ପାଇଁ ସୋଭିଏତ୍ ଲାଣ୍ଡ-ନେହେରୁ ପୁରସ୍କାର ପାଇବା ଅବସରରେ ।



କ୍ୟାଟୋର (ଜାପାନ)ର ସ୍ୱର୍ଣ୍ଣମନ୍ଦିର କିଲ୍‌କୀକୁଜୀର ପଶ୍ଚାଦ୍‌ପଟରେ ଲେଖକ, ଦାନିଏଲ, ବାଲୁଭାଇ ଏବଂ ବନ୍ଧୁଗଣ



ଭାରତୀୟ ଶିକ୍ଷକ ସଂଘମାନଙ୍କର ପ୍ରତିନିଧିମାନଙ୍କ ସହିତ ସୋଭିଏତ୍ ରୁଷ୍ ଭ୍ରମଣ କାଳରେ ତାତାରସ୍ଥାନ ଠାରେ ଭାରତର ଶିକ୍ଷକ ପ୍ରତିନିଧିମାନଙ୍କ ଗହଣରେ



୧୯୮୮ ମସିହା ଏପ୍ରିଲ ମାସରେ ଜର୍ମାନୀ ଗଣତାନ୍ତ୍ରିକ ରିପବ୍ଲିକ (ଅଧୁନା ବିଲୁପ୍ତ) ଦେଶର ଟ୍ରେଡ୍ ୟୁନିୟନ କର୍ମକର୍ତ୍ତାଙ୍କ ଠାରୁ ତାଙ୍କର ପତାକା ସଂକେତ ଗ୍ରହଣ କରୁଛନ୍ତି : ଅଧ୍ୟାପକ ଅବନୀ ବରାଳ ।



ଜର୍ମାନୀର 'ଏର୍‌ଫୁର୍ଟ' ଠାରେ ଏକ ସମ୍ମିଳନୀ ଅବସରରେ ବିଶ୍ୱ ଶିକ୍ଷକ ୟୁନିୟନର ବିଶ୍ୱପ୍ରତିନିଧିମାନଙ୍କ ସହିତ ଅବନୀ ବରାଳ ।



ଜାପାନର ଆସିଆ ବିଶ୍ୱବିଦ୍ୟାଳୟର ଆସୋସିଏଟେଡ୍ ପ୍ରଫେସର ରିୟୋଚି ମିୟାଲୋଜିଙ୍କ ସହିତ ମହାସଂଘ କାର୍ଯ୍ୟାଳୟରେ



ପ୍ରାଣନାଥ କଲେଜର ଅଧକ୍ଷ ଭାବରେ
ଅଫିସରେ ଆସୀନ ।



ପ୍ରାକ୍ତନ ଶିକ୍ଷକ ନେତା ବିନାୟକ ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀତ୍ୱ ଗ୍ରହଣ-କରିଥିବା ସମୟରେ
ଶିକ୍ଷକ ମହାସଂଘ ପକ୍ଷରୁ ପ୍ରଦତ୍ତ ସମ୍ବର୍ଦ୍ଧନା ଉତ୍ସବରେ ପହଞ୍ଚୁଛନ୍ତି ବିନାୟକ ଆଚାର୍ଯ୍ୟ ।



୰ ଅଶୋକ ଦାସ, ଶିବାଜୀ ପଟ୍ଟନାୟକ, ପ୍ରସନ୍ନ ପାଟଶାଣୀ ଆଦି ସମଗ୍ର ରାଜ୍ୟର ବିରୋଧୀ ଦଳର ନେତୃବୃନ୍ଦଙ୍କ ଗହଣରେ ସିପିଆଇ ସମ୍ପାଦକ ଭାବରେ ଅବନୀ ବରାଳ ।




୨୪ତମ ଶିକ୍ଷକ ମହାସଂଘ ସମ୍ମିଳନୀ ଅବସରରେ ଆଲୋଚନାଚକ୍ର ଉଦ୍‌ଘାଟନ କରୁଛନ୍ତି ପ୍ରଫେସର ୰ ଶତ୍ରୁଘ୍ନ ଦାଶ । ମଞ୍ଚାସୀନ ବିରୋଧୀ ଦଳ ନେତା ଶ୍ରୀ ଭୂପେନ୍ଦ୍ର ସିଂ ଏବଂ ସଭାପତି ୰ ଅର୍ଜୁନ ଦାଶ ।

# ଧୂଳି ଧୂସରିତ କଟକରୁ ବିଶ୍ୱବିଖ୍ୟାତ ମଣିଷ



ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶା ଇତିହାସର ସେ ଏକ ବିସ୍ମୟକର ବ୍ୟକ୍ତିତ୍ୱ । ବହୁମୁଖୀ ପ୍ରତିଭା ସମ୍ପନ୍ନ ମଣିଷ । ଶତ ସଂଗ୍ରାମର ଅପରାଜେୟ ଯୋଦ୍ଧା । ସେ ରଙ୍ଗମଞ୍ଚ ଆଢୁଆଳରେ ରହି ଅଭିନେତା-ଅଭିନେତ୍ରୀ ତିଆରି କରିପାରନ୍ତି, ପୁଣି ଅବିଶ୍ରାନ୍ତ କଲମ ଚଳାଇ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରନ୍ତି, ଅସୁମାରି ପୁସ୍ତକ ରଚନା କରି । ଗରିବ, ଶୋଷିତ ଓ ଅବହେଳିତ ମଣିଷର ନ୍ୟାଯ୍ୟ ଅଧିକାର ସାବ୍ୟସ୍ତ କରିବାକୁ ସାରାଜୀବନ ଲଢ଼େଇ କରିପାରନ୍ତି, ପୁଣି ରାଜ୍ୟର ଲକ୍ଷ ଲକ୍ଷ ଶିକ୍ଷକଙ୍କର ବଞ୍ଚିବାର ଦାବିନେଇ ରାଜରାସ୍ତା ଉପରକୁ ଓହ୍ଲାଇ ପାରନ୍ତି, ସେମାନଙ୍କୁ ବଳିଷ୍ଠ ନେତୃତ୍ୱ ଦେଇପାରନ୍ତି, ଦିଗ୍‌ଦର୍ଶକ ସାଜିପାରନ୍ତି ଆଉ ପୁଲିସ୍ ବ୍ୟାରିକେଡ୍ ଭାଙ୍ଗି କାରାରୁଦ୍ଧ ମଧ୍ୟ ହୋଇପାରନ୍ତି । ବହୁ ବୈଚିତ୍ର୍ୟର ସମାହାର ଘଟିଥିବା ସେଇ ମଣିଷଟି ଏକାଧାରରେ ଜଣେ ସାହିତ୍ୟିକ, ଶିକ୍ଷାବିତ୍, ସଙ୍ଗଠକ, ମଞ୍ଚ ଅଭିନେତା ଓ ନିର୍ଦ୍ଦେଶକ, ସାମ୍ୟବାଦୀ ସର୍ବୋପରି ସାଧାରଣ ମଣିଷକୁ ପ୍ରାଣଭରି ଭଲ ପାଉଥିବା ମଣିଷ ଭଳି ମଣିଷ । ନାଁ ତାଙ୍କର ଅବନୀ କୁମାର ବରାଳ । ବୈମାନିକରୁ ଶିଳ୍ପପତି, ଶିଳ୍ପପତିରୁ ରାଜନେତା, ରାଜନେତାରୁ ରାଷ୍ଟ୍ରନାୟକ ପାଲଟିଥିବା ବିଜୟାନନ୍ଦ ପଟ୍ଟନାୟକ ଓଡ଼ିଶାବାସୀଙ୍କ ନିକଟରେ 'ବିଜୁ ପଟ୍ଟନାୟକ' ନାମରେ ପରିଚିତ ହେବା ଭଳି ଅବନୀ କୁମାର ବରାଳ ଆଜି ଓଡ଼ିଶାର ଜନଜୀବନରେ 'ଅବନୀ ବରାଳ' ନାମରେ ହିଁ ସୁଖ୍ୟାତି ଅର୍ଜନ କରିଛନ୍ତି । ସେ ଆଜି ଆଉ ବ୍ୟକ୍ତି ବିଶେଷ ହୋଇନାହାନ୍ତି, ପରିଣତ ହୋଇଛନ୍ତି ଏକ ଅନୁଷ୍ଠାନରେ ।

ବିଦ୍ୟାଳୟର ତଳ ଶ୍ରେଣୀରେ ପାଠ ପଢ଼ିବା ସମୟରୁ 'ଅବନୀ ବରାଳ' - ଏଇ ନାମ ସହିତ ବେଶ ପରିଚିତ ଥିଲି । ସେତେବେଳର ବହୁ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାରେ ତାଙ୍କର ଗଳ୍ପ, ଉପନ୍ୟାସ ଓ ଅନ୍ୟ ଲେଖାସବୁ ଧାରାବାହିକ ଭାବରେ ପ୍ରକାଶ ପାଉଥାଏ । କମ୍ ବୟସର ଛାତ୍ର ଓ ତରୁଣଙ୍କ ପାଖରେ ଜଣେ ରୋମାଣ୍ଟିକ୍ ଲେଖକ ରୂପେ ତାଙ୍କର ଆଦର ଖୁବ୍ ବଢ଼ିଯାଇଥାଏ । ସମୟ ଯେତିକି ଗଡ଼ି ଚାଲିଲା ତାଙ୍କର ଗୋଟିଏ ପରେ ଗୋଟିଏ ନୂଆ ପରିଚୟର ସନ୍ଧାନ ମିଳୁଥାଏ । ତରୁଣ ପିଢ଼ିର ଏହି ଲୋକପ୍ରିୟ ସାହିତ୍ୟିକ ଯେ ଜଣେ ଉଚ୍ଚକୋଟିର ବୁଦ୍ଧିଜୀବୀ, ମଞ୍ଚ ଅଭିନେତା ଓ ନିର୍ଦ୍ଦେଶକ, ବାମପନ୍ଥୀ ଆଦର୍ଶରେ ଅନୁପ୍ରାଣୀତ ଜଣେ କମ୍ୟୁନିଷ୍ଟ ଯୁବନେତା, ଏହା ଜାଣିବାକୁ ବେଶି ଡେରି ଲାଗିନଥିଲା । ସେତେବେଳେ ସେ କଟକରେ ରହି ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର 'ନୂଆ ଦୁନିଆ'ର ପ୍ରକାଶନ ଦେଖାଶୁଣା କରୁଥାନ୍ତି । ଅନେକ ସମୟରେ କଟକର ବାଙ୍କା ବଜାର, ବିନୋଦ ବିହାରୀ ଓ ବାଲୁ ବଜାରରେ ଥିବା ପୁସ୍ତକ ପ୍ରକାଶକ ଓ ବିକ୍ରେତାମାନଙ୍କର ଦୋକାନରେ ତାଙ୍କର ଖଟି ଜମେ । ଆଉ କେତେବେଳେ ଜନତା ରଙ୍ଗମଞ୍ଚରେ ଅବା 'ଇପ୍‌ଟା' କାର୍ଯ୍ୟାଳୟରେ ବା ଚାନ୍ଦିନୀଚୌକରେ କମ୍ୟୁନିଷ୍ଟ ପାର୍ଟିର ନାଲି ଦୋମହଲା କୋଠା ଆଗରେ ଥିବା କାମିନି ନନା ହୋଟେଲ୍‌ରେ ସମୟ କଟିଯାଏ । ମୋଟ ଉପରେ ବିଗତ ଶତାବ୍ଦୀର ପଞ୍ଚମ ଦଶକର ଆଦ୍ୟ ଭାଗରୁ ମଧ୍ୟଭାଗ ପର୍ଯ୍ୟନ୍ତ ସାହିତ୍ୟ, ସଂସ୍କୃତି ଓ ବାମପନ୍ଥୀ ରାଜନୀତିରେ ସମ୍ପୂର୍ଣ୍ଣ ଭାବରେ ସମର୍ପିତ ଏହି ଯୁବକଙ୍କର କର୍ମକ୍ଷେତ୍ର ଥିଲା କଟକ ସହର ।

ଏହାପରେ ସମୟର ଚକ ଗଡ଼ିଯାଇଛି । କଟକର ଧୂଳି ଧୂସରିତ ରାଜପଥରୁ ସେହି ଯୁବକଙ୍କ କର୍ମକ୍ଷେତ୍ର ହଠାତ୍ ବଦଳିଯାଇଛି ଐତିହାସିକ ଖୋରଧାର ବରୁଣେଇ ପାହାଡ ପାଦ ଦେଶର କଙ୍କରିଳ ମାଟିକୁ । ବହୁ ବାଧା ପ୍ରତିବନ୍ଧକ ଭିତରେ ସେଠି ଗଢ଼ି ଉଠିଥିବା ମଣିଷ ତିଆରି ଶିକ୍ଷା କାରଖାନାର ଅନ୍ୟତମ ଆଦ୍ୟ ବିନ୍ଧାଣୀ ସାଜିଛନ୍ତି ଅବନୀ ବରାଳ । ତାଙ୍କର ଅତିପ୍ରିୟ ଖୋରଧା କଲେଜ (ବର୍ତ୍ତମାନର ପ୍ରାଣନାଥ ସ୍ୱୟଂଶାସିତ ମହାବିଦ୍ୟାଳୟ)ର ପ୍ରତିଟି ଗୋଡ଼ିମାଟି ସହ ସେ ନିବିଡ଼ ଭାବରେ ଜଡ଼ିତ ହୋଇପଡ଼ିଛନ୍ତି । ଏହି ଶିକ୍ଷା ମନ୍ଦିରର ପ୍ରତିଷ୍ଠାତା, ତାଙ୍କର ରାଜନୈତିକ ଶିକ୍ଷାଗୁରୁ, ବିପ୍ଳବୀ ଜନନାୟକ ପ୍ରାଣନାଥ ପଟ୍ଟନାୟକଙ୍କ ଅନ୍ତରଙ୍ଗ ଶିକ୍ଷକ ଭାବରେ ତାଙ୍କର ଆଦର୍ଶ ଓ ଚିନ୍ତାଧାରାକୁ ଅକ୍ଷରେ ଅକ୍ଷରେ ରୂପାୟନ କରିବା ପାଇଁ ସତେ ଯେପରି ମନପ୍ରାଣ ଢ଼ାଳି ଦେଇଛନ୍ତି । କଲେଜର ଜନ୍ମ ଜାତକ ଲେଖାହେବା ଦିନରୁ ଆରମ୍ଭ କରି ପ୍ରତିଷ୍ଠାତାଙ୍କ ମହାପ୍ରୟାଣ ପର୍ଯ୍ୟନ୍ତ ଗୋଟିଏ ମୁହୂର୍ତ୍ତ ତାଙ୍କୁ ଛାଡ଼ି ନାହାନ୍ତି । ତାଙ୍କର ଦକ୍ଷିଣ ହସ୍ତରୂପେ କଲେଜର ବିକାଶ ଓ ଅଗ୍ରଗତିରେ ସାରଥୀ ଭଳି କାର୍ଯ୍ୟ କରିଛନ୍ତି । କଲେଜ ପାଇଁ ଚାନ୍ଦା ଉଠାଇବାକୁ ସୁଦୂର କଲିକତା ମହାନଗରୀରେ ଜଣାଶୁଣା ଓଡ଼ିଆ କଳାକାରଙ୍କୁ ନେଇ ସାଂସ୍କୃତିକ

କାର୍ଯ୍ୟକ୍ରମର ଆୟୋଜନ ଠାରୁ ଆରମ୍ଭ କରି କଲେଜର ମୁଖପତ୍ର 'ପ୍ରତୀକ' ଓ ସାହିତ୍ୟ ପତ୍ରିକା 'ଧୂଳି ମୁଠାଏ'ର ପ୍ରକାଶନ, ଆଜ୍‌ବେଷ୍ଟସ୍ ଘରୁ କୋଠା ଘରକୁ କଲେଜ ସ୍ଥାନାନ୍ତର, 'ଜୟୀ ରାଜଗୁରୁ ପାଠାଗାର' ସ୍ଥାପନ ପର୍ଯ୍ୟନ୍ତ ସବୁଥିରେ ଗୁରୁଶିଷ୍ୟ ଅଣ୍ଟାଭିଡ଼ି ଆଗେଇଛନ୍ତି । ପୁଣି ଖୋରଧା କଲେଜକୁ 'ମୋତିଲାଲ ନେହେରୁ ବିଶ୍ୱବିଦ୍ୟାଳୟ'ରେ ପରିଣତ କରିବା ପାଇଁ ପ୍ରତିଷ୍ଠାତାଙ୍କ ସ୍ୱପ୍ନକୁ ସାକାର କରିବା ଲାଗି ତାଙ୍କୁ ସମ୍ପୂର୍ଣ୍ଣ ସହଯୋଗ କରିଛନ୍ତି । ରାତି ରାତି ଉଜାଗର ରହି ପ୍ରସ୍ତାବିତ ବିଶ୍ୱବିଦ୍ୟାଳୟର ନକ୍‌ସା ପ୍ରସ୍ତୁତ କରି ଦିଲ୍ଲୀ ପଠାଇଛନ୍ତି । ଖୋରଧା କଲେଜ ପ୍ରତି ତାଙ୍କର ନିଷ୍ଠା, ମମତା ଓ ଆବେଗ କେତେ ଗଭୀର ଏବଂ ପ୍ରତିଷ୍ଠାତା ପ୍ରାଣନାଥ ପଟ୍ଟନାୟକଙ୍କ ସହ ତାଙ୍କର ସମ୍ପର୍କ କେତେ ନିବିଡ଼, ତାହାର ପ୍ରମାଣ ମିଳେ ଅବନୀ ବରାଳଙ୍କ ନିଜ ରଚନାରୁ । ପ୍ରାଣନାଥଙ୍କ ତିରୋଧାନ ପରେ ଦୁଃଖରେ ଭାଙ୍ଗି ପଡ଼ି ତାଙ୍କର ସ୍ମୃତିଚାରଣ କରି ସେ ଲେଖିଛନ୍ତି – "ଉଦୁଉଦିଆ ଖରାଦିନେ, କଳାହାଣ୍ଡି, ବଲାଙ୍ଗୀରରେ ମରୁଡ଼ିର ବିଭୀଷିକା କଥା ଆଖିରେ ଦେଖିବା ପାଇଁ ବୁଲିବୁଲି ଆସି ଖବର କାଗଜରେ ପହିଲେ ଛପାଇଛନ୍ତି । ବିଧାନସଭାରେ ସରକାରଙ୍କର ଦୃଷ୍ଟି ଆକର୍ଷଣ କରାଇଛନ୍ତି । ପୁଣି ସେହି ଦିନମାନଙ୍କରେ ମୋ ସାଙ୍ଗେ ବସି ଖୋର୍ଦ୍ଧା କଲେଜକୁ ଭବିଷ୍ୟତରେ ବିଶ୍ୱବିଦ୍ୟାଳୟରେ ପରିଣତ କରିବା ପାଇଁ ଯୋଜନା ତିଆରି କରି ଦିଲ୍ଲୀ ପଠାଇଛନ୍ତି । ନିଜ ଦେହ ଖରାପ ହେଲେ କେବେ ବିଚଳିତ ହୋଇନାହାନ୍ତି । କଲେଜର ପିଅନର ପୁଅ ବେମାର ହେଲେ ଡାକ୍ତରଖାନା ଦୌଡ଼ିଛନ୍ତି, ଦେଖିବାକୁ ଯାଇଛନ୍ତି, ବିଚଳିତ ହୋଇଛନ୍ତି । ଶିକ୍ଷକ ଆନ୍ଦୋଳନ ହେଲା – ପ୍ରଥମ ସମ୍ପାଦକ ଯେ କି ଲିଖିତ ସମର୍ଥନ ଜଣାଇଛନ୍ତି । କିନ୍ତୁ ସରକାରୀ ଆଇନ୍ ଅନୁସାରେ ଆମକୁ କୈଫିୟତ୍ ମାଗିଛନ୍ତି ।

"କଲିକତାରେ ରୋଗଶଯ୍ୟାରେ ପଡ଼ିଲା ବେଳେ ମଧ୍ୟ ଗରିବ ପିଲାଟିଏ ଅର୍ଥ ସାହାଯ୍ୟ ମାଗିଲା । ସେ କେତେ ଅସୁବିଧାରେ ପଡ଼ିବଣି ବୋଲି ମୋ ଉପରେ ବିରକ୍ତ ହୋଇ ଉଠିଛନ୍ତି, ତା' କଥା କାହିଁକି ବ୍ୟକ୍ତିଗତ ଭାବରେ ବୁଝିଲି ନାହିଁ ବୋଲି । ଥରଥର ହାତରେ ଅର୍ଡ଼ର ଦେଇ ପଠାଇଛନ୍ତି କଲେଜ ଅଧ୍ୟକ୍ଷଙ୍କ ପାଖକୁ । କାଲି ପରି ମନେପଡ଼ୁଛି । କଲେଜର ସ୍ମରଣିକାଟିଏ ବାହାର କରିବେ ଓ କୋଠାଗୁଡ଼ିକ ବିଭିନ୍ନ ଜାତୀୟ ବୀରଙ୍କ ନାଁରେ ନାମିତ କରିବେ ବୋଲି ସ୍ଥିର କଲେ । ପଦଯାତ୍ରା ବେଳେ ସେଇ କଥା ଲେଖି ପଠାଉଥାନ୍ତି । ପୁଣି କଲେଜର ଇତିହାସ ତା'ରି ଭିତରେ ଲେଖିଛନ୍ତି । କହୁଥିଲେ 'ବଞ୍ଚିବା କି ନାହିଁ.... ସବୁ ଲେଖା ହୋଇଥାଉ, ସମସ୍ତେ ଜାଣିବେ ।' ଅନେକ ଘଟଣା, ବହୁଦିନର ସ୍ମୃତି । ସବୁ ଆବୁରୁ ଜାବୁରୁ ହୋଇ ମନକୁ ଆସୁଛି । ଆଖିରେ ଭାସି ଉଠୁଛି ତାଙ୍କର ସଦା ହସ ହସ ମୁହଁ, ତାଙ୍କର 'ଚଗଲା' ବୋଲି ଡାକ, ତାଙ୍କର 'ନୟନର ପିତୁଳା'

କଲେଜ । ଲୁହରେ ପୁଣି ଝାପ୍‌ସା ହୋଇଯାଉଛି ।" ୧୯୭୦ ଅକ୍ଟୋବର ୧୫ ତାରିଖ 'ସମାଜ'ରେ ପ୍ରକାଶିତ ଏହି ମର୍ମସ୍ପର୍ଶୀ ଅନୁଭୂତି ଏଠାରେ ଅବତାରଣା କରିବାର ଉଦ୍ଦେଶ୍ୟ ହେଉଛି ଯେ, କଲେଜର ଦୈନନ୍ଦିନ କାର୍ଯ୍ୟ ପରିଚାଳନା କଲାବେଳେ ପ୍ରତିଷ୍ଠାତା ପ୍ରାଣନାଥ ନିଜର ପ୍ରିୟ ଶିଷ୍ୟ ଅବନୀଙ୍କ ଉପରେ କେତେ ନିର୍ଭରଶୀଳ ହୋଇଥିଲେ ଏବଂ ତାଙ୍କ ଉପରେ ଆସ୍ଥା ଓ ବିଶ୍ୱାସ କେତେ ଗଭୀର ଥିଲା, କଲେଜର ଭଲମନ୍ଦ ସବୁ ବିଷୟରେ ଅବନୀ ବରାଳ ହିଁ ଥିଲେ ପ୍ରତିଷ୍ଠାତାଙ୍କ ମୁଖ୍ୟ ପରାମର୍ଶଦାତା ।

ପ୍ରାଣନାଥ କଲେଜକୁ ନିଜର ଜୀବନ ବୋଲି ଭାବି ଆସିଥିବା ଅବନୀ ବାବୁ କଲେଜ ପରିସର ବାହାରେ ମଧ୍ୟ ଖୋର୍ଦ୍ଧା ସହରରେ ସାହିତ୍ୟ, ସଂସ୍କୃତି ଓ ଜନଚେତନାର ଅଭ୍ୟୁଦୟ କ୍ଷେତ୍ରରେ ଆପଣାକୁ ସମ୍ପୂର୍ଣ୍ଣ ଉତ୍ସର୍ଗ କରିଛନ୍ତି । ଚାରି ଦଶନ୍ଧିରୁ ଉର୍ଦ୍ଧ୍ୱକାଳ ଧରି ସମସ୍ତ କାର୍ଯ୍ୟରେ ଖୋର୍ଦ୍ଧାର ମୁରବୀ ଭାବରେ ତାଙ୍କୁ ଗଣ୍ୟ କରାଯାଇଛି । ତାଙ୍କ ଦ୍ୱାରା ସୃଷ୍ଟ ଅଗଣିତ ଶିଷ୍ୟ-ଶିଷ୍ୟା ଆଜି ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ ।

ଐତିହାସିକ ଖୋରଧା ମାଟିରେ ସୁଦୀର୍ଘ ରହଣି କାଳ ମଧ୍ୟରେ ଅବନୀ ବରାଳଙ୍କ ଜୀବନ ଏକ ଭିନ୍ନ ମୋଡ଼ ନେଇଥିଲା, ଯାହା ତାଙ୍କୁ ପରିଣତ କରିଛି ଏକ ଐତିହାସିକ ବ୍ୟକ୍ତିତ୍ୱରେ । ମହେନ୍ଦ୍ରତନୟାରୁ ମେଘାସନ ପର୍ଯ୍ୟନ୍ତ ବିସ୍ତୃତ ସାରା ଓଡ଼ିଶାର ସବୁବର୍ଗର ଶିକ୍ଷକ-ଶିକ୍ଷୟିତ୍ରୀ ଓ ଶିକ୍ଷାକର୍ମୀଙ୍କୁ ଗୋଟିଏ ମଞ୍ଚରେ ଏକାଠି କରାଇ ସେ ଗଠନ କରିଛନ୍ତି ନିଖିଳ ଉତ୍କଳ ଶିକ୍ଷକ ମହାସଂଘ । ଏହା ହେଉଛି ଓଡ଼ିଶାର ଶିକ୍ଷକ ଓ ଶିକ୍ଷାକର୍ମୀମାନଙ୍କର ସର୍ବବୃହତ୍ ସଙ୍ଗଠନ, ଯାହାର ଦୁର୍ବାର ଆନ୍ଦୋଳନରେ ରାଜ୍ୟର ନଗର ଓ ଜନପଦ ବାରମ୍ବାର ପ୍ରକମ୍ପିତ ହୋଇଉଠିଛି । ଗୋଟିଏ ପରେ ଗୋଟିଏ ସରକାରର ସ୍ଥିତି ଦୋହଲି ଯାଇଛି । କାଲି ଭଳି ମନେ ପଡୁଛି, ବିଧାନସଭା ଆଗରେ ଚାଲିଥିବା ଶିକ୍ଷକ ମହାସଂଘର ଆଇନ ଅମାନ୍ୟ ଆନ୍ଦୋଳନକୁ ବିଧାନସଭାରେ ବ୍ୟଙ୍ଗ ବିଦ୍ରୂପ କରି ଯେଉଁ ଶିକ୍ଷାମନ୍ତ୍ରୀ ଏହାକୁ "ପେଶାଦାର ଆନ୍ଦୋଳନକାରୀ ଶିକ୍ଷକ ମହାସଂଘର ବାର୍ଷିକ ତାମ୍‌ସା" ରୂପେ ବର୍ଣ୍ଣନା କରିଛନ୍ତି, ସେଇ ପୁଣି କାଲି ମନ୍ତ୍ରୀପଦରୁ ଯିବା ପରେ ମହାସଂଘର କାର୍ଯ୍ୟାଳୟକୁ ଆସି ଅବନୀ ବାବୁଙ୍କ ବନ୍ଧୁ ଓ ପରାମର୍ଶଦାତା ସାଜିଛନ୍ତି । ସମସ୍ତ ଆନ୍ଦୋଳନରେ ନିଜେ ସାମିଲ ହୋଇଛନ୍ତି । ନିମ୍ନମାଧ୍ୟମିକ ବିଦ୍ୟାଳୟ ଠାରୁ ଆରମ୍ଭ କରି ମହାବିଦ୍ୟାଳୟ, ବିଶ୍ୱ ବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ଶିକ୍ଷକ ସମାଜର ଅନେକ ନ୍ୟାଯ୍ୟ ଦାବି ହାସଲ କରିବାକୁ ସେ ସକ୍ଷମ ହୋଇଛନ୍ତି, ଏକାଧିକ ସରକାର ଓ ମୁଖ୍ୟମନ୍ତ୍ରୀଙ୍କ କାନ ମୋଡ଼ି ଆଦାୟ କରିଛନ୍ତି ହକ୍ । ବିରାମହୀନ ସେଇ ସଂଗ୍ରାମ, ଦୁର୍ବାର ସେଇ ଯାତ୍ରା ପଥ ! ତଥାପି ଥକି ଯାଇନାହାନ୍ତି କି ଭାଙ୍ଗି ପଡ଼ିନାହାନ୍ତି । ଲକ୍ଷ୍ୟ ପଥରେ ଅଟଳ, ଅଚଳ, ଅବିଚଳିତ । ସଫଳତାର

ସୋପାନ ପରେ ସୋପାନ ଅତିକ୍ରମ କରି ଆସିଥିବା ଅବନୀ ବରାଳଙ୍କ ନେତୃତ୍ୱ ଆଜି ବ୍ୟାପ୍ତ ହୋଇଛି ସାରା ବିଶ୍ୱକୁ । ପୃଥିବୀର ବହୁ ରାଷ୍ଟ୍ରରୁ ନିମନ୍ତଣର ସୁଅ ଛୁଟିଛି । କେଉଁଠି ଶିକ୍ଷକ ସମସ୍ୟା ଉପରେ ଆୟୋଜିତ ଆନ୍ତର୍ଜାତିକ ଆଲୋଚନାଚକ୍ର ବା କର୍ମଶାଳାକୁ ତ ଆଉ କେଉଁଠି ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମର ମଇଦାନକୁ । ପୁଣି କେତେବେଳେ ଆମନ୍ତ୍ରିତ ହୋଇଯାଇଛନ୍ତି ଯୁଦ୍ଧ ବିରୋଧୀ ଶାନ୍ତି ଅଭିଯାନରେ ସାମିଲ ହେବା ପାଇଁ । ଯଶ ଓ ଖ୍ୟାତି ଯେମିତି ତାଙ୍କର ପିଛା ଛାଡ଼ିନାହିଁ ।

ତେବେ ଅବନୀ ବାବୁଙ୍କ ସମସ୍ତ ସଫଳତାର ମୂଳ ଉତ୍ସ ହେଉଛି ଅଦମ୍ୟ ମନୋବଳ ଓ କାର୍ଯ୍ୟ କରିବାର ଅନୁପମ ଶୈଳୀ, ଯାହାକି ସମସ୍ତଙ୍କ ପାଇଁ ଶିକ୍ଷଣୀୟ ଓ ଅନୁସରଣୀୟ । ଉତ୍ସର୍ଗୀକୃତ ମନୋଭାବ ନେଇ କାର୍ଯ୍ୟ କଲାବେଳେ ସେ ସବୁ ବିଷୟକୁ ଗଭୀର ଭାବରେ ଅନୁଧ୍ୟାନ କରନ୍ତି, ପ୍ରତ୍ୟେକ ସମସ୍ୟାର ଗଭୀରକୁ ପ୍ରବେଶ କରିଥାନ୍ତି ଏବଂ ଧୈର୍ଯ୍ୟର ସହ ଧୀରସ୍ଥିର ଭାବରେ ନିଷ୍ପତ୍ତି ନିଅନ୍ତି । କେବଳ ସେଇଥିପାଇଁ କଟକର ଧୂଳି ଧୂସରିତ ରାଜପଥର ସେଇ ଖର୍ବକାୟ ମଣିଷ ଆଜି ସଫଳତାର ଜୟମାଲ୍ୟ ପିନ୍ଧି ପରିଣତ ହୋଇଛନ୍ତି ବିଶ୍ୱ ବ୍ୟକ୍ତିତ୍ୱରେ । ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଧରି ଓଡ଼ିଶାର ଶିକ୍ଷା, ସାହିତ୍ୟ, କଳା ଓ ସଂସ୍କୃତି, ସଙ୍ଗଠନ, ସମାଜସେବା ଓ ରାଜନୀତି କ୍ଷେତ୍ରରେ ଅବିସ୍ମରଣୀୟ ସ୍ୱାକ୍ଷର ବହନ କରିଥିବା ଅବନୀ ବରାଳଙ୍କ ଜୀବନ ଯେତିକି ଘଟଣାବହୁଳ, ସେତିକି ରୋମାଞ୍ଚକର ଓ ସଂଗ୍ରାମମୟ, ଯାହାର କିଞ୍ଚିତ ଆଭାସ ପାଠକଙ୍କ ଆଗରେ ଉପସ୍ଥାପନ କରିବା ପାଇଁ ଲେଖକର ଏହା ନମ୍ର ପ୍ରୟାସ ।



## ଏନ୍ତୁଡ଼ିଶାଳରୁ ଜୀବନ ସଂଗ୍ରାମର ଏରୁଣ୍ଡି ବନ୍ଧରେ



କଟକ-ଜଗତସିଂହପୁର ମୁଖ୍ୟ ରାସ୍ତାରେ କନ୍ଦରପୁର ଛକରୁ ଡାହାଣକୁ କିଛି ବାଟ ଗଲାପରେ ପଡ଼େ ବିରିଡ଼ି ବ୍ଲକ କାର୍ଯ୍ୟାଳୟ ଓ ବଜାର । ପୂର୍ବେ ଏହା ଅବିଭକ୍ତ କଟକ ଜିଲ୍ଲାର ଅନ୍ତର୍ଭୁକ୍ତ ଥିଲା । ମାତ୍ର ୧୯୯୩ରେ ଜିଲ୍ଲା ପୁନର୍ଗଠନ ପରେ ନୂତନ ଭାବେ ଜନ୍ମ ନେଇଥିବା ଜଗତ୍‌ସିଂହପୁର ଜିଲ୍ଲାର ଏହା ଏକ ବ୍ଲକ୍ । କଇଜଙ୍ଗା ବଜାର ଟପି ଜଗତ୍‌ସିଂହପୁର ରାସ୍ତାରେ ଅଳ୍ପବାଟ ଆଗକୁ ଗଲେ ଡାହାଣ ପଟେ ଦେବୀନଦୀ (କାଠଯୋଡ଼ିର ରୂପାନ୍ତର)ର ସୁଦୃଢ଼ ଓ ସୁରକ୍ଷିତ 'ଦଳେଇ ଘାଇ' ବନ୍ଧ ଦେଖିବାକୁ ମିଳେ । ଏହି ବନ୍ଧର ନାଁ ଶୁଣିଲେ ଅବିଭକ୍ତ କଟକ ଜିଲ୍ଲାର ଧୋୟା ଅଞ୍ଚଳର ଲୋକଙ୍କ ମଧ୍ୟରେ ଶୀହରଣ ସୃଷ୍ଟି ହୁଏ । ମହାନଦୀରେ ମହାପ୍ରଳୟଙ୍କରୀ ବନ୍ୟା/ ବିପ୍ଳାତ ଆସିଲେ ଏହି ସୁରକ୍ଷିତ ବନ୍ଧର ସ୍ଥିତି ବିପନ୍ନ ହୋଇଉଠେ ଉଭୟ ଦୈବୀକୃତ ଓ ମନୁଷ୍ୟକୃତ କାରଣରୁ । ମହାନଦୀର ବନ୍ୟା ଇତିହାସରେ ୧୯୫୫ ସେପ୍ଟେମ୍ବର ୬ ତାରିଖ ଓ ୧୯୮୨ ଅଗଷ୍ଟ ୩୧ ତାରିଖରେ ଦୁଇଥର ଦଳେଇ ଘାଇ ବନ୍ଧ ଭାଙ୍ଗି ରାଜ୍ୟର ବିସ୍ତୀର୍ଣ୍ଣ ଶସ୍ୟ ଶ୍ୟାମଳା ଅଞ୍ଚଳର ଲକ୍ଷ ଲକ୍ଷ ଲୋକଙ୍କ ଜୀବନ ଓ ଜୀବିକା ଧ୍ୱସ୍ତ ବିଧ୍ୱସ୍ତ ହେବାର ସ୍ମୃତି ଏବେ ମଧ୍ୟ ଜନମାନସରେ ଜୀବନ୍ତ ରହିଛି / ସେଇଠି ରାସ୍ତାର ବାମପଟେ ଦୁଇ କିଲୋମିଟର ଭିତରକୁ ରହିଛି ହଳଦିଆପଡ଼ା ଗ୍ରାମ । ସେହି ଗ୍ରାମର ଭ୍ରମରବର ବରାଳ ଓ ଜେମାମଣି ବରାଳଙ୍କ ଚତୁର୍ଥ ସନ୍ତାନ ରୂପେ ଭୂମିଷ୍ଠ ହୋଇଥିଲେ ଅବନୀ । ଉପରେ ତାଙ୍କର ଦୁଇ ଭଉଣୀ ଓ ଜଣେ ଭାଇ ଏବଂ ତଳେ ଭଉଣୀଟିଏ । ତେବେ ସବା ବଡ଼ ଭଉଣୀ ବିବାହ କରିବାର

ଅଳ୍ପ କେତେ ବର୍ଷ ମଧ୍ୟରେ ଦୁନିଆରୁ ସବୁଦିନ ପାଇଁ ବିଦାୟ ନେଇଥିଲେ । ତାଙ୍କର ସନ୍ତାନଟିଏ ଜନ୍ମିଥିଲା, କିନ୍ତୁ ସେ ବି ମା'କୁ ଝୁରି ଝୁରି କିଛିଦିନ ପରେ ଚାଲିଗଲା । ବାକି ରହିଲେ ବଡ଼ ଭଉଣୀ ସ୍ନେହଲତା, ଯିଏକି ଅବନୀଙ୍କ ଅତି ଆଦରର 'କୁଶଅପା' ରୂପେ ପରିଚିତ । ତାଙ୍କ ତଳେ ଭାଇ ଅରୁଣ କୁମାର, ଡାକନାମ 'ବାଙ୍କୁ', ଅବନୀଙ୍କ ଠାରୁ ଚାରିବର୍ଷ ବଡ଼ । ଅବନୀଙ୍କ ତଳେ ଭଉଣୀ 'ସୁଖଲତା', ଯିଏ କେବଳ 'ଲତା' ନାମରେ ତାଙ୍କର ଗେହ୍ଲା ସାନଭଉଣୀ । ବାପା, ମାଆ ଓ ପରିବାର ଅତି ଆଦରରେ ଅବନୀଙ୍କ ପିଲାଦିନର ନାମ ରଖିଥିଲେ 'ପାକୁ' ।

ଭ୍ରମରବର ଥିଲେ ବ୍ରିଟିଶ ଅମଳର ପୋଷ୍ଟ୍ ମାଷ୍ଟର । ଗୋଟିଏ ସ୍ଥାନରୁ ଅନ୍ୟ ଗୋଟିଏ ସ୍ଥାନକୁ ବାରମ୍ବାର ବଦଳି । ବାପାଙ୍କ ଯାଯାବର ଜୀବନର ପ୍ରଭାବ ପରିବାର ଉପରେ ପଡୁଥାଏ । ପତ୍ନୀ ଜେମାମଣି ଓ ତିନୋଟି ଛୋଟ ପିଲାଙ୍କୁ ନେଇ ଭ୍ରମରବର ବରାବର ଘୂରି ବୁଲୁଥାନ୍ତି । କେତେବେଳେ କଟକ ଓ ଆଉ କେତେବେଳେ ବାଲେଶ୍ୱର, ପୁଣି କେତେବେଳେ ଜଟଣୀ ବା ଅନୁଗୁଳ । ସେଇ ଯାଯାବର ଜୀବନ ଭିତରେ ଭ୍ରମରବର ଓ ଜେମାମଣିଙ୍କ କେନ୍ଦ୍ରାପଡ଼ାରେ ରହଣୀ ସମୟରେ ୧୯୩୫ ଜୁନ୍ ୩ ତାରିଖର ଏକ ଶୁଭ୍ ମୁହୂର୍ତ୍ତରେ କୁଆଁ କୁଆଁ ଶବ୍ଦ କରି ଯେଉଁ ଶିଶୁ ସନ୍ତାନଟି ସେମାନଙ୍କ କୋଳ ମଣ୍ଡନ କରି ଜନ୍ମ ନେଇଥିଲା, ସିଏ ଯେ ଦିନେ ନିଜର ଜ୍ଞାନ ଓ ପ୍ରତିଭାଦୀପ୍ତ ଆଲୋକରେ ସାରା ରାଜ୍ୟକୁ ଆଲୋକିତ କରିବ, ତାହା ହୁଏ ତ କେହି ଚିନ୍ତା କରିନଥିଲେ । ଆମ ରାଜ୍ୟରେ ସାଧାରଣତଃ ପିଲାଟିଏ ଜନ୍ମ ହେବା ପରେ ପିତାମାତା ବିଦ୍ୟାଳୟରେ ତା'ର ନାମଲେଖା ବେଳେ ବୟସକୁ ବର୍ଷେ ଦୁଇବର୍ଷ କମାଇ ନାମ ଲେଖାଇଥାନ୍ତି, ଯେପରି ଭବିଷ୍ୟତ ଜୀବନରେ ତାଙ୍କ ପିଲା ବେଶି ଦିନ ଚାକିରୀ କରିପାରିବ । କିନ୍ତୁ ଭ୍ରମରବର ଥିଲେ ଖିଆଲି ସ୍ୱଭାବର ମଣିଷ । ଶିଶୁ ଅବନୀଙ୍କୁ ବିଦ୍ୟାଳୟରେ ଭର୍ତ୍ତି କଲାଦିନ ୧୫ ବର୍ଷ ବୟସ ନହୋଇଥିଲେ ମାଟ୍ରିକ ପରୀକ୍ଷା ଦେଇପାରିବ ନାହିଁ ବୋଲି ସେ ତାଙ୍କ ବୟସ ଏକ ବର୍ଷ ୨୨ ଦିନ ବଢ଼ାଇ ଦେଇ ରେଜିଷ୍ଟ୍ରେସନ୍ କରାଇଥିଲେ ମଇ ୧୨ ତାରିଖ, ୧୯୩୪ ମସିହା । ସେହି ଜନ୍ମ ତାରିଖକୁ ଭିତ୍ତିକରି ଅବନୀ ବାବୁଙ୍କୁ ପ୍ରକୃତ ବୟସର ଗୋଟିଏ ବର୍ଷ ପୂର୍ବରୁ କର୍ମମୟ ଶିକ୍ଷକ ଜୀବନରୁ ଅବସର ନେବାକୁ ପଡ଼ିଥିଲା ।

ପରିଣତ ବୟସରେ ଉପନୀତ ହୋଇ ଏବେ ରାଜଧାନୀ ଭୁବନେଶ୍ୱରରେ ବସବାସ କରୁଥିବା ବଡ଼ ଭଉଣୀ 'କୁଶଅପା' ତାଙ୍କର ସବୁଠାରୁ ଗେହ୍ଲା ସାନଭାଇ ଅବନୀ ଓରଫ୍ 'ପାକୁ'ର ପିଲାଦିନର କଥା ବର୍ଣ୍ଣନା କଲାବେଳେ ବେଶ ଭାବପ୍ରବଣ ହୋଇ ଉଠନ୍ତି । ଅତୀତର ସ୍ମୃତିଚାରଣ କରି ସେ କହନ୍ତି – "ଆମେ ଭାଇ-ଭଉଣୀଙ୍କ ଭିତରେ ସମ୍ପର୍କ ଥିଲା

ଅତି ନିବିଡ଼ । କେହି କାହାକୁ ମୁହୂର୍ତ୍ତେ ଛାଡ଼ିପାରନ୍ତି ନାହିଁ । ମାତ୍ର 'ପାକୁ' ଛୁଆଟି ବେଳୁ ମୋର ଅତି ଅନ୍ତରଙ୍ଗ ହୋଇପଡ଼ିଥିଲା । ସେ ମୋ'ଠାରୁ ୧୦/୧୨ ବର୍ଷ ସାନ । ଦାଣ୍ଡ ଦୁଆରେ ଠିଆହୋଇ ମୋର ସ୍କୁଲରୁ ଫେରିବା ବାଟକୁ ଚାହିଁ ରହିଥାଏ । ମୋତେ ଦେଖିବା ମାତ୍ରକେ ୨/୩ ବର୍ଷର ଛୁଆଟି ଠୁକୁଠୁକୁ ହୋଇ ଦୌଡ଼ିଆସି 'ଅପା', 'ଅପା' କହି କାଖ ହୋଇପଡ଼େ । ବାପା ଜଟଣୀରେ ପୋଷ୍ଟ ମାଷ୍ଟର ଥିବା ସମୟର ଘଟଣା । 'ପାକୁ'କୁ ସେତେବେଳେ ଅଢ଼େଇ ବର୍ଷ । ମୋ କାଖରେ ଥାଇ ଗୋଟିଏ ତାରକୁ ଧରିପକାଇଲା ବେଳେ କାଖରୁ ଖସି ପଡ଼ିଥିଲା । ଛୁଆଟିର ପିଚ୍ଛରେ ଯେଉଁ ଗଭୀର ଆଘାତ ଲାଗିଲା ଅନେକ ଦିନ ଧରି ବଡ଼ କଷ୍ଟ ଭୋଗିଲା । ଜଟଣୀ ଡାକ୍ତର କିଛି କରିପାରିଲେ ନାହିଁ । କଟକ ବଡ଼ ଡାକ୍ତରଖାନା ନେବାକୁ ପଡ଼ିଥିଲା । 'ପାକୁ' ପିଲାଦିନେ ପାଠ ପଢ଼ିବାକୁ ଭାରି ଡରୁଥିଲା ।"

'କୁଶଅପା' ନିଜ ବାପାଙ୍କ (ଅବନୀଙ୍କ ବାପା) ଗୁଣାବଳୀ ସ୍ମରଣ କରି କହନ୍ତି 'ଆମ ଭାଇ-ଭଉଣୀଙ୍କ ଭିତରେ ଯେପରି ସ୍ନେହ ସମ୍ପର୍କ ସ୍ଥାପିତ ହୋଇଥିଲା, ବାପା ଓ ବଡ଼ ବାପାଙ୍କ ମଧ୍ୟରେ ବି ସମ୍ପର୍କ ସେତିକି ନିବିଡ଼ ଥିଲା । ବଡ଼ ବାପାଙ୍କ ପୁଅ ରବି ନାରାୟଣ ବରାଳ । ତାଙ୍କର ଡାକ ନାମ 'ବୁଢ଼ା' । ଆମେ ସମସ୍ତେ ଗୋଟିଏ ଘର ଭଳି ଚଳୁଥିଲୁ । ସେମାନେ ମଧ୍ୟ ଦୁଇ ଭାଇ ଦୁଇ ଭଉଣୀ । ଆମ ବାପା ସେବା କାର୍ଯ୍ୟ କରିବାକୁ ଭଲ ପାଉଥିଲେ । ତେଣୁ ଅବସର ଗ୍ରହଣ କରିବା ପରେ ସରପଞ୍ଚ ହୋଇଥିଲେ । ସମସ୍ତଙ୍କୁ ହୋମିଓପାଥିକ୍ ଔଷଧ ଦେଉଥିଲେ । ବାପା କବିତା ବି ଲେଖୁଥିଲେ । ସେ ନିୟମିତ ପ୍ରାଣାୟମ୍ କରୁଥିଲେ ଏବଂ ଘଣ୍ଟା ଘଣ୍ଟା ଧରି ପୂଜାପାଠ କରୁଥିଲେ । ସେ ନିଜର ଏକ ଆତ୍ମଜୀବନୀ ମଧ୍ୟ ଲେଖିଥିଲେ । ସେ ପାଣ୍ଡୁଲିପିଟି ଏବେ କୁଆଡ଼େ ଗଲା, କାହାକୁ ଦେଲି ମନେ ପଡୁନାହିଁ । ବାପାଙ୍କର ଇଚ୍ଛା ଥିଲା 'ପାକୁ' ଡାକ୍ତରୀ ପାଠ ପଢ଼ି ଜଣେ ଭଲ ଡାକ୍ତର ହେଉ । କିନ୍ତୁ 'ପାକୁ' ତାହା କଲା ନାହିଁ । ୭୨ ବର୍ଷ ବୟସରେ ବାପା ଆଖି ବୁଜିଲେ ।' ଏମିତି ପୁରୁଣା କଥା ମନେପକାଇ ପକାଇ କହିବା ବେଳେ 'କୁଶଅପା'ଙ୍କ ଆଖି ଲୁହରେ ଜକେଇ ଯାଇଥିଲା । ଅବନୀଙ୍କ ସହ ଆଦରମଣିଙ୍କ ବିବାହର ସ୍ମୃତିଚାରଣ କରି 'କୁଶଅପା' କହି ଚାଲିଥିଲେ - ସେ ଦୁହେଁ ଗୋଟିଏ ରଙ୍ଗମଞ୍ଚରେ ନାଟକ କରୁଥିଲେ । କଟକର ଝିଅ, ଜାତିରେ କରଣ, ଆମେ ଖଣ୍ଡାୟତ । ତା' ବାପା ସେ ସମୟରେ ପୁଲିସ ଇନ୍ସପେକ୍ଟର ଡି.ଏସ୍.ପି. ହୋଇ ଅବସର ନେଇଥିଲେ । ସେମାନେ ଆମ ଘରେ ଝିଅ ଦେବାକୁ ପ୍ରଥମେ ମନା କରୁଥିଲେ । ଆମ ବାପା, ମା' ମଧ୍ୟ ବିବାହ ପାଇଁ ଇଚ୍ଛୁକ ନଥିଲେ । ଥରେ ଝିଅଟି ଆମ ଘରକୁ ଚାଲି

ଆସିଥିଲା । ତା'ପରେ ଦୁଇପକ୍ଷ ରାଜି ହୋଇ ବାହାଘର କରିଥିଲେ ।

ଜୀବନରେ ଆତ୍ମପ୍ରଚାର, ଆତ୍ମ ବିଜ୍ଞାପନ ଠାରୁ ଦୂରେଇ ରହି ନୀରବ ସାଧକର ଭୂମିକାକୁ ଶ୍ରେୟ ମଣୁଥିବା ଅବନୀ ବହୁ ବାଧବାଧକତାରେ ନିଜର ପିଲାଦିନର ସ୍ମୃତିକୁ ସାଉଁଟିଥିଲେ ତାଙ୍କର ୭୭ ତମ ଜନ୍ମ ତିଥିର ଅବ୍ୟବହିତ ପୂର୍ବରୁ ଏକ ଅଭିନନ୍ଦନିକା ଗ୍ରନ୍ଥରେ । ତାହା ଯେତିକି କୌତୁହଳପ୍ରଦ, ସେତିକି ରୋମାଞ୍ଚକର । ପୁଣି ସମସାମୟିକ ସାମାଜିକ ଜୀବନର ଏକ ଅମୂଲ୍ୟ ଦସ୍ତାବିଜ୍ / ଶୁଆର ମୂଳ ଶୁଆ ମୁହଁରେ ଭଳି ଅବନୀ ବରାଳଙ୍କ ବାଲ୍ୟ ଜୀବନର ତିକ୍ତ ମଧୁର ସ୍ମୃତି ବିଜଡ଼ିତ ଅନୁଭୂତିକୁ ତାଙ୍କ ଟିପାଖାତାରୁ ଉଦ୍ଧାର କରିବା ଅଧିକ ପ୍ରାସଙ୍ଗିକ ମନେକରୁଛି । ତାଙ୍କ ନିଜ ଭାଷାରେ .....

"ଆଉ ଅଳ୍ପଦିନ ପରେ ସତସ୍ତରୀ ବର୍ଷ ପୁରିଯିବ । ଜୁନ୍ ମାସକୁ ଅଠସ୍ତରୀରେ ପଡ଼ିବ । ଜୀବନର ଏ ଦୀର୍ଘ ପଥ ଚାଲିଆସିଲା ପରେ ମନ ହେଉଛି ତଉଲି ଦେଖିବା ପାଇଁ, ଦୁନିଆକୁ, ସମାଜକୁ, ଦେଲି କେତେ, ପାଇଲି କେତେ ?

ସଭା-ସମିତିରେ, ଉତ୍ସବ-ସମାରୋହରେ ଯେତେବେଳେ ମୋର ସୁଦୀର୍ଘ, ନିରାମୟ ଜୀବନ କାମନା କରନ୍ତି, ଶ୍ରଦ୍ଧା କରି କେହି କେହି ଶତାୟୁ ହୁଅନ୍ତୁ ବୋଲି କହିଦିଅନ୍ତି, ମୋର ମନେହୁଏ, ଆଉ ଅଧିକ ନେବା, ଆଉରି ଆଗକୁ ଆଗକୁ ଯିବା କ'ଣ ଦରକାର ? ସେତିକିବେଳେ ଲାଗେ ରଜଘଷର ଅସୁନ୍ଦର ପୁଣି ମନୋରମ, ଅନେକ ସ୍ମୃତି ସାଇତି ରଖିଛି । ଅନେକ... ଅନେକ ପାଇଛି । ପାଇବା ଠାରୁ ଦେବାର ଓଜନ କମ୍ । ପାଇଛି ବେଶୀ - ଦେଇଛି ଊଣା ।

ମୁଁ ଚାହେଁ ବା ନଚାହେଁ, ପୁରୁଣା ଚିତ୍ରରୁ ରଙ୍ଗ ଲିଭିଗଲା ପରି ଅନେକ କଥା ଲିଭି ଲିଭି ଯାଉଛି - ପୁଣି ଆଶ୍ଚର୍ଯ୍ୟଜନକ ଭାବରେ ବହୁତ ଛୋଟ ଛୋଟ କଥା ଯାହାର ଆପେକ୍ଷିକ ମୂଲ୍ୟ ହୁଏତ କିଛି ନାହିଁ, ସେସବୁ ମନରେ ଲାଖିଯାଉଛି । ଭୁଲିହେଉ ନାହିଁ ।

ଯେମିତି ଛୋଟ କଥାଟିଏ ହେଲା, ବାପା, ବୋଉ, ବଡ଼ଭାଇ, ଭଉଣୀମାନେ କହନ୍ତି - ତାଙ୍କରି ଠାରୁ ଜାଣିଛି, ଶୁଣିଛି ଯେ, ମୁଁ କେନ୍ଦ୍ରାପଡ଼ାରେ ଜନ୍ମ ହୋଇଥିଲି - କାରଣ ବାପା ମୋ ଜନ୍ମ ବେଳକୁ ସେଠାରେ ପୋଷ୍ଟମାଷ୍ଟର ଥିଲେ । ବାପା ବୋଧହୁଏ, ମୋତେ ଦୁଇ ବା ଅଢ଼େଇ/ ତିନିବର୍ଷ ହେବା ଯାଏ ସେଠାରେ ଥିଲେ । ସ୍ୱାଭାବିକ ଭାବରେ ସେତେବେଳର କୌଣସି କଥା ମୋର ମନେ ନରହିବା କଥା । ମୋ ମନର କୋଉ କ'ଣରେ ଚିତ୍ରଟିଏ ଚିପି ହୋଇ ରହିଛି, ଘରଟା ଗୋଟାଏ ଉଚ୍ଚଜାଗାରେ ଥିଲା । ଥରେ ଗୋଟାଏ ଗାଈ ଯାହାକୁ ବୋଉ ବା ଆଉ କେହି ଦୁହିଁଦିଏ, ତା' ପାଖକୁ ଚାଲିଯିବାରୁ

ସିଏ ମୋତେ ଉଠାଇ ଫୋପାଡ଼ି ଦେଲା - ସେଠି ଗୋଟାଏ ସାଇକେଲ୍ ଚେନ୍ ବୁଲାଉ ବୁଲାଉ ଚେନରେ ମୋ ଆଙ୍ଗୁଠିଟା ପଶି କଟିଯାଇଥିଲା ! ଇତ୍ୟାଦି । କଥାଗୁଡ଼ାକ ଝାପ୍‌ସା ମନରେ ଅଛି ।

ଦୀର୍ଘକାଳ ପରେ ଅକସ୍ମାତ୍ କେନ୍ଦ୍ରାପଡ଼ାକୁ ଯାଇଥିବାବେଳେ, ସେ ପୁରୁଣା ପୋଷ୍ଟଅଫିସ ଘର ଦେଖି ନିଜେ ହସି ହସି ବେଦମ । ଯାହା ଛୋଟ ପିଲାର ମାନସିକତାରେ/ ଆଖିରେ ଅତି ଉଚ୍ଚସ୍ଥାନ ପରି ପ୍ରତେ ହେଉଥିଲା ତାହା ଅତିବେଶୀରେ ଫୁଟେ/ ଦୁଇଫୁଟ ଉଚ୍ଚ ହେବ ! ମୋ ମନରେ ଆଙ୍କି ହୋଇ ସେଇ ଉଚ୍ଚତାଟା ଗୋଟାଏ ପ୍ରକାଣ୍ଡ ଉଚ୍ଚସ୍ଥାନ ଭଳି । ସମସ୍ତଙ୍କର ଏ ଅବସ୍ଥା ହୋଇଥିବ ନିଶ୍ଚେ । କେନ୍ଦ୍ରାପଡ଼ାର ଆଉ କିଛି ମୋର ମନେ ନାହିଁ - ବାକୀ ଯାହା ଜାଣିଛି, ତାହା ପରବର୍ତ୍ତୀ ଜୀବନରେ ଆଖିଦେଖା, ଅଙ୍ଗେ ନିଭାଇଥିବା କେନ୍ଦ୍ରାପଡ଼ାର ରୂପ ।

ଏବେ ଏଇ ଦୁଇହଜାର ବାର ମସିହାର ଫେବୃଆରୀ ୨୨ ତାରିଖ ଦିନ, କେନ୍ଦ୍ରାପଡ଼ା ଅଟୋନୋମସ୍ କଲେଜର ମୋର ସହକର୍ମୀ ଅଧ୍ୟାପକ, ଅଧକ୍ଷ ତଥା ଗଭର୍ଣ୍ଣିଂବଡ଼ିର ସଭାପତି, ଜିଲ୍ଲାପାଳ ମହୋଦୟ, ଯିଏ ମୋର ଜଣେ ପ୍ରାକ୍ତନ ଛାତ୍ର, ମୋତେ ଚଳିତ ବର୍ଷ ପାଇଁ 'ଦୀନବନ୍ଧୁ ସାହୁ ସ୍ମୃତି ସମ୍ମାନ' ଅର୍ପଣ କଲାବେଳେ ମୋର ଜନ୍ମସ୍ଥାନ ଏଇ କେନ୍ଦ୍ରାପଡ଼ା ବୋଲି ମୋର ପରିଚୟ ଦେଲେ । ଭାରୀ ଖୁସି ଲାଗିଲା କଥାଟା ଶୁଣି-ପୁଣି ମନଟା ଅବସାଦରେ ପୂର୍ଣ୍ଣ ହୋଇଗଲା - ଖୋର୍ଦ୍ଧା କଲେଜ, ଯାହାକୁ ବଢ଼େଇଲି, କୁଢ଼େଇଲି ଯାହାର ନାନା ସୁଖଦୁଃଖ, ଘାତ ପ୍ରତିଘାତରେ ଭାଗୀଦାର ହେଲି - ଯେଉଁଠି ମୋର ବାସସ୍ଥାନଟିଏ ରଚିଲି, ପିଲାଏ ସେଇ ଠିକଣାକୁ ଜନ୍ମଭୂମି ବୋଲି ଲେଖିଲେ ତାଙ୍କ କାଗଜପତ୍ରରେ, ଯାହାର ପ୍ରତ୍ୟେକଟି ପଥରଖଣ୍ଡ ମୋ ସହିତ କଥାବାର୍ତ୍ତା କରନ୍ତି, ସିଏ ମୋତେ ପର କରିଦେଲା ? କେନ୍ଦ୍ରାପଡ଼ାର ସାଥୀମାନେ ମୋତେ ଆପଣାର କଲେ ? ଇଏ ମୋର ଅଭିମାନ କି ଅନୁଶୋଚନା ନୁହେଁ । କେବଳ ଘଟଣାର ବର୍ଣ୍ଣନା ମାତ୍ର । ପ୍ରାଣନାଥଙ୍କୁ ନପାଏ, ଦୀନବନ୍ଧୁଙ୍କୁ ତ ପାଇଲି ! ଏ ଆନନ୍ଦ ପ୍ରାପ୍ତିର ଆନନ୍ଦ ନୁହେଁ ! ସ୍ୱୀକୃତିର ଆନନ୍ଦ !

ସରକାରୀ ଖାତାପତ୍ରରେ, ସ୍କୁଲ ରେଜିଷ୍ଟରରେ ମୋ ଜନ୍ମତାରିଖ ଦରଜ ହୋଇଛି ମେ' ମାସ ବାର ତାରିଖ ୧୯୩୪ ମସିହା । ଚାକିରୀ ଖାତାରେ ସ୍ୱାଭାବିକ ଭାବରେ ସେଇ ତାରିଖ ଥିବାରୁ, ବୃତ୍ତିରୁ ବା ମୋର ଅଧ୍ୟାପନା ଚାକିରୀରୁ ଅଧକ୍ଷଭାବରେ ଅବସର ନେଲି ୧୯୯୪ ମସିହା ମେ' ୩୧ ତାରିଖ ଦିନ - ପ୍ରାଣନାଥ ମହାବିଦ୍ୟାଳୟର ଅଧକ୍ଷ ପଦରୁ । ସୁଦୀର୍ଘ ଲୋଭନୀୟ ଯୌବନର ୩୫ଟି ନିଦାଘ ବସନ୍ତ ବିତେଇ ଦେଲି ୧୯୫୯

ମସିହା ଜୁଲାଇ ୧୯ ତାରିଖ ଠାରୁ, ୧୯୯୪ ମସିହା ମେ' ୩୧ ତାରିଖ ପର୍ଯ୍ୟନ୍ତ । ପ୍ରଥମେ ଯେତେବେଳେ ଯୋଗଦେଲି, ସେ ଅନୁଷ୍ଠାନର ନାମ ଥିଲା 'ଖୋର୍ଦ୍ଧା କଲେଜ' - ପରବର୍ତ୍ତୀ କାଳରେ, ତାହାର ପ୍ରାଣଦାତା ଖୋର୍ଦ୍ଧାର ଜନନାୟକ ପ୍ରାଣନାଥ ପଟ୍ଟନାୟକଙ୍କ ଦେହାନ୍ତ ପରେ ନାନା ପ୍ରତିବନ୍ଧକ/ ବାଧା ସତ୍ତ୍ୱେ ମୁଁ ହିଁ ସମସ୍ତଙ୍କୁ ଭେଳେଇ ସଭାରେ ପ୍ରସ୍ତାବକରି ଅନୁଷ୍ଠାନକୁ ତା'ର ସ୍ରଷ୍ଟାଙ୍କ ନାମରେ ନାମିତ କରାଇଲି । ଖୋର୍ଦ୍ଧାର ଜନଗଣ ଅକୁଣ୍ଠଚିତ୍ତରେ ଏହାକୁ ସମର୍ଥନ କରୁଥିଲେ । ମାତ୍ର କେଇଜଣ ପ୍ରାଣନାଥଙ୍କ ଆଦର୍ଶ ବିରୋଧୀ ଲୋକ, ଉପର ଦେଖାଣିଆ ଭାବରେ ତାଙ୍କର ଭକ୍ତ ବୋଲି ନିଜକୁ ବୋଲାଉଥିବା ଭଣ୍ଡ, କହିବୁଲୁଥିଲେ ଯେ ମହାନ୍ ପ୍ରାଣନାଥ, ଅନୁଷ୍ଠାନଟିର ନାମ ତାଙ୍କ ନାମରେ ନାମିତ ହେଉ ବୋଲି ବାରଣ କରୁଥିଲେ - ସତେ ଯେମିତି ପ୍ରାଣନାଥ, ଆଜିକାଲିର ବିଧାୟକ/ ସାଂସଦମାନଙ୍କ ପରି ମୃତ୍ୟୁ ପୂର୍ବରୁ ତାଙ୍କ ନାମରେ କଲେଜକୁ ନାମିତ କରାଇବାକୁ ଦଲିଲ୍ ଲେଖିଯାଇଥାନ୍ତେ !

ସେ ସବୁ ପଛକଥା ।

ବାପାଙ୍କର ପୁରୁଣା ଡାଇରୀପତ୍ର ଖେଳାଇ ଖେଳାଇ ଦେଖିବା ଓ ଲୁଚେଇ ଲୁଚେଇ ପଢ଼ିବା ମୋର ପିଲାଦିନର ମାଡ଼ଖିଆ ଅଭ୍ୟାସ । ସେମିତି ବାପାଙ୍କର ଡାଇରୀଟିରେ ଦେଖିଲି, ଜୁନ୍ ୩ ତାରିଖ ୧୯୩୫ ମସିହାରେ ବାପା କେନ୍ଦ୍ରାପଡ଼ାରେ ପୋଷ୍ଟମାଷ୍ଟର ଥିଲାବେଳେ, ତାଙ୍କ ଡାଇରୀ କହୁଛି, "A black boy is born to my wife. A very healthy baby with a lot of hair"-

ବାପା କାହିଁକି କଳା ପିଲାଟାଏ ଜନ୍ମ ହୋଇଛି ବୋଲି ଲେଖିଥିଲେ, ଭେଦ ପାଇଲା ପରେ ସେକଥା ବୁଝିପାରିଛି । ବାପା ତୋଫା ଗୋରା - ସାଧାରଣ ଭାବରେ ଡେଙ୍ଗା ବୋଲି କହିହେବ । ମୁଁ କିନ୍ତୁ କାଳିଆ । ପିଲାଦିନେ ମୋ ଭାଇଭଉଣୀ, ଏପରିକି ବୋଉ, ଆଈ ସମସ୍ତେ ଥଟ୍ଟାରେ ତଥା ସ୍ନେହରେ ମୋତେ ଡାକୁଥିଲେ "କାଳିଆଭୂଆ" ବୋଲି । ବହୁଦିନ ପର୍ଯ୍ୟନ୍ତ ମୋ ମୁଣ୍ଡରେ ପ୍ରଚୁର କୁଞ୍ଚୁକୁଞ୍ଚିଆ, ପିଲାଦିନେ ଭାଲୁଆ-ଭାଲୁଆ ବାଳ ଥିଲା । ଯେଉଁଥିପାଇଁ "କାଳିଆଭୂଆ" ଡାକ ।

ମୃତ୍ୟୁ ପର୍ଯ୍ୟନ୍ତ ବାପାଙ୍କର ମୁଣ୍ଡରେ ବାଳ ପଡ଼ିନଥିଲା - ଅଧିକାଂଶ ଦାନ୍ତ ମଧ୍ୟ ପଡ଼ିନଥିଲା । ଆମ ପିତୃ ପରିବାରରେ/ ବଂଶରେ ସମ୍ଭବତଃ ଚନ୍ଦାଦ୍ୱ ନଥିଲା । ବାପା ଉଚ୍ଚତା ସମ୍ପନ୍ନ ମଣିଷ । ବାପାଙ୍କ ବୋଉ - ମୋ' ପ୍ରଚଣ୍ଡ ପ୍ରତାପୀ ଜେଜେମା ବି ଗୋରୀ ଓ ବେଶ୍ ଉଚ୍ଚତା ସମ୍ପନ୍ନ ମଣିଷ । ମୁଁ କିନ୍ତୁ କାଳିଆ । ବୋଉ ଗେହ୍ଲେଇ କରି କୁହେ

ଶାବନ ବନର ବୋଲି । ଗେଡ଼ା - ଏବେ ପେଟ ବଢ଼ିଯାଇଛି । ମୁଣ୍ଡରେ ଏକ-ତୃତୀୟାଂଶ ବାଳ କଦବା କେମିତି ଅଛି । ବାକୀଅଂଶ ଚନ୍ଦା । ପାଠପଢ଼ିଲା ବେଳର - କଲେଜବେଳର ମୋ' ସାଙ୍ଗରେ ପଢୁଥିବା ପୁଅ-ଝିଅମାନେ ଏବେ ମୋର ଏ ରୂପ ଦେଖିଦେଲେ ଆଶ୍ଚର୍ଯ୍ୟ ହୁଅନ୍ତି ! କୁଆଡ଼େ ଗଲା ପାନିଆ ଭାଙ୍ଗିଦେଉଥିବା ସେ ଗହଳ କେଶରାଶି !

ମୋ ପିଲାଦିନେ ଶିଶୁ ସୁଲଭ ସ୍ୱାଭାବିକ ଚପଳତା/ କୌତୁହଳ ବଶତଃ ବୋଉକୁ ଅନେକଥର ପଚାରିବାର ମନେ ଅଛି ମୋ, ବାପା କାହିଁକି ଗୋରା, ଡେଙ୍ଗା, ମୁଁ କାହିଁକି ଏମିତି ଗେଡ଼ା ଓ କାଳିଆ ? ବୋଉ ମୋତେ କୋଳକୁ ଟାଣିଦେଇ ମୋ ଗୋଡହାତ ଆଉଁସି ଦେଇ କୁହେ - ତୁ ପୁରାପୁରି ମୋ ବାପା ଭାଗବତ ଜେନା - (ମୋ ଅଜାଙ୍କ ନାଁ ଭାଗବତ ଜେନା - ଗାଁ ଭଇରପୁର - କେନ୍ଦ୍ରାପଡ଼ା ରାସ୍ତାରେ) ଅଜାଙ୍କ କଥା, ତାଙ୍କ ରୂପ ମନେପଡ଼େ - ଯଦିଓ ତାଙ୍କ ସୁସ୍ପଷ୍ଟ ଚେହେରା ଧୀରେ ଧୀରେ ମନରେ ଅସ୍ପଷ୍ଟ ହୋଇଗଲାଣି । ମାମୁଁ ଘର ଗାଁକୁ ଅନେକ ଦିନୁଁ ଯାଇନାହିଁ । ଏବେ ଅକସ୍ମାତ ପହଞ୍ଚିଗଲେ ମୋତେ ଚିହ୍ନିପାରିବେ କି ନାହିଁ ଜାଣିନାହିଁ ବୋଲି ସନ୍ଦେହ କରି, ଯିବାକୁ ବାରମ୍ବାର ଗଲାଆସିଲା ବାଟରେ ମନେପଡ଼ିଲେ ମଧ୍ୟ ସନ୍ଦେହ କରି ଯାଇନାହିଁ । ଅଜାଙ୍କର ଝାପ୍‌ସା ଯେଉଁ ଚେହେରା ମୋର ମନେ ଅଛି, (ଯଦିଓ ମୋ ପିଲାଦିନ କଟିଛି ତାଙ୍କରି ସାଙ୍ଗରେ ଓ ତାଙ୍କ ସହିତ ସମ୍ପର୍କ ମୋର ଅତି ନିବିଡ଼) ତାହା ମୋ ଚେହେରା ସହିତ ଖାପ ଖାଉଛି । କେବଳ ମନେପଡୁଛି ଯେ ତାଙ୍କର ହଳେ ମୋଟା ନିଶ ଥିଲା । ମୁଁ ନିଶକୁ କାଟିପକାଇ ଛୋଟ କରିଦେଇଛି । ଅଜାଙ୍କ କଥା ପଛେ କହିବି ।

ସରକାରୀ କାଗଜପତ୍ରରେ, ସ୍କୁଲ କଲେଜ ରେକର୍ଡ଼ରେ, ପାସ୍‌ପୋର୍ଟରେ, ମୋତେ ମେ ୧୨, ୨୦୧୨ ତାରିଖ ସୁଦ୍ଧା ୭୯ ଚାଲିବ । ଜାତକର, ବାପାଙ୍କ ଡାଇରୀ ଅନୁସାରେ ଜୁନ ୦୩ ତାରିଖ ୧୯୧୨ ମସିହା ଦିନ ମୋତେ ୭୭ ପୁରି ୭୮ ଚାଲିବ । ଏମିତି ବୟସ ନକମାଇ ବୟସ ବଢ଼ାଇ ମୋ ନାଁ ଲେଖାଇଥିଲେ, ବାପା/ ଅଜା ହରିକା, ସେକଥା ସେମାନେ ବଞ୍ଚିଥିଲେ କହିପାରନ୍ତେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସରି ସରି ଆସିଲାବେଳକୁ, ସାତଚକଟା ପୋଲୁହଘଣ୍ଟା ହେଲାପରି ପ୍ରାଥମିକ ବିଦ୍ୟାଳୟ ବାଲେଶ୍ୱର, ବାଲେଶ୍ୱର ମିଶନ ଉ.ପ୍ରା. ବାଳିକା ବିଦ୍ୟାଳୟ, ଅନୁଗୋଳ ଅମଲାପଡ଼ା ପ୍ରାଥମିକ ବିଦ୍ୟାଳୟ, ମୋ ଗାଁ ଅଲାଣ୍ଡୋ ଉ.ପ୍ରା. ସ୍କୁଲରେ, ଅନନ୍ତ ଦାଦି (ଅନନ୍ତ ସ୍ୱାଇଁ)ଙ୍କ ପାଖରେ ଦାମମାଷ୍ଟ୍ରଙ୍କ ପାଖରେ ବିଭିନ୍ନ ସମୟରେ ଘରୋଇ ପାଠପଢ଼ା କରି, କଟକରେ ପ୍ୟାରୀମୋହନ ଏକାଡ଼େମୀରେ ସିଧାସଳଖ ୪ର୍ଥ ଶ୍ରେଣୀରେ ନାଁ

ଲେଖାଇବାକୁ ବାପା/ ଅଜା ନେଇଯାଇ ନାଁ ଲେଖାଇଲାବେଳେ ନାମ ଲେଖାଇବା ପାଇଁ ଆବଶ୍ୟକୀୟ ବୟସ ନିର୍ଦ୍ଧାରଣ ପାଇଁ ହୁଏତ ଏପରି ବର୍ଷେ ବୟସ ବଢ଼ାଇ ଦେଇଥିଲେ । ହୁଏତ ପ୍ୟାରିମୋହନ ଏକାଡ଼େମୀରେ ୪ର୍ଥ ଶ୍ରେଣୀରେ ନାଁ ଲେଖାଇଲା ବେଳକୁ ୧୫ ବର୍ଷରେ ମାଟ୍ରିକ ସୀମାରେ ପହଞ୍ଚିବା ପାଇଁ କୌଣସି ବାଧା ଥିଲା ।

ସେତେବେଳର ପ୍ରଧାନ ଶିକ୍ଷକ ସ୍ୱର୍ଗତଃ ବସନ୍ତ କୁମାର ଦାସ, ତାଙ୍କ ଅଫିସ ପ୍ରକୋଷ୍ଠରେ ମୋତେ ପରୀକ୍ଷା କଲାବେଳେ, ଆଉ ଟିକକରେ ହୁଏତ ଭୟରେ ମୁଁ ପରିଶ୍ରା କରି ପକାଇ ଥାଆନ୍ତି । ସିଏ ମୋତେ ପରୀକ୍ଷା କରିବା ପାଇଁ ପ୍ରଶ୍ନକଲେ, 'ପୃଥିବୀ'ର କେତୋଟି ପ୍ରତିଶବ୍ଦ କହିଲ, ସମ୍ଭବତଃ ମୋ ନାଁ 'ଅବନୀ' ବୋଲି କହିଲା ପରେ ତା' ଅର୍ଥ ଜାଣେ କି ନାହିଁ ଏକଥା ପରୀକ୍ଷା କରିବାକୁ ତାଙ୍କ ପ୍ରଶ୍ନ । ମୁଁ ତତ୍‌କ୍ଷଣାତ୍ ପୁରାଣମାନଙ୍କରୁ ଜାଣିଥିବା, 'ବସୁମାତା', 'ବସୁନ୍ଧରା', 'ଧରଣୀ', 'ଧରିତ୍ରୀ', 'ମେଦିନୀ' ଆଦି ଶବ୍ଦ କହିଗଲି । ପ୍ରଧାନଶିକ୍ଷକ ବିସ୍ମିତ ହୋଇ କହିଲେ, ଏତେ ପ୍ରତିଶବ୍ଦ ଜାଣିଛ ? ଆଚ୍ଛା ଆଉ ଗୋଟିଏ କହିଲ- ମୁଁ 'ବସୁମତୀ' ବୋଲି କହିଲି ମନେ ପକାଇ ପକାଇ । ସିଏ ପୁନଶ୍ଚ କହିଲେ, 'ଆରେ ବାଃ - ଆଚ୍ଛା ଆଉ ଗୋଟିଏ' - ମୋର କାନ୍ଦି ପକାଇବା ଅବସ୍ଥା । ବାପା ଓ ଅଜାଙ୍କୁ ଅନାଇଲି । ହେଡ୍‌ମାଷ୍ଟର ସାର୍ ମୁରୁକେଇ ହସୁଥାନ୍ତି - ମୋ ଅବସ୍ଥା ଦେଖି କହିଲେ, "ଆଚ୍ଛା, ତମ ନାଁଟି ଦୁଇଥର କହିଲ" ବିଜୁଳି ସକ୍ ଖାଇଲା ଭଳି ମନେ ପଡ଼ିଗଲା । ମୋ ନାଁ 'ଅବନୀ' ଆଉ ସାର୍ ସେହି ପ୍ରତିଶବ୍ଦଟି ଶୁଣିବା ପାଇଁ ବାରମ୍ବାର ପଚାରୁଛନ୍ତି ।

ମୋତେ ଯଦି ସାର୍ 'ଗଣିତ /ଅଙ୍କ' ପଚାରିଥାଆନ୍ତେ, ମୋତେ ଓ ବାପା/ ଅଜାଙ୍କୁ ହତାଶ ହୋଇ ଫେରିବାକୁ ପଡ଼ିଥାନ୍ତା ବିଫଳ ହୋଇ । ସେତିକିରେ ଖୁସିହୋଇ ସାର୍ ମୋ ନାଁ ୪ର୍ଥ ଶ୍ରେଣୀରେ ଲେଖାଇଦେଲେ । ତାଙ୍କ ପ୍ରକୋଷ୍ଠର ଠିକ୍ ପଛପଟେ ୪ର୍ଥ ଶ୍ରେଣୀ ଥିଲା । ଏବେ ସେପରି ଅଛି କି ନାହିଁ ଜଣାନାହିଁ । ସାର୍ ନିଜେ ମୋତେ ନେଇ ପିଲାମାନଙ୍କ ଆଗରେ ଏବଂ ପଢ଼ାଉଥିବା ସାରଙ୍କ ଆଗରେ ଠିଆକରି କହିଲେ, "ଇଏ ଅବନୀ - ତମମାନଙ୍କର ନୂଆ କ୍ଲାସମେଟ୍ - ଆଜି ଯୋଗଦେଲା" - ମୋତେ ଗୋଟିଏ ସିଟ୍‌ରେ ବସାଇଦେଇ ସେ ଚାଲିଗଲେ । ମୁଁ ଚତୁର୍ଥଶ୍ରେଣୀରେ ପ୍ୟାରୀମୋହନ ଏକାଡ଼େମୀର ଛାତ୍ର ହୋଇଗଲି ।

ମୋ ସାଙ୍ଗପିଲାମାନଙ୍କ ସହିତ ପରିଚିତ ହେବାକୁ ଆଉ ବନ୍ଧୁ/ ସାଙ୍ଗ ହେବାକୁ ମୋତେ ଦେଢ଼ଦିନ, ଦୁଇଦିନ ଲାଗିଲା । ତା'ପରେ ସାଙ୍ଗ ହୋଇଗଲୁ । ଆମ ଶ୍ରେଣୀରେ ପୁଅଝିଅ ମିଶାମିଶି ପଢୁଥିଲେ । ସମସ୍ତଙ୍କ ନାଁ ମନେନାହିଁ ହେଲେ କେଇଜଣଙ୍କର ନାଁ

ମନେ ରହିଛି । ସେମାନେ କିଏ କ'ଣ କରୁଥିବେ ଜାଣେନାହିଁ । ପ୍ରଥମ ଧାଡ଼ିରେ ଯେଉଁମାନେ ବସୁଥିଲେ, ସେମାନଙ୍କ ନାଁ ଅ ବା ଇଂରାଜୀ 'A' ଅକ୍ଷରରୁ ଆରମ୍ଭ । ଅଜୟ (ପଟ୍ଟନାୟକ) ଅମୀୟ, ଅମର, ଆଉ ଝିଅ ଦୁଇଜଣ ବୋଧେ - ମୀରା ଏବଂ ରାଧାରାଣୀ । ସେତେବେଳର ଆଉଜଣେ ସାଙ୍ଗ କୈଳାଶର କଥା ମନେ ଅଛି - ପରେ ତା'ସହିତ ଦେଖାହୋଇଛି । ଆଉ ଜଣେ ଶ୍ରେଣୀବନ୍ଧୁ ବସନ୍ତ - ପରବର୍ତ୍ତୀ ଦିନରେ ଚଳଚ୍ଚିତ୍ର ନିର୍ମାତା - ସମ୍ପ୍ରତି ଦିବଂଗତ । କୌଣସି ସଭାରେ ଅଜୟ ସାଙ୍ଗେ ଦେଖା ହୋଇଥିଲା - ଆଶ୍ଚର୍ଯ୍ୟର କଥା ଆମେ ଉଭୟେ ଉଭୟଙ୍କୁ ଚିହ୍ନିପାରିଲୁ । ସାର୍‌ମାନଙ୍କ ଭିତରୁ ଭୋଳିପଣ୍ଡିତ ସାର - ଯିଏ ସାହିତ୍ୟ ପଢ଼ାଉଥିଲେ, ଡ୍ରଇଙ୍ଗ ସାର୍ ମଙ୍ଗରାଜ ବାବୁ ଅବଶ୍ୟ ସ୍ମରଣ ଅଛନ୍ତି । 'ଏକାଡ଼େମିକା ଡ୍ରିଲ୍‌ଟିଚର ମୂଷାମିଆଁ' ମୂଳରୁ ତ କହିଛି ହେଡ୍‌ମାଷ୍ଟର ବସନ୍ତ କୁମାର ଦାସ ।

ଅନେକେ ବିସ୍ମିତ ହେଉଥିବେ ଯେ ୭/୮ ବର୍ଷ ବୟସର ପିଲାଟିଏ । 'ପୃଥିବୀର' ଏତେ ପ୍ରତିଶବ୍ଦ ଜାଣିବା କ'ଣ ସମ୍ଭବ ? ତା'ର ଟ୍ରେଡ୍ ସିକ୍ରେଟ ମଧ୍ୟ ସମସ୍ତେ ଜାଣିବା ଦରକାର । ବାପା 'ଜଟଣୀ'ରେ ପୋଷ୍ଟମାଷ୍ଟର ଥିଲେ - ଏବେକାର ପୋଷ୍ଟଅଫିସ ନୁହେଁ - ପ୍ରଥମେ ରେଳ ଲାଇନ ପାଖରେ - ପରେ ପରେ ଜଟଣୀ ପ୍ରଧାନରାସ୍ତା କଡ଼ରେ ହୁଏତ ଏକ ଭଡ଼ା ଘରେ । ଏବେ ବି ସେ ସ୍ଥାନ ଚିହ୍ନିପାରୁଛି । ସେ ଘର ପାଖରେ ଜଣେ ଆଙ୍ଗ୍‌ଲୋଇଣ୍ଡିଆନ ରହୁଥିଲେ - ତାଙ୍କୁ ଆମେ କହୁଥିଲୁ 'କଣା ସାଇବ' ବୋଲି ତାଙ୍କର ଦୁଇଟି ଝିଅ ଜଣକ ନାଁ 'ଓପେଲ' ସାନଟିର ନାଁ 'କୁକ୍‌କୁ' । ସେମାନେ ଇଂରାଜୀରେ କଥା କୁହନ୍ତି ସିନା - କିନ୍ତୁ ଇଂରାଜୀ ବ୍ୟାକରଣ ଆଦୌ ଜାଣନ୍ତି ନାହିଁ । ପୋଷ୍ଟାଲ୍ କଲୋନିରେ ସବୁବାବୁଙ୍କର ପିଲାମାନଙ୍କୁ ଦାମସାର୍ ଗୋଟିଏ କ୍ୱାଟରରେ ଏକାଠି ଟିଉସନ୍ ପଢ଼ାନ୍ତି । ଆମର ବଡ଼ ବ୍ୟାଚ୍‌ରେ ପଢୁଥିଲେ ମୋ ବଡ଼ଭାଇ, ମୋର ଜଣେ ମାମୁଁ ଆଉଜଣେ ଲେଖାଯୋଖା ମାମୁଁ, ସୁକାନ୍ତ ମାମୁଁ ଏମାନେ ଏକା ବ୍ୟାଚର ଏବଂ ଦାମସାର୍ ଏମାନଙ୍କ ପ୍ରତି ପାଠ ପଢ଼ାଇବାରେ ଅତ୍ୟନ୍ତ କଠୋର । ଭୁଲ୍ କହିଲେ ତ୍ରୁଟି ଧରି ବିଧା ଚଟକଣି ବସାଉଥିଲେ - ନିଷ୍ଠୁର ମାଡ଼ ଦେଉଥିଲେ । ବିରିମାଡ଼ ଦେଖି କୋଳଥ ଚେପା ନ୍ୟାୟରେ ମୁଁ ଏବଂ ମୋ ସାଙ୍ଗର ପୋଷ୍ଟାଲ କ୍ଲର୍କ ହମିଦ୍ ରେଗଙ୍କ ଝିଅ ହାଲ୍ମା ଓ ହସିନା ଦୁହେଁ ମଧ୍ୟ କାତର ହୋଇ କାକୁସ୍ଥ ହୋଇ ବସିଥାଉ । ସନ୍ଧ୍ୟାବେଳେ ସାନ ପାଶ୍ ନାଁରେ ବାହାରକୁ ଉଠିଯାଇ ଟିକେ ଆଖି ବନ୍ଦକରି ପରିସ୍ରା କରିବା ଜାଗାରେ ବି ମୁହୂର୍ତ୍ତେ ଘୁମାଇ ପଡୁ ।

ଦାମ ସାର୍‌ଙ୍କୁ ଭାରି ଡର - ଦାମ ସାର୍ ଦିନେ ବଡ଼ବ୍ୟାଚ ପିଲାଙ୍କୁ ଇଂରାଜୀ ଗ୍ରାମାର କିଛି ପ୍ରଶ୍ନ ଉତ୍ତର ଲେଖି ଆଣିବାକୁ ଦେଇଥିଲେ । ସେମାନେ ଇଂରାଜୀ ବିଶାରଦ

'ଓପେଲ୍' ଅପା ଓ 'କୁକୁ'ଙ୍କୁ ପଚରି କ'ଣ କ'ଣ ସବୁ ଟିପି ଆଣିଲେ । ତା'ପରେ ସାର୍ ଆସି ଅନ୍ଧାଧୁନିଆ ଗୋଗଛ ବାଡ଼େଇଗଲେ ସମସ୍ତଙ୍କୁ - ସେଇଦିନରୁ ଆଉ ଓପେଲା/କୁକୁଙ୍କ ଠାରୁ ବା କୌଣସି ଆଂଗ୍ଲୋଇଣ୍ଡିଆନ୍ ଝିଅବୋହୂଙ୍କ ଠାରୁ ଇଂରାଜୀ ବ୍ୟାକରଣ ଶିଖିନଥିବେ ! ମନେପଡୁଛି, ଭାଇ ଠାରୁ ଅଶ୍ୱିନୀ ମାମୁଁ ଭଲ ପଢୁଥିଲେ - ତାଙ୍କ ହସ୍ତାକ୍ଷର ମଧ୍ୟ ଅତି ସୁନ୍ଦର - ଭାଇକୁ ବେଳେବେଳେ ଅଶ୍ୱିନୀ ମାମୁଁ ବତାଇ ଦିଅନ୍ତି । ଦାମସାର୍ ମାଡ଼ମାରିଲା ବେଳେ ଦିନେ ଛିଗୁଲେଇ କହିଲେ ଭାଇଙ୍କୁ - "ମାମୁଁ କାରଣ କର ମାମୁଁ କହିବେ - ଭଣଜା - ନାହିଁରେ ଡର !" ବାପା ଜଟଣୀରୁ ବଦଳି ହୋଇ ଆସିଲେ ବାଲେଶ୍ୱର । ଆମେ ରେଳରେ ଆସିଲା ବେଳେ ପାଛୋଟି ଦେବାକୁ, ଅନ୍ୟାନ୍ୟ ବହୁ ଲୋକଙ୍କ ସହିତ ଦାମ ମାଷ୍ଟ୍ରେ ବି ଆସିଥିଲେ - ମୋତେ ପ୍ଲାଟ୍‌ଫର୍ମରୁ ହାତ ବଢ଼ାଇ ଗେଲ କରିଦେଇ କହିଲେ ବୋଉକୁ, "ମା' ୟା ପଢ଼ାପଢ଼ି ଦେଖୁଥିବେ - ଇଏ ଭଲ ପଢ଼ିବ । ମୋର ମନେ ପଡ଼ିଯାଉଥିଲା ତାଙ୍କ ବିଧା-ଚପୁଡ଼ା କଥା । ମନେ ମନେ ଭାବୁଥିଲି ଦାମ ସାର୍‌ଙ୍କ ଠାରୁ ମୁକ୍ତି ମିଳିଗଲା ତ !"

ମନେ ପଡୁଛି ବଡ଼ ହେଲା ପରେ ବହୁ ସାର୍‌ଙ୍କ ବିଷୟରେ ଲେଖୁ ଲେଖୁ ଦାମସାର୍‌ଙ୍କ ବିଷୟରେ ତାଙ୍କ ଶ୍ରଦ୍ଧା ସମ୍ପର୍କରେ ଲେଖି ତାଙ୍କୁ ପ୍ରଣତି ଜଣାଇଥିଲି ।

ବାଲେଶ୍ୱରରେ ପୋଷ୍ଟ ଅଫିସ ପଛପଟରେ କ୍ୱାର୍ଟରଟିରେ ରହଣୀ, କ୍ୱାର୍ଟର ପଛକୁ ଟ୍ରେନ୍‌ଲାଇନ ଯାଇଛି - ବାଲେଶ୍ୱରର ବୈଶିଷ୍ଟ୍ୟ ହେଉଛି, ଘର ଆଗରେ ନହେଲେ ପଛରେ, ଟୁବଗାଡ଼ିଆ ଟିଏ ନିଶ୍ଚେ ଥିବ । ଆମ କ୍ୱାର୍ଟର ପଛପଟକୁ, ରେଳଲାଇନ୍ ଆଗରୁ ସେମିତି ଏକ ଗାଡ଼ିଆ ଥିଲା । ବର୍ଷାଦିନେ ସେଥିରୁ ସମସ୍ତେ ମିଶି ମାଛ ଧରିଚୁ । ସେଇଠି ପ୍ରଥମେ ଦେଖିଲି, ସିଙ୍ଗ ଥିଲାବାଲା ଗେଣ୍ଡା - ବଡ଼ରୁ ଛୋଟ, ତା'ପରେ ଛୋଟ ଏପରି ପିମ୍ପୁଡ଼ି ଧାଡ଼ି ପରି ସେମାନେ ପାଣିରୁ ବାହାରକୁ ଘର ଅଗଣାକୁ/ ବାରଣ୍ଡାକୁ ପଶି ଆସନ୍ତି - ପ୍ରଥମେ ତ ଆମେ ସମସ୍ତେ ଡରିଯାଇଥିଲୁ - ଏପରିକି ବୋଉ ମଧ୍ୟ । ବାଲେଶ୍ୱରର ଘରକାମ କରୁଥିବା ମଣିଷଟି ଲୁଣ ଆଣି ସେଗୁଡ଼ାକ ମୁହଁରେ ପକାଇ ଦେବାରୁ, ଫେଣ ବାହାରକରି ମରିଗଲେ - କେଇଟି ଗେଣ୍ଡା ଖୋଳ ଭିତରକୁ ନିଜ ଦେହକୁ ପୁରାଇଦେଇ ନିରାପଦରେ ଗଡ଼ିଲେ ।

ବାପା ସମସ୍ତଙ୍କ ସହିତ କଥାବାର୍ତ୍ତା କରି, ମୋତେ ନେଇ ସନ୍ନିକଟବର୍ତ୍ତୀ ପ୍ରାଥମିକ ସ୍କୁଲରେ ତୃତୀୟ ଶ୍ରେଣୀ ପିଲାଙ୍କ ସାଙ୍ଗରେ ବସାଇଲେ - ଶତକଡ଼ା ଅଶୀ କି ନବେ ସ୍କୁଲରେ, ପିଲାମାନେ ଚଟେଇରେ ତଳେ ବସୁଥିଲେ - କେବଳ ସାର୍‌ଙ୍କ ପାଇଁ ଚଉକୀଟିଏ ପଡ଼ିଥାଏ । ମୁଁ ବି ସେମିତି ସମସ୍ତଙ୍କ ସାଙ୍ଗରେ ତଳେ ବସିଲି । ମଜାର କଥା ହେଲା,

କ୍ଲାସରେ ସାର୍ ପାଠ ପଢ଼ାଉଥିଲା ବେଳେ, ମୋତେ ଅଚାନକ ଝାଡ଼ା ମାଡ଼ିଲା ଏବଂ କୁଆଡ଼େ ବାହାରକୁ ନଯାଇପାରି, କ୍ଲାସରେ ପ୍ୟାଣ୍ଟରେ ହିଁ ହଗି ପକେଇଲି । ସେମିତି ଝାଡ଼ା ଗଳି ପଡୁଥିବା ଅବସ୍ଥାରେ ଘରକୁ ଆସିଲି - ଆଉ ତା' ପରଦିନ ଠାରୁ ଲାଜ ସରମରେ ସେ ସ୍କୁଲକୁ ଯାଇନାହିଁ । କାରଣ ପିଲାଏ ସେତେବେଳକୁ 'ହଗୁରା' ବୋଲି ଡାକିବାକୁ ଆରମ୍ଭ କରିଦେଇଥିଲେ ।

ବାଲେଶ୍ୱର ପୋଷ୍ଟ ଅଫିସର ହତା/ ପାଚିରୀକୁ ଲାଗି ବା ପାଚିରୀ ଆରପଟରେ ଠିକ୍ ବାଲେଶ୍ୱର ମିଶନ ବାଳିକା ଉ.ପ୍ରା./ ପ୍ରାଥମିକ ବିଦ୍ୟାଳୟ । ସମ୍ଭବତଃ ମିଶନ ସ୍କୁଲ ହୋଇଥିବାରୁ, ଭଲ କୋଠାଘର, ଶ୍ରେଣୀରେ ବେଞ୍ଚ ଚଉକୀ ଅଛି ପିଲାମାନେ ବସିବା ଲାଗି । ଆଉ କାହାର ଏପରି ବାଳିକା ସ୍କୁଲରେ ପଢ଼ିବାର ସୁଯୋଗ ମିଳିଥିବ କି ନାହିଁ ଜାଣେନା । ହୁଏତ ଘରପାଖ ହୋଇଥିବାରୁ ବା ବାପାଙ୍କ ଅନୁରୋଧକ୍ରମେ ମୋ ପରି ଅବୋଧ ବାଳକକୁ ବାଳିକା ସ୍କୁଲରେ ପଢ଼ିବାର ସୁଯୋଗ ମିଳିଥିଲା ଆଉ ୫/୭ ଜଣ ପୁଅପିଲା ମଧ୍ୟ ଥିଲେ । ସେତେବେଳେ ବାଳିକାମାନଙ୍କ ପାଇଁ କୌଣସି ସ୍ୱତନ୍ତ୍ର ପାଠ୍ୟସୂଚୀ ବା ପାଠ୍ୟକ୍ରମ ଥିଲା କି ନାହିଁ ମୁଁ ଗବେଷଣା କରିନାହିଁ - ସେ ବିଦ୍ୟାଳୟର ସାହିତ୍ୟ ବହି ଯାହା ମୋତେ ବି ପଢ଼ିବାକୁ ପଡିଥିଲା, ତା'ର ନାଁ 'ବାଳିକା ପାଠ' । - ଅନ୍ୟ ସ୍କୁଲରେ ନିଶ୍ଚିତ ଭାବେ ବାଳିକା ପାଠ ପଢ଼ାଯାଉନଥିଲା - ସବୁ ବାଳିକା ପିଲାଙ୍କ ପାଇଁ ସିଲେଇ/ କ୍ରାଫ୍ଟ କ୍ଲାସ ଥିଲା - ସିଲେଇ କ୍ଲାସ ପଡ଼ିଲାବେଳେ ଆମେ ପୁଅ ପିଲାମାନେ କ୍ଲାସ ବାହାରେ ସେତେବେଳେ ବୁଲାବୁଲି କରୁଥାଉ ।

ଗତ କେଇବର୍ଷ ତଳେ ଶିକ୍ଷକ ମହାସଂଘର ଗୋଟିଏ ବୈଠକ, ବାଲେଶ୍ୱର ମିଶନ ବାଳିକା ଉ.ପ୍ରା. ସ୍କୁଲରେ ହୋଇଥିଲା । ବାଲେଶ୍ୱରର ସାର୍‌ମାନେ ଏପରିକି ସେହି ସ୍କୁଲର ଦିଦିମାନେ, ମୁଁ ସେହି ସ୍କୁଲଟିରେ ଅଳ୍ପ କିଛିଦିନ ପାଇଁ ମଧ୍ୟ ପଢ଼ିଥାଇପାରେ, ତାହା ବା କିପରି ଜାଣିବେ ? ଉଦଗ୍ର ଆବେଗରେ ସ୍କୁଲର ବଡ଼ ବଡ଼ ଅଯତ୍ନ ବର୍ଦ୍ଧିତ ଘାସଥିବା ହତାସାରା ଘୁରି ବୁଲିଲି - ଘରଗୁଡ଼ିକ ସେଇପରି ଅଛି - ମାତ୍ର ମଳିନ/ ଜରାଜୀର୍ଣ୍ଣ ହେଲାଣି । ବେଞ୍ଚଚଉକୀ ଅଯତ୍ନରୁ ଭାଙ୍ଗିରୁଜି ଗଲେଣି - ପିଲାଦିନେ ଖେଳି ବୁଲୁଥିବା ହତା, ସ୍କୁଲବାରଣ୍ଡା, ଶ୍ରେଣୀ ଗୃହ ସବୁ ବିଶେଷକରି ୩ୟ ଶ୍ରେଣୀ ଗୃହଟି ଦେଖିଲି । ପରେ ବାଲ୍ୟସ୍ମୃତିରେ ଆଚ୍ଛନ୍ନ ହୋଇଗଲି । ସଭାରେ ସମସ୍ତଙ୍କୁ ଜଣାଇଲି ଯେ ବହୁବର୍ଷ ତଳେ ୧୯୪୨-୪୩ ହେବକି କ'ଣ, ମୁଁ ଏହି ସ୍କୁଲରେ ବାଳିକାଙ୍କ ସାଙ୍ଗରେ 'ବାଳିକା ପାଠ' ବହି ପଢ଼ିଛି । ମୋର ସୌଭାଗ୍ୟ ଯେ, ସେଇ ସ୍କୁଲକୁ ମୁଁ ଆଜି ଆସିଥିବାରୁ ନିଜେ ମଧ୍ୟ ଅଭିଭୂତ ହୋଇଯାଉଛି । ପିଲାଦିନର ସେ ବାରସାଉଁଟା ସ୍ମୃତିକୁ ଆଉଥରେ

ଫେରାଇଆଣି ଚଳଚ୍ଚିତ୍ରକୁ/ ଭିଡ଼ିଓକୁ ରିୱାଇଣ୍ଡିଂ କଲାପରି କ'ଣ ଦେଖିହେବ ? ଅନୁଭବ କରିହେବ ? ଆହାଃ କି ଲୋଭନୀୟ, ରମଣୀୟ ସେ ଦିନଗୁଡ଼ାକ ! ଅତୀତକୁ ଛାଡ଼ି ଆଗେଇ ଆସିଲାପରେ, ଆଉ ଦେଖିହେବ ? ଭେଟିହେବ ?

ବାଲେଶ୍ୱର ରହଣୀର ଅଭିଜ୍ଞତା ଅତି ସଂକ୍ଷିପ୍ତ ସମୟର । ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ଲାଗିଥାଏ । ବାଲେଶ୍ୱର ଚାନ୍ଦିପୁରରେ ବୋମା ପଡ଼ିଲା । ଜାପାନୀ ଗୁପ୍ତଚର କେଇଜଣ ଧରାପଡ଼ିଲେ । ବଡ଼ମାନେ ଅନେକ ଲୋମହର୍ଷକାରୀ କାହାଣୀ କଥାବାର୍ତ୍ତା ହେଉଥାନ୍ତି - କେନ୍ଦ୍ରସରକାର ନିର୍ଦ୍ଦେଶ ଦେଲେ ଯେ, ସରକାରୀ କର୍ମଚାରୀମାନେ ନିଜ ନିଜ କର୍ମସ୍ଥଳରେ ରୁହନ୍ତୁ - ମାତ୍ର ତାଙ୍କ ପରିବାର ବର୍ଗଙ୍କୁ - ଅନ୍ୟତ୍ର ବିଶେଷକରି ଗାଁରେ ଛାଡ଼ି ଆସନ୍ତୁ । ଘରେ ବାପା, ବୋଉ ଆଦି ସ୍ଥିର କଲେ ଯେ, ମୁଁ ଓ ବଡ଼ଭଉଣୀ କୁଶଅପା ଆମେ ଦୁହେଁ ଅନୁଗୁଳରେ ବଡ଼ବାପା (ବାପାଙ୍କ ବଡ଼ଭାଇ)ଙ୍କ ଘରେ ରହିବୁ । ଭାଇ ଓ ଅଶ୍ୱନୀ ମାମୁଁ (ଅଶ୍ୱିନୀ କୁମାର ଜେନା - ମୋ ବୋଉର ଦାଦାପୁଅ ସାନଭାଇ - ପରବର୍ତ୍ତୀ କାଳରେ ପ୍ରସିଦ୍ଧ ଓକୀଲ ଏବଂ ପ୍ରସିଦ୍ଧ ଏସ୍.ୟୁ.ସି.ଆଇ ନେତା) ଦୁହେଁ ବୋଉ ସାଙ୍ଗରେ ରହିବେ କଟକରେ ଏକ ଭଡ଼ାଘରେ । ନହେଲେ ତାଙ୍କ ପାଠପଢ଼ାରେ ଅସୁବିଧା ହେବ । ହାଇକମାଣ୍ଡଙ୍କର ଏ ନିଷ୍ପତ୍ତି ପରେ ମୁଁ ଓ ବଡ଼ଭଉଣୀ କୁଶଅପା ଦୁହେଁ ଅନୁଗୁଳ ଗଲୁ । ଅମଲାପଡ଼ାରେ ବଡ଼ବାପା ବଂଶୀଧର ବରାଳଙ୍କର ନିଜଘର । ଦୀର୍ଘକାଳଧରି ଅନୁଗୁଳରେ ଚକଡ଼ା କାନୁନ୍‌ଗୋ ରହିଥିବାରୁ ଅଳ୍ପ କିଛି ଜମି ଓ ଘରଡ଼ିହ କିଣି ଚଳଘର କରିଥିଲେ । ସେ ଘର ଏବେ ବି ଅଛି । ମୋର ଜଣେ ଭାଉଜ ଓ ପୁତୁରାମାନେ ରହୁଛନ୍ତି ସେଠାରେ । ଅନୁଗୁଳରେ ଏକ ନୂଆ ଜୀବନର ଅଭିଜ୍ଞତା ଆରମ୍ଭ ହେଲା । ଆମେ କେବେହେଲେ ବାପା/ ବୋଉଙ୍କୁ ଛାଡ଼ି, ଘରଛଡ଼ା ହୋଇ ରହିନଥିବାରୁ, ନୂଆ ପରିବେଶରେ ପ୍ରଥମେ ପ୍ରଥମେ ଅସୁବିଧା ହେଲା । ସେଠାରେ ମୋତେ ପୁଣି ସେଇ ତୃତୀୟଶ୍ରେଣୀରୁ ଆରମ୍ଭ କରିବାକୁ ପଡ଼ିଲା । ସେଠାରେ ପ୍ରାଥମିକ ସ୍କୁଲରେ, ମନେପଡୁଛନ୍ତି କେବଳ ସପନୀ ମାଷ୍ଟ୍ରେ - ଯିଏ ସମ୍ଭବତଃ ହେଡ୍‌ସାର୍ ଥିଲେ ।

ସେଠାରେ ରହଣୀ ଦୁଇ କି ତିନିମାସ ହେବ । ଦିନାକେତେ ଆସି ଗାଁରେ, ହଳଦିଆପଡ଼ାରେ ରହିଲି । ମୋତେ ଅନନ୍ତା ଭାଇ (ଅନନ୍ତଭୋଇ) କାନ୍ଧରେ ବସାଇ, କେତେବେଳେ ଚଲାଇଚଲାଇ ନେଇଯାଆନ୍ତି ନାଳବନ୍ଧେ ବନ୍ଧେ, ଅଲାଣ୍ଡୋ ଉ.ପ୍ରା. ସ୍କୁଲକୁ । ଶୁଣୁଥିଲି ତା'ର ଶତବର୍ଷ ପାଳିତ ହୋଇଥିଲା । ସେଠି ଅଦ୍ୱୈତ ସାର୍ ଥିଲେ ପ୍ରଧାନ ଶିକ୍ଷକ । ଖଦଡ଼ ଧୋତି - ଖଦଡ଼ ଚାଦର ତାଙ୍କର ପରିଧାନ, ଘରେ ଆସି ପଢ଼ାନ୍ତି ଅନନ୍ତ ଦାଦି । ଭଲ ନାଁ ଅନନ୍ତଚରଣ ସ୍ୱାଇଁ । ସିଏ ମୋର ପାରିବାରିକ ସମ୍ପର୍କରୁ ଦାଦା

ହେବେ । ସ୍କୁଲମାନଙ୍କରେ କ'ଣ କିପରି ପଢ଼ାଯାଉଥିଲା - ଅଥବା ମୁଁ ପଢୁଥିଲି - ତାହା ମୋର କିଛି ମନେ ନାହିଁ । କିନ୍ତୁ ଅନନ୍ତ ଦାଦିଙ୍କ ଠାରୁ ଘରେ ପଢ଼ାଉଥିବା ପାଠ, ଜଳଜଳ ହୋଇ ମନେପଡ଼ି ଯାଉଛି । ଭୁଗୋଳର ଦେଶ, ମହାଦେଶ, ନଦୀ, ଉପନଦୀ, ଶାଖାନଦୀ, ହ୍ରଦ, ସାଗର, ମହାସାଗର, ଓଡ଼ିଆ ବ୍ୟାକରଣ, ଇଂରାଜୀ ଗ୍ରାମାର ସବୁ ମନେ ପଡ଼ିଯାଇଛି । ହ୍ରଦର ସଂଜ୍ଞା କହିଲାବେଳେ, ତାଙ୍କୁ ପଚାରୁଥିଲି, ଆମ ଘର ନୂଆ ଖୋଳାଯାଇଥିବା ଗଭୀର ପୋଖରୀଟି ହ୍ରଦ କି ନୁହେଁ, ହସି ହସି ଅନ୍ତଦାଦି ଓରଫ ଅନନ୍ତ ସାର୍ ବା ଆପଣ ଉତ୍ତର ଦେଇଥିଲେ, ହ୍ରଦଟା ପ୍ରାକୃତିକ, ଖୋଳି ଖୋଳି କେହି କରିନଥାନ୍ତି ।

ଗାଁରେ ମୋର ରହଣୀ ଅଳ୍ପ ଦିନର । ପ୍ରତ୍ୟେକ ବର୍ଷ ଖରାଛୁଟିରେ ଗାଁକୁ ଗଲେ କି ଅକାଳେ ସକାଳେ ଅନ୍ୟ ସମୟରେ ଗାଁକୁ ଗଲେ ବି ମୋର ଗାଁରେ ରହିବା ସର୍ବମୋଟ ତିନି କି ଚାରିବର୍ଷ ହୋଇଥିବ । କିମ୍ୱା ତା'ଠାରୁ କମ୍ ।

କିନ୍ତୁ ମୁଁ ଜାଣେନା, ଗାଁର ଜୀବନ କାହିଁକି କେଜାଣି ମୋତେ ଗଭୀର ଭାବରେ ଆକର୍ଷିତ କରେ । ଆମ ଘର କୁଞ୍ଜିଆ ଦି'ଙ୍କର ଗୁଣିଆ ଗିରି - ସେଥିରେ ପୁଣି ତାଙ୍କୁ ସମସ୍ତେ କହନ୍ତି ଅଧାଗୁଣିଆ ବୋଲି - ଭଗୀଆ ଅଜାର ତେଲରେ ପାଚିଥିବା ମୁଣ୍ଡେ ଉଁଚା କଣ୍ଟାବାଉଁଶ ଠେଙ୍ଗା, ଯାହାକୁ ଦେଖିଲେ, କହନ୍ତି ବରାଳ ଘର ଷଣ୍ଢ ଆସୁଛନ୍ତି ।

ଉଦୁଉଦିଆ ଦି'ପହରେ ଗାଁ ତୋଟାରୁ ବେତକୋଳି, ଭଇଁଚ କୋଳି କି ଖଜୁରୀ କୋଳି, କଣ୍ଟେଇକୋଳି ତୋଳିବାକୁ ଗଲାବେଳେ, ବିଚଭାଇର ଲଙ୍ଗଳାହୋଇ ଲୁଗାକୁ କାଢ଼ି ଗଛ ମୂଳେ ଥୋଇଦେଇ କୋଉଁ ଡାଆଣୀ ସ୍ତ୍ରୀଲୋକ, ଗୋଡ଼ ଉପରକୁ କରି ମୁହଁ ତଳକୁ କରି ଗୁହ ଚରିବାର ଅଲୌକିକ କାହାଣୀର ବର୍ଣ୍ଣନା - ସେଥିରେ ପୁଣି କୋଉ ତାରାବୋଉ, ବାଉରୀସାହୀର କାନ୍ଦୁରୀ ବୋଉ ଆଦି କିପରି କଞ୍ଚା ଡାଆଣୀ ସ୍ତ୍ରୀ ଏବଂ ସେମାନେ ଏମିତି ଗୁହ ଚରି ଚରି ବୁଲିଲା ବେଳେ ଆଖିରେ ପଡ଼ିଗଲେ, କୁଟାରେ ଜୀଅନ୍ତା ମଣିଷର ରକ୍ତ ଶୋଷିନେବାର ରୋମାଞ୍ଚକର କାହାଣୀ ଇତ୍ୟାଦି କଥାଶୁଣି, ତୋଟାକୁ ଗଲାବେଳେ ଅନନ୍ତସାଗର ହୁଡ଼ାକୁ ଝାଡ଼ା ଫେରିବାକୁ ଯାଉଥିବା ଏକାକିନୀ କୌଣସି ସ୍ତ୍ରୀ ଲୋକକୁ ଦେଖିଲେ, ପ୍ରଚଣ୍ଡ ଖରାତାତିରେ ବି ଡ଼ରରେ ଦେହ ଶୀତେଇ ଯିବାର ଅଭିଜ୍ଞତା, କିମ୍ୱା ବାଉରୀ ସାହୀ, କେଉଟ ସାହୀ, ବୁଣା ସାହୀର ଟୋକାଙ୍କୁ ଧରି ବିଚ ଭାଇ ନେତୃତ୍ୱରେ ଶୁଖିଯାଇଥିବା ପଙ୍କ ପୋଖରୀରୁ ପଙ୍କ ଚିପିଚିପି ଗୋଟାଏ କି ଦିଇଟା ଦଣ୍ଡକିରି, କେରାଣ୍ଡୀ କିମ୍ୱା ରଡା କି ମାଗୁରଟାଏ କି କଉଟାଏ ଧରିପକାଇ ମାଛ ମାରିବାର ଗର୍ବ/ଗୌରବ ଏବଂ ପରେ ପରେ ବୋଉ ଠାରୁ ନିର୍ଦ୍ଧୁମ୍ ବାଡ଼ିଆ ଖାଇବାର କଥା ଏ ପରିଣତ/ ବୁଢ଼ା ବୟସରେ ବି ମନେ ଅଛି, ଭୁଲି ହୋଇନାହିଁ !

ମନେପଡ଼ିଯାଉଛି, ଗଡ଼ିଯାଉଥିବା ସଂଜବେଳେ ଅଗଣାରେ କି ଦାଣ୍ଡବାରଣ୍ଡାରେ ହେଁସ ପାରି/ ସପ ପାରି ବସିଲେ, କୁଞ୍ଜିଆଦାଦି, ଭଗୀଆ ଅଜା ଦୁହିଁଙ୍କର ଗୁଣିଆଗିରି କରିବା ପାଇଁ ରାତିଅଧରେ ମଶାଣିକୁ ଯାଇ କୁଆଁରୀ କନ୍ୟାର ହାଡ଼ ସଂଗ୍ରହ କରିବାର ଅଲୌକିକ ଗପ - ବିଲକୁ ସେଣାରେ ପାଣି ବୋହିଲାବେଳେ ଧୋବ ଫରଫର ହୋଇ ଆରପଟକୁ କିଏ ଜଣେ ଠିଆହୋଇ, ଏମାନେ ଯେତେ 'କିଏ ହୋ ଭାଇ' ? ବୋଲି ପଚାରିଲେ, ସେପଟୁ କେବଳ ଉତ୍ତର ଆସିବ 'ହୁଁ' ବୋଲି । ମାନେ ଭୂତଟାଏ ଠିଆ ହୋଇ କେବଳ ହୁଁ, ହାଁ କରୁଥିବାର କାହାଣୀ ମନରେ ଗୁନ୍ଥି ହୋଇଯାଉଛି ।

ଗାଁର ସେ ମନୋରମ ଦୃଶ୍ୟ ସେ ଅଭିଜ୍ଞତା, ଗାଁ ଦାଣ୍ଡରେ ଉଦୁଉଦିଆ ଦି' ପହରେ ମୁଣ୍ଡପୋତା କେଳା ମାଟିଖୋଳି ମୁଣ୍ଡଟା ପୋତିଦେଇ ପଇସା ମାଗିବା ଦୃଶ୍ୟ, କେନ୍ଦରା ବଜାଇ "ଭଜୁକି ନା ରାମ ନାମରେ ଗୋବିନ୍ଦ ଗୀତ" କିମ୍ବା କେଳା/ କେଲୁଣୀଙ୍କର ପତର ସଉରୁଣୀଙ୍କର, 'ସନେଇ ଘର ବୋଉଲୋ', ଦନେଇଘର ମା' ଲୋ, ପଦିଆ ବୋଉ ଲୋ, ଘନିଆ ମା' ଲୋ - ଇତ୍ୟାଦି ଯେତେ ସମ୍ଭବ ନାଁର ପିଲାଙ୍କର ମା'ଙ୍କୁ ଡାକି ଡାକି ଚୁଡ଼ି, ଗଦ, ଅଳତାର କାଗଜ ଖଣ୍ଡ ବିକିବାର ମନୋରମ ଅଭିଜ୍ଞତା ବା ଦୃଶ୍ୟ, ଏ ପୀଢ଼ିର ପିଲାମାନଙ୍କୁ ହୁଏତ ଆଉ ମିଳିବ ନାହିଁ । ସେ ଗାଆଁ ସବୁ କାହିଁ କୁଆଡ଼େ ହଜିଗଲାଣି - ଚିତ୍ରରୁ ଲିଭିଗଲାଣି ! କାରଣ ଗାଁ ସବୁ ଅଧାଅଧି ସହର ପାଲଟିଗଲାଣି ଓ ମଣିଷମାନେ ସହରୀ ହୋଇଗଲେଣି - ଦଳେ ବାବୁଭୟା ହୋଇ ସହରରେ ଘର/ ବଡ଼ ବଡ଼ କୋଠା କରି ରହିଲେଣି - ଅନେକେ ସହରୀ ବାବୁମାନଙ୍କର ଲୁଗାକାଚି, ଘର ଓଳାଇବାକୁ, ବାବୁଙ୍କ ପାଇଁ ଦୁଧ, ଦହି ଯୋଗାଇବାକୁ ସାଇକଲ ମରାମତି କରିବାକୁ, ଗାଡ଼ି ଚଳାଇବାକୁ, ବସ୍ତିମାନଙ୍କରେ ଗୁଞ୍ଜି ଗାଞ୍ଜି ହୋଇ ଭିଡ଼ ଜମାଇ ରହିଲେଣି !

ଗାଁର ଶଶୀ ବୋଉ ମା', ସୁନ୍ଦରୀ ଭାଉଜ, ଭଣ୍ଡାରୀ ଘର ଖୁଡ଼ି, ନାହାକଘର ଆଉ କାହାର ମଉଳା, ମାମୁଁ ବ୍ରାହ୍ମଣଘର ପଞ୍ଚହତା ମଣିଷ ବିଦ୍ୟାନ୍ନା, ଆନନ୍ଦା ନ୍ନା, ଲୋକାନନା, କେଉଟ ସାହିର କୁମର ବେହେରା, ତନ୍ତୀ/ବୁଣା ସାହୀର ଜଗୁଆ ଓ ଫଗୁଆ ବୁଣା ଦି' ଭାଇ, ମାନେ କାହିଁ କୁଆଡ଼େ ହଜିଗଲେଣି ! ଶୁଖୁଆ ବୋଉ ମା' ମରିଯିବଣି । ସୁନ୍ଦରୀ ବାଉରାଣୀ ବି ଆଉ ନଥିବ ! ବୁଢ଼ୀ ହୋଇ ଅକସ୍ମାତ୍ ବଞ୍ଚିଥିଲେ ବି ଏବେ ମୁଁ ଗାଁକୁ ଗଲେ, ଏମାନେ ମୋତେ ଚିହ୍ନିବେ ନାହିଁ କି ପୁରୁଣା ଦିନ ପରି ପରିହାସ, ଟାପରା କରିବେ ନାହିଁ । ମୁଁ ବି ସେମାନଙ୍କୁ ଚିହ୍ନିପାରିବି କି ନାହିଁ ସନ୍ଦେହ । ସେ ଜୀବନଠାରୁ ଅନେକ... ଅନେକ ଦୂରକୁ ଦୂରେଇ ଯାଇଛି ମୁଁ । ମନେ ପଡ଼ିଯାଉଛି - ୧୯୯୯ର

ମହାବାତ୍ୟାବେଳେ କିମ୍ବା ତା'ପୂର୍ବରୁ ବନ୍ୟାବେଳେ ବାରଆଡ଼େ ରିଲିଫ ଦେଉ ଦେଉ, ଆମ ଗାଁ ଅଞ୍ଚଳକୁ ରିଲିଫ ଲୁଗା/କମ୍ବଳ/ବାସନକୁସନ/ଚାଉଳ ଦେବାକୁ ଅନନ୍ତକୁଦକୁ ଚାଲିଗଲି - ମୁଁ ଆମ ଘରକୁ ନଯାଇ କାହାକୁ ନଜଣାଇ, ରିଲିଫ ସହାୟତା ବାଣ୍ଟୁଥିବା ସାଥୀମାନଙ୍କ ଗହଣରେ ରହି ପରିଚିତ, ନରନାରୀମାନଙ୍କୁ ଦୂରରୁ ଦେଖୁଥିଲି । ଅକସ୍ମାତ୍ ଶୁକୁଆ ବୋଉ ମା', ଧୋତଡ଼ି ବୁଢ଼ୀ ହୋଇଗଲାଣି - ମୋତେ କେମିତି କେଜାଣି ଚିହ୍ନିପାରିଲା - ଆଉ, ଦଉଡ଼ିଆସି ମୋ ଓଠଧରି କହିଲା 'ପାକୁ ବାବୁଟି ?', ପରେ ପରେ କେଉଟ, ବାଉରୀ ସାହୀର ସମସ୍ତେ, ତାଙ୍କ ପଛକୁ ପଛ ଗାଁଟା ସାରା ନରନାରୀ ମୋତେ ବେଢ଼ିଗଲେ । ମୁଁ ଲୁହ ସମ୍ଭାଳି ପାରିଲିନାହିଁ - ସେମାନେ ବି ସମସ୍ତେ କାନ୍ଦିଲେ, ପ୍ରିୟଜନକୁ ଫେରିପାଇବା ପରି । ଘରକୁ ଯାଇ, ବାରଣ୍ଡାରେ ବସି ସମସ୍ତଙ୍କୁ ପରିଚିତ କରାଇଦେଲି - ସୁଖଦୁଃଖ ହୋଇ ଫେରିଲି । ହଁ, କହୁ କହୁ କହି ପକାଇଲିଣି ଯେ, ମୋ ପିଲାଦିନର/ ଘର ଡାକ ନାଁ 'ପାକୁ', 'ପାକୁଆ', 'ପାକନା' ଇତ୍ୟାଦି । ବହୁଦିନ ପର୍ଯ୍ୟନ୍ତ ଦାନ୍ତ ଉଠିନଥିଲା ବୋଲି ଏ 'ପାକୁ' ଡାକ । ବାପା/ବୋଉ/ଅଜା/ଦାଦିମାନେ ସବୁ ଶେଷ ହୋଇଗଲା ପରେ - ମୁଁ ନିଜେ 'ଅବନୀ' ନାମଧାରୀ ହୋଇ ନୂଆ ପରିଚୟ ପାଇଲା ପରେ, ସେ ଡାକନାଁଟା, ଯେଉଁଥିରେ ଚିନି ପରି ସ୍ନେହ ସୋହାଗ ବୋଳି ହୋଇଥିଲା, ତାହା କାହିଁ କୁଆଡ଼େ ହଜିଗଲା !

ସୁଦୀର୍ଘ ଚଲାରାସ୍ତା ଅତିକ୍ରମ କରି ଆସିଲା ପରେ, ପଛରେ ରହିଯାଇଥିବା ବାଟ ସଂକେତ କିମ୍ବା ମାଇଲଖୁଣ୍ଟି ଯେମିତି ଆଉ ଦିଶେ ନାହିଁ - ସେମିତି ସେ ପଛକଥା ଆଉ ମିଳିବ ନାହିଁ । ସୁନ୍ଦର, ମନୋରମ ସ୍ମୃତି ହୋଇ ମନ ଗନ୍ତାଘରେ ସାଇତା ହୋଇ ରହିବ ସିନା !

ଯେଉଁଠାରୁ ଛାଡ଼ି ଆସିଥିଲି । ଦ୍ୱିତୀୟ ବିଶ୍ୱଯୁଦ୍ଧ ସରିସରି ଆସୁଥିବାରୁ ବୋମା ପଡ଼ିବାର ଆତଙ୍କ ହୁଏତ ଆଂଶିକ ଦୂରୀଭୂତ ହୋଇଗଲା - ଯଦିଓ ରାସ୍ତାଘାଟରେ ବଡ 'W' ଅକ୍ଷରଭଳି ଟ୍ରେଞ୍ଚ ସବୁଥାଏ - ସ୍କୁଲ କଲେଜମାନଙ୍କରେ ମୋଟାମୋଟା ବାଫଲ୍ ୱାଲ୍ ଗଢ଼ା ହୋଇଥାଏ । ବୋମା ମାଡ଼ ହେଲେ ସ୍ପିନ୍‌ଟର ସବୁ ପଶି ଆହତ କରିବ ନାହିଁ ବୋଲି । ଆକାଶରେ ଭୂଇଁ ପାଖ ପାଖରେ ଉଡ଼ାଜାହାଜ ଉଡ଼ିଯାଇ "ବୋମା ପଡ଼ିଲେ ମୁଁ କ'ଣ କରିବି" ବୋଲି । ପ୍ରଚାର ପୁସ୍ତିକା ସବୁ ପକାଇ ଦେଉଥାଏ - ମଝିରେ ମଝିରେ ଘୋର ଚିତ୍କାର କରି ସାଇରେନ୍ ବାଜେ - ସମସ୍ତେ ନିସ୍ତବ୍ଧ ହୋଇଯାଆନ୍ତି - ପୁଣି ସାଇରେନ୍ ବାଜି 'ଅଲ୍ କ୍ଲିଅର୍'ର ସଂକେତ ଦିଏ - ଲୋକେ ଯିବା ଆସିବା କରନ୍ତି ।

ଆଗରୁ କହିଛି ବାପା କଟକକୁ ବଦଳି ହୋଇ ଆସି ଚୌଧୁରୀ ବଜାରରେ ଗୋଟିଏ ଭଡ଼ା ଘରେ ରହୁଥାଆନ୍ତି । ମୋତେ ଓ କୁଶଅପାକୁ ଫେରାଇ ଆସିବାକୁ ଡାକରା ଗଲା । କଟକକୁ ବାପା-ବୋଉଙ୍କ ପାଖକୁ ଆମେ ଫେରିଆସିଲୁ ଅନୁଗୁଳରୁ । ଏଣୁ ତୃତୀୟ ଶ୍ରେଣୀରେ ସାତଚକଟା ପୋଲୁହ ଘଣ୍ଟା ହୋଇ ବାଲେଶ୍ୱର ଗାଁ, ଅନୁଗୁଳ ନାନା ଜାଗାରେ ପଢ଼ିସାରି ଶେଷରେ ସିଦ୍ଧାନ୍ତ ହେଲା, ଆଉ କୌଣସି ସ୍କୁଲରେ ନାଁ ନଲେଖାଇ ଘରେ ଜଣେ ସାର୍‌ଙ୍କୁ ଟ୍ୟୁସନ୍ କରିବା ପାଇଁ ନିଯୁକ୍ତ କରି ଏକାଥରକେ ୪ର୍ଥ ଶ୍ରେଣୀରେ ନାମଲେଖା ହେବ ।

ମୋ ମାମୁଁଘର ଗାଁ ଜଗତପୁର ଠାରୁ କେନ୍ଦ୍ରାପଡ଼ା ରାସ୍ତାରେ ୨/୩ ମାଇଲ ହେବ । କଟକରୁ ସାତମାଇଲ । ମାମୁଁଘର ଗାଁ ନାଁ ଭଇରପୁର । ମଝିରେ ଦିନେ ରାସ୍ତାରେ ଗଲାବେଳେ ଭଇରପୁର ରାସ୍ତା ଖୁଣ୍ଟି ଦେଖି, ଗାଁକୁ ଯିବାକୁ ଭାରୀ ଇଚ୍ଛା ହେଲା । ମାମୁଁ ଘର ଗାଁରେ କିଏ ଆଉ ମୋତେ ଚିହ୍ନିପାରିବେ କି ନାହିଁ ନଜାଣିପାରି ସେଥିରୁ ନିବୃତ୍ତ ହେଲି ।

ଅଜା, ଚୌଧୁରୀ ବଜାର ବସାକୁ ବାରମ୍ବାର ଆସନ୍ତି । ଆସିଲାବେଳେ ନଡ଼ାରେ ଗୁଡ଼ା ହୋଇଥିବା ବଡ଼ ଭାକୁର କି ରୋହୀ ମାଛ ଗୋଟାଏ/ଦିଇଟା, ଘିଅ, ବସାଦହି, ପିଠାପଣା ବୋଝିଆ ହାତରେ ଆଣିଥାନ୍ତି । ତାଙ୍କର ବୋଉ, ବାପାଙ୍କ ଉପରେ ଯେପରି ପ୍ରଚଣ୍ଡ ପ୍ରଭାବ - ଆମ ଉପରେ ମଧ୍ୟ ସେହିପରି ପ୍ରଭାବ । ପୁରାଣ ବହି ସେଟ୍ ସବୁ କିଣିଆଣି, ଅଜା ନିଷ୍ପତ୍ତି କରିଦେଲେ ସବୁଦିନେ ବଡ଼ି ଭୋରରୁ ଉଠି ମୁଁ ବୋଉକୁ ପୁରାଣ ପଢ଼ି ଶୁଣାଇବି । ବଡ଼ ପାଟିରେ ବୋଲିବି । ପ୍ରଥମେ ଆରମ୍ଭ ହେଲା ମହାଭାରତ, ତା'ପରେ ରାମାୟଣ, ତା'ପରେ ହରିବଂଶ, ନୃସିଂହ ପୁରାଣ, ପଛକୁ ପଛ ଯମ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ ଇତ୍ୟାଦି -

ପ୍ରଥମେ ପ୍ରଥମେ ବହୁତ ହୁଡ଼ିଲି - ଧୀରେ ଧୀରେ ହୁଡ଼ିବା ବନ୍ଦ ହୋଇ ପୁରାଣପଣ୍ଡା ପରି ବଡ଼ପାଟିରେ ସ୍ୱର ଦେଇ ବୋଲିଲି - କିଛି ବୁଝିପାରୁନଥିଲେ ବି ପାଟିକରି ପଢୁପଢୁ ଦେଖିଲି ଗୋଟାଏ ଗୋଟାଏ କାହାଣୀ ମୋ ମନକୁ ସ୍ପର୍ଶ କଲା । ଭୀମସେନ୍‌ଙ୍କର ହୁଣ୍ଡାଚରିତ୍ର ଭାରୀ ଭଲ ଲାଗିଲା । ବେଲାଳସେନ ବଭ୍ରୁବାହନ, ଘଟୋତ୍କଚ, ଅଭିମନ୍ୟୁ ଓ ସର୍ବୋପରି ଏକଲବ୍ୟ (ଜାରାଶବର) ଚରିତ୍ରଙ୍କ ପାଇଁ ମନରେ ମୋର ସେଇ ପିଲାଦିନେ ବି କୋହ ଆସିଯାଏ । ଶିଶୁମନ ମୋର କୌଣସି ମତେ ଦ୍ରୋଣାଚାର୍ଯ୍ୟଙ୍କର କପଟ ଗୁରୁପଣିଆ ମାନିନେଇ ପାରେ ନା - ପାରିନଥିଲା, କିମ୍ବା ଘଟୋତ୍କଚଙ୍କୁ, ବେଲାଳସେନକୁ ବଳି ପକେଇ ଅର୍ଜୁନକୁ ରକ୍ଷା କରିବା ଓ ମହାନ୍ ବୋଲି ପ୍ରତିପାଦିତ କରିବା କଥାକୁ ସ୍ୱୀକାର କରିପାରିନଥିଲା ।

ପୁରାଣ ବୋଲା ଭିତରେ ଅଜାଦିନେ ଅଣିକିଆ, ଚାଣକ୍ୟ ଶ୍ଳୋକ ଚଟିବହିଟିଏ ନେଇଆସିଲେ - ଘୋଷିବାକୁ କହିଲେ । ଅଜାଙ୍କ ଘରର ବାରିଟା ବିରାଟକାୟ ଏବଂ ଅନେକ କଦଳୀକାନ୍ଦି ଗଛରେ ହିଁ ପାଚିଥାଏ । ତାଙ୍କ ଗୁହାଳରେ କୋଡ଼ିଏଟିରୁ ବେଶି ଦୁହାଁଳିଆ ଗାଈ । ଆଈ ମୋର ଗୋଟାଏ ବଡ଼କଡ଼େଇରେ ସକାଳୁ ଦୁଧ ଆଉଟେ । ବହଳେମୋଟ ସର ପଡ଼ିଯାଏ । ଆଈର ସେ ଦୁଧସର ଲୁଚାଇ ଖାଇଦିଏ- ଖାଣ୍ଟି ଗୁଆଘିଅରେ ଭାଜି ଚୂଡ଼ାଭଡ଼ା ଆଈ ରଖିଥାଏ ଅଜାଙ୍କ ପାଇଁ । ତାକୁ ବି ମୁଁ ଲୁଚାଇ ଖାଇଦିଏ । ଆଈ ଜାଣିପାରିଲେ, ଛଳନାକ୍ରୋଧ ଦେଖାଇ କୁହେ, "ହଉ ରହ ରହ, ବୁଢ଼ା ଆସୁ ତୋ ପଛରେ ଯଦି ନଇଁଶୀ ନଫୁଙ୍କିଚି !" - ତା'ର ବୋଧେ କେହି ମାନ୍ୟର ଲୋକ ଥିଲେ ଯାହାଙ୍କ ନାଁ ବଇଁଶୀ - ବଂଶୀଧର - ସେଥିପାଇଁ ତାଙ୍କ ନାଁ ନଧରି ନଇଁଶି ବଜାଇବ ବୋଲି କହେ ସେ ।

ଆଗରୁ କହିଛି କଟକଠାରୁ ଭଇରପୁର ସାତ ମାଇଲ । ଆଗରୁ ସେଠି ଗୋଟାଏ ସାତମାଇଲ ଲେଖା ହୋଇଥିବା ଖୁଣ୍ଟି ଥିଲା । ଅଜା ଚୌଧୁରୀ ବଜାରଠାରୁ ଚଲାଇ ଚଲାଇ ନିଅନ୍ତି । ବେଳେବେଳେ ରେଳପୋଲର ଗାଲା ଉପରେ, ଲାଇନ ଧାରେ ଧାରେ ଚାଲି ଚାଲି ଯାଉଁ । ରେଳଗାଡ଼ି ଆଗରୁ କି ପଛରୁ ଆସିଲେ, ରେଳପୋଲ/ବ୍ରିଜ୍‌ଟା ତ ଥରିଯାଏ - ଆମେ ବି ଥରିଉଠୁ । ପ୍ରଥମ ଥର ଗଲାବେଳେ ତ ମୁଁ ଭେଁ କିନା କାନ୍ଦି ପକାଇଲି । ଅଜା ତାଙ୍କ ବଙ୍କା ମୁଣ୍ଡ ଥିବା ମୋଟ ବେତବାଡ଼ି ଝୁଲାଇ ଝୁଲାଇ ଚାଲୁଥାନ୍ତି ଓ ବାଟସାରା ଗୋଟାଏ ଗୋଟାଏ ପଣିକିଆ ନହେଲେ ଶବ୍ଦାର୍ଥ କି ବିପରୀତବୋଧକ ଶବ୍ଦର ଅର୍ଥ ପଚାରୁଥାଆନ୍ତି । ମଝିରେ ମଝିରେ ମହାନଦୀ ଭିତରେ ବି ଯିବାକୁ ହୁଏ । ପାରି କରିଦେବାକୁ ଅଜାଙ୍କ ଘରୁ ନାଉରୀଆ ହେତା ନିଏ । ବର୍ଷକୁ ଗୁଣ୍ଠେ ଜମି ବା ଧାନ ଅମଳ ବେଳେ କେଇଟା ହଳା ତା'ର ପ୍ରାପ୍ୟ ହେତା । ଭିନ୍ନ ଭିନ୍ନ କାମ ବା ସେବା ପାଇଁ ଭିନ୍ନ ଭିନ୍ନ ହେତା ବା ସଞ୍ଜା ଥାଏ । ବାଟ ଚାଲୁଚାଲୁ ଯେତେଟା ପ୍ରଶ୍ନର ସଠିକ୍ ଉତ୍ତର ଦେଇଦେବି, ସେତିକିଟା ଗଛ ପାଚିଲା କଦଳୀ ପୁରସ୍କାର ମିଳିବ । ମୋ ସାଙ୍ଗେ ଭାଗ ହୁଏ, ଏକାବୟସୀ ମୋ ମାଉସୀପୁଅ ଭାଇ ଖୋକା - ଭଲ ନାଁ ପ୍ରଶନ୍ନ କୁମାର ଭୂୟାଁ । ଚିଫ କନ୍‌ର୍ଜଭେଟର ଅଫ ସଏଲ୍ ଥିଲା ସେ । ଅବସର ନେଲା ମୋ ସାଙ୍ଗରେ । ମଜାର କଥା ମୋ ବାରରାତ୍ର ଦିନ ସେ ଜନ୍ମ । ଆମର ସ୍କୁଲ ଛୁଟିଥିଲେ ଦିନେ ଦୁଇଦିନ ମାମୁଁଘରେ ରହିବାକୁ ପଡ଼େ । ଛୁଟି ନଥିଲେ ରବିବାରିଆ ଯାଇ, ସୋମବାର ସକାଳୁ ପୁଣି ଫେରନ୍ତି ଆସିବାକୁ ପଡ଼େ ।

ଅଜା ଗୋଟାଏ ବିଶାଳ ଥାଳିରେ ଖାଇବସନ୍ତି । ଆମେ ନାତି ନାତୁଣୀମାନେ ଥାଳିକୁ ଘେରି ବସିଯାଉ । ତତଲା ଭାତ ଉପରେ ବଡ଼ ଗିନା ବା ଛୋଟ ତାଟିଆରେ

ଚାଟିଆଏ ଘିଅ ଥୁଆହୋଇଥାଏ । ମୁଗଡ଼ାଲି, ଆଉ ତିନି, ଚାରି ପ୍ରକାରର ତରକାରୀ, ନହେଲେ ତାଙ୍କ ପୋଖରୀର ବଡ଼ମାଛ । ଅଜା ଭାତରେ ସବୁ ଘିଅ ଢ଼ାଳି ଦିଅନ୍ତି ଓ ଚକଟି ଦିଅନ୍ତି । ନିଜ ପାଇଁ ଆଡ଼େଇ ରଖି, ତାଙ୍କ ଥାଳି ଚାରିକଡ଼େ ବସିଥିବା ନାତିନାତୁଣୀଙ୍କ ପାଇଁ ଭାଗ ବାଣ୍ଟି ଦେଇଥାନ୍ତି । କାହିଁକି କେଜାଣି ଏବେ ବି ଭାତ-ଡାଲି-ତରକାରୀ ସବୁ ଏକାଠି ଗୋଳେଇ ଚକଟି ଦେଇ ଘିଅ ଥାଉ ବା ନଥାଉ ଖାଇବା ମୋର ଦୈନନ୍ଦିନ ଅଭ୍ୟାସରେ ପରିଣତ ହୋଇଯାଇଛି । ଏବେ ମଧ୍ୟ ମୁଁ ସେମିତି ଖାଇଥାଏ । ପିଲାମାନଙ୍କୁ ନାତିନାତୁଣୀ ମାନଙ୍କୁ ସେମାନେ ବଡ଼ହେଲା ପର୍ଯ୍ୟନ୍ତ ସେହିପରି ଚକଟି ଖୁଆଇ ଦେଇଥାଏ ।

ଅଜାଙ୍କର ପ୍ରେରଣାରେ ହେଉ କିମ୍ବା ବାଧବାଧକତାରେ ହେଉ ଅବା କଦଳୀ ଖାଇବା ଲୋଭରେ ହେଉ ବୋଉ, ଆଇ, ଅଜାଙ୍କୁ ଯେତେ ପୁରାଣ ଶୁଣାଇଛି, ସେସବୁର ଭାଷାର କାହାଣୀର ପ୍ରଭାବ ମୋ ଉପରେ ନିଶ୍ଚିତ ଭାବରେ ପଡ଼ିଛି । ଘୋଷିଥିବା ଚାଣକ୍ୟ ଶ୍ଳୋକ ଗୁଡ଼ିକୁ ମାଟ୍ରିକ ଶ୍ରେଣୀରେ ଯେତେବେଳେ ସଂସ୍କୃତ ଦେବନାଗରୀ ଅକ୍ଷରରେ ପଢ଼ିଲି ଓ ବୁଝିଲି ସେତେବେଳେ ଘୋଷିଥିବା ଚାଣକ୍ୟ ଶ୍ଳୋକଗୁଡ଼ିକ ସାଙ୍ଗ ପିଲାଙ୍କ ଆଗରେ ଗାଇଗଲି ସେମାନେ ତ ଆଚମ୍ଭିତ ହେଲେ । ମୋ ପାଣ୍ଡିତ୍ୟରେ ପଣ୍ଡିତ ସାର୍ ବି ଖୁସି ହୋଇଗଲେ । ମୋ ମନ ବି କୁଣ୍ଢେମୋଟ ହୋଇଗଲା ।

ସାହିତ୍ୟ ପଢ଼ାଉଥିବା ସାର୍ ଭୋଳି ପଣ୍ଡତଙ୍କ କଥା ମନେଅଛି - କାରଣ ତାଙ୍କ ଠାରୁ ପ୍ରଚଣ୍ଡ ଚଟକଣା ଦୁଇଟି ଖାଇଥିଲି । ଚତୁର୍ଥ ଶ୍ରେଣୀରେ ସାହିତ୍ୟ ବହି ପଢ଼ାଯାଉଥିବା 'ନବ ସାହିତ୍ୟ' ବହିରେ ଗୋଟିଏ କବିତାରେ 'ଅନିଳ' ଶବ୍ଦ ଥିଲା । 'ଅନିଳ' ଶବ୍ଦର ଅର୍ଥ ପବନ ବୋଲି ମୁଁ ଜାଣିଥିଲି - ସାର୍ ଜଣ ଜଣକରି ପଚାରି ଆସିଲାବେଳେ, ମୋ ପାଳିପଡ଼ିଲେ ମୁଁ ଉତ୍ତରଟା କହିଦେଇ ସାବାସୀ ନେବି ବୋଲି ଲୋଭରେ ପଢ଼ି ପଢ଼ିଶା ବେଞ୍ଚରେ ବସିଥିବା ମୀରା ପଚାରିବାରୁ 'ନିଆଁ' ବୋଲି କହିଦେଲି । ଗୋଟାଏ ବାଇଶିପଲିଆ ବିଧା ଭୋଳିସାର୍‌ଙ୍କ ଠାରୁ ପାଇଲା ପରେ ସେ କାନ୍ଦି କାନ୍ଦି ମୋ ନାଁ କହିଦେବାରୁ, ଭୋଳି ପଣ୍ଡିତେ ମୋତେ କଷି କଷି ଦୁଇ ଚଟକଣୀ ଲଗାଇଲେ । ମୁଁ କିନ୍ତୁ କାନ୍ଦି କାନ୍ଦି 'ଅନିଳ'ମାନେ ପବନ ବୋଲି ଠିକ୍ ଅର୍ଥ କହିଦେବାରୁ କାହିଁକି ମିଛରେ ତା ନାଁ କହିଲୁ ବୋଲି ସାର୍ ମୀରାକୁ ବେଞ୍ଚ ଉପରେ ଠିଆ କରାଇ ଦେଇଥିଲେ - ମୀରା ଏବେ ବୁଢ଼ୀ ହୋଇ କୋଉଠି ଥିବ କେଜାଣି ? ଭୋଳିପଣ୍ଡିତେ ନିଶ୍ଚୟ ନଥିବେ ।

ଆମେ ସବୁ ପଞ୍ଚମ ଶ୍ରେଣୀକୁ ଗଲାବେଳେ ୬ ମାସରେ କ୍ଲାସ ପ୍ରମୋସନ ଓ ପରୀକ୍ଷା ହୋଇ ଆମେ ସମସ୍ତେ ଷଷ୍ଠଶ୍ରେଣୀରେ ପଢ଼ିଲୁ । ସେଇଟା ୧୯୪୪ ମସିହା -

ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା ଏବଂ ଆଗରୁ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ପଢ଼ିଲା ଭଳି ପଢ଼ିବାକୁ ପଡ଼ିଲା ନାହିଁ । ମୋତେ ସେତେବେଳକୁ ନଅବର୍ଷ ବୟସ । ସମ୍ଭବତଃ ୧୫ ବର୍ଷ ବୟସ ନହୋଇଥିଲେ ମାଟ୍ରିକ ପରୀକ୍ଷା ଦେଇପାରିବ ନାହିଁ ବୋଲି ନିୟମ ଥିବାରୁ ମୋ ବୟସ ବର୍ଷେ ବଢ଼ାଇ ନାଁ ଲେଖାଯାଇଥିଲା ।

ଏମିତି ବୟସ ବଢ଼ାଇବା କମାଇ ଲେଖିବାର ଅବସ୍ଥା ଓ ପ୍ରବଣତା ଅନ୍ୟାନ୍ୟ ଦେଶରେ ଅଛି କି ନାହିଁ ମୋତେ ଜଣାନାହିଁ ଯଦିଓ ମୁଁ ଅନେକ ଦେଶ ବୁଲିବାର ଓ ଦେଖିବାର ସୁଯୋଗ ପାଇଛି କୁତ୍ରାପି ଏପରି ବିଚିତ୍ର ମିଥ୍ୟାଚାର ଦେଖିନାହିଁ ।

ଏହି ବଢ଼ାଇବା/କମାଇବା ବୟସର କଥା ସବୁଠାରୁ ପ୍ରବଳ ଭାବରେ ଅଛି ଆମ ଦେଶର ପାଠୁଆଙ୍କ ଭିତରେ - ସରକାରୀ ବା କୌଣସି ଚାକିରୀ କଲେ, ୩୦ ବର୍ଷ କିମ୍ବା ୩୫ ବର୍ଷ ବୟସରେ ଅବସର ନେବାର କଥା । ଏପଟେ ରେକର୍ଡ଼ ପତ୍ରରେ ବୟସ କମାଇ ଲେଖିଦେଲେ, ଚାକିରି କାଳ ଓ ଅବସର ସୀମା ଦୁଇବର୍ଷ କି ଦୁଇବର୍ଷ ଅଧିକ ମିଳିବ ତ ? ପ୍ରାତଃ ସ୍ମରଣୀୟ ଶିକ୍ଷାବିତ୍ ପ୍ରାକ୍ତନ ରାଷ୍ଟ୍ରପତି, ବରେଣ୍ୟ ଶିକ୍ଷକ ଯାହାଙ୍କର ଜନ୍ମ ତାରିଖ ଭାରତବର୍ଷରେ ଶିକ୍ଷକ ଦିବସ ଭାବରେ ପାଳିତ ହୋଇଥାଏ, ତାଙ୍କର ସୁପୁତ୍ର, ପ୍ରସିଦ୍ଧ ଐତିହାସିକ ଡକ୍‌ଟର ଆର୍. ଗୋପାଳ ଲେଖିଛନ୍ତି ଯେ ବାପାଙ୍କର ଜନ୍ମ ତାରିଖ ୫ ସେପ୍ଟେମ୍ବର ନୁହେଁ, ଯଦିଓ ସ୍କୁଲ କଲେଜରେ ତାହା ହିଁ ଦରଜ ହୋଇଛି । ଅଗଣନ ଗାଁ ଗହଳରେ ମଣିଷ ଏ ମିଥ୍ୟାଚାରର ଭାଗୀଦାର ନୁହନ୍ତି - ଆମେ ପାଠୁଆତିକ ଏ ପ୍ରଚଣ୍ଡ ମିଥ୍ୟାଚାରକୁ ବଳବତ୍ତର ରଖିବୁ ନିଜର ସୁବିଧା ପାଇଁ - ଏବେ ଜନ୍ମ ସମୟ/ ତାରିଖ ଡାକ୍ତରଖାନାରେ, ଜନ୍ମ ରେଜିଷ୍ଟରରେ ଲିପିବଦ୍ଧ ହେଉଥିବାରୁ ଆଉ ଏପରି ହୁଏତ ଭବିଷ୍ୟତରେ ହେବ ନାହିଁ !

ଚୌଧୁରୀ ବଜାରର ଗୌରୀଶଙ୍କର ପାର୍କର ଅନତିଦୂରରେ ଗୋଟିଏ ଭଡ଼ାଘରେ ଆମେ ରହୁଥିଲୁ । ଆମ ବସାଘର ଆଗରେ ଥିଲା ଭାରତମାତା ଗୁଡ଼ାଖୁ ଫ୍ୟାକ୍ଟରୀର କାରଖାନା - ଯେଉଁଠାରେ ପୋଚରାଗୁଡ଼ ସହିତ ତମାଖୁ ମିଶାଯାଇ, ପ୍ରକାଣ୍ଡ ପ୍ରକାଣ୍ଡ କଡ଼େଇରେ ସିଝାଯାଏ । ଗୌରୀଶଙ୍କର ପାର୍କ କଡ଼ରେ ରାସ୍ତାକୁ ମୁହଁକରି ଏବର ଟାକ୍ସିଷ୍ଟାଣ୍ଡ କଡ଼ରେ କବିବର ରାଧାନାଥ ରାୟଙ୍କର ଏକ ବସିଥିବା ପ୍ରତିମୂର୍ତ୍ତି ତା'ଉପରେ ମନ୍ଦିର ପରି ଘର ହୋଇ ରହିଛି । କବିବର ରାଧାନାଥ ରାୟଙ୍କର ଉକ୍ତ ସ୍ମୃତିସ୍ତମ୍ଭ/ ମନୁମେଣ୍ଟରେ ଥିବା ମୂର୍ତ୍ତିର ପୀଠର କାନ୍ଥରେ ମାର୍ବଲ ଫଳକଟିରେ ଉତ୍‌କୀର୍ଣ୍ଣ ହୋଇଛି କେଇପଦ ଗୀତ । ପ୍ରତ୍ୟେକ ଦିନ ସ୍କୁଲକୁ ସେଇବାଟ ଦେଇ ଚାଲି ଚାଲି ଗଲାବେଳେ ବିଶେଷ କରି

ଫେରିଲାବେଳେ, ମାର୍ବଲ ଫଳକରେ ଉତ୍‌କୀର୍ଣ୍ଣ ହୋଇଥିବା ରାଧାନାଥଙ୍କର କେଇପଦ ଲେଖା ପଢ଼ିପଢ଼ି ସେହିଦିନରୁ ତିନି ଧାଡ଼ି ମନେ ରହିଯାଇଥିଲା ।

"ସଂସାର ବିଷୟ ବିଷେ ହୋଇ ଜରଜର
ସଂସାରର ଲୀଳାଖେଳା ସରିଲା ଆମ୍ଭର
ସାରସ୍ୱତ୍ୱ ପାଶୋରିଣ ସାରିଦେଲୁଁ ଆୟୁ" ।

ଆଉ ସିଆଡ଼କୁ ମନେ ନଥିଲା, ବହୁପରେ ବଡ଼ ହୋଇ ଏମ୍.ଏ./ବି.ଏ. ଅନର୍ସ ପଢ଼ିଲାବେଳକୁ ଜାଣିଲି ଏ ପଦଗୁଡ଼ିକ କବିବରଙ୍କର 'ମହାଯାତ୍ରା' ମହାକାବ୍ୟର ଅଂଶ ବିଶେଷ ।

କାହିଁକି କେଜାଣି ବୟସ ଯେତିକି ଆଗେଇ ଆଗେଇ ଯାଉଛି, ଶେଷ ହୋଇ ହୋଇ ଚାଲୁଛି ଏ ପଦଗୁଡ଼ିକ ବେଶୀ ମନରେ ଅନୁରଣିତ ହେଉଛି - ବିଶେଷ ଭାବରେ "ସଂସାରର ଲୀଳା ଖେଳା ସରିଲା ଆମ୍ଭର" - ପଦଟି ଗୁରେଇ ତୁରେଇ ମନକୁ ଆସେ - ସଂସାର ବିଷୟ ବିଷେଁ ହୋଇ ଜର ଜର - ସଂସାରର ଲୀଳାଖେଳା ସରିଲା ଆମ୍ଭର - ପରିଣତ ବୟସରେ ଏ ପଦକ ଅଧିକରୁ ଅଧିକ ମନେପଡୁଛି ।

ମୋର ଷଷ୍ଠଶ୍ରେଣୀ ହେଲାବେଳକୁ ବାପା କଟକ, ବକ୍ସିବଜାର ପୋଷ୍ଟ ଅଫିସରୁ ପୁରୀ ହେଡ୍‌ପୋଷ୍ଟ ଅଫିସକୁ ପୋଷ୍ଟମାଷ୍ଟର ହୋଇ ବଦଳି ହୋଇ ଆସିଲେ । ପ୍ରଥମେ ଆସିଲାବେଳେ ବାପାଙ୍କ ସାଙ୍ଗରେ ବୋଉ, ଆଉ ସବୁ ଭାଇଭଉଣୀ ନଆସି କେବଳ ମୁଁ ପୁରୀ ଆସିଲି । ପୁରୀର ଡାକଘର ସେତେବେଳେ ଯେଉଁଠାରେ ଥିଲା, ଏବେ ବି ସେଇଠାରେ ଅଛି - ପୋଷ୍ଟ ଅଫିସର ଉପର ତାଲାରେ ପୋଷ୍ଟମାଷ୍ଟରଙ୍କ କ୍ୱାର୍ଟର । ବଡ଼ ବଡ଼ ବିଶାଳ ରୁମ ୪/୫ଟି । ଟେରାସ ବା ଛାତ ଉପରୁ ସିଧାସଳଖ ରାସ୍ତା ଲମ୍ବିଯାଇଛି ସମୁଦ୍ରକୂଳ ବାଟରେ ଏବଂ ସମୁଦ୍ରଟା ସେଠାରୁ ସିଧାସଳଖ ଦେଖାଯାଏ । ମୁଁ ତ କେବେ ଏଥିପୂର୍ବରୁ ସମୁଦ୍ର ଦେଖିନଥିଲି । ରାତିସାରା ସମୁଦ୍ରର ଗର୍ଜନ ଶୁଣି ଶୁଣି ସମୁଦ୍ରର ଚେହେରା ଦେଖିବା ପାଇଁ ପ୍ରଚଣ୍ଡ ଆକର୍ଷଣ ଥିଲା । ପରଦିନ ସକାଳୁ ଖାଇବା ପିଇବା ସାରି ବାପା ତଳକୁ ଡାକଘରକୁ କାମ ପାଇଁ ଓହ୍ଲାଇଗଲା ପରେ, କିଛି ସମୟ ପାଇଁ ମୁଁ ସମୁଦ୍ର ଆଡ଼କୁ ଅନାଇ ଅନାଇ ରାସ୍ତାରେ ରାସ୍ତାରେ ସମୁଦ୍ର ଆଡ଼କୁ ଚାଲିଲି ଏବଂ ସମୁଦ୍ର କୂଳରେ ପହଞ୍ଚିଲା ପରେ, ପାଦ ଛୁଇଁ ଛୁଇଁ ଯାଉଥିବା ଢ଼େଉ କଡ଼େ କଡ଼େ ସାମୁକା, ଛୋଟ ଶଙ୍ଖ, କଉଡ଼ି ଗୋଟାଇ ଗୋଟାଇ ଆଗକୁ ଚାଲିଲି - ପରେ ଜାଣିଲି ମୁଁ ସ୍ୱର୍ଗଦ୍ୱାର ଆଡ଼କୁ ଯାଉଥିଲି ସମୁଦ୍ର କୂଳେ । କେତେ ସମୟଧରି ସମୁଦ୍ର ମୋତେ ବିହ୍ୱଳିତ କରିରଖିଥିଲା ମନେ ନାହିଁ

- ଘରୁ ଏକାକୀ ଚାଲି ଆସିବା ବେଳଠାରୁ ବୋଧହୁଏ ଦୁଇ/ ତିନି ଘଣ୍ଟା ହୋଇ ଯାଇଥିଲା । ହଠାତ୍ ଦେଖିଲି, ସମୁଦ୍ର କୂଳରେ ମୁଁ ଯେଉଁଠି ଓଦା ବାଲି ଉପରେ ବସି ଶାମୁକା/କଉଡ଼ି ଗୋଟାଉଛି, ସେଠି ମୋତେ ଘେରି ପୋଷ୍ଟଅଫିସର ଅଧାଅଧି ଲୋକ ଏବଂ ବାପା ତଥା ତାଙ୍କ ସାଙ୍ଗସାଥୀମାନେ ଠିଆ ହୋଇଛନ୍ତି । ପୋଲିସ ବି ବୋଧେ ସାଙ୍ଗରେ ଆଣିଛନ୍ତି । ମୁଁ ହତବାକ୍, ବିସ୍ମୟବିମୂଢ଼ ହୋଇ ସମସ୍ତଙ୍କୁ ଅନାଇ ଉଠି ଠିଆହେଲି ଏବଂ ଭେଁ କିନା କାନ୍ଦି ପକାଇଲି । ମୋତେ ବୁଝାବୁଝାକରି ସମସ୍ତେ ଫେରାଇ ଆଣିଲେ ଏବଂ ଗାଳି ଆଉ ଖାଇଲି ନାହିଁ ବାପାଙ୍କ ଠାରୁ । ଜଣେ ଲୋକ ଜଗୁଆଳୀ ହୋଇ ରହିଲା ।

ପୁରୀ ଜିଲ୍ଲା ସ୍କୁଲରେ ଷଷ୍ଠର ଅର୍ଦ୍ଧାଂଶ, ସପ୍ତମ ଏବଂ ଅଷ୍ଟମ ଶ୍ରେଣୀ ପଢ଼ିବା ଭିତରେ ସବୁଠାରୁ ସ୍ମରଣୀୟ ଘଟଣା ହେଲା ୧୯୪୭ ଅଗଷ୍ଟ ୧୫ ରେ ଦେଶର ସ୍ୱାଧୀନତା ପ୍ରାପ୍ତି । ୧୯୪୮ ଜାନୁୟାରୀ ୩୦ ତାରିଖ ଦିନର ସବୁଠାରୁ ଦୁଃଖଦ ଘଟଣା, ଜାତିର ପିତା ମହାତ୍ମାଗାନ୍ଧିଙ୍କର ନିଧନ । ଏବେ ବି ସେଦିନର ଘଟଣା ଏବଂ ତା'ର ପରଦିନର ଘଟଣା ମନେପଡ଼ିଯାଉଛି । ସାରା ପୁରୀ ସହର ନିସ୍ତବ୍ଧ ଅନ୍ଧକାର ହୋଇଗଲା - ସମସ୍ତେ ନୀରବ ହୋଇଗଲେ ଯେମିତି - ସମସ୍ତଙ୍କ ଘରେ ଘରେ ଯେପରି କାହାରି ଜଣକର ଦେହାନ୍ତ ହୋଇଯାଇଛି ! ସମସ୍ତେ ଶୋକପାଳନ କରୁଛନ୍ତି ! ସେତେବେଳେ ଟେଲିଭିଜନ ହୋଇନଥାଏ । ରେଡ଼ିଓ ହିଁ ଏକମାତ୍ର ତୁରନ୍ତ ସମ୍ବାଦ ଜାଣିବା ମାଧ୍ୟମ ରେଡିଓ ପ୍ରାୟ ଦିନ ସାରା କାନ୍ଦୁଥାଏ । ବିଭିନ୍ନ ବିଶିଷ୍ଟ ବ୍ୟକ୍ତି ଶୋକବାର୍ତ୍ତା, ମହାତ୍ମାଗାନ୍ଧୀଙ୍କ ଜୀବନୀର ଅଂଶବିଶେଷ କହୁଥାନ୍ତି ।

ପୁରୀରେ ପିଲାଦିନର ସେ ସବୁ ସ୍ମୃତି ଅପାଶୋରା ହୋଇ ରହିଛି । ବିଶେଷକରି ସମୁଦ୍ର ଏବଂ ଜଗନ୍ନାଥ ମନ୍ଦିର ଯୋଗୁଁ । ପିଲାଦିନେ ପୁରୀ ରହଣୀ ବେଳେ, ଦିନେ ସ୍କୁଲ ହତା ଭିତରେ ମୋ ବଡ଼ଭାଇଙ୍କ ଶ୍ରେଣୀରେ ଜଣେ ଛାତ୍ରଙ୍କ ଧକ୍କାରେ ସେତେବେଳେ ପର୍ଯ୍ୟନ୍ତ ସ୍କୁଲ ବାହାର ବାରଣ୍ଡାରେ ମୋଟାମୋଟା କାନ୍ଥ ଦିଆଯାଇ କରାଯାଇଥିବା ବ୍ୟାଫଲ୍‌ୱାଲ୍‌ରେ ମୁହଁ ଧକ୍କା ଖାଇ ନାକ ଫାଟିଗଲା ଏବଂ ରକ୍ତାକ୍ତ ହୋଇ ମୁଁ ବେହୋସ ହୋଇଗଲି । ହୋସ ଆସିଲାବେଳକୁ ଦେଖିଲି ମୁଁ ଗୋଟିଏ କ୍ଲାସରୁମ୍ କରିଡ଼ରରେ ପଡ଼ିଛି ଏବଂ ମୋତେ ଘେରି ସବୁ ସାର୍‌ମାନେ, ବାପା ଏବଂ ଡାକଘର ଲୋକେ ଏପରିକି ପୋଷ୍ଟମ୍ୟାନ୍ ପୋଷାକ ପିନ୍ଧା ଲୋକେ ମଧ୍ୟ ଠିଆ ହୋଇଛନ୍ତି - ସ୍କୁଲର ଡାକ୍ତରସାର୍ (ସେତେବେଳେ ନମସ୍ୟ ଡାକ୍ତର ସାର୍ ସରୋଜକାନ୍ତ କାନୁନ୍‌ଗୋ ଯିଏ ପରବର୍ତ୍ତୀ କାଳରେ ବିଧାୟକ ହେଲେ) ମୋତେ ଧରି ମୁହଁରୁ ରକ୍ତ ପୋଛି ଦେଉଥାନ୍ତି ଏବଂ ନାକ ମୁଣ୍ଡରେ ବରଫ ଲଦୁଥାଆନ୍ତି - ଅନ୍ୟମାନେ ମୋତେ ଘେରି ଛିଡ଼ା ହୋଇଥାନ୍ତି । ତା'ପରେ

ଡାକ୍ତରଖାନା, ଇଞ୍ଜେକ୍ସନ୍, ଔଷଧପତ୍ର, କିଛିଦିନ ପାଇଁ ଘରେ ଶୋଇବା ଇତ୍ୟାଦି । ମୋର ଧାରଣାହେଲା ନାକଟା ସେ ମାଡ଼ରେ ଯେମିତି ଚେପ୍‌ଟା ହୋଇଯାଇଛି - କାରଣ ବହୁଦିନ ଧରି ଫୁଲିଥିଲା । ତା'ପରେ ନାକଫଟା ରୋଗରୁ ଉଠି, ସ୍କୁଲଯିବା ପରେ ଖେଳପଡ଼ିଆରେ ଦିନେ ବଲ୍‌କୁ ମାରୁ ମାରୁ ବାଁ ଗୋଡ଼ଟା ମୋଡ଼ି ହୋଇଗଲା ଏବଂ ଫ୍ରାକଚର୍ ହୋଇଗଲା । ସେଥିରେ ବିତିଲା ମାସେ ଦେଢ଼ମାସ । ପରେ ପରେ ମ୍ୟାଲେରିଆ ଜରରେ ପଡ଼ି, ଭୋଗିଲି ୨/୩ ମାସ - ପେଟରେ ପ୍ଳିହା ହୋଇଗଲା । ବୋଉ, ବାପାଙ୍କର ଚାଲିଲା ଜାତକଦେଖା, ହାତଦେଖା, ବାବାଜୀମାନଙ୍କ ପାଖକୁ ନେଇ ମୁଣ୍ଡିଆ ମରାଇବା ଇତ୍ୟାଦି ରୋଗମୁକ୍ତ କରିବା ପାଇଁ ।

ପୁରୀ ଜିଲ୍ଲା ସ୍କୁଲର ମନେଥିବା ସାଙ୍ଗମାନଙ୍କ ଭିତରୁ ବିବେକାନନ୍ଦ ଜେନା ଆଲାଏଡ଼ ପାଇ ଉଚ୍ଚପଦରେ ରହିଥିଲା, ଅକସ୍ମାତ୍ ତା'ର ଦେହାନ୍ତ ହୋଇଗଲା । ଭାରୀ ଭଲ ଆଧୁନିକ କବିତା ଲେଖୁଥିଲା ସେ । ଭାସ୍କର ରଥ, ଗଙ୍ଗାଧର ମିଶ୍ର, ମହେନ୍ଦ୍ର ମିଶ୍ର (ଲାର୍କବୁକ୍ସ ମାଲିକ) ଇତ୍ୟାଦି, ତାଙ୍କ ସହିତ ଓ୍ୱାହାବ୍ ଓ ରେମଣ୍ଡ ।

ପୁରୀ ସମୁଦ୍ରର ଏକ ଅଲୌକିକ ଆକର୍ଷଣ ରହିଛି । ପ୍ରାୟ ସବୁଦିନେ ସ୍କୁଲରୁ ଫେରି, ଛୁଟିଦିନ ମାନଙ୍କରେ ବି, ସନ୍ଧ୍ୟାପୂର୍ବରୁ ସମୁଦ୍ର କୂଳରେ ବୁଲି ଆସିବା ନୈମିତ୍ତିକ କାମ ଥିଲା । ସମୁଦ୍ରକୁ ଏବଂ ତା'ର ଦିଗନ୍ତ ବିସ୍ତାରୀ ବିଶାଳତାକୁ ନିର୍ନିମେଷ ଆଖିରେ ଅନାଇ ବସିଲେ, ନିଜକୁ ଭାରୀ ଛୋଟ ମନେହୁଏ - ବହୁଦିନ ପରେ ମୁଁ ଯୁବକ ହେଲାପରେ, ଦିନେ ଦିଲ୍ଲୀ ପାର୍ଟି କେନ୍ଦ୍ରର ଏକ ଚିଠିନେଇ, ପୁରୀ ବି.ଏନ୍.ଆର୍ ହୋଟେଲ୍‌ରେ ତତ୍‌କାଳରେ ରହୁଥିବା ବିଶ୍ୱବିଖ୍ୟାତ ବୈଜ୍ଞାନିକ ଏବଂ କମ୍ୟୁନିଷ୍ଟ ଜେ.ବି.ଏସ୍. ହାଲ୍‌ଡେନ୍‌ଙ୍କୁ ଦେବାର ଦାୟୀତ୍ୱ ମୋତେ ଦିଆଯାଇଥିଲା । ଦିଲ୍ଲୀରୁ ବି.ଏନ୍.ଆର ହୋଟେଲ ସମ୍ମୁଖସ୍ଥ ସମୁଦ୍ର ବେଳାରେ ପ୍ରଫେସର ହାଲ୍‌ଡେନ୍ ବସି ସମୁଦ୍ରକୁ ଚାହିଁ ରହିଥିଲେ । ଅଭିବାଦନ ଜଣାଇ, ମୋର ପରିଚୟ ଦେଇ ଚିଠିଟି ଦେଲା ପରେ ଜେ.ବି.ଏସ୍. (ଏଇନାଁରେ ସେ ବିଶ୍ୱବିଖ୍ୟାତ) କହିଲେ, ୟଙ୍ଗମ୍ୟାନ୍ ବସିଯାଅ - ତମେ ଦୀର୍ଘ ସମୟ ଧରି ସମୁଦ୍ରକୁ କେବେ ଚାହିଁ ରହିଛ ? ମୁଁ 'ହଁ' କହିବାରୁ - ପଚାରିଲେ, "ତମକୁ ସମୁଦ୍ରକୁ ଅନାଇ ରହିଲେ ସମୁଦ୍ର ସହିତ ଏକାତ୍ମ ଲାଗେ ନାହିଁ ? ଲାଗେ ନାହିଁ, ତମେ ଯେମିତି ସମୁଦ୍ର ସହିତ ଏକାତ୍ମ ତା'ର ଏକ ଅଂଗ ?" ମୋତେ ସେତେବେଳ ଲାଗିଲା, ବେଳେବେଳେ ସମୁଦ୍ରକୁ ଅନେଇ ଅନେଇ ଏଭଳି ପ୍ରତୀତ ହୋଇଥାଏ - ଯେମିତି ମୁଁ ସେଥିରୁ ବାହାରିଛି । ହାଲ୍‌ଡେ଼ନ୍ କହିଲେ, ଥଓରୀ ଅଫ ଇଭୋଲ୍ୟୁସନ ଅନୁସାରେ ମଣିଷ ମଣିଷ ହେବା ପୂର୍ବରୁ ଏକ ସାମୁଦ୍ରିକ ଜଳଚର ଜୀବ ଥିଲା -

କ୍ରମବିବର୍ତ୍ତନରେ ସେଇ ସମୁଦ୍ରର ଅତଳଗହ୍ୱର ଭିତରୁ ବାହାରି ଆସିଥିବା ଜୀବଟି ମଣିଷରେ ପରିଣତ ହୋଇଛି - ମୁଁ, ତମେ, ଆମେ ସମସ୍ତେ ତା'ରି ଅଂଶବିଶେଷ । ଏଇଥିପାଇଁ ସମୁଦ୍ରକୁ ଦୀର୍ଘ ସମୟଧରି ଚାହିଁଲେ, ତମେ ସମୁଦ୍ର ଭିତରୁ ବାହାରି ଆସିଲାପରି ବା ସେଠାକାର ଜୀବ ବୋଲି ଭାବିବାକୁ ବାଧ୍ୟ ! - ବିଶ୍ୱବିଖ୍ୟାତ ବୈଜ୍ଞାନିକ ଜେ.ବି.ଏସ୍. ହାଲଡେନ୍ ସମ୍ଭବତଃ ପ୍ରାଣୀ ବିଜ୍ଞାନୀ । ତାଙ୍କ କଥା ମତେ ଅଭିଭୂତ କଲା । ମନେପଡ଼ିଲା, ପୁରୀ ଜିଲ୍ଲାସ୍କୁଲର ଭୂଗୋଳ ସାର୍ ନଟବର ମହାନ୍ତି, ଯାହାଙ୍କର ପ୍ରବେଶିକା ଭୂଗୋଳ ବହି ପିଲାମାନେ ପଢ଼ନ୍ତି । ହସାଇ ହସାଇ ସେ ପଢ଼ାନ୍ତି, - "ତୁ ଗୋଟାଏ ଜେଲିଫିସ ଥିଲୁ - ଜାଣିଚୁ - ଏମିତି ବଢ଼ି ବଢ଼ି ମାଙ୍କଡ଼ ହେଲୁ - ତା'ପରେ ଏମିତି ମଣିଷ ଭଳି ହୋଇଛୁ - ଜାଣିଚୁ ? ନିଜକୁ ସେଇ ଜେଲିଫିସ ବୋଲି ମନେକର !"

ଜେ.ବି.ଏସ୍‌ଙ୍କୁ ପ୍ରଣାମ ଜଣାଇ ପ୍ରାୟାନ୍ଧକାର ସନ୍ଧ୍ୟାରେ ସମୁଦ୍ରର ବିଶାଳତା ଅନ୍ଧକାରରେ ଲୁଚିଗଲା ବେଳେ ଫେରିଆସିଥିଲି ସେଦିନ । ସମୁଦ୍ରକୂଳକୁ ଏବେ ମଧ୍ୟ ଅକାଳେ ସକାଳେ ଗଲେ ସେଇକଥା ମୋ ମନରେ ଅନୁରଣିତ ହୁଏ - ମୁଁ ଏଇ ସମୁଦ୍ର ଭିତରୁ ବାହାରିଛି - ସମଗ୍ର ମଣିଷ ସମାଜ ବାହାରିଛି - ସମୁଦ୍ର ବେଳାଭୂମିରେ ସମୁଦ୍ର ଭିତରୁ ଲହଡ଼ିରେ ଭାସିଆସି ତଳେ ଗଡୁଥିବା ଜେଲିଫିସଗୁଡ଼ିକ କେବେ ଆମର ପୂର୍ବଜ ଥିଲେ । ମଣିଷ କେତେ ନଗଣ୍ୟ ! ହୀନ ! କ୍ଷୁଦ୍ର !

ପୁରୀର ତଥା ଓଡ଼ିଶାର ସୁପ୍ରସିଦ୍ଧ ଜଗନ୍ନାଥ ଗବେଷକ ପଣ୍ଡିତ ସଦାଶିବ ରଥ ଶର୍ମାଙ୍କୁ ଗବେଷକ ଭାବରେ ନୁହେଁ, ବୋଉର ଧରମପୁଅ ଏବଂ ପ୍ରାୟ ଅଧିକାଂଶ ଦିନ ଘରକୁ ବୁଲି ଆସି କେତେବେଳେ ପ୍ରସାଦ କେବେବେଳେ ଆଉ କିଛି ଆଣି ଘରକୁ ଆସୁଥିବା ଜଣେ ପାରିବାରିକ ବ୍ୟକ୍ତି ଭାବରେ ଜାଣିଛି - ତାଙ୍କୁ ଡାକେ ରଥ ଭାଇନା - ସିଏ ବୋଉ ଆଗରେ ଜଗନ୍ନାଥ ମନ୍ଦିର, ଗୁଣ୍ଡିଚା ଘର, ବଡ଼ସିଂହାର ଧୂପ, ଜଗନ୍ନାଥଙ୍କ ଆଗରେ ମାହାରିନାଚ, କଳ୍ପବଟ ମୂଳରେ ଥିବା ଜଗନ୍ନାଥଙ୍କ ଲାଇବ୍ରେରୀ, ଜଗନ୍ନାଥ ମନ୍ଦିରର ଗଚ୍ଛିତ ଅପ୍ରମିତ ସୁନା ଯାହାର ଏକ ପ୍ରକ୍ଷିପ୍ତ ଅଂଶ ମାତ୍ର ବାହାରକୁ ଆସି ବ୍ୟବହାର ହୋଇଥାଏ ସୁନାବେଶ ଆଦିରେ, ଜଗନ୍ନାଥଙ୍କର ସୁନା, ହୀରା, ନୀଳା ସମ୍ପତ୍ତିକୁ କିପରି ସର୍ପରାଜ ବାସୁକୀ ଜଗିଥାନ୍ତି - ଜଗମୋହନ ଡାହାଣପଟେ ଭଣ୍ଡାର ଘର ତଳକୁ ତଳକୁ ରହିଛି - ସେଥିରୁତ ତିନୋଟି ମାତ୍ର ବଖରା ପର୍ଯ୍ୟନ୍ତ ବ୍ୟବହୃତ ହୁଏ - ବାକୀ କେହି ଦେଖିନାହାନ୍ତି - ଆଉ ତଳକୁ ଯିବାକୁ ଉଦ୍ୟମ କଲେ ସୁଁ ସୁଁ ଗର୍ଜନ ଶୁଭେ, ନବମୀର ସନ୍ଧିପୂଜା ବେଳେ କିପରି ମେଘନାଥ ପାଚିରୀର ଦକ୍ଷିଣପଟର କିଛି ଅଂଶ ଭଙ୍ଗାଯାଇ ସେବାଟେ ମେଣ୍ଢାମାଂସ ଅଣାଯାଇ ମା' ବିମଳାଙ୍କୁ ପ୍ରସାଦ ଦିଆଯାଏ ଏବଂ ତାହା

ଶ୍ୟାମାକାଳୀ/ ଆଦ୍ୟାଶକ୍ତିଙ୍କର ପ୍ରତିରୂପ ଜଗନ୍ନାଥଙ୍କୁ ମଧ୍ୟ ଭୋଗ ଲଗାଯାଏ - ଲକ୍ଷ୍ମୀଙ୍କ ସହିତ ସେଦିନ ଜଗନ୍ନାଥଙ୍କର ସମ୍ପର୍କ ରହେନାହିଁ - କାରଣ ଲକ୍ଷ୍ମୀ ପରମ ବୈଷ୍ଣବୀ ଇତ୍ୟାଦି ନାନା ବୈଚିତ୍ର୍ୟମୟ କାହାଣୀ କହିଲାବେଳେ ମୁଁ ସେ ଅଲୌକିକ, କିଛି ଅତିଭୌତିକତା ମିଶା କାହାଣୀକୁ ଉଦଗ୍ର ଆବେଗର ଶୁଣିଶୁଣି, ଜଗନ୍ନାଥଙ୍କ ସମ୍ପର୍କରେ ଜାଣିବା ପାଇଁ ପ୍ରଚଣ୍ଡ ଆଗ୍ରହାନ୍ୱିତ ହୋଇଛି, - ଜାଣିଛି - ପଢ଼ିଛି - ଜଗନ୍ନାଥଙ୍କ ସମ୍ପର୍କରେ ଆଉ ଅଧିକ ଜାଣିବାକୁ ରଥ ଭାଇନାଙ୍କୁ ପଚାରିଲେ, ସିଏ ମୋତେ କହିବେ, "ତୋର ଏତେ ଆଗ୍ରହ କାହିଁକି କିରେ ?" ତୁ ତ "କୋକିଲି ସର୍ବତୀର୍ଥାନୀ - ଚାନ୍ଦି ପାତକନାଶିନୀ", - ଦଳର - ଅର୍ଥାତ୍ ସମୁଦ୍ରର କୋକିଲି ମାଛ, ଚାନ୍ଦି ମାଛର ପ୍ରିୟ - ଜଗନ୍ନାଥଙ୍କୁ କାହିଁକି ଜାଣିବାକୁ ଚାହୁଁଛି ? ଏବେ ବି ତାଙ୍କର ସେ ରୂପ ପ୍ରଚଣ୍ଡ କଳାକାଳିଆ ଚେହେରା ମୁଣ୍ଡରେ ବିରାଟ ଏକ ଚନ୍ଦନ ବିନ୍ଦୁ, ଛୋଟଛୋଟ ବାଳ, ଚୁଟିଟିଏ, ଖାଲିଦେହରେ ଦୋସଡ଼ାଟିଏ ପଡ଼ିଛି - ହସ ହସ ମୁହଁ ଆଖି ଆଗରେ ଭାସି ଯାଉଛି - ସେତେବେଳେ ସେ ମହାବିଦ୍ୱାନ୍ - ଗବେଷକ ଭାବରେ ଗଣା ହୋଇନଥିଲେ - ତାଙ୍କର ମଧ୍ୟ ଉନ୍ମେଷ ସମୟ ।

ଜଗନ୍ନାଥଙ୍କ ସମ୍ପର୍କରେ ବହୁ ଅଲୌକିକ କାହାଣୀ ପ୍ରଚାରିତ ହୋଇଯାଏ - ସେଥିରୁ କେତେ ମିଛ, ପଣ୍ଡା, ପଢ଼ିଆରୀ, ଯାତ୍ରୀମାନଙ୍କୁ ଆକର୍ଷଣ କରିବା ପାଇଁ ପ୍ରଚାରିତ - କେତେ ପୁଣି ସତ୍ୟ - ଯାହାକୁ ଜଗନ୍ନାଥଙ୍କ ମହିମା ବୋଲି କୁହାଯାଏ । ଅସଂଖ୍ୟ, ଅଗଣନ ଜଣାଣ, ଭଜନ, କୀର୍ତ୍ତନ ଓଡ଼ିଆ ଭାଷାରେ ଲେଖାଯାଇଛି - ମହିମା ବର୍ଣ୍ଣନା ସାଙ୍ଗକୁ ଜଣାଣକାରୀ ଭକ୍ତକବିର ଅଭିମାନ, ଛଳୋକ୍ତି, କପଟ କ୍ରୋଧ ମଧ୍ୟ ପ୍ରକାଶ ପାଇଛି । ଏକରେ ତ ପିଲାଦିନୁ ପୁରାଣ ସବୁ ପଢ଼ିଥିଲି - ପୁରୀକୁ ଆସିଲା ପରେ ଜଗନ୍ନାଥ ମନ୍ଦିରର ସ୍ୱତନ୍ତ୍ର ଆକର୍ଷଣ, ରଥଭାଇନାଙ୍କ ବକ୍ତବ୍ୟ ଶୁଣିଶୁଣି ପ୍ରାୟ ପ୍ରତ୍ୟେକ ଦିନ ସଞ୍ଜବେଳର ପାଠପଢ଼ା ସାରି, ବାପା ଲୁଗାପଟା ବଦଳି ଜଗନ୍ନାଥ ମନ୍ଦିରକୁ ଯିବାବେଳେ ତାଙ୍କ ସାଙ୍ଗ ଧରି ଚାଲେ - ପୁରୀରେ ରହିବା ଦିନତକ ବାପା ପ୍ରତ୍ୟହ ସଞ୍ଜପରେ ଜଗନ୍ନାଥ ମନ୍ଦିରକୁ ଯାଆନ୍ତି - କେତେବେଳେ ସାଙ୍ଗରେ ତାଙ୍କ ପୋଷ୍ଟଅଫିସର କେହି କର୍ମଚାରୀ ସାଙ୍ଗରେ ଯାଆନ୍ତି - ମାତ୍ର ମୁଁ ପ୍ରତି ସନ୍ଧ୍ୟାରେ ତାଙ୍କ ସାଙ୍ଗ ଛାଡ଼େନାହିଁ - ପ୍ରଥମ ଆକର୍ଷଣ ଜଗନ୍ନାଥ ମନ୍ଦିର ବିଷୟରେ, ଜଗନ୍ନାଥ ବିଷୟରେ ଅଧିକରୁ ଅଧିକ ଜାଣିବା, ଦ୍ୱିତୀୟରେ ମନ୍ଦିର ବେଢ଼ା ପରିକ୍ରମା ସାରି, ଲକ୍ଷ୍ମୀ ମନ୍ଦିରରେ ସନ୍ଧ୍ୟା ପୂଜା ସାରି ଫେରିବା ବାଟରେ, ବାପା ଟଙ୍କାଏ ଦୁଇଟଙ୍କାର ଶୁଖିଲି ଭୋଗ ପାଚିଆ ଆଣି ଧରାଇ ଦିଅନ୍ତି - ପୋଷ୍ଟମାଷ୍ଟର ବାବୁଙ୍କର ବେଶ ସମ୍ମାନ ଓ ଖ୍ୟାତି ଯୋଗୁଁ ସାଧାରଣତଃ ଯେତିକି ଭୋଗ ଦେବାକଥା, ତା'ଠାରୁ ଅଧିକ ମିଳେ । ଖାଇ ଖାଇ ଫେରେ - ବାକୀ କିଛି ରଖିଥାଏ, ବଡ଼ଭାଇ

ଭଉଣୀ ସାନ ଭଉଣୀ ଲତାକୁ ଦିଏ । ପୁରୀ ମନ୍ଦିରର ରୋଷେଇଘର, ଅଭଡ଼ା ରାନ୍ଧିବା ପଦ୍ଧତି, ଯାହାକୁ ନଉରୀ-ସଉରୀ ବିଧିରେ ହାଣ୍ଡି ଉପରେ ହାଣ୍ଡି ଥୁଆ ହୋଇ, ବାମ୍ଫରେ ରନ୍ଧାଯାଏ ବୋଲି ପ୍ରଚରିତ - ସେଥିରେ ପ୍ରଚର ଅଧିକ ; କାରଣ ବଡ଼ ବଡ଼ ବାଇହାଣ୍ଡିରେ ଅନ୍ନ ରନ୍ଧାଯାଇ ବଡ଼ବଡ଼ ହତାରେ ହାଣ୍ଡି କଣା କରିଦେଲେ, ପେଜଗୁଡ଼ାକ ବାହାରିଯାଏ - ଯାଇ ପେଜନଳାରେ ପଡ଼େ । ସେଥିରୁ ଅନ୍ନ କାଢ଼ି ଛୋଟ ଛୋଟ କୁଡୁଆରେ ପୁରାଇଦେଇ, ସେ କୁଡ଼ିଆରୁ କଳା ବୋଲି, ଉପରକୁ ଉପରକୁ ଥୁଆହୋଇ ଯାଏ ବୋଲି ସମସ୍ତେ କହନ୍ତି - କିନ୍ତୁ ତାହା ଭାରୀ ସୁଆଦିଆ ଏବଂ ସବୁଠାରୁ ବଡ଼ ହୋଟେଲ, ଯାହା ସବୁଦିନେ ଚାଳିଶି/ ପଚାଶ ହଜାର ମଣିଷଙ୍କୁ ଖାଦ୍ୟ ଖୁଆଇପାରେ । ସବୁଠାରୁ ବଡ଼ କଥା ହେଲା, ଜଗନ୍ନାଥ ଭୟଙ୍କର ସ୍ୱଦେଶୀ ଏବଂ ଏ ପର୍ଯ୍ୟନ୍ତ ତାଙ୍କ ପ୍ରସାଦ ଭୋଗରେ, ବିଲାତିଆଳୁ, ବିଲାତି ବାଇଗଣ ଆଦି ପଡ଼େନାହିଁ - ପ୍ୟାକେଟ୍ ମସଲା ପଡ଼େନାହିଁ - ଶୁଖିଲି ଭୋଗରେ ଚିନି ପଡ଼େନାହିଁ - ନବାତ /କନ୍ଦ/ଗୁଡ଼ ବ୍ୟବହାର କରାଯାଏ । ଜଗନ୍ନାଥଙ୍କ ଲୁଗାପଟା ସ୍ୱଦେଶୀ ହାତବୁଣା, ମଠା/ଟସର/ପାଟ ଆଦିର । ମିଲ୍‌କପଡ଼ା ଏଯାଏ ଜଗନ୍ନାଥ ମନ୍ଦିରରେ ପଶି ନାହିଁ - ପତାକାରେ ବ୍ୟବହାର ହୋଇପାରୁଥାଏ - ଜଣାନାହିଁ !

ପୁରୀ ପୋଷ୍ଟଅଫିସକୁ ଲାଗି ରୋଡ଼ ସେ ପଟକୁ ପୁରୀର ଲୋକସମ୍ପର୍କ ବିଭାଗର ପାଠାଗାର । ଘରକୁ ଲାଗିଥିବାରୁ ସେଠାରେ ଥିବା ବହିସବୁ ଯାହା ପିଲାଦିନେ ଘରେ ପଢ଼ିବା ନିଷିଦ୍ଧ ନହେଲେ ମଧ୍ୟ ବାରଣ ଥିଲା, ଉପନ୍ୟାସ/ଡିଟେକ୍‌ଟିଭ ଉପନ୍ୟାସ, କାହାଣୀ ଇତ୍ୟାଦି ପଢ଼ିବାର ସୁଯୋଗ ପାଇଥିଲି - ଘରକୁ ଆଣି ପଢ଼ିଲେ, ବୋଉ କହିବ, “ପାଠପଢ଼ା ଛାଡ଼ି ଏସବୁ ନଭେଲ୍ ପଢ଼ାହଉଛି ?” ଲାଇବ୍ରେରୀରୁ ପଢ଼ିବା ସହଜ । ସେଇଠାରେ ଥିବା ବ୍ୟାଟେରୀ ଚାଳିତ ରେଡ଼ିଓରେ ମହାତ୍ମାଗାନ୍ଧିଙ୍କ ନିଧନ ଆଦି ସମ୍ବାଦ ଶୁଣିଥିଲି । ପୋଷ୍ଟାଲ କଲୋନୀରେ ଥିବା ଡାକଘର ବାବୁମାନଙ୍କର ମୋ ସମବୟସୀ ପୁଅ, ଝିଅଙ୍କ ସାଙ୍ଗରେ ମିଶିବା, ଖେଳିବା, ଶୈଶବରୁ କୈଶୋରର ପ୍ରବେଶ ପଥରେ ନାନା କର୍ମ, ଅପକର୍ମ ଜାଣିବା ସମ୍ଭବହେଲା ସେଇ ପୁରୀରେ । ମୋ ସଙ୍ଗରେ ଆଗରୁ ଲେଖିଛି, ରେମଣ୍ଡ ବୋଲି ଖ୍ରୀଷ୍ଟିଆନ ପୁଅଟିଏ ଓ ଓ୍ୱାହାବ ବୋଲି ମୁସଲମାନ ପଢୁଥିଲେ । ରେମଣ୍ଡ ପରବର୍ତ୍ତୀକାଳରେ ଶୁଣିଲି ରେମନ ସରକସରେ ମିଶିଥିଲା । ସେତେବେଳେ ସିନେମାରେ ଷ୍ଟଣ୍ଟ ବା ମାରଧର ସିନେମାରେ ନଦିରା ବୋଲି ହିରୋଇନ୍, ଭଗବାନ, ବାବୁରାଓ ପହେଲମାନ ଆଦିଙ୍କର ଷ୍ଟଣ୍ଟ ଜୋରସେ ଚାଲୁଥିଲା - ସେ ଦୁହିଁଙ୍କ ସାଙ୍ଗରେ ପୁରୀ ରାମଚଣ୍ଡୀ ସାହୀ ଛକରେ ଥିବା ଲକ୍ଷ୍ମୀ ଟକିଜରେ (ସେତେବେଳେ ଚାଳଘର ଥିଲା - ବାଲ୍‌କନି ତା'ର ନଥିଲା), ଖେଳଛୁଟିରେ ଯାଇ ଚାରିଅଣା ଟିକଟରେ ଦୋରଙ୍ଗିଆ ଡାକୁ, ଯେଉଁଥିରେ

ଟିଂ-ହେ ବୋଲି ହିରୋଇନ୍ ଡେଇଁପଡ଼େ, ସେ ସିନେମା ସବୁ ଦେଖି, ମନରେ ଧାରଣା ହେଲା ମୁଁ ବି ସେମିତି ହୀରୋ ହୋଇପାରିବି - ସିନେମାର ନାୟକ ଯେପରି ଅପରାଜେୟ କୌଣସି ଶକ୍ତି ତାକୁ ପରାଭୂତ କରିପାରିବନାହିଁ, ମୁଁ ବି ସେମିତି ଶକ୍ତିଶାଳୀ । ରେମଣ୍ଡ ଓ ଓ୍ୱାହାବ ମୋତେ ଏଥିରେ ହିମ୍ମତ ଦିଅନ୍ତି - ଦିନେ ଖେଳପଡ଼ିଆରେ ଜଣେ ସାଙ୍ଗକୁ ସିନେମା ଷ୍ଟାଇଲ୍‌ରେ ମୁଥ ମାରିଦେଲା ପରେ ସମସ୍ତେ ମିଶି ମୋତେ ବାଡ଼େଇଲା ପରେ 'ଦୋରଙ୍ଗିଆ ଡାକୁ' ଚଳଚ୍ଚିତ୍ରର ନାୟକ ହେବା ମାନସିକତା ଆପେ ଆପେ ମଉଳିଗଲା । ପିଲାଦିନୁ କିନ୍ତୁ କାୟମନୋବାକ୍ୟରେ ମୁଁ ନେତାଜୀ ସୁବାଷ ବୋଷଙ୍କୁ ଶ୍ରଦ୍ଧାକରେ, ସମ୍ମାନ କରେ ଏବଂ ତାଙ୍କରି ପରି ହେବା ପାଇଁ ସେମିତି ଜାମାପଟା ପିନ୍ଧିବା ପାଇଁ ଇଚ୍ଛା କରିଥାଏ, ବସ୍ତୁତଃ ସେମିତି ବୁସ୍‌ସାର୍ଟ ପିନ୍ଧି ବୁଲେ ।

ଶୈଶବ ଯିବା ଯିବା ହୋଇ କୈଶୋର ଆସୁଥିବା ବେଳର ସବୁଠାରୁ ମୁକ୍ତ ରମଣୀୟ ଦିନଗୁଡ଼ିକ ହେଲା ସରସ୍ୱତୀ ପୂଜା, ଗଣେଷପୂଜା ଇତ୍ୟାଦି । ସେଦିନ ନାଁ ଘରର, ନାଁ ସ୍କୁଲ ସାରମାନଙ୍କର କଡ଼ା ନଜରର କାହାରି ଦୌରାତ୍ମ୍ୟ ନଥାଏ । ପକେଟ ଖର୍ଚ୍ଚ କରିବାକୁ କିଛି କିଛି ପଇସା ମିଳେ - ଯାହା ସଞ୍ଚୁଥାଉ ତାକୁ ବି ଧରିଥାଉ । ବୁଲାବୁଲି କରିବାକୁ ମନଇଚ୍ଛା ସୁଯୋଗ । ପିଲାଏ ଯା' ଇଚ୍ଛା ତା' କରିପାରନ୍ତି । ପୁରୀରେ ଏମିତି ଏକ ସରସ୍ୱତୀ କି ଗଣେଷ ପୂଜାରେ ସ୍କୁଲରୁ ସାଙ୍ଗମେଳରେ ଫେରିଲା ବେଳେ ସାଙ୍ଗମାନେ ସିଗାରେଟ ଖାଇଲେ ମୋତେ ବି ଖୁଆଇଲେ । ଚାରଣା କି ଆଠଣା ଦେଇ ମୁଁ 'କିଙ୍ଗ ଷ୍ଟର୍କ' ବୋଲି ଶସ୍ତା ସିଗାରେଟର ପ୍ୟାକେଟଟିଏ କିଣି ସେଥିରୁ ଗୋଟିଏ ଟାଣି ବାକୀ ସାଙ୍ଗମାନଙ୍କୁ ଦି' ତିନୋଟି ଦେଇ ପ୍ୟାକେଟ୍‌ଟି ସଗର୍ବରେ ଛାତି ପକେଟ୍‌ରେ ରଖି ଆସୁଥିବାବେଳେ ପୋଷ୍ଟ ଅଫିସର ଡାକହର୍କରା ବା ରନର ଗାନ୍ଧିଭୋଇ ଦେଖାହେଲେ । ସିଏ ମୋତେ ହସିହସି, କିଓ ସାନବାବୁ ସିଗାରେଟ୍ ଖିଆ ହେଉଛି ? ବୋଲି ପଚାରିଲେ ।

ସିଗାରେଟ୍ ପ୍ରଥମ କରି ଟାଣିବାର ଅଭିନବ ପୁଲକ ଓ ଗର୍ବ ମୁଁ ଅନୁଭବ କରୁଥିଲି । ତେଣୁ ମୁଁ ତାକୁ ଉତ୍ତର ନଦେଇ, 'ତମେ ଖଣ୍ଡିଏ ନିଅ, ଟାଣ' ବୋଲି ଖଣ୍ଡେ ସିଗାରେଟ୍ ପ୍ୟାକେଟଟି ଖୋଲି ବଢ଼ାଇଦେଲି । ତାହା ବୋଧେ ସବୁଠାରୁ ବଡ଼ ବୋକାମୀ ଥିଲା । ଗାନ୍ଧୀ ତା' ବାଟରେ ଗଲା - ଆମେ ସାଙ୍ଗମାନେ ମିଶି, ସ୍କୁଲକୁ ଯାଇ ପୁଷ୍ପାଞ୍ଜଳୀଦେଇ ଘରକୁ ଫେରିଲା ବେଳକୁ, ପାହାଚ ଶେଷରେ ଦେଖିଲି ବାଟଓଗାଳି, ବୁଢ଼ା ଭାଇ (ମୋର ବଡ଼ବାପାଙ୍କ ପୁଅ, ଆମ ଭାଇମାନଙ୍କ ଭିତରେ ସବାବଡ଼, ପ୍ରସିଦ୍ଧ ସାହିତ୍ୟିକ, ଅଧ୍ୟାପକ ସ୍ୱର୍ଗତଃ ରବିନାରାୟଣ ବରାଳ) ଠିଆ ହୋଇଛନ୍ତି । ସିଏ ମୋତେ ଅତିଶୟ ସ୍ନେହ କରନ୍ତି, ସବାସାନ ଭାଇ ବୋଲି । କିନ୍ତୁ ସେ ପ୍ରଚଣ୍ଡ କ୍ରୋଧରେ ପଚାରିଲେ,

"ସିଗାରେଟ୍ ଖିଆ ହେଲାଣି ଅଷ୍ଟମ ଶ୍ରେଣୀରୁ ?" - ମୁଁ 'ନାହିଁ' ବୋଲି କହିବାରୁ, କଷିକଷି ଦି' ଚରି ଚଟକଣି ମାରିଲେ ଏବଂ ମୋ ପଛରେ ପାହାଚରେ ଚଢୁଥିବା ଗାନ୍ଧୀକୁ ଦେଖାଇଦେଲେ । ଗାନ୍ଧୀଙ୍କୁ ମୋର ସିଗାରେଟ୍ ଟାଣିବା ଅତ୍ୟନ୍ତ ଖରାପ ଲାଗିଛି - ଘରେ ବାପା/ବୋଉଙ୍କୁ ନକହି ସେ ଭାଇକୁ କହିଦେଇଛି ! ମୋର ଆଉ ପ୍ରତିବାଦ କି ପ୍ରତିରୋଧ କରିବାର କିଛି ନଥିଲା । ତଳକୁ ମୁହଁପୋତି, ଚୋରଭଳି ମୁଁ ପଢ଼ା ଘରକୁ ପଶିଗଲି ।

କଲେଜରେ ପଢ଼ିବା ପରେ ମଧ ଦୀର୍ଘଦିନ ପର୍ଯ୍ୟନ୍ତ ମୁଁ ସିଗାରେଟ୍ ଛୁଇଁ ମଧ ନଥିଲି । ନାଟକ କଲାବେଳେ ରାତିଅନିଦ୍ରା ହୋଇ ଷ୍ଟେଜ ବାନ୍ଧିଲା ବେଳେ ମୋର ଅତି ସମ୍ମାନର ପୁଣି ପ୍ରିୟ ସାର୍, ସ୍ୱର୍ଗତଃ ପ୍ରାଣବନ୍ଧୁ କର, ବ୍ୟକ୍ତିଗତ ଜୀବନରେ ମୋ' ଭିଣେଇଙ୍କର ବାଲ୍ୟବନ୍ଧୁ, ମୋତେ ପରିହାସ କରି "ମାଇଚିଆଟା - ସିଗାରେଟ୍ ନଖାଇଲେ ଡ୍ରାମା କ'ଣ କରିବୁ ତୁ ?" ବୋଲି ଥରେ ଦି'ଥର ସାଙ୍ଗମାନଙ୍କ ଆଗରେ ଥଟ୍ଟା କରିବାରୁ ଦିନେ ଦଶଣା ଦେଇ, କ୍ୟାପଷ୍ଟାନ ସିଗାରେଟ୍ ପ୍ୟାକେଟ୍‌ଟିଏ ପକେଟ୍‌ରେ ପୁରାଇ, ଖଣ୍ଡେ ଖଣ୍ଡେ ଟାଣି, ନାକେଦମ ହୋଇ କାଶି କାଶି ପୁରୀ କଲେଜ ହଲ ପାଖକୁ ଆସିଲି । ସିଗାରେଟ୍ ଟଣା ବନ୍ଧୁମାନେ ଆଦର ସୋହାଗ ଢ଼ାଳିଦେଲେ - ଜଣେ ଗଞ୍ଜୋଡ଼ ପୁଣି ତାଙ୍କ ଦଳକୁ ଆସିଲାବୋଲି ।_ପରେ ପାର୍ଟି ଜୀବନରେ ସିଗାରେଟ/ ବିଡ଼ିଟଣା ଦୋରସ୍ତ ହୋଇଗଲା - ଏବଂ ମୁଁ ସାରାଦେଶରେ ପ୍ରସିଦ୍ଧ 'ସ୍ମୋକର' ହୋଇଯାଇଥିଲି । ଆଜ୍‌ମା, ଶ୍ୱାସଜନିତ ରୋଗ ଏତେ ଭୟଙ୍କର ହେଲା ଯେ ସମସ୍ତେ ବାରଣ କରିବା ସତ୍ତ୍ୱେ ଯାହା ଛାଡ଼ିପାରୁନଥିଲି, ଡାକ୍ତରଖାନାରେ ପଡ଼ିଗଲା ପରେ ସେ ସିଗାରେଟ୍ ମୋତେ ଛାଡ଼ିଦେଲା ! ଏବେ ମୁଁ ସମ୍ପୂର୍ଣ୍ଣ ନିଶାମୁକ୍ତ ।

ସେକଥା ପଛେ । ପଛକଥା ଆଗ କହିହୋଇଯାଉଛି ।

ଅଷ୍ଟମ ଶ୍ରେଣୀ ଟପି ପୁରୀ ଜିଲ୍ଲା ସ୍କୁଲରେ ନବମରେ ପଢ଼ିଲି । ପୁରୀଜିଲ୍ଲା ସ୍କୁଲରେ ନବମ ଶ୍ରେଣୀରୁ ଅପସନାଲ ସବ୍‌ଜେକ୍ଟ ନିଆଯାଉଥିଲା - ସେଠାରେ ମ୍ୟାଥମେଟିକ୍ସ, ଫିଜୋଲୋଜି ହାଇଜିନ୍, ସଂସ୍କୃତ ବ୍ୟତୀତ 'ସିଭିକ୍ସ' ଅପସନାଲ ଥିଲା । ମୁଁ ଫୁଟାଣି ଦେଖାଇ ସିଭିକ୍ସ ବା 'ନଗରବିଜ୍ଞାନ' ଅପସ୍‌ନାଲ୍ ନେଇଗଲି । କାରଣ ମ୍ୟାଥମେଟିକ୍ସରେ ମୁଁ ଭୂସ୍‌ପଣ୍ଡିତ ! ସଂସ୍କୃତ ସାର୍ ମୋତେ ନେବେ ନାହିଁ - କାରଣ ସ୍କୁଲ ପତ୍ରିକାରେ କବିତାଟିଏ, ଯାହାର କେଇପଦ ହେଲା -

"ସମାସ ପଢ଼ିଣ ଛ'ମାସ ଗଲାଣି - ଦ୍ୱନ୍ଦ୍ୱ ଉପୁଜାଏ ଦ୍ୱନ୍ଦ୍ୱ ।
ସନ୍ଧି ପଢ଼ି ପଢ଼ି ଧନ୍ଦି ହେଲି ମୁହିଁ.........." ଇତ୍ୟାଦି କବିତାଟିଏ ଲେଖିଥିଲି ।

ଆଉ ପଦଗୁଡ଼ାକ ମନେ ନାହିଁ ।

ସଂସ୍କୃତ ସାର୍ ତ ମୋ ଉପରେ ଖପ୍ପାଥିଲେ -

ମୋର ଦୁର୍ଭାଗ୍ୟ ଦୁଇ କି ତିନିମାସ ନବମରେ ବିତିଲା ପରେ ବାପାଙ୍କର ପୁଣି ବଦଳି ହେଲା କଟକ ଚାନ୍ଦନୀଚୌକ ପୋଷ୍ଟଅଫିସକୁ ପୋଷ୍ଟମାଷ୍ଟର ଭାବରେ । ପୋଷ୍ଟମାଷ୍ଟର କ୍ୱାର୍ଟରଟା ସେଠି ପୋଷ୍ଟ ଅଫିସ ପଛପଟେ, ପୋଷ୍ଟଅଫିସକୁ କାନ୍ଥଟାଏ ମାତ୍ର ଅଲଗା କରୁଛି । ବାପା ମୋତେ ନେଇ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଆଡ଼ମିଶନ୍ ଦେଲେ । କଲେଜିଏଟ୍‌ରେ ଦଶମ ଶ୍ରେଣୀରୁ ଅପସନାଲ୍ ସବ୍‌ଜେକ୍ଟ ପାଠ ଆରମ୍ଭ ହେଉଥିଲା ଏବଂ 'ସିଭିକ୍ସ' ଅପସ୍‌ନାଲ ନଥିଲା । ବାପାଙ୍କୁ ପ୍ରସିଦ୍ଧ ମାଥମେଟିକ୍ସ ସାର୍, ନାରାୟଣ ପତି କହିଲେ, ମାଥମେଟିକ୍ସ ଅପସ୍‌ନାଲ ନେବାକୁ । ମୋତେ ହିମ୍ମତ ଦେବାକୁ କହିଲେ, - "ମୁଁ ନାରାୟଣ ଚନ୍ଦ୍ର ପତି, ଉତ୍କଳ ବିଶ୍ୱବିଦ୍ୟାଳୟର (ସେତେବେଳେ ସେକୋଣ୍ଡାରୀ ବୋର୍ଡ଼ ଆରମ୍ଭ ହୋଇନଥାଏ) ମାଥମେଟିକ୍ସ ସ୍ପେସାଲିଷ୍ଟ, କଣ୍ଟ୍ରୋଲିଂବୋର୍ଡ଼ର ଚେୟାରମ୍ୟାନ୍ ମୋ ଚାକିରୀର ପ୍ରଥମ ବାର/ଚଉଦ ବର୍ଷ, ଇଂଲିଶ ଗ୍ରାମାର ପଢ଼ାଇବାରେ ବିତିଲା ପରେ ଯଦି ଆଜି ମୁଁ ମହାନ୍ ଗଣିତ ସାର୍ - ତମେ ମୋ ଛାତ୍ରମାନେ କାହିଁକି ମାଥମେଟିକ୍ସରେ ଭଲ କରିବ ନାହିଁ ? ଅଲବତ୍ ଭଲ କରିବ ।" - ତାଙ୍କ ଅନୁପ୍ରେରଣା ସାଙ୍ଗକୁ ଅପର ମାଥମେଟିକ୍ସ ସାର୍ ନନ୍ଦକିଶୋର ରଥ ମଧ୍ୟ ସେହିପରି ପ୍ରୋତ୍ସାହନ ଦିଅନ୍ତି । ସେମାନଙ୍କର ପ୍ରେରଣା ବା ଆକର୍ଷଣ ଏଡ଼ାଇ ନପାରି ଭୟାବହ ଦକ ଦକ ମନରେ, ଆଶଙ୍କା ଭିତରେ, ମାଥମେଟିକ୍ସ ଅପସ୍‌ନାଲ୍ ନେଲି । ସେତେବେଳକୁ ପଢ଼ାପଢ଼ି ଗାଁଅଠେ ସରିଗଲାଣି । ବାପା ତେଣୁ ମୋତେ ନାରାୟଣ ସାର୍‌ଙ୍କ ପାଖରେ ଟ୍ୟୁସନ୍ ହେବାକୁ ନେଇଗଲେ । ନାରାୟଣ ସାର୍‌ଙ୍କ ଘର ପୁରୀଘାଟ ପାଖରେ ଦିନେ ଦୁଇଦିନ ପରେ ଦେଖିଲି ସାର୍, ପୋଷ୍ଟ ଅଫିସକୁ ଆସି ବାପାଙ୍କ ଆଗରେ ବସିଛନ୍ତି - ସେ ବାପାଙ୍କୁ କହିଲେ, -"ପିଲାଟା ଏତେ ବାଟ ଏକାଟିଆ ଚାଲିଚାଲି ଯିବା, ପୁଣି ସଞ୍ଜବେଳେ, ଭାରୀ କଷ୍ଟ - ତେଣୁ ତାକୁ ମୋ ଠାରୁ ଭଲ ମାଥମେଟିକ୍ସ ଟିଚର, ମୋର ସାର୍ ଜୟକୃଷ୍ଣ ଦାସଙ୍କ ପାଖରେ ପଢ଼ାନ୍ତୁ - ତାଙ୍କ ଘର ଏଇ ପାଖରେ । ସେତେବେଳେ ଅତ୍ୟନ୍ତ ବୁଢ଼ା ଜୟକୃଷ୍ଣ ସାର୍ ଯାହାଙ୍କୁ ପିଲାଏ ଅଜାସାର୍ ବୋଲି ଥଟ୍ଟାରେ ଇ.ବି.ଏମ ବୋଲି ବା "ଏକ୍ସପିରିଏନ୍ସ୍‌ଡ୍ ବୁଢ଼ା ମାଷ୍ଟର", ବୋଲି ଏବଂ ଟିଉସନ୍ କ୍ଲାସକୁ ଇ.ବି.ଏମ୍ କଲେଜ ବୋଲି ଡାକନ୍ତି - ଏପରିକି ସାଇନ୍‌ବୋର୍ଡ଼ କରାଇ ଫଟୋ ମଧ୍ୟ ଉଠାଇଛୁ ଆମେ । ତାଙ୍କଠାରୁ ପରେ ଜାଣିଲି ଯେ, ସିଏ କେବଳ ନାରାୟଣ ପତିଙ୍କ ସାର୍ ନଥିଲେ - ସୁବାସ ଚନ୍ଦ୍ର ବୋଷଙ୍କୁ ମଧ୍ୟ ଅଳ୍ପକାଳ ପାଇଁ ଘରେ ପଢ଼ାଇଛନ୍ତି - 'ସୁବାସ୍' ସବୁଠାରୁ ବୁଦ୍ଧିମାନ ତୀକ୍ଷ୍ଣ ବୋଧା

ସମ୍ପନ୍ନ ଥିଲା ବୋଲି ବାରମ୍ବାର କୁହନ୍ତି ।"

ଡଗରପଡ଼ାର ପ୍ରବେଶ ପଥରେ ଇ.ବି.ଏମ୍ ଜୟୀସାରଙ୍କର ଘର । ସିଏ କିନ୍ତୁ ନ୍ୟାୟମୂର୍ତ୍ତି, ସାହିତ୍ୟିକ ହରିହର ମହାପାତ୍ରଙ୍କର ଘର ସମ୍ମୁଖସ୍ଥ ଏକ ଅର୍ଦ୍ଧ ନିର୍ମିତ କୋଠାଘରେ ଆମମାନଙ୍କୁ ପଢ଼ାଉଥିଲେ । ଏବେ ସେଠାରେ ବଡ଼ ଘର ହୋଇଗଲାଣି ! ସକାଳବେଳା ଆମେମାନେ ପ୍ରାୟ କୋଡ଼ିଏ ଜଣ ପିଲା ଯାଉ । ଆମ ସହିତ ସେ ଅଜାଭଳି ଥଟ୍ଟା ପରିହାସ କରନ୍ତି - କିନ୍ତୁ ଗଣିତ ପଢ଼ାରେ ଧୂରନ୍ଧର - ପ୍ରଥମେ ଆଲଜେବ୍ରାର ୪୨ଟି ଫରମୁଲି ଖାତାରେ ଲେଖି ମନେ ରଖିବାକୁ ହେବ । ଟ୍ରିଗୋନୋମେଟ୍ରି, ମେନସୁରେସନ, ଜ୍ୟାମିତି ସବୁ ଧାରାବାହିକ ଭାବରେ ପଢ଼େଇ ଦିଅନ୍ତି । ଗାଳିଦେଇ ପଢ଼ାନ୍ତି ଏବଂ ପ୍ରତ୍ୟେକ ପ୍ରଶ୍ନ ଯାହା ମାଟ୍ରିକ ପରୀକ୍ଷାରେ ଆସିବାର ସମ୍ଭାବନା ଅଛି ବୋଲି ସେ ଜାଣନ୍ତି, ତାକୁ ୧୦/୧୨ ଥର କଷାନ୍ତି - ପ୍ରାୟ ମୁଖସ୍ଥ ରହିଯିବା ପର୍ଯ୍ୟନ୍ତ । ପାଠ ଭଲ କଲେ, ପରିହାସ କରି, ତାଙ୍କର ବିଶାଳକାୟ ହାଇଡ୍ରୋସିଲ, ଯାହାକୁ ତଳେ ଥୋଇ ଟେବୁଲ କରି ଲେଖନ୍ତି ସେ, ତାକୁ ଦେଖାଇ କୁହନ୍ତି 'କିରେ' ? ଛୋଟ ଟେବୁଲ ଉପରେ ବସିବୁ କି ? ଆମେ ସମସ୍ତେ ହସି ହସି ଗଡ଼ିଯାଉ । ଇ.ବି.ଏମ ଜୟୀ ସାର୍ ନପଢ଼ାଇଥିଲେ, ତାଙ୍କ ଛୋଟ ଟେବୁଲ୍‌ରେ ନବସିଥିଲେ, ମୁଁ ମାଟ୍ରିକ ପାଶ୍ କରିପାରନ୍ତି କି ନାହିଁ ଜାଣେ ନା ।

କଲେଜିଏଟ୍ ସ୍କୁଲରେ ପିଲାମାନେ ସମସ୍ତେ ପ୍ରାୟ ଭଲପିଲା - ଆମ କ୍ଲାସରେ ମୋ ସାଙ୍ଗ ନ୍ୟାୟମୂର୍ତ୍ତି ହରିହର ମହାପାତ୍ରଙ୍କ ମଝିଆଁ ପୁଅ ବସନ୍ତ କୁମାର ମହାପାତ୍ର, ଯିଏ ପରବର୍ତ୍ତୀ କାଳରେ ବ୍ରିଗେଡ଼ିୟର ହୋଇଥିଲେ, ଗୌର, ଜନାର୍ଦ୍ଦନ, ଭବାନୀ (ଏବେ ଡାକ୍ତର), ସୁପ୍ରସିଦ୍ଧ ଡାକ୍ତର ରମେଶ ରାୟଚୌଧୁରୀ, ଆର ସେକସନ୍‌ର ପ୍ରମୁଖ ଛାତ୍ର ବିଷ୍ଣୁପ୍ରସାଦ ବାହାଲିଆ, ଅଧୁନା ଦିବଂଗତ, ପ୍ରଫୁଲ୍ଲ ହରିଚନ୍ଦନ, ଡାକ୍ତର ନୀଳକଣ୍ଠ ସାହୁ, ଇତ୍ୟାଦି ପଢୁଥିଲେ । ଏମାନେ ସମସ୍ତେ ପ୍ରାୟ ମୋଠାରୁ ଭଲ ପିଲାଥିଲେ ବୋଲି ମୋର ପ୍ରତେ ହେଉଛି । ଏମାନଙ୍କ ପରି ପଢୁଆ ପିଲାଙ୍କ ଛଡ଼ା ଓଡ଼ିଶା ବିଖ୍ୟାତ ଫୁଟବଲ ଖେଳାଳୀ ଅବଦୁଲ ଗନି, ଅବଦୁଲ ମୁନ୍ନା, ଆଇରନ୍ ବାକ୍ ମାୟାଧର, ଚନାଚୁର ବିକିବା ସାଙ୍ଗ ହରିସାହୁ ଆଦି ମୋ ସାଙ୍ଗେ ପଢୁଥିଲେ । ପ୍ରଥମେ ପ୍ରଧାନ ଶିକ୍ଷକ ଥିଲେ ସୁପ୍ରସିଦ୍ଧ ଭୂଗୋଳ ସାର୍, ଲଳିତ ମୋହନ ଘୋଷ, ତା'ପରେ ପ୍ରଧାନ ଶିକ୍ଷକ ହେଲେ ନାରାୟଣ ପତି, ଆଉ ଯେଉଁ ସାର୍‌ମାନେ ଥିଲେ, ସେମାନଙ୍କ ଭିତରୁ ଇଂରାଜୀ ସାର୍ ଶରତଚନ୍ଦ୍ର ବୋଷ, ଭୂଗୋଳ ସାର୍ ଲାଲାନଗେନ୍ଦ୍ର ରାୟ, ଇତିହାସ ସାର୍, ଧୋବ ଫରଫର ଫୁଲପ୍ୟାଣ୍ଟ ସାର୍ଟ ପିନ୍ଧିଥିବା ମୋହିତ ଦାସ, ଓଡ଼ିଆ ଶିକ୍ଷକ ବୈଦ୍ୟନାଥ ସାର୍, ଦାଶରଥୀ ପାଢ଼ୀ ସାର୍,

ଖେଳ ଶିକ୍ଷକ ତଥା ଏନ୍.ସି.ସି. ସାର୍ ମିହିର କୁମାର ରାଓ ଇତ୍ୟାଦି ସମସ୍ତଙ୍କୁ ସେମାନଙ୍କ ଅଲକ୍ଷ୍ୟରେ ପ୍ରଣାମ ଜଣାଉଛି । ଏବେ ପର୍ଯ୍ୟନ୍ତ ଶରତ ସାର୍‌ଙ୍କର ଇଂରାଜୀ ପୋଏଟ୍ରି ବହିର ମ୍ୟାକ୍‌ବେଥ ନାଟକର ଅଂଶ, 'କ୍ୟାନ୍ ନେପଚ୍ୟୁନସ ଓସନ ୱାସ ମାଇଁ ହ୍ୟାଣ୍ଡ' ବୋଲି ପଢ଼ାଇଲାବେଳେ ମୁଗ୍ଧ କରିଦେବା ପରି ବୁଝାଇବା ଓ ସମସ୍ତେ ଚାର୍ଲସଲ୍ୟାମ୍ବ, ମେରିଲ୍ୟାମ୍ବଙ୍କର 'ଟେଲସ ଫ୍ରମ୍ ସେକ୍ସପିଅର' ବହିରୁ ସେକ୍ସପିଅରଙ୍କର ନାଟକମାନଙ୍କର କାହାଣୀ ପଢ଼ି ଆସିବାକୁ କହିବା - ବୈଦ୍ୟନାଥ ସାର୍ ପଢ଼ାଇଲା ବେଳେ "ବନ୍ଦୀର ସ୍ୱଦେଶ ଚିନ୍ତା" କବିତାରୁ "ରାଧିକା ଅଞ୍ଚଳ ଉଡ଼ାଇ ଚଞ୍ଚଳ କରିଥିବ ଜାଣି ବେନିଙ୍କ ମନ" ପଦଟି ବୋଲିବା, ସବୁ କ'ଣ ଭୁଲିପାରିବି ?

ବଡ଼ ହୋଇଗଲା ପରେ, ପ୍ରସିଦ୍ଧ ଅଧାପକ, ଶିକ୍ଷକ ନେତା ହୋଇଗଲାପରେ, ରେଭେନ୍ସା କଲେଜିଏଟ୍ ସ୍କୁଲର ଶତବାର୍ଷିକୀ ଉତ୍ସବ ପାଳିତ ହେଉଥିଲା । ନାରାୟଣ ପତି ହେଡ୍‌ସାର ଥିଲେ - ଆମକୁ ସବୁ ମୋତେ, ଗୋପାଳ ଘୋଷ, ବିଜୟ ମହାନ୍ତି (ପ୍ରାକ୍ତନ ଆଡ୍‌ଭୋକେଟ୍ ଜେନେରାଲ) ସିଏ ବି ମୋ କ୍ଲାସମେଟ - ଆଡ୍‌ଭୋକେଟ୍, ନାଟ୍ୟକାର/ ଅଭିନେତା ପୁରଞ୍ଜନ ରାୟ, ରଜତକର ଆଦି ସମସ୍ତେ ଆହୁରି ଅନେକ ଏକାଠି ହୋଇ ରଜତ କରଙ୍କର ଲିଖିତ 'ବୀର ସୁରେନ୍ଦ୍ର ସାଏ' ନାଟକ ଅଭିନୟ କରିଥିଲୁ । ନିର୍ଦ୍ଦେଶନା ଦେଉଥିଲେ ଖଗେନ୍ଦ୍ରନାଥ ମିତ୍ର ଏବଂ ତାଙ୍କୁ ସହଯୋଗ କରୁଥିଲେ ଗୋପାଳ ଘୋଷ । ଆମେ ସବୁ କେହି ଆଉ ଛାତ୍ର ନଥିଲେ ବି ମନେ ଅଛି, ନାରାୟଣ ସାର୍, ନନ୍ଦବାବୁ ଆଉ ସାର୍‌ମାନଙ୍କୁ ଦେଖିଲେ, ଆମେ ସଂଭ୍ରମରେ ଛିଡ଼ା ହେଉ । ଦିନେ ବନ୍ଧୁ (ଦିବଂଗତ) ପ୍ରଫୁଲ୍ଲ ଦାସ ଏବଂ ବିଜୟ ବା ଆଉ କେହି ବଡ଼ ଜୋରରେ ପାଟିକରି କଳିକଜିଆ ଲଗାଇଲେ - ନାରାୟଣ ସାର୍ ପଶିଆସି ବଡ଼ ପାଟିରେ କହିଲେ, "ଏବେ ବି କ'ଣ ତମେ ସବୁ ସ୍କୁଲ ପିଲା ଅଛ ଯେ ଛାଟ ଧରି ଆସି ପିଟିବି ? ଚୁପ୍‌କରି ବସ ।" ତତ୍‌କ୍ଷଣାତ୍ ସମସ୍ତେ ଚୁପ୍ ହୋଇଗଲେ ।

ଅବସର ନେବା ପରେ ନନ୍ଦସାର୍ କଟକ ମାରୱାଡ଼ି ହାଇସ୍କୁଲର ପ୍ରଧାନଶିକ୍ଷକ ଥିଲେ । ଆମ ଆନ୍ଦୋଳନ ସଭାସବୁ ମାରୱାଡ଼ି ହାଇସ୍କୁଲରେ ସ୍ୱର୍ଗତଃ କୈଳାଶ ଚନ୍ଦ୍ର ମହାପାତ୍ର, ବିବେକାନନ୍ଦ ଦାଶ, ୪ ରବୀନ୍ଦ୍ର ମୋହନ ଜେନା, ହର୍ଷନାଥ ଠାକୁର ଆଦି ଥିବାରୁ, ନାନା ସମୟରେ ସଭା ହେଲେ, ନନ୍ଦସାର୍ ମଧ୍ୟ ଆସି ଯୋଗଦେଉଥିଲେ । ମୁଁ ଶଙ୍କି ଯାଉଥିଲି । ଶରତବୋଷ ଅବସର ନେଲା ପରେ ସମ୍ଭବତଃ ରେଲୱେ କଲୋନୀ ହାଇସ୍କୁଲ ବା ସିଟି ହାଇସ୍କୁଲ ଏପରି କେଉଁଠାରେ ପ୍ରଧାନ ଶିକ୍ଷକ ଥିଲେ । କଟକ ଶ୍ରୀରାମଚନ୍ଦ୍ର ଭବନରେ ଶିକ୍ଷକ ଆନ୍ଦୋଳନ ସଭାଟିଏ ହେଲାବେଳେ, ସାର୍‌ଙ୍କୁ ଦେଖିଲି,

ପ୍ରଥମ ଧାଡ଼ିରେ ବସିଛନ୍ତି । ମୁଁ ମଞ୍ଚରୁ ଓହ୍ଲାଇଆସି ତାଙ୍କୁ ପ୍ରଣାମ କରିବାରୁ କହିଲେ 'ଆରେ ! ଚିହ୍ନିପାରିଲୁ ମୋତେ ?'

ତାଙ୍କ ଆଗରେ ମୁଁ ନେତା ହୋଇ ଭାଷଣ ଦେଇପାରିବି ନାହିଁ ବୋଲି ମୁଁ ତାଙ୍କୁ ଚାଲିଯିବାକୁ କହିବାରୁ, ମୋତେ ସେଇ ପୁରୁଣା ଦିନରେ ସାର୍ ହୋଇଯାଇ କମାଣ୍ଡ କରି କହିଲେ, ଯାଅ - ଭାଷଣ ଦିଅ, ତମେ ମୋତେ ଏଠୁଁ ଉଠିଯିବାକୁ କହିପାରିବ ନାହିଁ । ତା'ପରେ ଇଂଲିସରେ କହିଲେ Go I command you to give your speech - ସେତିକିରେ ମୋ ଅକଲଗୁଡୁମ - ମୁଁ ବାଧ୍ୟଛାତ୍ର ହୋଇ ମଞ୍ଚ ଉପରକୁ ଉଠିଗଲି । ପରେ ମୋତେ ଡାକି, ମୋ ମୁଣ୍ଡ ଆଉଁସି ଦେଇ କହିଲେ, 'କଂଗ୍ରାଚ୍ୟୁଲେସନ୍' "ୟୁ ସ୍ପୋକ୍ ଭେରୀ ୱେଲ୍" - ଆମେମାନେ ଆଗରୁ ଏକଥା କରିଥିଲେ, ଅନେକ ଭଲ ହୋଇଥାଆନ୍ତା - ମୋ ମନରେ ମନେ ଗର୍ବ ଭରିଗଲା - ଯେ ମୋ ସାର୍ କହୁଛନ୍ତି ଶିକ୍ଷା ବିଷୟରେ ସେମାନେ ଆଗରୁ କାମ ଆରମ୍ଭ କରିବା ଉଚିତ ଥିଲା ।

ପ୍ରାଥମିକ ଠାରୁ କଲେଜ ପର୍ଯ୍ୟନ୍ତ ମୋର ସବୁ ସାର୍‌ମାନଙ୍କୁ ଆଭୂମି ପ୍ରଣାମ ଜଣାଉଛି - ପ୍ରଣାମ ଜଣାଉଛି କାରଣ ସେମାନଙ୍କର ଅବଦାନ ମୁଁ - ମୋ ଭିତରେ ସେମାନେ କେଉଁ ଶୈଶବରୁ ଆଜି ପର୍ଯ୍ୟନ୍ତ ବାଟ କଢ଼େଇ, ଦିଗ୍‌ଦର୍ଶନ ଦେଇଚାଲିଛନ୍ତି । ଭାଗବତରେ ଯଦୁ-ଅବଧୂତ ସମ୍ବାଦର ଅବଧୂତଙ୍କର ବାଣୀ, "ଚବିଶ ଗୁରୁ ମୋର ଏତେ - ଶୁଣ ରାଜନ ତୋଷଚିତ୍ତେ" ପରି ମୋର ପ୍ରଥମ ଗୁରୁ ଯାହାଙ୍କ ଠାରୁ ବିଦ୍ୟାଳୟ, ମହାବିଦ୍ୟାଳୟରେ ମୁଁ ଶିକ୍ଷା ଲାଭ କରିଛି ।

ମୋର ଅବବୋଧ ଯେ, ସମାଜର ପରିବର୍ତ୍ତନର ବାହକ ସାର୍‌ମାନେ ବୋଧହୁଏ ସମାଜପ୍ରତି ଅଂଗୀକାର ବୋଧ ହରାଇଲେଣି । ଯେ କୌଣସି ବୃତ୍ତିର ଏକ ବିକଳ୍ପ ବୃତ୍ତି ଭାବରେ ଶିକ୍ଷକତାକୁ ଗ୍ରହଣ କରିନେଇଛନ୍ତି । ତାହା ହିଁ ବୋଧହୁଏ ଆମ ସମୟର ସମାଜର ସବୁଠାରୁ ବଡ଼ ଅଧୋଗତି । ସମାଜର ଅଖାଡୁଆ ରାସ୍ତାରେ ସଫଳଭାବରେ ବାଟ ଚିହ୍ନି ଆଗେଇଯିବାକୁ । ସାର୍‌ମାନେ ହିଁ ତାଙ୍କ ପ୍ରଦତ୍ତ ଶିକ୍ଷାକୁ ଏକ ହତିଆର କରି ଆମ ହାତରେ ମନରେ ଧରାଇ ଦେଇଥାନ୍ତି । ଆମ ସମୟର ମାର୍କେଟ ଅର୍ଥନୀତିରେ ବା ବଜାରୀ ଅର୍ଥନୀତିରେ 'ପାଠ' 'ଶିକ୍ଷା' ଜ୍ଞାନ ନୁହେଁ - ବିକ୍ରୟଲବ୍ଧ ଏବଂ ସାମଗ୍ରୀ । ଯିଏ ଯେତେ ଅଧିକ ପଇସା ଦେଇପାରିବ, ସିଏ କୁଆଡ଼େ ଗୁଣାତ୍ମକ ପାଠ/ଶିକ୍ଷା କିଣିପାରିବ । ସାର୍ ବା ଗୁରୁ ପାଠ ବିକ୍ରୟକାରୀ ଜଣେ ଭେଣ୍ଡର । ଆମ ଜ୍ଞାନ ଚକ୍ଷୁକୁ ସେ ଉନ୍ମୀଳିତ କରୁନାହାନ୍ତି - ବଜାରୀ କର୍ପୋରେଟ୍ ହାଉସମାନଙ୍କୁ ଚିହ୍ନିବା ପାଇଁ, ଚଷମା ଲଗାଇ ଦେଉଛନ୍ତି । ଏଣୁ "ତସ୍ମୈ ଶ୍ରୀ ଗୁରୁବେ ନମଃ" କାହିଁକି ? ସାର୍‌ମାନଙ୍କ କଥା ମନେପଡ଼ିଲା

ବେଳେ ମନଭାରାକ୍ରାନ୍ତ ହୋଇଯାଉଛି - ମନ ପଛପଛକୁ ସୁଖମୟ ଶୈଶବକୁ ଫେରିଯାଉଛି, ନିଜ ଅଜାଣତରେ - ଅଲକ୍ଷ୍ୟରେ । ଛାଡଃ

ମୁଁ ମାଟ୍ରିକ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଲାବେଳକୁ, ବାପାଙ୍କର ରିଟାୟାରମେଣ୍ଟ ବା ଅବସର ନେବା ବେଳ ହେଲାଣି । ବାପା ଚାହାନ୍ତୁ ବା ନଚାହାନ୍ତୁ ବୋଉ ନାନା ବାବା, ମାତା, ଜ୍ୟୋତିଷଙ୍କୁ ଭବିଷ୍ୟତ ବିଷୟରେ ପଚାରିଥାଏ । ଚାନ୍ଦିନୀଚୌକ ପୋଷ୍ଟଅଫିସର, ଚାନ୍ଦନୀଚୌକ ଛକ ଆଡ଼କୁ ୪/୫ଟା କୋଠା ଛାଡ଼ି, ପଣ୍ଡିତ ଗଦାଧର ନାୟକଙ୍କ ଦ୍ୱାରା ଦାଣ୍ଡର ଇଂଲିସରେ ସିମେଣ୍ଟଦ୍ୱାରା ଲେଖା ହୋଇଥାଏ PT Gadadhar Nayak । ଓଡ଼ିଶାରେ ଆଗତ ଭବିଷ୍ୟତ ଗଣନାକାରୀ ବୋଲି । ଲୋକମୁଖରେ ପ୍ରଚାରିତ ଯେ, ପଣ୍ଡିତ ଗଦାଧର, ଆଗତଭବିଷ୍ୟତ, ତମଘରୁ ଚୋରୀ ଯାଇଥିଲେ କିଏ ଚୋର, ଜମି ବିକ୍ରୀରେ ଲାଭ ହେବ କି ନାହିଁ, ପୁଅ ହେବ କି ଝିଅ ହେବ, ଏସବୁ କହିଦିଅନ୍ତି କୁଆଡ଼େ ! ବାପା ବୋଧହୁଏ ଅବସର ବୟସର ଓ ଚାକିରୀର ଏକ୍ସଟେନ୍‌ସନ୍ କରିବାକୁ ଦରଖାସ୍ତ କରିଥାନ୍ତି - ତାହା ହେବ କି ନହେବ, ଏକଥା ଜାଣିବାକୁ ବୋଉ ଦିନେ ସଞ୍ଜବେଳେ, ପଣ୍ଡିତ ଗଦାଧରଙ୍କୁ ଡାକି ଆଣିଲା । ବୋଉକୁ କହିଲେ, 'ମା' ତମ ଯେଉଁସବୁ ପ୍ରଶ୍ନ ପଚାରିବାକୁ ଚାହୁଁଛ ସବୁ ଭାବ - କୁହନାହିଁ, ମୁଁ ସେସବୁ ଲେଖିଦେଉଛି ଆଗରୁ । - ଆମେ ସମସ୍ତେ ବେଢ଼ିକରି ବସିବାରୁ, ବଡ଼ବାପାଙ୍କ ପୁଅ ରବିନାରାୟଣ ବରାଳ, ଅଜୟ କୁମାର ବରାଳ, ମୋ ନିଜଭାଇ ଅରୁଣ କୁମାର ବରାଳ, ସାନଭଉଣୀ ଲତା, ବାପା ବି - ସମସ୍ତେ ଘେରିକରି ବସିଥାଉ । ଗଦାଧର ପଣ୍ଡିତ ଗୋଟିଏ କାଗଜରେ କ'ଣ ସବୁ ପେନ୍‌ସିଲ୍‌ରେ ଲେଖି ବାପାଙ୍କୁ ଧରାଇଦେଲେ - ସେଥିରେ ଲେଖାଥିଲା ବୋଉର ସମସ୍ତ ସମ୍ଭାବ୍ୟ ପ୍ରଶ୍ନ - ଯଥା ବାପାଙ୍କ ଚାକିରୀର ଏକ୍ସଟେନ୍‌ସନ୍ ହେବ କି ନାହିଁ । ବଡ଼ଭାଇ ଆଇ.ଏ. ପାଶ୍ କରି ଚାକିରୀ କରିବେ କି ନାହିଁ - ଆଉ ସବୁ କ'ଣ କ'ଣ ନିଜ ପ୍ରଶ୍ନ ସବୁ ଲେଖା ଆକାରରେ ଦେଖି, ବୋଉ/ବାପା ଉଭୟେ ଚମତ୍କୃତ ବିହ୍ୱଳିତ ହୋଇଗଲେ - ବୋଉ ଘର ଭିତରକୁ ଗଲା । ଆସିଲାବେଳକୁ ସେ ଲେଖିରଖିଛନ୍ତି ଯେ, ମା' ଘର ଭିତରକୁ ଗଲେ, ଦୁଇଖଣ୍ଡ ଦଶଟଙ୍କିଆ ନୋଟ୍ ଆଣିବେ - ନୋଟ୍ ନମ୍ବର ସବୁ ଏଇଆ... ତା'ଛଡ଼ା ନିର୍ମାଲ୍ୟ ବସ୍ତା ବି ଆଣିବେ । ସତକୁ ସତ ବୋଉ ଦଶଟଙ୍କିଆ ନୋଟ୍ ଦିଓଟି, ତା'ର ନମ୍ବର ବି ଲେଖାସହ ସମାନ ଥିଲା - ପଣ୍ଡିତ ଗଦାଧରଙ୍କର ଏତାଦୃଶ ଅନ୍ତର୍ଯ୍ୟାମୀ କାର୍ଯ୍ୟରେ ଚମତ୍କୃତ ହୋଇଥିବା ବୋଉ, ଜଗନ୍ନାଥଙ୍କ ନିର୍ମାଲ୍ୟ ପାଟିରେ ତାଙ୍କର ଦେଇ କହିଲା, "ଆଜିଠୁଁ ତୁ ମୋ ବଡ଼ ପୁଅ ହେଲୁ - ସବୁବେଳେ ଆସିବୁ - ଦିନରେ କାଲି ଆସିବୁ । ମୁଁ ରାନ୍ଧିଥିବି ଖାଇବୁ ।" ସତକୁ ସତ ମୋଟାସୋଟା

କାଳିଆ ବର୍ଣ୍ଣରେ, ପ୍ୟାଣ୍ଟ ସାର୍ଟ, ଲୁଙ୍ଗି ପିନ୍ଧା ପଣ୍ଡିତ ଗଦାଧର ଆମର ବଡ଼ଭାଇ ହୋଇଗଲେ - ଆମେ ସବୁ ତାଙ୍କୁ ମାନିବାକୁ ବାଧ ହେଲୁ । ସିଏ କେମିତି ବା କେଉଁ ପଦ୍ଧତିରେ ବୋଉର ମନକଥା, ଅବା ତାଙ୍କ ପାଖକୁ କାହାର କିଛି ଜିନିଷ ଚୋରୀ ଯାଇଛି ବୋଲି ପ୍ରଶ୍ନ କରିବାକୁ ଆସିଲେ, ଆଗତୁରା, "ହାରଗ୍ଛେରି ଯାଇଛି - ହାରଟା ଏତେ ଭରୀ ଓଜନର ଅମୁକ ବର୍ଣ୍ଣର ପିଲାଟିଏ ତମଘରେ ଋକର ଅଛି - ସେଇ ନେଇଛି" ବୋଲି କହିଦେଇ ପାରୁଥିଲେ । ତାହାର ବୈଜ୍ଞାନିକ କାରଣମାନ ଏପର୍ଯ୍ୟନ୍ତ ଜାଣିପାରିନାହିଁ । କିନ୍ତୁ କାହିଁକି କେଜାଣି ମୋ ପିଲା ମନ ପଣ୍ଡିତଙ୍କର ଏ ଅନ୍ତର୍ଯ୍ୟାମୀତ୍ୱକୁ ସ୍ୱୀକାର କରିପାରୁନଥିଲା ।

ସେତେବେଳେକୁ ସବାବଡ଼ଭାଇ ବୁଢ଼ାଭାଇ (ରବିନାରାୟଣ ବରାଳ) ଏବଂ ମୋ ବଡ଼ଭାଇ ଅରୁଣ କୁମାର ବରାଳ ଦୁହିଁଙ୍କୁ ଅକସ୍ମାତ୍ ଟାଇଫଏଡ୍ ହେଲା । ଟାଇଫଏଡ୍‌ର ଔଷଧ ବୋଧହୁଏ ସେବେ ବାହାରିନଥିଲା । ଯାହା ଫଳରେ ଚୌଧୁରୀ ବଜାରର ସୁପ୍ରସିଦ୍ଧ ହୋମିଓପାଥି ଡାକ୍ତର କୁଳମଣି ମିଶ୍ରଙ୍କ ଠାରୁ ହୋମିଓପାଥି ତଥା ଘରୋଇ ଠୁଣ୍ଟୁଣିକିଆ ଔଷଧ ଖାଇବା ବ୍ୟତୀତ ଗତ୍ୟନ୍ତର ନଥିଲା । ବଡ଼ବାପା, ବଡ଼ବୋଉ ମଧ ଆସି ପହଞ୍ଚିଲେ । ଘରଟା ପ୍ରାୟ ହସପିଟାଲ ପରି ଲାଗିଲା । ଦି' ବାପାଙ୍କର (ବାପା ଓ ବଡ଼ବାପା) ଦି' ବଡ଼ପୁଅ ସେତେବେଳକୁ ବଡ଼ଭାଇ ରବିନାରାୟଣ ବରାଳ, ସେକେଣ୍ଡ କ୍ଲାସରେ ଫାଷ୍ଟ ହୋଇ ଓଡ଼ିଶାରେ ଏମ୍.ଏ. ପାଶ କରିଥାନ୍ତି ଏବଂ ତାଙ୍କର ଏମ୍.ପି.ସି. କଲେଜରେ ପୋଷ୍ଟିଂ ହୋଇଥାଏ । ଟାଇଫଏଡ୍ ହୋଇଥିବାରୁ ସେ ସମୟ ନେଇଥାଆନ୍ତି ।

ଏମିତିବେଳେ ମୋ ମ୍ୟାଟ୍ରିକ ଫଳ ବାହାରିଲା - ମୁଁ ୨ୟ ଶ୍ରେଣୀରେ ପାଶ୍ କଲି । ଯଦିଓ ସବୁ ସାଙ୍ଗମାନେ ଫାଷ୍ଟ ଡିଭିଜନ ପାଇଲେ । ମୋତେ ବିଜ୍ଞାନ ପଢ଼ାଇବାକୁ, ପଣ୍ଡିତ ଗଦାଧର ନାୟକଙ୍କର ଘୋଷଣା ଯେ, "ମୁଁ ବଡ଼ହେଲେ ଡାକ୍ତର ହେବି, ଏଇ ବାଣୀକୁ ସତ୍ୟ କରିବା ପାଇଁ ବାପା ବୋଉ, ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ନାମ ଲେଖାଇବାକୁ କହିଲେ । ମୋର ବଡ଼ ଭଉଣୀ କୁଶଅପା (ଶ୍ରୀମତୀ ସ୍ନେହଲତା ପ୍ରଧାନ)ଙ୍କର ବର, ଭାଗିରଥୀ ପ୍ରଧାନ, ମୋର ବଡ଼ଭିଣୋଇ ପୁରୀରେ ଏ.ଜି. ଅଫିସରେ ସୁପରିନ୍‌ଟେଣ୍ଡେଣ୍ଟ ଥାଆନ୍ତି - ପରେ ସେ ଡି.ଏ.ଜି. ହୋଇ ଅବସର ନେଲେ । ତାଙ୍କ ସାଙ୍ଗ ପ୍ରାଣବନ୍ଧୁ କର ସେତେବେଳକୁ ପୁରୀ କଲେଜ ଅଧାପକ ଥା'ନ୍ତି - ମୋତେ ଗୋବିନ୍ଦ ବୋଲି ଜଣେ ପିଅନ ସାଙ୍ଗରେ ନେଇ ଯାଉଥାଏ - ଆଇ.ଏସ୍.ସିରେ ଫିଜିକ୍ସ, କେମିଷ୍ଟ୍ରି, ବାୟୋଲୋଜି ନେଇ ନାଁ ଲେଖାଇବି କ'ଣ, ମୁଁ ଦରଖାସ୍ତ ଫର୍ମରେ, ଆଇ.ଏ. କ୍ଲାସରେ ଇକୋନୋମିକ୍ସ, ଲଜିକ୍, ଓଡ଼ିଆ ନେଇ ପଢ଼ିବାକୁ ନାଁ ଲେଖାଇଦେଲି । ବାପା ହରିକା

ଦୀର୍ଘଦିନ ଧରି ଏକଥା ଜାଣିନଥିଲେ - ଗଦାଧରଙ୍କର ଅନ୍ତର୍ଯ୍ୟାମୀ ବାଣୀକୁ ମିଥ୍ୟା ପ୍ରମାଣିତ କରିବା ପାଇଁ ସଫଳ ହୋଇ ତାଙ୍କୁ କହିଥିଲି, "ଗଦେଇଭାଇ, ତମେ ମିଛୁଆ ହେଲ, ତମ କଥା ହେଲାନାହିଁ - ମୁଁ ଡାକ୍ତର ହେବିନାହିଁ - ସେ ବାଟ ଭାଙ୍ଗି ମୁଁ ଅନ୍ୟଆଡ଼େ ବାହାରି ଆସିଲି । ପୁରୀ କଲେଜରେ ଆଇ.ଏ. ଶ୍ରେଣୀରେ ନାଁ ଲେଖାଇଲି ୧୯୫୦ ମସିହାରେ -

ଡାକ୍ତର ନହୋଇ, ଯାହା ହୋଇଛି ବା ହେଲି ତାହା ତ ଜଗତସାରା ସର୍ଭିଙ୍କୁ ଜଣା । ମୋର ଲୋଭନୀୟ ଶୈଶବ, ପିଲାଦିନର ସବୁ ଲୀଳାଖେଳା, ସବୁ ଶେଷ ହୋଇଗଲା ।"

ପୁଅକୁ ଜଣେ ଡାକ୍ତର ରୂପେ ଦେଖିବା ପାଇଁ ଭ୍ରମରବରଙ୍କ ସ୍ୱପ୍ନ ସେଦିନ ହୁଏତ ଅଧୁରା ରହିଗଲା, ମାତ୍ର ଦୁଃଖ, ଦୈନ୍ୟ, ଯନ୍ତ୍ରଣା ଜର୍ଜରିତ ଲକ୍ଷ ଲକ୍ଷ ଲୋକଙ୍କ ଆଖିର ଲୁହ ଓ ହୃଦୟର କୋହକୁ ପୋଛିଦେବା ପାଇଁ, ଅର୍ଦ୍ଧାହାର ଅନାହାର କ୍ଲିଷ୍ଟ ମଣିଷଙ୍କ ପେଟକୁ ଆହାର ମୁଠିଏ ଦେବାଲାଗି ତାଙ୍କ ପୁଅ ଯେ କେତେ ବଡ଼ ସାହାସୀ ସଂଗ୍ରାମୀ ଯୋଦ୍ଧା ସାଜିପାରନ୍ତି, ତାହା ଦେଖିବା ପରେ ବାପାଙ୍କ ଦୁଃଖ ନିଶ୍ଚିତ ଭାବରେ କିଛି ପରିମାଣରେ ଲାଘବ ହୋଇଥିବ । ପୁରୀ ଜିଲ୍ଲା ସ୍କୁଲରେ ପଢ଼ି ମାଟ୍ରିକ ପାଶ୍ କରିବା ପରେ ଅବନୀ କଲେଜ ଶିକ୍ଷା ଗ୍ରହଣ କରିବାକୁ ଆସିଥିଲେ କଟକ । ଖ୍ରୀଷ୍ଟ କଲେଜରୁ ବି.ଏ. ଏବଂ ରେଭେନ୍ସା କଲେଜରୁ ଓଡ଼ିଆରେ ଏମ୍.ଏ. ପାଶ୍ କରିବା ପରେ ଆନୁଷ୍ଠାନିକ ଶିକ୍ଷା ସୋପାନର ଚୂଡ଼ାନ୍ତ ସ୍ତରରେ ସେ ପହଞ୍ଚି ଯାଇଥିଲେ । ସେତେବେଳକୁ ଶାନ୍ତି, ମୁକ୍ତି, ସାମ୍ୟ ପ୍ରତିଷ୍ଠା ପାଇଁ ଚାଲିଥିବା ଲଢ଼େଇର ସିପାହୀ ବନିସାରିଥିବା ଯୁବକଙ୍କ ଆଗରେ ବିରାଟ ପ୍ରଶ୍ନବାଚୀ । ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀଧାରୀଙ୍କ ପାଇଁ ଭବିଷ୍ୟତର ରଙ୍ଗୀନ୍ ସ୍ୱପ୍ନ । ବଡ଼ ଚାକିରୀ କରି ଅଧିକ ଅର୍ଥ ଉପାର୍ଜନ କରି ସମାଜର ବଡ଼ପଣ୍ଡା ରୂପେ ଠିଆ ହେବେ ନା ଛାତ୍ର ଜୀବନରୁ ନୀତି, ଆଦର୍ଶ ଓ ମୂଲ୍ୟବୋଧ ଭିତ୍ତିକ ସଂଗ୍ରାମର ଯେଉଁ ବନ୍ଧୁର ପଥ ବାଛି ନେଇଛନ୍ତି ସେଥିରେ ଅଟଳ ରହିବେ ? ବହୁ ଭାବିଚିନ୍ତି ଦ୍ୱିତୀୟ ପଥଟିକୁ ହିଁ ବାଛି ନେଇଥିଲେ ଉଚ୍ଚଶିକ୍ଷିତ ତରୁଣ ଅବନୀ, ଯାହା ଥିଲା ଦୁର୍ଗମ ଓ କଣ୍ଟକିତ ।



# ସଂସ୍କୃତି ଓ ରଙ୍ଗମଞ୍ଚରୁ ଗଣଆନ୍ଦୋଳନର ଜୁଆରରେ...



ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଭାରତର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ସୃଷ୍ଟି ହୋଇଥିଲା ଏକ ବଡ଼ ଧରଣର କମ୍ପନ, ଯାହାର ପ୍ରଭାବରୁ ମୁକ୍ତ ନଥିଲା ଓଡ଼ିଶା । ଦେଶରେ ଧନୀ-ଗରୀବ, ଥିଲାବାଲା-ନଥିଲା ବାଲା, ଶୋଷକ-ଶୋଷିତ ଶ୍ରେଣୀ ମଧ୍ୟରେ ମୁଣ୍ଡ ଟେକିଥିବା ବୈଷମ୍ୟର ମେଘନାଦ ପାଚେରୀକୁ ଭାଙ୍ଗି ଏକ ଶୋଷଣହୀନ, ଶ୍ରେଣୀହୀନ ସାମ୍ୟବାଦୀ ସମାଜ ପ୍ରତିଷ୍ଠା ପାଇଁ ଆକୁମାରୀ-ହିମାଚଳ ଗଣସଂଗ୍ରାମର ଯେଉଁ ଜୁଆର ଦେଖାଦେଲା, ତାହା କେବଳ ରାଜନୈତିକ କ୍ଷେତ୍ରକୁ ନୁହେଁ, ସାଂସ୍କୃତିକ ଜୀବନକୁ ମଧ୍ୟ ବିଶେଷ ପ୍ରଭାବିତ କରିଥିଲା । ଛାତ୍ର ଓ ଯୁବ ଆନ୍ଦୋଳନରୁ ଆରମ୍ଭ କରି ଯୁଦ୍ଧ ବିରୋଧୀ ଶାନ୍ତି-ମୈତ୍ରୀ ଆନ୍ଦୋଳନ ପର୍ଯ୍ୟନ୍ତ ସବୁଠି ପ୍ରତିଧ୍ୱନିତ ହୋଇଥିଲା ସାମ୍ୟବାଦୀ ଓ ସମାଜବାଦୀ ଚେତନାର ମହାମନ୍ତ୍ର, ଆବାଜ୍ ଉଠିଥିଲା ପୁଞ୍ଜିବାଦ-ସାମ୍ରାଜ୍ୟବାଦ ବିରୋଧୀ ସ୍ୱର । ଓଡ଼ିଶାରେ ଠିକ୍ ସେତିକିବେଳେ ସକ୍ରୀୟ ହୋଇ ଉଠିଥିଲା ଅଖିଳ ଭାରତ ଛାତ୍ର ସଂଘ, ଗଣତାନ୍ତ୍ରିକ ଯୁବସଂଘ, ଶାନ୍ତି-ମୈତ୍ରୀ ଓ ସଂହତି ପରିଷଦ, ଭାରତ-ସୋଭିଏତ୍ ସାଂସ୍କୃତିକ ସମିତି ଭଳି ଅନେକ ପ୍ରଗତିଶୀଳ ଅନୁଷ୍ଠାନ । ସାହିତ୍ୟ, ସଂସ୍କୃତି, ନାଟକ ଓ ରଙ୍ଗମଞ୍ଚଗୁଡ଼ିକରେ ମଧ୍ୟ ଶ୍ରେଣୀ ଚେତନାର ଉଦ୍‌ବେଳନ ଘଟିଥିଲା । ସାଧାରଣ ମଣିଷର ନିତିଦିନିଆ ଜୀବନର ଦୁଃଖ, ଦୈନ୍ୟ, ଯନ୍ତ୍ରଣାର କାହାଣୀକୁ ଆଧାର କରି ସୃଷ୍ଟି ହୋଇଥିଲା ସାହିତ୍ୟ, ପରିବେଷିତ ହୋଇଥିଲା ମଞ୍ଚ ନାଟକ । ସବୁ ପ୍ରକାର ଶୋଷଣ, କଷଣ ଓ ଅତ୍ୟାଚାରକୁ ବିରୋଧ କରିବାର ଅନ୍ତଃସ୍ୱର ସେସବୁରେ ବାରି ହୋଇ ପଡ଼ିଥିଲା । ୧୯୩୬

ମସିହାରେ ଲକ୍ଷ୍ନୌଠାରେ ସର୍ବଭାରତୀୟ ସ୍ତରରେ ଜନ୍ମ ନେଇଥିଲା ନିଖିଳ ଭାରତ ପ୍ରଗତିଶୀଳ ଲେଖକ ସଂଘ, ଯାହାର ପୁରୋଭାଗରେ ଥିଲେ ହିନ୍ଦୀ ସାହିତ୍ୟର କଥା ସମ୍ରାଟ ମୁନ୍‌ସୀ ପ୍ରେମଚାନ୍ଦ, ବିଶିଷ୍ଟ ଲେଖକ ମୁଲ୍‌କରାଜ ଆନନ୍ଦ, ସଜ୍ଜାଦ୍ ଜାହିର ଓ କିଷନ୍ ଚନ୍ଦର୍ ପ୍ରମୁଖ ମହାରଥୀ । ସେହିପରି ଶତାବ୍ଦୀର ୪୦ ଦଶକରେ ଜନଅଭିମୁଖୀ ପ୍ରଗତିଶୀଳ ନାଟକ ମଞ୍ଚସ୍ଥ କରିବାର ଲକ୍ଷ୍ୟ ନେଇ ଗଠିତ ହୋଇଥିଲା ଇଣ୍ଡିଆନ୍ ପିପୁଲ୍‌ସ ଥିଏଟର ଆସୋସିଏସନ୍, ଯାହାର ସଂକ୍ଷିପ୍ତ ନାମକରଣ କରାଯାଇଥିଲା 'ଇପ୍‌ଟା' । ପ୍ରସିଦ୍ଧ ଅଭିନେତା ବଳରାଜ ସାହାନୀ, ଏ.କେ. ହାଙ୍ଗଲ୍, ସଙ୍ଗୀତ ନିର୍ଦ୍ଦେଶକ ସଲିଲ ଚୌଧୁରୀ, ଭୂପେନ୍ ହଜାରିକା, ଅଭିନେତ୍ରୀ ଦୀନା ପାଠକ, କଇଫି ଆଜ୍‌ମୀ (ସାବାନା ଆଜ୍‌ମୀଙ୍କ ପିତା)ଙ୍କ ପରି ଜଣାଶୁଣା ଅଭିନେତା ଓ କଳାକାର ଏହି ସଙ୍ଗଠନ ସହ ଜଡ଼ିତ ଥିଲେ । ବିପ୍ଳବୀ ମହାନାୟକ ଭ୍ଲାଡ଼ିମିର୍ ଲେନିନ୍‌ଙ୍କ ନେତୃତ୍ୱରେ ୧୯୧୭ରେ ସଂଘଟିତ ହୋଇଥିଲା ରୁଷ ବିପ୍ଳବ ଏବଂ ଜନ୍ମ ନେଇଥିଲା ବିଶ୍ୱର ପ୍ରଥମ ସମାଜବାଦୀ ରାଷ୍ଟ୍ର ସୋଭିଏତ୍ ୟୁନିୟନ୍ । ଏହି ବିପ୍ଳବର ସଫଳତା ପରେ ସମୃଦ୍ଧି ଓ ବିକାଶ ପଥରେ ଆଗେଇ ଚାଲି ବିଶ୍ୱର ଏକ ମହାଶକ୍ତିରେ ପରିଣତ ହୋଇଥିବା ସୋଭିଏତ୍ ରୁଷ୍ ସହ ସ୍ୱାଧୀନ ଭାରତର ମୈତ୍ରୀ ବନ୍ଧନକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ସାଂସ୍କୃତିକ ସମ୍ପର୍କକୁ ନିବିଡ଼ କରିବାର ଲକ୍ଷ୍ୟ ନେଇ ଶତାବ୍ଦୀର ପଞ୍ଚମ ଦଶକରେ ଅରୁଣା ଆସଫ୍ ଅଲ୍ଲୀ, ଡଃ. ବାଲିଗା, କେ.ପି.ଏସ୍. ମେନନ୍ ପ୍ରମୁଖଙ୍କ ନେତୃତ୍ୱରେ ମୁଣ୍ଡ ଟେକିଥିଲା "ଇଣ୍ଡୋ-ସୋଭିଏତ୍ କଲଚରାଲ୍ ସୋସାଇଟି" ବା ଇସ୍‌କସ୍ । ସେହିପରି ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ ଭଳି ସାମ୍ରାଜ୍ୟବାଦୀ ଶକ୍ତିଙ୍କ ଯୁଦ୍ଧଖୋର ମନୋଭାବକୁ ପ୍ରତିହତ କରିବା ସହିତ ବିଶ୍ୱବ୍ୟାପୀ ଶାନ୍ତିର ବାର୍ତ୍ତା ପ୍ରଚାର ଉଦ୍ଦେଶ୍ୟରେ ଗଠିତ ବିଶ୍ୱ ଶାନ୍ତି ଓ ସଂହତି ପରିଷଦର ସର୍ବଭାରତୀୟ ଶାଖାର ନେତୃତ୍ୱ ନେଇଥିଲେ ଜାଲିଆନାୱାଲାବାଗ୍ ଗଣ ସଂଗ୍ରାମର ପ୍ରସିଦ୍ଧ ନେତା ସଇଫୁଦ୍ଦିନ୍ କିଚ୍‌ଲୁ, ବିଶିଷ୍ଟ ଗାନ୍ଧିବାଦୀ ପଣ୍ଡିତ ସୁନ୍ଦରଲାଲ୍, ରମେଶଚନ୍ଦ୍ର ଓ ରାମେଶ୍ୱରୀ ନେହେରୁ ପ୍ରମୁଖ ବହୁ ସୁପ୍ରସିଦ୍ଧ ବ୍ୟକ୍ତିତ୍ୱ । ଉପରୋକ୍ତ ସମସ୍ତ ଗଣ ସଙ୍ଗଠନର ଆଭିମୁଖ୍ୟରେ ଯେଉଁ ସମାନତା ପରିଲକ୍ଷିତ ହୋଇଥିଲା, ତାହା ହେଉଛି ସାମ୍ରାଜ୍ୟବାଦ ବିରୋଧରେ ରଣ ହୁଙ୍କାର ଏବଂ ଶୋଷିତ, ଦଳିତ, ଅବହେଳିତ ମଣିଷର ଅଭ୍ୟୁତ୍‌ଥାନ ସହ ମାନବବାଦର ଜୟଗାନ୍ ।

ଏହି ସର୍ବଭାରତୀୟ ଜନଜାଗରଣର ଆବାଜ୍ ଓଡ଼ିଶାକୁ ପ୍ରକମ୍ପିତ କଲାବେଳେ କୈଶୋରରୁ ଯୌବନରେ ପାଦ ଥାପୁଥିବା ୧୬/୧୭ ବର୍ଷ ବୟସର ଛାତ୍ର ଅବନୀ ସେଥିରୁ ଦୂରେଇ ରହିବେ ବା କିପରି ? ଇଣ୍ଟରମିଡିଏଟ୍ ପାଶ୍ କରି କଟକର ଖ୍ରୀଷ୍ଟ

କଲେଜରେ ବି.ଏ. ଅନର୍ସ ଶ୍ରେଣୀରେ ପାଠ ପଢୁଥିବା ଅବନୀ ସେହି ସମସ୍ତ ସଂଗ୍ରାମରେ କେବଳ ଝାସ ଦେଇନଥିଲେ, ଏହାର ଅଗ୍ରଭାଗରେ ରହି ନେତୃତ୍ୱ ପ୍ରଦାନ କରିଥିଲେ । ୧୯୫୨ ମସିହାରେ ମାତ୍ର ସତର ବର୍ଷ ବୟସରେ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ହୋଇ ଏହାର ଛାତ୍ର ସେଲ୍‌ରେ କାର୍ଯ୍ୟ କରୁଥିବା ଏହି ତରୁଣ ଦେଶପ୍ରେମୀ ଓଡ଼ିଶାରେ 'ଇପ୍‌ଟା'ର ମୂଳଦୁଆ ପକାଇବା ଠାରୁ ଆରମ୍ଭ କରି ଛାତ୍ରସଂଘର ରାଜ୍ୟ ସମ୍ମିଳନୀରେ ବୈପ୍ଳବିକ ଚେତନାଧର୍ମୀ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ ପର୍ଯ୍ୟନ୍ତ ସବୁଥିରେ ଆଗୁଆ ହୋଇ ବାହାରିଥିଲେ । ବିଗତ ଶତାବ୍ଦୀର ପଞ୍ଚମ ଦଶକ ପୂର୍ବରୁ ଓଡ଼ିଶାରେ ନାଟକ ପରିବେଷଣ କରୁଥିବା ଅନୁଷ୍ଠାନଗୁଡ଼ିକ ମୁଖ୍ୟତଃ ବ୍ୟକ୍ତିଗତ ମାଲିକାନାରେ ପରିଚାଳିତ ହେଉଥିଲା । ସେମାନଙ୍କ ମର୍ଜିରେ କାର୍ଯ୍ୟ କରୁଥିବା ଅଭିନେତା-ଅଭିନେତ୍ରୀ ଓ କଳାକାରମାନେ ନାନା ଭାବରେ ଶୋଷିତ ହେଉଥିଲେ । ତେଣୁ ରାଜ୍ୟର କେତେକ ପ୍ରତିଷ୍ଠିତ ମଞ୍ଚ ଅଭିନେତା ସେମାନଙ୍କର ନିଜସ୍ୱ ଏକ ରଙ୍ଗମଞ୍ଚ ପ୍ରତିଷ୍ଠାର ସ୍ୱପ୍ନ ନେଇ ଆଗେଇ ଆସିଥିଲେ ଏବଂ ଗଠନ କରିଥିଲେ 'ଜନତା ରଙ୍ଗମଞ୍ଚ' । ଓଡ଼ିଶାର ପେଶାଦାର ରଙ୍ଗମଞ୍ଚ ଦୁନିଆରେ ଆରମ୍ଭ ହୋଇଥିଲା ଏକ ନୂତନ ପରୀକ୍ଷା । ରାଜ୍ୟରେ 'ଇପ୍‌ଟା' ଗଠନରୁ ଆରମ୍ଭ କରି 'ଜନତା ରଙ୍ଗମଞ୍ଚ'ର ଜନ୍ମ ଜାତକ ଲେଖା ପର୍ଯ୍ୟନ୍ତ ସବୁଠି ତରୁଣ ଅବନୀଙ୍କ ଯେଉଁ ଅସାମାନ୍ୟ ଅବଦାନ ରହିଥିଲା, ତାହାକୁ ସ୍ମରଣ କରି ସୁପ୍ରସିଦ୍ଧ ମଞ୍ଚ ଓ ଚଳଚିତ୍ର ଅଭିନେତା ଗୋପାଳ ଘୋଷ କହନ୍ତି -

ମୁଁ (ଗୋପାଳ ଘୋଷ) ୧୯୫୦ ମସିହାରେ ପ୍ରାଚୀନ କଟକ ସହର ଓ ଓଡ଼ିଶାର କଳା ଓ ସଂସ୍କୃତି ସହିତ ଜଡ଼ିତ ଥିଲି । ରେଭେନ୍ସା କଲେଜରେ ପଢୁଥିଲା ବେଳେ ଛାତ୍ରସଂଘର ସାଂସ୍କୃତିକ ସେଲ୍‌ରେ କାମ କରୁଥିଲି । ସେତେବେଳେ ଶ୍ରୀ ଅବନୀ କୁମାର ବରାଳ ଛାତ୍ର ସେଲରେ କାମ କରୁଥିଲେ । ପ୍ରଥମେ ଆମେ ଦୁହେଁ ଚାନ୍ଦିନୀଚୌକ କମ୍ୟୁନିଷ୍ଟ ପାର୍ଟି ଅଫିସରେ ଦେଖା ସାକ୍ଷାତ ଓ ଚିହ୍ନା ପରିଚୟ ହେଲୁ । ଛାତ୍ର ସେଲରେ ଯେଉଁମାନେ କାମ କରୁଥିଲେ ତନ୍ମଧ୍ୟରୁ ଶ୍ରୀଯୁକ୍ତ ଅବନୀ ବାବୁଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରତି ବହୁତ ଆଗ୍ରହ ଥିଲା ।

୧୯୫୧ ମସିହାରେ 'ଇପ୍‌ଟା'ର ସାଧାରଣ ସମ୍ପାଦକ ଶ୍ରୀଯୁକ୍ତ ନିରଞ୍ଜନ ସେନ୍ କଟକ ଆସିଥାନ୍ତି । ଏକ ସଭାରେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେବା ଅବସରରେ ଓଡ଼ିଶାରେ ତଥା କଟକ ସହରରେ 'ଇପ୍‌ଟା' - (All India people's Theatre Association, (IPTA))ର ଏକ ଶାଖା ଗଠନ କରିବାକୁ ପରାମର୍ଶ ଦେଲେ । ଇପ୍‌ଟା କଟକରେ ଗଠିତ ହେଲା । ଶ୍ରୀଯୁକ୍ତ ଅଶୋକ ରାଓ ସଭାପତି ଓ ମୁଁ (ଗୋପାଳ ଘୋଷ) ସମ୍ପାଦକ, ଅବନୀ

ବାବୁ ସେଥିରେ ଯୁଗ୍ମ ସାଧାରଣ ସମ୍ପାଦକ ଦାୟିତ୍ୱ ବହନ କରିଥିଲେ । ପ୍ରଥମ ଉନ୍ମାଦନାରେ ବହୁ ଛାତ୍ର ଆସି ଆମ ସଂଗଠନରେ ଯୋଗ ଦେଲେ । ସେଥିରେ ଶ୍ରୀ ଅବନୀ ବାବୁଙ୍କ କାର୍ଯ୍ୟ ଖୁବ୍ ପ୍ରଶଂସନୀୟ ଥିଲା । ଇପ୍‌ଟା ମାଧ୍ୟମରେ ସେ ସମୟରେ ଦେଶ ତଥା ଓଡ଼ିଶାର ପରିସ୍ଥିତି ସମ୍ପର୍କରେ ଛୋଟ ଛୋଟ ପ୍ରଥପ୍ରାନ୍ତ ନାଟକ ଜରିଆରେ ଲୋକମାନଙ୍କୁ ସଚେତନ କରାଉଥିଲୁ ଏବଂ ତା' ସହିତ ସ୍ୱେଚ୍ଛାସେବୀ ଭାବେ କାର୍ଯ୍ୟ କରୁଥିଲୁ । ଓଡ଼ିଶାରେ ମରୁଡ଼ି, ବନ୍ୟା, ବାତ୍ୟା ଓ ଦୁର୍ଭିକ୍ଷ ବେଳେ ଲୋକଙ୍କୁ ଉଦ୍ଧାର କାର୍ଯ୍ୟ କରିବା ଏବଂ ଚାନ୍ଦା ସଂଗ୍ରହ କରି ସେମାନଙ୍କ ପାଇଁ ଖାଦ୍ୟ ସାମଗ୍ରୀ ଓ ଔଷଧପତ୍ର ଇତ୍ୟାଦି ନେଇ ପହଞ୍ଚୁଥିଲୁ । ଯେଉଁଠାରେ ବର୍ତ୍ତମାନ 'ଜନତା ରଙ୍ଗମଞ୍ଚ' ଅଛି ସେଠାରେ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକଙ୍କର ଓଡ଼ିଶା ଥିଏଟର ଥିଲା । ଅନ୍ତର୍ବିବାଦ ହେତୁ କାଳିବାବୁଙ୍କ ଓଡ଼ିଶା ଥିଏଟର ଭାଙ୍ଗିଗଲା । ଠିକ୍ ସେହି ସମୟରେ "ରୂପଶ୍ରୀ ଥିଏଟର" ନାମରେ ଅନ୍ୟ ଏକ ରଙ୍ଗମଞ୍ଚ କଲେଜ ଛକ ସ୍ଥିତ ଏକ ମାରୱାଡ଼ିର ଗୋଦାମ ଘର ଭଡ଼ାରେ ନେଇ ମଞ୍ଚସ୍ଥ କରାଯାଉଥିଲା । କିନ୍ତୁ ସହରଠାରୁ ବହୁଦୂର ହେତୁ ଦର୍ଶକ ଅଭାବ ଦେଖାଦେଲା । ଧିରେ ଧିରେ 'ରୂପଶ୍ରୀ' ମଧ୍ୟ ବନ୍ଦ ହୋଇଗଲା । ସେହି 'ରୂପଶ୍ରୀ'ର କଳାକାରବୃନ୍ଦ ଇପ୍‌ଟାକୁ ଆସି କିପରି ନାଟକ ମଞ୍ଚସ୍ଥ ହେବ ଉଦ୍ୟମ କରିବାକୁ କହିଲେ । ଅବନୀ ବାବୁଙ୍କ ସହିତ ପରାମର୍ଶ କରି ଏକ ପ୍ରେକ୍ଷାଳୟ ସନ୍ଧାନରେ ଥିଲା ବେଳେ, ସେତେବେଳେ କାଳିବାବୁଙ୍କର "ଓଡ଼ିଶା ଥିଏଟର" ବନ୍ଦ ହୋଇଯାଇଥାଏ । ସେହି ଜାଗାର ମାଲିକ ଓକିଲ ଶ୍ରୀ ସୁଶୀଲ ପାଲିତ୍ ଯିଏକି କାୟସ୍ଥ ସଭାର ସଭାପତି ଥିଲେ, ତାଙ୍କୁ ଭେଟିଲୁ । ସେ ମଧ୍ୟ ନାଟକ ପ୍ରିୟ ଥିଲେ । ଆମକୁ ଭଡ଼ା ସୂତ୍ରେ ଜାଗା ମିଳିଲା । ପ୍ରେକ୍ଷାଳୟ ନାହିଁ, ତିଆରି କରିବାକୁ ହେବ । ନିଷ୍ପତ୍ତି କଲୁ ଚାନ୍ଦା ଆଦାୟ ହେବ । ସେହି ଅର୍ଥରେ ପ୍ରେକ୍ଷାଳୟ ହେବ ।

ସେତେବେଳେ ପ୍ରେକ୍ଷାଳୟଟିଏ କରିବାକୁ ଟ. ୫୦,୦୦୦/- ଦରକାର । ଆମ୍ଭେମାନେ କଳାକାରମାନଙ୍କୁ ସଙ୍ଗରେ ଧରି ମାସେ କାଳ ଦ୍ୱାର ଦ୍ୱାର ବୁଲି ୫୦୦ ଟଙ୍କା ଯୋଗାଡ଼ କଲୁ । ଆମ ସଙ୍ଗରେ ଜଣେ ଓକିଲ ବନ୍ଧୁ ଶ୍ରୀ ଭୁବନ ମୋହନ ପଟ୍ଟନାୟକ ଥିଲେ । ସେ ହଠାତ୍ ପରାମର୍ଶ ଦେଲେ ଯେ ଚାଲଯିବା ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ପାଖରୁ କିଛି ସାହାଯ୍ୟ ଭିକ୍ଷା କରିବା । ଆମେ ଆଶା କରୁଥିଲୁ ବିଜୁବାବୁଙ୍କ ପାଖରୁ ଟ.୫୦୦/- ପାଇବୁ । ସେତେବେଳେ ବିଜୁବାବୁଙ୍କର OTM ଚାଲିଥାଏ । କିନ୍ତୁ ସେ ଅଧିକାଂଶ ସମୟରେ ପ୍ୟାରିସ୍ ଓ ୟୁରୋପିଆନ୍ ଦେଶକୁ ନାନାଦି ବ୍ୟବସାୟ ପାଇଁ ଚାଲିଯା'ନ୍ତି । ୧୯୫୨ରେ ରାଜନୀତିରେ ସକ୍ରିୟ ଥାଇ ମଧ୍ୟ ବ୍ୟବସାୟ ଥିଲା ତାଙ୍କର

ମୁଖ୍ୟ କାର୍ଯ୍ୟ । ଆମ୍ଭେମାନେ ଭୁବନବାବୁଙ୍କ କଥା ଅନୁଯାୟୀ, ଭୁବନ ମୋହନ ପଟ୍ଟନାୟକ, ନିରଞ୍ଜନ ଶତପଥୀ, ଗୋପାଳ ଘୋଷ, ନଟବର ସେଣ, ନରସିଂହ ମହାପାତ୍ର ପ୍ରମୁଖ ବିଜୁବାବାଙ୍କୁ ଆନନ୍ଦଭବନ ଘରେ ଦେଖାକଲୁ । ଭୁବନବାବୁ, ବିଜୁ ବାବୁଙ୍କ ରେଭେନ୍ସା କଲେଜରେ ଏକା କ୍ଲାସରେ ପଢୁଥିଲେ । ଆମଠାରୁ ବିଜୁବାବୁ ସବୁ ଶୁଣି କହିଲେ - "ଓଡ଼ିଶାରେ ଓଡ଼ିଆ ନାଟକ ହେବ ତା' ପୁଣି ଝାଟିମାଟି ଚାଳ ଘରେ" ? ଏଥିରେ କ'ଣ ଓଡ଼ିଶାର ଗୌରବ ବଢ଼ିବ ? ଆମେ କହିଲୁ ପଇସା ନାହିଁ । ଆପଣଙ୍କ ପାଖକୁ କିଛି ଚାନ୍ଦା ପାଇଁ ଆସିଛୁ । ସେ କିଛି ସମୟ ଗୁମ୍ ରହିଲେ । ଘର ଭିତରକୁ ଚାଲିଗଲେ । ଆମେ ଭାବିଲୁ କିଛି ଭଲ ଚାନ୍ଦା ମିଳିବ । ଫେରି ଆସି କହିଲେ ଅପେକ୍ଷା କର । ଏକ ଘଣ୍ଟା ପରେ ଓ.ଟି.ଏମ୍.ର କଣ୍ଟ୍ରାକ୍ଟର ପ୍ରତାପ ସିଂ ଆସି ପହଞ୍ଚିଲେ । ବିଜୁ ବାବୁ କହିଲେ ପିଲାମାନେ ଗୋଟିଏ ରଙ୍ଗମଞ୍ଚ ଚାହାନ୍ତି, ତୁମେ ତିଆରି କରିଦିଅ । କେତେ ଖର୍ଚ୍ଚ ହେଲା ମୋତେ ବିଲ୍ ଦିଅ । ଆମକୁ କହିଲେ ଯାଅ ତୁମର କାମ ହୋଇଗଲା । ତୁମେ କିନ୍ତୁ ରଙ୍ଗମଞ୍ଚ ନାମ "ଜନତା ରଙ୍ଗମଞ୍ଚ" ରଖିବ । ଅଳ୍ପ ପଇସାରେ ସାଧାରଣ ଲୋକଙ୍କୁ ମନୋରଞ୍ଜନ ସୁବିଧା ଦେବା ପାଇଁ ଜନତା ରଙ୍ଗମଞ୍ଚ ତିଆରି ହେଲା । ଆମର ଇପ୍‌ଟାର ସଭାସମିତି ଦିନରେ ହୁଏ । ମଝିରେ ମଝିରେ ଇପ୍‌ଟା ତରଫରୁ ନାମୀ ଦାମୀ କଳାକାର କଲିକତା ଓ ବମ୍ବେରୁ ଆସୁଥିଲେ ଅଭିନୟ କରିବା ପାଇଁ ସେମାନଙ୍କ ମଧ୍ୟରୁ ବାଲରାଜ ସାହାଣୀ, ଶମ୍ଭୁ ଭଟ୍ଟାଚାର୍ଯ୍ୟ ଇତ୍ୟାଦି । ଶମ୍ଭୁ ଭଟ୍ଟାଚାର୍ଯ୍ୟଙ୍କର 'Runner' ଉପରେ ଗୀତ ଓ ବାଲେ ନୃତ୍ୟ ସେତେବେଳେ ପୃଥିବୀରେ ଆଦୃତ ହୋଇଥିଲା ।

ଜନତା ରଙ୍ଗମଞ୍ଚରେ କେହି ମାଲିକ ନଥିବାରୁ କଳାକାରଙ୍କ ମଧ୍ୟରୁ ଜଣେ ଜଣେ ବାରମ୍ବାର ସେଥିରେ ହସ୍ତକ୍ଷେପ କରି ନାଟକ ଚଳାଉଥିଲେ । ଏହି ସମୟରେ ଇପ୍‌ଟା ବାରମ୍ବାର ସେଥିରେ ହସ୍ତକ୍ଷେପ କରି ଜନତା ରଙ୍ଗମଞ୍ଚର ଏକ ସମ୍ବିଧାନ ତିଆରି ହେଲା । କର୍ମକର୍ତ୍ତା, ନିର୍ବାଚିତ ହେଲେ । ସେଥିରେ ଶ୍ରୀଯୁକ୍ତ ଅବନୀ କୁମାର ବରାଳ ମଧ୍ୟ ପରେ ସମ୍ପାଦକ ହୋଇଥିଲେ । ଅବନୀ ବାବୁ ବହୁ ଦକ୍ଷତାର ସହିତ ଦାୟିତ୍ୱ ସମ୍ପାଦନ କରିଥିଲେ । ପରବର୍ତ୍ତୀ ସମୟରେ ପ୍ରାଣନାଥ କଲେଜରେ ଅଧ୍ୟାପକ ଚାକିରୀ କରିବାକୁ ପଡ଼ିଲା । ଏତେ ଅଧିକ ଦାୟିତ୍ୱ ତୁଲାଇ ପାରିଲେ ନାହିଁ କି ସମୟ ଦେଇପାରିଲେ ନାହିଁ । କିନ୍ତୁ ଅନୁଷ୍ଠାନକୁ ଏଭଳି ଏକଧାରାରେ ପକାଇଥିଲେ ଯେ, ଜନତା ରଙ୍ଗମଞ୍ଚ କଟକ ସହରରେ ଏକ ଲୋକପ୍ରିୟ ପ୍ରେକ୍ଷାଳୟ ଭାବରେ ଉଭା ହେଲା ଓ ସାଧାରଣ ମଣିଷମାନଙ୍କୁ ଅଳ୍ପ ପଇସାରେ ମନୋରଞ୍ଜନ ସୁବିଧା ଯୋଗାଇ ପାରିଲା । ୧୯୫୬ ମସିହାରେ ଭାରତ ଓ ସୋଭିଏତ୍ ଦେଶ ମଧ୍ୟରେ ଶାନ୍ତିମୈତ୍ରୀ ଚୁକ୍ତି ପରେ ଋଷିଆର

ରାଷ୍ଟ୍ରଦୂତ ଓଡ଼ିଶା ଆସିଥିଲେ । ଓଡ଼ିଶାରେ ଗୋଟିଏ "ଭାରତ ଓ ସୋଭିଏତ୍ ମୈତ୍ରୀସଂଘ" (Indo Soviet Cultural Society) ଗଠନ କରାଯାଇଥିଲା । ସେଥିରେ ମୁଁ ସମ୍ପାଦକ ଏବଂ ତତ୍କାଳୀନ ବାରିଷ୍ଟର ବିରେନ୍ ପଟ୍ଟନାୟକ ସଭାପତି ହୋଇଥିଲା ବେଳେ ରାମଚନ୍ଦ୍ର ରାମ, ବିପିନ୍ ବିହାରୀ ମହାନ୍ତି ଓ ଅବନୀ ବାବୁ ପ୍ରମୁଖ ଭିନ୍ନ ଭିନ୍ନ କର୍ମକର୍ତ୍ତା ନିର୍ବାଚିତ ହୋଇଥିଲେ । ୧୯୬୯ରେ ଇସ୍କସ୍ କାର୍ଯ୍ୟାଳୟରେ ସ୍ୱେଚ୍ଛାରେ ବାରବାଟି ଫିଲ୍ମସ୍ କ୍ଲବ ନାମରେ ଏକ ପ୍ରତିଷ୍ଠାନ ଆରମ୍ଭ ହୋଇଥିଲା । ଯେଉଁଥିରେ ବିଶ୍ୱନାଥ ପଣ୍ଡାୟତ ସଭାପତି, ମୁଁ ସମ୍ପାଦକ, ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ କୋଷାଧ୍ୟକ୍ଷ ଓ ସଙ୍ଗଠକ ଏବଂ ଶ୍ରୀଯୁକ୍ତ ଅବନୀ ବାବୁ ସହଯୋଗୀ ଥିଲେ । ଆଜି ଜନତା ରଙ୍ଗମଞ୍ଚର ଭଗ୍ନ ପ୍ରେକ୍ଷାଗୃହ ନୀରବରେ ଦଣ୍ଡାୟମାନ ।"

ମନୋରଞ୍ଜନର ଖୋରାକ ଯୋଗାଇବା ସହିତ ନୂତନ ସମାଜର ସୃଷ୍ଟି ପାଇଁ ଗଣଜାଗରଣ ଉଦ୍ରେକ କରିବାକୁ 'ଇପ୍‌ଟା' ଏକ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିଥିଲା । ଗଣସଂସ୍କୃତି, ଗଣସଙ୍ଗୀତ, ନୃତ୍ୟ ସହିତ ନୂତନ ଆତ୍ମିକ ଓ ଆଙ୍ଗିକର ନାଟ୍ୟ ଆନ୍ଦୋଳନ ମୁଣ୍ଡ ଟେକିଲା 'ଇପ୍‌ଟା'ର କାର୍ଯ୍ୟକ୍ରମରେ । ଏହାର ନେତୃତ୍ୱ ଗ୍ରହଣ କରିଥିବା ଅଶୋକ ରାଓ, ଗୋପାଳ ଘୋଷ ଓ ଅବନୀ ବରାଳଙ୍କ ସାଙ୍ଗକୁ ପୃଷ୍ଠପୋଷକ ଭାବରେ ରହିଲେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର ଓ ଚଳଚ୍ଚିତ୍ରରେ ନାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ଶ୍ରମିକ ନେତା ରାମଚନ୍ଦ୍ର ରାମଙ୍କ ପରି ପ୍ରବୀଣ ବ୍ୟକ୍ତିମାନେ । ସେତେବେଳର ଛାତ୍ରନେତା ତଥା ସାହିତ୍ୟିକ ମନୋଜ ଦାସ, ସୁଜନ୍ ଘୋଷ, ଡିଡୁପାତ୍ର, ପରବର୍ତ୍ତୀ ସମୟର ବିଶିଷ୍ଟ ଚଳଚ୍ଚିତ୍ର ଅଭିନେତା ଗୌର ପ୍ରସାଦ ଘୋଷ, ଅକ୍ଷୟ ମହାନ୍ତି, ନାଟ୍ୟକାର ବିଶ୍ୱଜିତ୍ ଦାସ, ଅଭିନେତ୍ରୀ ଗ୍ଲୋରିଆ ମହାନ୍ତି ଓ ଝରଣା ଦାସ ପ୍ରମୁଖ ଇପ୍‌ଟା ଆନ୍ଦୋଳନରେ ସାମିଲ ହୋଇଥିଲେ । ବଙ୍ଗଳା ମଞ୍ଚ ନାଟକର କିମ୍ବଦନ୍ତୀ ପୁରୁଷ ତଥା ଇପ୍‌ଟା କଳାକାର ଶମ୍ଭୁ ଭଟ୍ଟାଚାର୍ଯ୍ୟ ଓଡ଼ିଶାକୁ ଆସି ଯେଉଁ ଅପୂର୍ବ ଅଭିନୟ ତଥା ନୃତ୍ୟକଳାର ନୈପୁଣ୍ୟ ପ୍ରଦର୍ଶନ କରିଥିଲେ, ତାହା ରାଜ୍ୟର ସାଂସ୍କୃତିକ ଇତିହାସରେ ଅବିସ୍ମରଣୀୟ ଅଧ୍ୟାୟ ସୃଷ୍ଟି କରିଥିଲା । 'ଇପ୍‌ଟା' ଶିଳ୍ପୀମାନେ ଜନତା ରଙ୍ଗମଞ୍ଚ ଓ ନ୍ୟାସ୍‌ନାଲ୍ ମ୍ୟୁଜିକ୍ ଆସୋସିଏସନ୍‌ରେ ପ୍ରବେଶ କରି ସେଥିରେ ନୂତନ ଧାରାର କଳାଶିଳ୍ପ ଫୁଟାଇଥିଲେ । କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ପ୍ରସିଦ୍ଧ ଉପନ୍ୟାସ 'ମାଟିର ମଣିଷ'କୁ ନାଟ୍ୟରୂପ ଦିଆଯାଇ ମଞ୍ଚସ୍ଥ କରାଯାଇଥିଲା । ଏଥିରେ ନେତ୍ରମଣି ଚରିତ୍ରରେ ଅଭିନୟ କରିଥିବା କଲେଜ ଛାତ୍ରୀ ଆଦରମଣି ପରବର୍ତ୍ତୀ ଜୀବନରେ ଅବନୀଙ୍କ ସହଧର୍ମିଣୀରେ ପରିଣତ ହୋଇଥିଲେ । ଖୁବ୍ କମ୍ ବୟସର ନାଟକରେ ଅଭିନୟ କରିବା ଏବଂ

ନିର୍ଦ୍ଦେଶନା ଦେବା ଯେପରି ତାଙ୍କର ପୋଷା ବନିଯାଇଥିଲା । ସେ ନିଜେ ନାଟକ ରଚନା କରୁଥିଲେ, ତାକୁ ନିର୍ଦ୍ଦେଶନା ଦେଇ ମଞ୍ଚସ୍ଥ କରାଉଥିଲେ । ଉନ୍ନତ ରୁଚିର ନାଟ୍ୟ ଆନ୍ଦୋଳନ ଓ ନାଟ୍ୟ ସଙ୍ଗଠନ ଗଢ଼ିବାରେ ସେ ଥିଲେ ଅସାଧାରଣ ସଙ୍ଗଠକ ।

'ଇପ୍‌ଟା' ସହ ସମ୍ପୃକ୍ତ ଥିବା ବିଗତ ଦିନର ପ୍ରଖ୍ୟାତ ବେତାର, ମଞ୍ଚ ଓ ଚଳଚ୍ଚିତ୍ର ଅଭିନେତ୍ରୀ ଝରଣା ଦାସ ସେଦିନର ସ୍ମୃତିଚାରଣ କରି କହନ୍ତି –

"ମୋ ବଡ଼ ଭାଇ ସୁଜିତ ଯାହାଙ୍କୁ ମୁଁ ଦାଦା ଡ଼ାକେ ତାଙ୍କ ସାଇକେଲ୍ ପଛରେ ବସି ବେଳେବେଳେ ମୁଁ ଯାଏ । IPTA (Indian Peoples' Theatres Association) କିଛି ପ୍ରୋଗ୍ରାମ ଥିଲେ ଗୀତ ରିର୍ହସାଲ ହୁଏ । ଝିଅ ତ ମିଳନ୍ତି ନାହିଁ, ତେଣୁ ମୋ'ପରି ଛୋଟ ଝିଅ କୋରସରେ ମିଶିବାର ସୁଯୋଗ ପାଇଥିଲି । ସେଠି ଆଉ ଦୁଇଜଣ ଶାଢ଼ୀପିନ୍ଧା ବଡ଼ ବଡ଼ ଝିଅ ଆସୁଥିଲେ । ତାଙ୍କ ଭିତରୁ ଜଣକର ନାଁ ମୋର ମନେଅଛି । ନନ୍ଦିତା ପାଲିତ୍, ସେ ପରବର୍ତ୍ତୀ କାଳରେ ବେତାରରେ ଗୀତ ଗାଉଥିଲେ । ସେଠି ଆମକୁ ଗୀତ ଶିଖାଉଥିଲେ ଜଣେ ବଙ୍ଗାଳି ଭଦ୍ରଲୋକ । ସୁଜନଦା । ଅନ୍ୟମାନଙ୍କ ମଧ୍ୟରେ ଗୀତ ଗାଉଥିଲେ, ସବୁଠୁ ସାନ ମୋ ଭାଇ, ମୁଁ, ନନ୍ଦିତାଦିଦି, ବ୍ରଜଗିରି, ଡ଼ିଡ୍ଡୁ ପାତ୍ର ଏମିତି କେତେ । ସେ ଗୀତସବୁ ଦେଶାତ୍ମବୋଧ ଓ ଖୁବ୍ Inspiring । ସେଠିକି ଅନ୍ୟମାନେ ମଧ୍ୟ ଆସୁଥିଲେ ଅବନୀ ବରାଳ, ମନୋଜ ଦାସ ଇତ୍ୟାଦି । ସୁଜନଦା ଗାଇଲା ବେଳେ କେମିତି ଉତ୍ତେଜିତ ହୋଇ ଜୋର ଗଳାରେ ହାରମୋନିୟମ ବଜେଇ ଗାଉଥିଲେ ।

ଭାଙ୍ଗରେ ଲୌହ ବେଡ଼ି ଭାଙ୍ଗ

''ଏଇ ମରଣର ନିଶିରେ, ଯିବୁ ଆମେ ହସିରେ

ଦେଶଲାଗି ବଳିଦେବୁ ପ୍ରାଣ ।

ଆଉ ନୁହଁରେ ଅମାନିଶି କାଳିମା

ଆଉ ନୁହଁରେ ଶୋଷଣର ଗାରିମା

ଆଉ କେତେ ଦିନ ସହିବୁ ତୁହି

ବିଧାତାର ଅତ୍ୟାଚର ଆଉ ଅପମାନ

ଭାଙ୍ଗରେ ଲୌହ ବେଡ଼ି ଭାଙ୍ଗ ।''

ଏ ଗୀତ କିଏ ଲେଖିଥିଲେ ବା ଅନୁବାଦ କରିଥିଲେ ମୋର ମନେ ନାହିଁ । କୋଉ ଲୌହ ବେଡ଼ି କିଏ ଭାଙ୍ଗିବ କିଛି ବୁଝିବାର ବୟସ ମୋର ହୋଇନଥିଲା ।

କେବଳ ସ୍ୱରରେ ସ୍ୱର ମିଶେଇ ମୁଁ ଗାଉଥିଲି । ହୁଏତ ଅବନୀ ଭାଇ କିମ୍ବା ମନୋଜ ବାବୁ ଏସବୁ ଲେଖାଲେଖି କାମ କରିଥିଲେ । ସେଠି ବଙ୍ଗଳା, ହିନ୍ଦି, ଓଡ଼ିଆ ସବୁ ଭାଷାରେ ଗୀତ ଶିଖାଯାଉଥିଲା । ଗୋଟେ ବଙ୍ଗଳା ଗୀତ ଖୁବ୍ ଆଦୃତ ହୋଇଥିଲା, ମୋର ଆଜି ମଧ୍ୟ ମନେ ଅଛି ;

ବୋଲ୍‌ତେ ପାରୋ ବଡ଼ ଲୋକେରା, ମଟର କେନୋ ଚଡ଼୍‌ବେ ?

ଆର୍‌ସେ ସେଇ ମଟରେର୍ ତଲାଏ କେନ ଗରୀବ ଚାପା ପଡ୍‌ବେ ?

ବୋଲ୍‌ତେ ପାରୋ ବଡ଼ ଲୋକେରା ଯାରା ତଇରି କରେ ଖାଦ୍ୟ,

ତାରା କେନ ଦାସେର୍ ମତୋ ରହିତେ ଏତୋ ବାଧ୍ୟ

ବୋଲ୍‌ତେ ପାରୋ ? ବୋଲ୍‌ତେ ପାରୋ ? .......

ଏହି ସବୁ ଗୀତ ରିର୍ହସାଲ ହୋଇ ଷ୍ଟେଜ୍‌ରେ ବୋଲାହୁଏ । ମୁଁ ସେତେବେଳେ ଷଷ୍ଠ କି ସପ୍ତମର ଛାତ୍ରୀ । ମଝିରେ ମଝିରେ ପ୍ରୋଗ୍ରାମ୍ ଆଗରୁ ରିର୍ହସାଲ ହୁଏ, ତେଣୁ ପାଠପଢ଼ାରେ କିଛି ଅସୁବିଧା ହୁଏନି । ଥରେ ସେଠି ଜଣେ କବିଙ୍କୁ ଦେଖିଲି, ତାଙ୍କ ନାଁ ମନୋଜ ଦାସ । ସେ ଗୋଟିଏ ଗୀତ ଲେଖିଥିଲେ, ସୂଜନଦା ସ୍ୱର ଦେଇଥିଲେ ଏବଂ ଜୀବନରେ ପ୍ରଥମ ଥର ପାଇଁ ମଞ୍ଚରେ ସେ ଗୀତଟି ମୁଁ ଗାଇଥିଲି । ଗୀତଟି ଥିଲା –

ଘୋର ନିଶା ଗରଜେ ଘୁ ଘୁ

ବନ ବାଆ ବହେ ହୁ ହୁ

ନଈବଢ଼ି ଫେରିଯାରେ

ନିଜ ଘରେ ଫେରିଯାଆ –

ଗୀତ ଗାଇବା ପୂର୍ବରୁ ମୁଁ ଖୁବ୍ ଡ଼ରି ଯାଇଥିଲି କିନ୍ତୁ ମୋ ଭାଇ ସୁଜିତ୍ ମତେ ଏମିତି ସୁନ୍ଦର ଭାବରେ ବୁଝେଇ ଦେଲେ ଯେ ମନର ଭୟ ଚାଲିଗଲା । ଆଖି ଆଗରେ ଦିଶିଗଲା ଫୁଲି ଫୁଲି ଉଠୁଥିବା ନଈ ଛୋଟ ଚାଳଘର ତା'ରି କୂଳରେ । ଆଉ ମୁଣ୍ଡରେ ଓଢ଼ଣା ଦେଇ କୋଳରେ କୁନି ପିଲାଟିକୁ ଝୁଲେଇ ଝୁଲେଇ ମାଆ ଗୀତ ଗାଇ ତାକୁ ଶୁଆଉଛି । ସେ ଦୃଶ୍ୟ ଆଜି ମଧ୍ୟ ମୁଁ ଭୁଲିନାହିଁ ।

ଆଉ ଜଣେ ଗୁରୁଜନ ଅବନୀ ବରାଳ । ଦିନେ ଅବନୀ ଭାଇ କହିଲେ ଗୋଟେ ନାଟକ କରିବା । ତେବେ ନାରୀ ଚରିତ୍ରଟି କରିବ କିଏ ? ଶେଷରେ ସେ ମୋ ଭାଇ

ସାଙ୍ଗେ କଥା ହେଲେ । ମୋ ଠାରୁ ତିନି ବର୍ଷ ବଡ଼ ସେ ମଧ ପିଲା । ଭାଇ ମତେ ପଚାରିଲେ ମୁଁ କ'ଣ ବା କହିବି ? ବଡ଼ମାନଙ୍କ କଥା ମାନିବା ଉଚିତ୍ ମନେକରି ମୁଁ 'ହଁ' କହିଲି । ମୁଁ ସେଥିରେ ପାଗଳି ଚରିତ୍ରରେ ଅଭିନୟ କଲି । ସମାଜରେ ଅସହାୟ ଝିଅଟିର ଚରିତ୍ର । ଯିଏ ଶାରିରୀକ ଓ ମାନସିକ ଅତ୍ୟାଚାର ବା ଆଘାତ ସହିନପାରି ଶେଷକୁ 'ପାଗଳି' ହୋଇଯାଇଛି । ପାଗଳି କେମିତି ଚଲେ, କେମିତି ବ୍ୟବହାର କରେ, କେମିତି ଚାହେଁ ଏସବୁ ଶିଖିବାକୁ ପଡ଼ିଲା । ଅବନୀ ଭାଇ, ଗୋପାଳ ଭାଇ ମତେ ଶିଖାଉଥାନ୍ତି । ହସି ହସି କହିବା, ପୁଣି କାନ୍ଦୁ କାନ୍ଦୁ ହସିବା ଅଭିନୟ ମତେ ଖୁବ୍ କଷ୍ଟ ମନେ ହେଉଥିଲା । ମୁଁ ମନଦେଇ କାମ ଶିଖୁଥାଏ । ସେମାନେ ମତେ ଉତ୍ସାହ ଦେଉଥାନ୍ତି । ବୋଧହୁଏ ନାଟକଟିର ନାଁ ଥିଲା 'ଡ଼ାଆଣୀ' ସେଇଥିଲା ମୋର ସ୍କୁଲ ବାହାରେ ଅଭିନୟ କରିଥିବା ପ୍ରଥମ ନାଟକ । ବୋଧହୁଏ ଷଷ୍ଠ କିମ୍ବା ସପ୍ତମ ଶ୍ରେଣୀରେ ପଢୁଥାଏ । ଅନଭିଜ୍ଞ ପିଲା ମନ ତଥାପି ଅଭିନୟ ପ୍ରତି ଯେଉଁ ଆଗ୍ରହ ମନର କେଉଁ କୋଣରେ ଛପି ରହିଥିଲା । ତାହା ଯେପରି ପ୍ରକାଶିତ ହେବା ପାଇଁ ବ୍ୟଗ୍ର ହୋଇଉଠିଲା । ସେ ଅନୁଭୂତି ବର୍ଣ୍ଣନାତୀତ । ଆଜି ବୟସର ସାୟାହ୍ନରେ ମଧ ସେ ଅଭୂଲା ଅନୁଭବ ସତେ ଅବା ଜୀବନ୍ତ ହୋଇ ଜଳ ଜଳ ଦିଶିଯାଉଛି ।"

୧୯୫୪ ମସିହାର ଜାନୁୟାରୀ ମାସ । ବାଲେଶ୍ୱରରେ ଅନୁଷ୍ଠିତ ହେଉଥାଏ ନିଖିଳ ଉତ୍କଳ ଛାତ୍ରସଂଘର ରାଜ୍ୟ ସମ୍ମିଳନୀ । ଏଥିରେ କଟକରୁ ଯୋଗ ଦେଇଥିବା ୧୯ ବର୍ଷିୟ କଲେଜ ଛାତ୍ର ଅବନୀ ବରାଳ ନିଜ ପ୍ରତିଭାର ଯେଉଁ ଅମଳିନ ସ୍ୱାକ୍ଷର ରଖିଥିଲେ, ତାହା ଏବେ ବି ତାଙ୍କର ସାଥୀ ସହକର୍ମୀଙ୍କ ମାନସ ପଟରୁ ଲିଭିନାହିଁ । ଏହି ସମ୍ମିଳନୀର ଅନ୍ୟତମ ଆୟୋଜକ ବିଖ୍ୟାତ ପ୍ରଗତିବାଦୀ କବି ବ୍ରଜନାଥ ରଥ ସେଦିନର ସ୍ମୃତିଚାରଣ କରି କହନ୍ତି - "ସେତେବେଳେ ବନ୍ଧୁ ମନୋଜ ଦାସ ଫକୀରମୋହନ କଲେଜର ବି.ଏ. ଶ୍ରେଣୀର ତୃତୀୟ ବର୍ଷର ଛାତ୍ର, ଆଉ ମୁଁ ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଛାତ୍ର । ପୂର୍ବରୁ କଟକ ଟାଉନ୍ ହଲ୍‌ରେ ଯେଉଁ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା, ସେଥିରେ ମନୋଜ ବାବୁ କାର୍ଯ୍ୟକାରୀ କମିଟିର ସଦସ୍ୟ ଭାବରେ ନିର୍ବାଚିତ ହୋଇଥିଲେ ଏବଂ ତାଙ୍କରି ପ୍ରସ୍ତାବକ୍ରମେ ବାଲେଶ୍ୱରରେ ପରବର୍ତ୍ତୀ ସମ୍ମିଳନୀ ଅନୁଷ୍ଠିତ ହେବ ବୋଲି ସ୍ଥିର ହୋଇଥିଲା । ଏହାକୁ ସଫଳ କରିବାକୁ ମନୋଜ ବାବୁଙ୍କ ନେତୃତ୍ୱରେ ଆମେ ଅନେକ ଖଟିଥିଲୁ । ଟ୍ରେନ୍‌ରେ ଉଠି ଡବା ଧରି ଯାତ୍ରୀମାନଙ୍କ ଠାରୁ ଏବଂ ଘର ଘର ବୁଲି ଲୋକଙ୍କ ଠାରୁ ଚାନ୍ଦା ଆଦାୟ କରୁଥିଲୁ । ସେ ଅନୁଭୂତି ଅନନ୍ୟ । ଯାହାହେଉ ସେହି ସମ୍ମିଳନୀରେ ପ୍ରଥମେ ଅବନୀ ବାବୁଙ୍କୁ ମୁଁ ଦେଖିଥିଲି । ସେ ସେତେବେଳେ କଟକ କ୍ରାଏଷ୍ଟ କଲେଜର ବୋଧହୁଏ ତୃତୀୟ ବାର୍ଷିକ ଶ୍ରେଣୀର ଛାତ୍ର । କଟକରୁ ଯେଉଁ ଛାତ୍ର ପ୍ରତିନିଧି ଦଳ

ବାଲେଶ୍ୱର ସମ୍ମିଳନୀକୁ ଆସିଥିଲେ, ସେ ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । କିନ୍ତୁ ସେ ଗୋଟିଏ ଡ୍ରାମାଟିମ୍ ନେଇ ଆସିଥିଲେ, ଯେଉଁମାନେ ସମ୍ମିଳନୀର ପ୍ରଥମ ସନ୍ଧ୍ୟାରେ 'ଶିଳ୍ପୀ' ନାମକ ଏକାଙ୍କିକାଟିଏ ଅଭିନୟ କରିଥିଲେ । ଅବନୀ ବାବୁ ଏହାକୁ ରଚନା କରିବା ସହ ଏହାର ନିର୍ଦ୍ଦେଶନା ଦେଇଥିଲେ । ଯେତେଦୂର ମନେପଡୁଛି ଏକ ଭୂମିକାରେ ମଧ୍ୟ ଅଭିନୟ କରିଥିଲେ । ଏହା ଆଜକୁ ପ୍ରାୟ ୫୬ ବର୍ଷ (୨୦୦୯ ମସିହା ସୁଦ୍ଧା) ତଳର କଥା ।"

'ଇପ୍‌ଟା'ର ଅବକ୍ଷୟରେ ଗଭୀର ମର୍ମାହତ ହୋଇ କବି ବ୍ରଜନାଥ ଅନ୍ୟତ୍ର ଲେଖିଛନ୍ତି - ଭାରତୀୟ ଗଣନାଟ୍ୟ ସଂଘ ଆଜି ଜୀବିତ ଥିଲେ ଓଡ଼ିଶାରେ ସଙ୍ଗୀତ କ୍ଷେତ୍ରରେ ଯେଉଁ ଅପସଂସ୍କୃତି ଓ ଅରାଜକତାର ଅବାଧ ତାଣ୍ଡବଲୀଳା ଚାଲିଛି, ତାହାର ପଥରୋଧ ହୋଇପାରିଥାନ୍ତା । ପ୍ରାୟ ପଚାଶ ବର୍ଷ ତଳେ ଅବନୀ ବାବୁ 'ଇପ୍‌ଟା'ର ସଙ୍ଗଠନରେ ଯେଉଁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ, ତାହାକୁ ଅଧିକ କାଳ ବଜାୟ ରଖିପାରିଲେ ନାହିଁ, ଏହା ହିଁ ଦୁର୍ଭାଗ୍ୟ ।

୧୯୬୧ ମସିହା ଅକ୍ଟୋବର-ନଭେମ୍ବର ମାସରେ କଲିକତାରେ ଅଖିଳ ଭାରତ ଗଣତାନ୍ତ୍ରିକ ଯୁବସଂଘ ଆନୁକୂଲ୍ୟରେ ଅନୁଷ୍ଠିତ ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ଜନ୍ମ ଶତବାର୍ଷିକୀ ସମାରୋହରେ ଯୋଗ ଦେଇଥିବା ଓଡ଼ିଶାର ପ୍ରତିନିଧି ଦଳରେ ଅବନୀ ବରାଳଙ୍କ ସକ୍ରିୟ ଉପସ୍ଥିତି ରାଜ୍ୟର କଳାକାରମାନଙ୍କ ପାଇଁ ବିଶେଷ ପ୍ରେରଣାଦାୟକ ହୋଇଥିଲା । ଏହାର ସ୍ମୃତିଚାରଣ କରି ପ୍ରତିନିଧି ଦଳରେ ସାମିଲ ଥିବା ବିଶିଷ୍ଟ ବାମପନ୍ଥୀ ଲେଖକ ଆଶିଷ ମହାପାତ୍ର କହନ୍ତି -

"୧୯୬୧ ରେ ସାଥୀ ନନ୍ଦକିଶୋର ପଟ୍ଟନାୟକଙ୍କ ନେତୃତ୍ୱରେ କଲିକତାଠାରେ ଅଖିଳ ଭାରତୀୟ ସଂଘ ତରଫରୁ ରବିନ୍ଦ୍ରନାଥ ଶତବାର୍ଷିକୀ ଉପଲକ୍ଷେ ଅନୁଷ୍ଠିତ ବିପୁଳ ଯୁବୋତ୍ସବରେ ଆମମାନଙ୍କ ସହିତ ଅବନୀ ବାବୁ ପ୍ରତିନିଧି ଥିଲେ । ଓଡ଼ିଶା ପ୍ରତିନିଧି ଦଳରେ ମଞ୍ଚଶିଳ୍ପୀ - ଅଭିନେତ୍ରୀ ଉର୍ବଶୀ ତ୍ରିପାଠୀଙ୍କ ସହିତ ଓଡ଼ିଶୀ ନୃତ୍ୟର ନର୍ତ୍ତକୀ, ଗାୟକ ପ୍ରଫୁଲ୍ଲ କର (ପରବର୍ତ୍ତୀ କାଳରେ ଚଳଚ୍ଚିତ୍ର ସଙ୍ଗୀତଜ୍ଞ) ଓ ସାପୁଆକେଳା ନୃତ୍ୟ କରୁଥିବା ରବି ଦାସ (ପ୍ରାକ୍ତନ ବିଧାୟକ) ପ୍ରମୁଖ କଳାକାର ରହିଥିଲେ । ସେଠାରେ ବଙ୍ଗଳାର ତରୁଣ ଅପେରା ଦେଖି ଅବନୀ ବାବୁଙ୍କ କଳାପ୍ରେମୀ ପ୍ରାଣ ଏତେ ଉଦ୍‌ବେଳିତ ହୋଇଥିଲା ଯେ ଓଡ଼ିଶାରେ ନୂତନ ଧରଣର ରଙ୍ଗମଞ୍ଚରେ ଅପେରାଧର୍ମୀ ନାଟକ ପ୍ରଦର୍ଶନ କରାଇବାର ଅଭୀପ୍ସା ଜାଗ୍ରତ ହୋଇଥିଲା । ପରବର୍ତ୍ତୀ କାଳରେ କଟକରେ ଜନତା ରଙ୍ଗମଞ୍ଚର ସେ ସେକ୍ରେଟାରୀ ରୂପେ କାର୍ଯ୍ୟନିର୍ବାହ କରୁଥିବା ବେଳେ ଏ ଦିଗରେ ଅନେକ

ପରୀକ୍ଷା ନିରୀକ୍ଷାରେ ସେ ମନୋଯୋଗ ଦେଇଛନ୍ତି । ଜନତା ରଙ୍ଗମଞ୍ଚରେ ସେ କାଳରେ ନଟବର ସେଣ, ଖତୁ (ସତ୍ୟ ସିଂ)ଅନ୍ତର୍ଯ୍ୟାମୀ, ଶରତ ମହାନ୍ତି, ସରସ୍ୱତୀ (ସର) ପ୍ରମୁଖ ଯୋଗ ଦେଇ ତାକୁ ଏକ ଉନ୍ନତ ସୋପାନରେ ପହଞ୍ଚାଇଥିଲେ । ନୃତ୍ୟ ନିର୍ଦ୍ଦେଶନାରେ ଥିଲେ ବଟକୃଷ୍ଣ ସେଣ ଓ ସିନ୍ ସିନେରୀର ରୂପକାର ଲକ୍ଷ୍ମୀନାରାୟଣ ଆଚାରୀ ପ୍ରମୁଖ କଳାକାର ଜନତା ରଙ୍ଗମଞ୍ଚରେ ନିଜର ଭୂମିକା ଗ୍ରହଣ କରିଥିଲେ । କଥାଶିଳ୍ପୀ ଅଖିଳମୋହନ ପଟ୍ଟନାୟକ ଓ ଅନ୍ୟ ନାଟ୍ୟାମୋଦୀ ବ୍ୟକ୍ତିଙ୍କ ଅନୁରୋଧ ରଖି ଅବନୀବାବୁ ଯେତେବେଳେ ଜନତା ରଙ୍ଗମଞ୍ଚର ପରିଚାଳନା ଭାର ନେଲେ ସେତେବେଳେ ଏହା ଏକ ସହଜ ନିଷ୍ପତ୍ତି ନଥିଲା । ଖୋର୍ଦ୍ଧା କଲେଜରେ ଅଧ୍ୟାପନା ସାଙ୍ଗକୁ ଖୋର୍ଦ୍ଧାରେ ପରିବାର ବିଶେଷତଃ ଛୋଟ ଛୋଟ ଶିଶୁସନ୍ତାନମାନଙ୍କର ଦାୟିତ୍ୱ, ତା' ସାଙ୍ଗକୁ ଶିକ୍ଷକ ଆନ୍ଦୋଳନର ଦାୟିତ୍ୱ ଅଧ୍ୟାପକ ବରାଳଙ୍କର ମୁଣ୍ଡ ଉପରେ ଥିଲା । ମାତ୍ର ସେସବୁ ସତ୍ତ୍ୱେ କଲେଜରେ ଅଧ୍ୟାପନା ସାରି ସନ୍ଧ୍ୟା ପୂର୍ବରୁ ସେ ଜନତା ରଙ୍ଗମଞ୍ଚର ଅଫିସ୍‌ରେ ପହଞ୍ଚିଯାଉଥିଲେ । ସେଠାରେ ଜନତା କଳାକାରମାନଙ୍କର ଖାଇବା ପିଇବା ପାଇଁ ମେସ୍ କିପରି ଚାଲିବ ସେ ପ୍ରଶ୍ନଠାରୁ ଆରମ୍ଭ କରି ନାଟକ ଅଭିନୟର ପ୍ରଶ୍ନ, ତାର ଅନ୍ତେବାସୀମାନଙ୍କର ପ୍ରେରଣା, ସମ୍ଭାବ୍ୟ ଅସୁସ୍ଥତାରେ ଚିକିତ୍ସା ଓ ଆହୁରି ଛୋଟବଡ଼ ଘଟଣାକୁ ବୁଝୁବୁଝୁ ସନ୍ଧ୍ୟା ସରିଯାଏ । ତା'ପରେ ରଙ୍ଗମଞ୍ଚରେ ଅଭିନୟ ହେବା ପାଇଁ ନାଟକର ନିର୍ବାଚନ, ସେଥିପାଇଁ କଳାକାରଙ୍କ ମୁତୟନ ଓ ସମୟ ଅବଧିକୁ ଚୂଡ଼ାନ୍ତ କରିବା କାର୍ଯ୍ୟରେ ଅବନୀ ବାବୁଙ୍କୁ ମୁଖ୍ୟ ଅଂଶ ଗ୍ରହଣ କରିବାକୁ ପଡ଼େ । ମଝିରେ ମଝିରେ ଅତୀତ ଦିନର ବିଖ୍ୟାତ ଅଭିନେତା ଓ ନାଟ୍ୟକାର କାର୍ତ୍ତିକ କୁମାର ଘୋଷ ଓ ନିରଞ୍ଜନ ଶତପଥୀ ଆସନ୍ତି । ଅବନୀ ବାବୁ ଆସିବାପରେ ଜନତାର ଶିଳ୍ପୀ କଳାକାରମାନଙ୍କର ପାରିଶ୍ରମିକ (ଦରମା) ବ୍ୟବସ୍ଥାକୁ ନିୟମିତ କଲେ । ଶୃଙ୍ଖଳା ଓ ପାରସ୍ପରିକ ସ୍ନେହ ସୌହାର୍ଦ୍ଦ୍ୟ ସହିତ କଳାକାରମାନଙ୍କ ପାଇଁ ସ୍ୱାଚ୍ଛନ୍ଦ୍ୟ ଓ ସ୍ୱାଧୀନତା ଆସିଲା ।"

କଲିକତାରେ ରବୀନ୍ଦ୍ରନାଥ ଶତବାର୍ଷିକୀ ସମାରୋହରେ ଯୋଗ ଦେଇଥିବା ଅନ୍ୟତମ ପ୍ରତିନିଧି ବ୍ରଜନାଥ ରଥ ସେହି ସାଂସ୍କୃତିକ ସମାରୋହରେ ଅବନୀଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକାର ସ୍ମୃତିଚାରଣ କରି ଲେଖିଛନ୍ତି – "୧୯୬୧ ମସିହାର ଅକ୍ଟୋବର-ନଭେମ୍ବର ମାସରେ କଲିକତାର ପାର୍କ ସର୍କସ ମଇଦାନରେ ୧୨ ଦିନ ବ୍ୟାପୀ ଅନୁଷ୍ଠିତ ହେଲା ରବୀନ୍ଦ୍ର ଜନ୍ମ ଶତବାର୍ଷିକୀ ଉତ୍ସବ ଓ 'ରବୀନ୍ଦ୍ର ଶାନ୍ତି ମେଳା' (Rabindra Peace Festival) । ବିଶ୍ୱକବି ରବିନ୍ଦ୍ରନାଥଙ୍କ ଜନ୍ମନଗରୀ କଲିକତାରେ ଏହି ମେଳା ଉପଲକ୍ଷେ

ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରର ବହୁ ବିଖ୍ୟାତ ଲେଖକ, କଳାକାର ଓ ଶିଳ୍ପୀ ଯୋଗ ଦେଇଥିଲେ । ଆମ ଓଡ଼ିଶାରୁ ମଧ୍ୟ ଏକ ସାଂସ୍କୃତିକ ପ୍ରତିନିଧି ଦଳ ବନ୍ଧୁ ଅବନୀ ବାବୁଙ୍କ ନେତୃତ୍ୱରେ ଯାଇଥିଲା । ଏହି ଦଳରେ ବାଲେଶ୍ୱରର ବନ୍ଧୁ ସୁରେଶ ମହାନ୍ତି ଓ ମୁଁ ମଧ୍ୟ ଯୋଗ ଦେଇଥିଲୁଁ ଅବନୀ ବାବୁଙ୍କ ଅନୁରୋଧ କ୍ରମେ । ପ୍ରସିଦ୍ଧ ଓଡ଼ିଶୀ ନୃତ୍ୟଗୁରୁ ପଙ୍କଜ ଦାସ, ବିଶିଷ୍ଟ ତବଲାବାଦକ ହରିନାଥ ଖୁଣ୍ଟିଆ ଓ ନଟବର ମିଶ୍ରଙ୍କ ସହ ତିନିଜଣ ଝିଅ ନୀଳିମା ପ୍ରଧାନ, ବାଣୀ ମିଶ୍ର ଓ ସୁଷମା ପଟ୍ଟନାୟକ ଥିଲେ ଏହି ସାଂସ୍କୃତିକ ପ୍ରତିନିଧି ଦଳରେ । ଆଉ ମଧ୍ୟ ଥିଲେ ସାହିତ୍ୟିକ ଲକ୍ଷ୍ମୀନାରାୟଣ ରାୟସିଂହ, ଅନନ୍ତ ନନ୍ଦ, ପୀତାମ୍ବର ଜେନା ଓ ଆଦରମଣି ବରାଳ । ପାର୍କ ସର୍କସ ମଇଦାନରେ ତିନିଦିନ ଧରି ସନ୍ଧ୍ୟାରେ ବିଭିନ୍ନ ମଞ୍ଚରେ ନୀଳିମା, ସୁଷମା ଓ ବାଣୀ ଯେଉଁ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କରିଥିଲେ ତାହା ହଜାର ହଜାର ଦର୍ଶକଙ୍କୁ ମୁଗ୍ଧ କରିଥିଲା । ଅବନୀ ବାବୁ ପ୍ରତିନିଧି ଦଳ ପକ୍ଷରୁ ପ୍ରଥମେ ଇଂରାଜୀରେ ଚମତ୍କାର ଭାବରେ ପ୍ରାକ୍ ଭାଷଣ ଦେଇ ଓଡ଼ିଶାର ମହତ୍ତ୍ୱ ପ୍ରତିପାଦନ କରିଥିଲେ । ସେତେବେଳକୁ ଓଡ଼ିଶୀ ନୃତ୍ୟ ଶାସ୍ତ୍ରୀୟ ମାନ୍ୟତା ପାଇନଥିଲା କିମ୍ବା ବଙ୍ଗାଳୀ ଦର୍ଶକମାନଙ୍କ ପାଖରେ ଏତେ ବେଶି ପରିଚିତ ହୋଇପାରିନଥିଲା । ଆମେ କଲିକତାରେ ତିନିଦିନ ରହଣି ଭିତରେ ସେଠାକାର ବହୁ ଲେଖକ ଓ ଗଣନାଟ୍ୟ ସଂଘର ଶିଳ୍ପୀମାନଙ୍କ ସହିତ ପରିଚିତ ହେବାର ସୁଯୋଗ ପାଇଥିଲୁ । ଖୁବ୍ ଉପଭୋଗ୍ୟ ହୋଇଥିଲା ଏହି ଯାତ୍ରା ଓ ରହଣି, ଯାହା ଦୀର୍ଘଦିନ ପରେ ବି ମୋର ସ୍ମରଣରେ ରହିଛି । ଏହି ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ମୁଁ ବିଖ୍ୟାତ ଲେଖକ ମୁଲକରାଜ ଆନନ୍ଦ, ଯଶସ୍ୱୀ କଥାଶିଳ୍ପୀ କ୍ରିଷନ୍ ଚନ୍ଦ୍ରର ଇତ୍ୟାଦିଙ୍କୁ ଦେଖିବାର ପରମ ସୌଭାଗ୍ୟ ଲାଭ କରିଥିଲି ।”

ଆର୍ଥିକ ଦୁରବସ୍ଥା ଯୋଗୁଁ ଅଭିନେତା-ଅଭିନେତ୍ରୀ ଏବଂ କଳାକାରମାନଙ୍କର ନିଜସ୍ୱ ମଞ୍ଚ ଜନତା ରଙ୍ଗମଞ୍ଚର ପାଦ ପ୍ରଦୀପ ଲିଭ ଲିଭି ଆସୁଥିବା ବେଳେ ଏବଂ କଳାକାରମାନେ ନିଜ ନିଜର ଭବିଷ୍ୟତକୁ ନେଇ ଆଶଙ୍କିତ ଥିବା ସମୟରେ ଦୈବୀ ବରାଦ୍ କ୍ରମେ ଏହାର ମଙ୍ଗ ଧରିଥିଲେ ସେତେବେଳକୁ ପ୍ରସିଦ୍ଧ ଶିକ୍ଷାବିତ୍ ହୋଇସାରିଥିବା ଅତୀତ ଅତୀତ ଦିନର ସୁପ୍ରସିଦ୍ଧ ଅଭିନେତା, ନିର୍ଦ୍ଦେଶକ ଓ ନାଟ୍ୟକାର ଅବନୀ ବରାଳ । ତାଙ୍କୁ ଜନତା ରଙ୍ଗମଞ୍ଚର ସମ୍ପାଦକ କରାଯିବା ପରେ ଅଭିନେତା-ଅଭିନେତ୍ରୀ, କଳାକାର ଓ କର୍ମଚାରୀଙ୍କ ମଧ୍ୟରେ ଖେଳିଗଲା ଆନନ୍ଦ ଉଲ୍ଲାସ, ସୃଷ୍ଟି ହୋଇଥିଲା ବିପୁଳ ଉତ୍ସାହ ଉଦ୍ଦୀପନା । ଏକ ମୃତପ୍ରାୟ ନାଟ୍ୟ ଅନୁଷ୍ଠାନକୁ ଜୀବନ୍ୟାସ ଦେବା ପାଇଁ ଅଣ୍ଟାଭିଡ଼ି ଆଗେଇ ଆସିଲେ ଅବନୀ । ଅଳ୍ପଦିନ ମଧ୍ୟରେ ପୁଣି ଚଳଚଞ୍ଚଳ ହୋଇଉଠିଲା ମଞ୍ଚ । ଦିନବେଳା ବେସରକାରୀ କଲେଜରେ ଶିକ୍ଷକତା ଦାୟିତ୍ୱ ସମ୍ପାଦନ କରି ସନ୍ଧ୍ୟା ନଇଁ

ଆସିବା ମାତ୍ରେ ସେ ଛୁଟି ଆସୁଥିଲେ ଜନତା ରଙ୍ଗମଞ୍ଚକୁ । ତାଙ୍କ ନେତୃତ୍ୱରେ କ୍ରମଶଃ ଅନୁଷ୍ଠାନର ପୂର୍ବ ଯଶ ଓ ଖ୍ୟାତି ଫେରିଆସିଲା । ଅନୁଷ୍ଠାନରେ ପୂର୍ଣ୍ଣ ଶୃଙ୍ଖଳା ପ୍ରତିଷ୍ଠିତ ହେଲା । ଅଗ୍ରଣୀ ମଞ୍ଚ ଅଭିନେତା ଓ ନିର୍ଦ୍ଦେଶକ ସଚ୍ଚିଦାସ ଜନତା ରଙ୍ଗମଞ୍ଚକୁ ପୁନଃଜନ୍ମ ଦେବାରେ ଅବନୀ ବରାଳଙ୍କ ଅବଦାନକୁ ସ୍ମରଣ କରି କହନ୍ତି -

"ମୁଁ ଏଠି ଓଡ଼ିଶାର ଅନ୍ୟତମ ପେଷାଦାର ନାଟ୍ୟାନୁଷ୍ଠାନ ଜନତା ରଙ୍ଗମଞ୍ଚ କଥା କହୁଛି । ୧୯୭୦ ଦଶକର କଥା । ସେତେବେଳେ ତିନି ତିନିଟି ରଙ୍ଗମଞ୍ଚ ଚାଲିଥାଏ । ଅନ୍ନପୂର୍ଣ୍ଣା ଏ', ଅନପୂର୍ଣ୍ଣା ବି' ଓ ଜନତା ରଙ୍ଗମଞ୍ଚ । ସବୁ ଅନୁଷ୍ଠାନର ମାଲିକ ଥା'ନ୍ତି ହେଲେ ଜନତା ରଙ୍ଗମଞ୍ଚର ମାଲିକ କେହି ନଥାନ୍ତି । କଳାକାରମାନଙ୍କୁ ନେଇ ପରିଚାଳନା ମଣ୍ଡଳୀ ଗଠିତ ହୋଇଥାଏ .... ମୁଁ ବି ତା' ଭିତରେ ଥାଏ.... ଆମ୍ଭମାନଙ୍କ ଭିତରେ ଅନେକ ଅର୍ନ୍ତଦ୍ୱନ୍ଦ୍ୱ.... ଅର୍ନ୍ତଦ୍ୱନ୍ଦ୍ୱ ଇମିତି ଉତ୍କଟ ଆକାର ଧାରଣା କଲା ପରିଚାଳନା ଭୁଷୁଡ଼ି ପଡ଼ିଲା । ନାଟକ ପରିବେଷଣ କ୍ଷେତ୍ରରେ ବିଭ୍ରାଟ ସୃଷ୍ଟି ହେଲା.... ଫଳରେ କଳାକାରମାନଙ୍କୁ ଭୋକ ଉପାସରେ ରହିବାକୁ ପଡ଼ିଲା । ଏପରିକି ନାଟକ ପରିବେଷଣ ବନ୍ଦ ରହିଲା ।

ଇମିତି ଏକ ଘଡ଼ିସନ୍ଧି ଓ ସଂଘର୍ଷମୟ ମୂହୁର୍ତ୍ତରେ ଶ୍ରୀ ଅବନୀ ବରାଳ ଆଲୋକ ବର୍ତ୍ତିକା ପରି ଆସି ପହଞ୍ଚିଗଲେ କଳାକାରମାନଙ୍କ ପାଖରେ । ନଦୀ ସ୍ରୋତରେ ଭାସିଯାଉଥିବା ଲୋକଟି ଯେମିତି କୁଟାକୁ ଆଶ୍ରୟ କରି ବଞ୍ଚିବାର ଆଶା ସଂଚାର କରିବା ପରି ଶ୍ରୀ ଅବନୀ ବରାଳଙ୍କୁ ପାଛୋଟି ଆଣିଲେ ଓ ପରିଚାଳନାର ସିଂହାସନରେ ବସେଇ ଦେଲେ । ସେ କିନ୍ତୁ ସେ ସିଂହାସନରେ ବସିଲେ ନାହିଁ । ସିଂହାସନରୁ ଓହ୍ଲେଇ ସେ କଳାକାରମାନଙ୍କ ପାଖକୁ ଚାଲିଆସିଲେ । ତାଙ୍କ ସୁଖଦୁଃଖରେ ସାମିଲ ହେବା ପାଇଁ । ତାଙ୍କର ଏକମାତ୍ର ଲକ୍ଷ୍ୟ କଳାକାରମାନଙ୍କ ମୁହଁରେ ହସ ଫୁଟେଇବା । ଚାଲିଲା ସଂଗ୍ରାମ... ଚାଲିଲା କଳା କୋଣାର୍କର ମୁଣ୍ଡି ମାରିବାକୁ ।

ରାତି ନାହିଁ ଦିନ ନାହିଁ... ସେକ୍ରେଟାରୀ ଭାବରେ ଜନତା ରଙ୍ଗମଞ୍ଚର ପ୍ୟାଡ୍ ଉପରେ କଲମ ତାଙ୍କର ଚଳଚଞ୍ଚଳ ହୋଇ ଉଠିଲା । ଦିଲ୍ଲୀଠାରୁ ଆରମ୍ଭ କରି ଓଡ଼ିଶାର ସଂସ୍କୃତି ବିଭାଗ, ପର୍ଯ୍ୟଟନ ବିଭାଗ ପର୍ଯ୍ୟନ୍ତ ଓ ରାଜରାସ୍ତା ଠାରୁ ଆରମ୍ଭ କରି ଜନପଥରେ ଚାଲିଲା ତାଙ୍କର ଅବିଶ୍ରାନ୍ତ ଯାତ୍ରା । ନିଷ୍ଫଳ ଗଲାନି ତାଙ୍କର ପରିଶ୍ରମ । ପରେ ପରେ ଅଜସ୍ର ଟଙ୍କା ଆସି ପହଞ୍ଚିଲା... ଟଙ୍କା ସବୁ ବଣ୍ଟାହେଲା ଆମମାନଙ୍କ ଭିତରେ... ସମସ୍ତଙ୍କ ମୁହଁରେ ହସ ହସ ଆଉ ହସ । ନୂଆ ନାଟକର ଚାଲିଲା ନୂଆ ପ୍ରସ୍ତୁତି, ନୂଆ ପର୍ବ ।

'ଏମିତି ବି ହୁଏ'ର ପ୍ରସ୍ତୁତି ପର୍ବ ଚାଲିଲା... ନାଟ୍ୟକାର କାର୍ତ୍ତିକ କୁମାର ଘୋଷ ଲେଖନୀ ଗତିକରି ଚାଲିଲା.... ରିହରସାଲ ଆରମ୍ଭ ହେଲା । ଅବନୀ ଭାଇଙ୍କ ପରାମର୍ଶ କ୍ରମେ ଓଡ଼ିଶାର ପ୍ରତିଷ୍ଠିତ ଗୀତିକାର ପର୍ଶୁରାମ ପଟ୍ଟନାୟକ, ଗୀତିକାର ଭାବେ ଆମ ସହିତ ରହିଲେ । ରଘୁନାଥ ପାଣିଗ୍ରାହୀଙ୍କୁ ସଙ୍ଗୀତ ନିର୍ଦ୍ଦେଶନା ଓ ସଂଯୁକ୍ତା ପାଣିଗ୍ରାହୀଙ୍କୁ ନୃତ୍ୟ ନିର୍ଦ୍ଦେଶିକା ଭାବେ ଅନୁବନ୍ଧିତ କରାଗଲା । ଯେତେବେଳେ ପୁରା ଦମ୍‌ରେ ରିହରସାଲ ଚାଲିଲା । ସତେ ଯେମିତି ଗଂଧର୍ବ ପୃଥିବୀ ପୃଷ୍ଠକୁ ଓହ୍ଲେଇ ପଡ଼ିଲା ପରି ଲାଗିଲା । ନାଟକଟି ଉଚ୍ଚକୋଟୀର ହୋଇଥିବାରୁ ଓଡ଼ିଶାର ଚାରିଆଡ଼େ ସୁନାମ ଅର୍ଜନ କରିବା ସଙ୍ଗେ ସଙ୍ଗେ ବହୁତ ପଇସା ରୋଜଗାର କଲା । ଇଏ ସବୁ ସେଇ ଅବନୀ ଭାଇଙ୍କ ପ୍ରଚେଷ୍ଟା ।

ଖାଲି ସେତିକି ନୁହେଁ, ଭାରତ ସରକାରଙ୍କ ସଙ୍ଗୀତ ଓ ନାଟକ ବିଭାଗ ତରଫରୁ ଫିଲ୍‌ଡ୍ ପବ୍ଲିସିଟି ଜରିଆରେ ଗୋଟିଏ ନାଟକ 'ଗୋଟିଏ ମା କୋଟିଏ ସନ୍ତାନ' ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ୧୫ଟି ସୋ କରିଥିଲୁ । ସେହି ନାଟକର ଥିମ୍ ଥିଲା ନ୍ୟାସନାଲ ଇନ୍‌ଟିଗ୍ରିଟି ଏବଂ ମୋରି ନିର୍ଦ୍ଦେଶନାରେ ମୋରି ତତ୍ତ୍ୱାବଧାନରେ ସେ ନାଟକ ମଞ୍ଚସ୍ଥ ହୋଇ ଭାରତ ସରକାରଙ୍କ ଠାରୁ ବହୁ ଅର୍ଥ ପାଇଥିଲୁ । ଇଏ ବି ଥିଲା ଶ୍ରୀ ଅବନୀ ବରାଳଙ୍କ ମହାନ୍ ହୃଦୟର ନିଦର୍ଶନ ।

ଗୋପାଳ ଛୋଟରାୟଙ୍କ ଲିଖିତ 'ସାଧନା' ନାଟକ ଓଡ଼ିଶାରୁ ସିଲେକ୍ଟ ହୋଇ ଭାରତ ସରକାରଙ୍କ ସଂଗୀତ ଓ ନାଟକ ବିଭାଗ ତରଫରୁ ଦିଲ୍ଲୀଠାରେ ପ୍ରଦର୍ଶନୀ ପଡ଼ିଆରେ ପରିବେଶିତ ହୋଇ ଦେଶାତ୍ମବୋଧ ନାଟକ ଭାବେ ବହୁ ପ୍ରଶଂସିତ ହୋଇଥିଲା ଓ ସେଇ ନାଟକରେ ମୁଁ ନାୟକ କିଶୋର ଭୂମିକାରେ ଅଭିନୟ କରି ବହୁ ପ୍ରଶଂସା ପାଇଥିଲି । ଇଏ ବି ଥିଲା ତାଙ୍କର ଆଉ ଏକ ମଞ୍ଚକୁ ଭଲପାଇବାର ପ୍ରୟାସ ।

ପୁଣି ତାଙ୍କର ଆଉ ଏକ ଉଦ୍ୟମ ଥିଲା 'ଶେଷ ଶ୍ରାବଣ' ନାଟକ ପାଇଁ । ଆଗରୁ ବସନ୍ତ ମହାପାତ୍ରଙ୍କର ଏଇ ନାଟକ ନାଁ ଥିଲା 'ମାଣିକ' । ହେଲେ ଆମ ମଞ୍ଚରେ ଏହାର ନାଁ ଦିଆଗଲା 'ଶେଷ ଶ୍ରାବଣ' । ମୋର ବନ୍ଧୁ ୰ ଅକ୍ଷୟ ମହାନ୍ତି (କାଶ୍ୟପ)ଙ୍କ ନିର୍ଦ୍ଦେଶନାରେ ରିହରସଲ ଚାଲିଲା । ଯୋଉଦିନ ନାଟକର ଶୁଭାରମ୍ଭ ହେବ ଠିକ୍ ସେଇଦିନ ଆମ ମଞ୍ଚରେ ଏକ Fiat ଗାଡ଼ି ଆସିଲାଗିଲା । ଗାଡ଼ି ପଛରେ ଚୌଧୁରୀ ବଜାର ଠାରୁ ବାଙ୍କା ବଜାର ଗଳି ଭିତରେ ଅସମ୍ଭବ ଭିଡ । ଅବନୀ ଭାଇ ଖୁସି ମନରେ ଅଫିସ ଆଗରେ ଛିଡ଼ା ହୋଇଥାନ୍ତି । ଆମେ ସବୁ କିଛି ବୁଝିପାରୁ ନଥାଉ, ଯା'ର ଭିତରକଥା ଅବନୀ ଭାଇଙ୍କୁ ଦେଖି ପଚାରିଲେ ସେ କିଛି ନକହି ହସି ଦେଉଥାନ୍ତି । ହଠାତ୍ ଦେଖିଲୁ ଆମ ସଭାପତି ଅଖିଳ ମୋହନ ପଟ୍ଟନାୟକ ଗାଡ଼ିରୁ ବାହାରିବା ପରେ

ପରେ ଚଳଚ୍ଚିତ୍ର ଜଗତର ଖ୍ୟାତନାମା ଅଭିନେତା ଶ୍ରୀ ବାଲରାଜ ସାହାଣି ସେଇ ଗାଡ଼ିରୁ ଓହ୍ଲେଇଲେ । ଅବନୀ ଭାଇ ତାଙ୍କୁ ଧରି ସିଧା ପ୍ରେକ୍ଷାଳୟରେ । ଆଗରୁ ଆମେ କେହି କିଛି ଜାଣି ନଥାଉ । ସେ ଦିନ ଥାଏ ୩୧.୧୨.୧୯୬୫ ମସିହା... ଆମେ ଯେତିକି ଆଶ୍ଚର୍ଯ୍ୟ ସେତିକି ଖୁସି... ଏତେ ଭିଡ଼ ଭିତରେ ଶ୍ରୀ ବାଲରାଜ ସାହାଣୀ ନଡ଼ିଆ ପିଟିଲେ । ସମ୍ୟକରେ ନାଟକର ଶୁଭକାମନା କରି ପୁଣି ଫେରିଗଲେ । ଆମ ପାଇଁ ଥିଲା ଏହା ଏକ Surprise । ବାଲରାଜ ସାହାଣୀ ଚାଲିଗଲେ ନାହିଁ ଯେ ରଖିଗଲେ ମଞ୍ଚ ପାଇଁ ଏକ ଇତିହାସ । ଇଏ ଥିଲା ସେଇ ଅବନୀ ଭାଇଙ୍କ କମାଲ୍ ।

ଇଏ ତ ଗଲା ନାଟକ ମାନଙ୍କର କଥା । କେତେ କେତେ ଘଟଣା କେତେ କେତେ ସ୍ମୃତି । ଲେଖିବସିଲେ ହୁଏତ ଏକ ଗ୍ରନ୍ଥ ହେବ । ସେଇ ସ୍ମୃତି ବିଜଡ଼ିତ ଘଟଣାକୁ ନେଇ ଆଉ ପଦେ ।

ଦରମା ଖାତା ଆମେ ରଙ୍ଗମଞ୍ଚରେ କେହି ଦେଖିନଥିଲୁ... ଟିପା ଖାତାରେ ଆମେ କେତେ କ'ଣ ଆଣିଲୁ, କେତେ କ'ଣ ପାଇବୁ ଆମର ଦରମା କେତେ, ଆମେ କେହି ଜାଣିନଥିଲୁ । ତାଙ୍କରି ପରିଚାଳନାରେ ଆମର ଦରମା ଖାତା ଖୋଲିଲା । କିଏ କେତେ ଦରମା ନବ ତା'ର ନୀତି ନିର୍ଦ୍ଧାରଣ ହେଲା । ତା'ପରେ ଆମକୁ ମାସକୁ ମାସ ଦରମା ଦିଆଗଲା । ସମସ୍ତ କଳାକାରଙ୍କ ମୁହଁରେ ହସ ଫୁଟି ଉଠିଲା ।

ଯେଉଁ ଅଭିନେତ୍ରୀମାନେ ଅଭିନୟ କରୁଥିଲେ ସେମାନେ ବାହାର ଦୁନିଆକୁ ଦେଖିବାକୁ ପାଉନଥିଲେ । ଏକ ପ୍ରକାର ବନ୍ଦୀ ଜୀବନୀ ବିତଉ ଥିଲେ । ସେମାନଙ୍କର ଆବଶ୍ୟକୀୟ ଜିନିଷ କିଣିବାକୁ ହେଲେ ତାଙ୍କୁ ବାହାରକୁ ଛଡ଼ା ଯାଉନଥିଲା । ଫାଟକ ବାହାରକୁ ଯିବାକୁ ସେମାନଙ୍କୁ ମନା ଥିଲା । ଫଳରେ ସେମାନେ ଅନ୍ୟ ହାତରେ ଜିନିଷ ମଗେଇ ଠକାମୀର ଶିକାର ହେଉଥିଲେ । ଏକଥା ସିଏ ଜାଣିଲେ । ଏମିତି ଏକ ପ୍ରଥାକୁ ଉଚ୍ଛେଦ କରି ସିଏ ଅଭିନେତ୍ରୀମାନଙ୍କୁ ସ୍ୱାଧୀନତା ଦେଇଥିଲେ ।

ଏମିତି କେତେ କେତେ କଥା... ସବୁଠାରୁ ଆଉ ଗୋଟେ କଥା ମୋ ସ୍ମୃତିକୁ ବିଦଗ୍ଧ କରୁଛି । ସେ ହେଲା ଅବନୀ ଭାଇଙ୍କ ଉପରେ ରାଗି ଯେ କୌଣସି କଳାକାର ଆପଣଙ୍କ ସାମନାକୁ ଯାଏ । ଆପଣଙ୍କ ଓଠରୁ ବାହାରୁଥିବା ହସଟିକକ ସବୁ କିଛିର ସମାଧାନ କରିଦିଏ । ସେ ଅମୃତ ହସ ଆଉ କାହିଁ ?"

ସଂସ୍କୃତି ପୁରୁଷ ଅବନୀ ନିଜେ ଜଣେ ଦକ୍ଷ କଳାକାର, ନାଟ୍ୟକାର ଓ ଅଭିନେତା ହୋଇଥିବାରୁ ନାଟ୍ୟାନୁଷ୍ଠାନ ପରିଚାଳନାରେ ତାଙ୍କର କାର୍ଯ୍ୟଶୈଳୀ ଥିଲା ଅତ୍ୟନ୍ତ ନିଆରା ।

କଳାକାରମାନଙ୍କର ହୃଦୟକୁ ସେ ଅକ୍ଳେଶରେ କିଣି ନେଇପାରୁଥିଲେ । ସେମାନଙ୍କର ସମସ୍ୟା ଓ ଅସୁବିଧାଗୁଡ଼ିକୁ ମର୍ମେ ମର୍ମେ ଅନୁଭବ କରି ତାହା ଦୂର କରିବାକୁ ତୁରନ୍ତ ପଦକ୍ଷେପ ନେଉଥିଲେ । ମୋଟାମୋଟି ଭାବରେ ସେମାନଙ୍କ ମନରେ ଯେପରି ଦୁଃଖ ନଆସେ, ସେଥିପାଇଁ ଅହରହ ଉଦ୍ୟମରତ ଥିଲେ । ସେହି ସମୟର ଜଣେ ଜଣାଶୁଣା ମଞ୍ଚ ଓ ଚଳଚ୍ଚିତ୍ର ଅଭିନେତ୍ରୀ ସରସ୍ୱତୀ ଦେବୀ (ସର)ଙ୍କ ବର୍ଣ୍ଣନାରୁ ଅବନୀଙ୍କ ଅନନ୍ୟ କାର୍ଯ୍ୟଶୈଳୀର କିଛିଟା ଝଲକ୍ ଦେଖିବାକୁ ମିଳେ । ଅଭିନେତ୍ରୀ ସରଙ୍କ ଭାଷାରେ -

"ରଙ୍ଗମଞ୍ଚରେ ମୁଁ ଯେତେବେଳେ ଯୋଗ ଦେଲି ସେତେବେଳେ ମତେ ୮/୯ବର୍ଷ... ଶିଶୁ କଳାକାର ଭାବେ ନାଟକ ଜୀବନ ଆରମ୍ଭ । କେତେ ପରିଚାଳକଙ୍କୁ ମୁଁ ଦେଖିଚି । କ'ଣ ଟେ ଦରକାର ପଡ଼ିଲେ ମୁଁ ତାଙ୍କୁ ମାଗିଥାଏ । କେତେବେଳେ ପାଞ୍ଚଟଙ୍କା, ଦଶଟଙ୍କା, କେତେବେଳେ ପ୍ୟାଣ୍ଟ ଫ୍ରକଟିଏ । ମାସିକିଆ ଦରମା କ'ଣ ମୁଁ ଜାଣିନଥାଏ । ଜାଣିବା କ'ଣ ଦରକାର ଯେ । ପେଟକୁ ଖାଇଲୁ, ଦେହକୁ ପିନ୍ଧିଲୁ, ଦେହଖରାପ ହେଲେ ମଞ୍ଚ ସେ କଥା ବୁଝୁଥିଲା ।

ଇମିତି କେତେ କେତେ ପରିଚାଳକ ବା ସେକ୍ରେଟାରୀ ଗଲେ । ୧୯୬୦ ଦଶକରେ ଯିଏ ଆସିଲେ ସେ ହେଲେ ଅବନୀ ବରାଳ । ଆମ ସେକ୍ରେଟାରୀ ଏକ ହସର ମଣିଷ । ଆମ ସମସ୍ତଙ୍କୁ ଦେଖିଲେ ଜାଣିଲେ ଆଉ ଜାଣିବାକୁ ପାଇଲେ ଆମର ଦରମା ଖାତା ନାହିଁ । ମାସ ମାସ ଅଭିନୟ କରି ରୋଜଗାର କରୁ ।ହେଲେ କେତେ ପାରିଶ୍ରମିକ ଜାଣୁନା । ସେଇଠୁ ସେ ସମସ୍ତଙ୍କର ଦରମା ଠିକ୍ କଲେ ଆଉ ମାସକୁ ମାସ ଦରମାର ବ୍ୟବସ୍ଥା କଲେ । ସେ ଯେମିତି ହସ ହସର ମଣିଷ ତାଙ୍କରି ପାଇଁ ସମସ୍ତ କଳାକାରଙ୍କ ମୁହଁରେ ହସ ଫୁଟିଲା ।

ପୂର୍ବରୁ ଆମ ପାଇଁ ରଙ୍ଗମଞ୍ଚର ଫାଟକ ଟପି ଯିବାକୁ ଦିଆଯାଉନଥିଲା ।ନିଜର ବ୍ୟବହାର୍ଯ୍ୟ ଜିନିଷ ଟିକେ ଆଣିବାକୁ ହେଲେ କାହାକୁ ପଇସା ଦେଇ ମଗାଇବାକୁ ପଡୁଥିଲା ।ଯିଏ ଯାହା ଆଣୁଥିଲା ଆମକୁ ସେଥିରେ ସନ୍ତୁଷ୍ଟ ରହିବାକୁ ପଡୁଥିଲା ।ମିଛ କଥା କହି, ଏତେ ପଡ଼ିଲା ସେତେ ପଡ଼ିଲା କହି ଠକୁଥିଲେ ବି କହିବାର ଯୁ ଆମର ନଥିଲା ।

କେଉଁ ପର୍ବପର୍ବାଣୀ ଟିକେ ଦେଖିବାକୁ ଗଲେ କି ସିନେମା ଦେଖିବାକୁ ଗଲେ ଆମ ପାଇଁ ଭାରି କଟକଣା ।ରେକ୍ସାରେ ପରଦା ଦେଇ ଯିବାକୁ ପଡୁଥିଲା ତା ସହିତ କିଏ ଜଣେ ଜଗୁଆଳି ଯାଉଥିଲା ।

ଅବନୀ ସାର୍ ଏକଥା ଜାଣିଲେ ଏଇ ପ୍ରଥାକୁ ସେ ଉଠେଇ ଦେଇଥିଲେ । ଫଳରେ ମଞ୍ଚର ଅନୁମତି ନେଇ ଆମେ ସ୍ୱାଧିନଭାବେ ପର୍ବପର୍ବାଣୀ ଦେଖିପାରିଲୁ ଆମ ମନମୁତାବକ ବଜାର କରିପାରିଲୁ ।

ଅତୀତର ଖିଏ । ଅବନୀ ସାର ମତେ କଥା ଦେଇଥିଲେ ମୋ ଦରମାରୁ ଅଗ୍ରୀମ କିଛି ଟଙ୍କା ଦେଲେ ଗୋଟେ ଶାଢୀ କିଣନ୍ତି,ଦିନ ଦିନ ଯାଇ ପନ୍ଦର ଦିନ ବିତିଗଲା ମୋ ମନର ରାଗ ବଢିଚାଲିଲା । ଦିନେ ସେ ଅଫିସ୍‌ରେ ବସିଥାନ୍ତି ।ରାତିରେ ଅଭିନୟ ସାରି ରାଗ ତମରେ ଅଫିସ୍‌ରେ ପହଞ୍ଚିଗଲି ।ସେ ମୋର ରାଗ ଦେଖି ମତେ କିଛି ନକହି ହସି ଦେଲେ । ସାରଙ୍କ ସେହି ହସରେ ମୋ ରାଗ କୁଆଡ଼େ ଉଭେଇଗଲା ମୁଁ ବି ହସି ହସି ଚାଲିଆସିଲି ।

ଖାଲି ମୋ ପାଇଁ ନୁହେଁ ତାଙ୍କର ସେଇ ହସ ହସ ମୁହଁ ରଙ୍ଗମଞ୍ଚର ବହୁତ ବଡ଼ ବଡ଼ ସମସ୍ୟାକୁ ସମାଧାନ କରିପାରିଚି । ମୁଁ ତାଙ୍କୁ ଯେତିକି ଜାଣିଚି, ରଙ୍ଗମଞ୍ଚରେ ଅନେକ ଘଟଣା ଅନେକ ଅଭାବ, ତଥାପି ଦୁଃଖ ନାହିଁ । ଯନ୍ତଣା ନାହିଁ ; ମୁହଁରେ ହସ ଆଉ ହସ ।”

କେବଳ ଜନତା ରଙ୍ଗମଞ୍ଚ ବା ‘ଇପ୍‌ଟା’ କାର୍ଯ୍ୟକଳାପରେ ସୀମିତ ନଥିଲା ଅବନୀ ବରାଳଙ୍କ ସାଂସ୍କୃତିକ ଜୀବନ । ତାଙ୍କ ଭିତରେ ନାଟ୍ୟ ପ୍ରତିଭାର ସ୍ଫୁରଣ ଘଟିଥିଲା ଛାତ୍ର ଜୀବନରୁ । କଟକର ପ୍ରସିଦ୍ଧ ଶିକ୍ଷାନୁଷ୍ଠାନ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ୧୯୫୩ ମସିହାରେ ମଞ୍ଚସ୍ଥ ହୋଇଥିବା ‘ବିପ୍ଳବୀ ସୁରେନ୍ଦ୍ର ସାଏ’ ନାଟକରେ ଅବନୀଙ୍କ ଅଭିନୟର ସ୍ମୃତିଚାରଣ କରି ବିଶିଷ୍ଟ ନାଟ୍ୟକାର ଓ ଭଞ୍ଜ ସାହିତ୍ୟର ବାଗ୍ମୀ ରଜତ କୁମାର କର କହନ୍ତି -

“ନାରାୟଣ ସାର୍ (ପତି) ଚାହିଁଲେ, ତାଙ୍କର ଜଣେ ଛାତ୍ରର ଲିଖିତ ନାଟକ ଶତବାର୍ଷିକ ଉପଲକ୍ଷେ ଅଭିନୀତ ହେଉ । ୧୯୫୩ ମସିହାରେ ସେଇ କଲିଜିଏଟ୍ ସ୍କୁଲରେ ପ୍ରଥମ ଥର ପାଇଁ ଭଞ୍ଜ ଜୟନ୍ତୀ ସପ୍ତାହ ମୁକ୍ତ ପ୍ରାଙ୍ଗଣରେ ଅନୁଷ୍ଠିତ ହେଲା । ୧୯୪୪ରୁ ଅନୁଷ୍ଠିତ ଏଇ ପ୍ରତିଷ୍ଠିତ ଜାତୀୟ ଉତ୍କଳୀୟ ମହୋତ୍ସବ କଟକ, ରାମଚନ୍ଦ୍ର ଭବନ ଓ ଟାଉନ୍ ହଲ୍‌ର ସୀମିତ ପରିସରରେ ଅନୁଷ୍ଠିତ ହେଉଥିବାବେଳେ, ଏଥର ବିପୁଳ ଜନସମାଗମ, ପ୍ରବଳ ଉନ୍ମାଦନା ସହ ମହା ଆଡ଼ମ୍ବରରେ ପାଳିତ ହେଲା । ଏହି ଜୟନ୍ତୀ ସପ୍ତାହ ଉପଲକ୍ଷେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଲାବଣ୍ୟବତୀ କାବ୍ୟର ନାଟ୍ୟରୂପ ଉଦୟନାଥ ମିଶ୍ର ରଚନା କଲେ । କବି ସମ୍ରାଟଙ୍କ ଜୀବନୀଭିତ୍ତିକ ନାଟକ

ରଚନା କରି ମୁଁ ସେଥିର ନାୟକ ଉପେନ୍ଦ୍ର ଭଞ୍ଜ ଭାବରେ ମଧ୍ୟ ଅଭିନୟ କଲି । କଳିଙ୍ଗ ଭାରତୀ ତଥା ଭଞ୍ଜ ଜୟନ୍ତୀର ପ୍ରବର୍ତ୍ତକ ମୋର ସାହିତ୍ୟ ଜୀବନର ଗୁରୁ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ପାଇଁ ଶିଷ୍ୟର ଏ କୃତିତ୍ୱ ଯେପରି ଗୌରବବାହୀ ଥିଲା, ସେତିକି ଗୌରବବୋଧ ଆଣିଦେଇଥିଲା ମୋ ସ୍କୁଲ ଜୀବନର ଶିକ୍ଷକ ଶ୍ରୀ ନାରାୟଣ ପତିଙ୍କ ମନରେ ।

ଶତବାର୍ଷିକୀରେ ତାଙ୍କର ଆଦେଶ ହେଲା 'ତୁ ଏଥିପାଇଁ ନାଟକଟିଏ ଲେଖିବୁ । ସେଥିରେ ମୁଖ୍ୟ ଭୂମିକାରେ ଅଭିନୟ କରିବୁ ।' ତାଙ୍କ ଆଦେଶ ମୋ କ୍ରମବର୍ଦ୍ଧିଷ୍ଣୁ ସାହିତ୍ୟିକ ଜୀବନର ଅରୁଣ ମୁହୂର୍ତ୍ତ ଆଣିଦେଲା । ଶତବାର୍ଷିକୀ ପାଇଁ ସମ୍ବଲପୁର ସିପାହୀ ବିଦ୍ରୋହର ମହାନାୟକ ସୁରେନ୍ଦ୍ର ସାଏଙ୍କ ଜୀବନୀଭିତ୍ତିକ ନାଟକ ବିପ୍ଳବୀ ସୁରେନ୍ଦ୍ର ସାଏ ଅଭିନୀତ ହେଲା । ଏହି ନାଟକର ଏକ ଖଳଚରିତ୍ର ତଥା ହାସ୍ୟାରସାତ୍ମକ ଭୂମିକାରେ ସଫଳଭାବେ ଅଭିନୟ କରିଥିଲେ କଲିଜିଏଟ୍‌ର ପୂର୍ବତନ ଛାତ୍ର ଶ୍ରୀ ଅବନୀ ବରାଳ ସେ କରିଥିଲେ ବିଶ୍ୱାସଘାତକ ତଥା ଇଂରେଜ ତୋଷାମୋଦକାରୀ ଖଣ୍ଟି ଇଂରେଜ କହୁଥିବା ମୋର କଳ୍ପନାପ୍ରସୂତ ଚରିତ୍ର (ଲୋକନାଥ ପାଣିଗ୍ରାହୀ) ଭୂମିକାରେ । ଅନ୍ୟତମ ସହାୟକ ଚରିତ୍ର ନିରୀହ, ସରଳ ଶିକ୍ଷକ ମୃତ୍ୟୁଞ୍ଜୟ ପଣ୍ଡା ଭୂମିକାରେ ଅଭିନୟ କରିଥିଲେ, ବିଶିଷ୍ଟ ଅଭିନେତା ଓ ଶିଶୁ ସାହିତ୍ୟ ସ୍ରଷ୍ଟା ନଦିଆ ବିହାରୀ ମହାନ୍ତି । ସେ ପୂର୍ବରୁ ମୋ ସହ କଟକ ବେତାର କେନ୍ଦ୍ରରେ ଅଭିନୟ କରିଥିଲେ ଓ ମୋ ରଚିତ କବି ସମ୍ରାଟ ନାଟକରେ ଏକ ହାସ୍ୟାରସ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଅବନୀବାବୁଙ୍କ ନାଟ୍ୟ ପ୍ରତିଭାସହ ପୂର୍ବରୁ ପ୍ରତ୍ୟକ୍ଷ ଜ୍ଞାନ ନଥିଲେ ବି ସେଦିନ ତାଙ୍କର ନିଖୁଣ ଅଭିନୟ ମୋର ଐତିହାସିକ ନାଟକର ଚରିତ୍ରକୁ ଜୀବନ୍ତ କରିଥିଲା ।

ଏହାର ଅଳ୍ପସମୟ ପୂର୍ବରୁ ମୁଁ ପୁରୀର ସିପାହୀ ବିଦ୍ରୋହ ଚାଖୀ ଖୁଣ୍ଟିଆଙ୍କ ଜୀବନୀଭିତ୍ତିକ ନାଟକ ବିପ୍ଳବୀ 'ଚାଖୀ ଖୁଣ୍ଟିଆ' କଟକ ମେଡ଼ିକାଲ କଲେଜ ପାଇଁ ରଚନା କରିଥିବାରୁ ନଦିଆ ବାବୁ ଓ ଅବନୀ ବାବୁ ମୋତେ ସାଧୁବାଦ ଦେଇଥିଲେ ଓ ମୋ ନାଟକ ପରିବର୍ତ୍ତେ ଅନ୍ୟ ନାଟକର ପ୍ରଦର୍ଶନ ପାଇଁ କେତେକ ବୟସ୍କ ନାଟ୍ୟାଭିଜ୍ଞ ପୁରାତନ ଛାତ୍ରଙ୍କ ଚକ୍ରାନ୍ତକୁ ବ୍ୟର୍ଥ କରାଇବାରେ ଅଗ୍ରଣୀ ଭୂମିକା ନେଇଥିଲେ । ଏହି ଘଟଣା ମଧ୍ୟରେ ଅବନୀ ବାବୁଙ୍କ କଳାପ୍ରାଣତା ଓ ସଫଳ ନେତୃତ୍ୱର ଝଲକ ଦେଖିପାରିଥିଲେ । ତାଙ୍କର ବ୍ୟକ୍ତିତ୍ୱର ତ ବହୁତ ଦିଗ ଅଛି ଓ ଏହାର ବିଭିନ୍ନ ବିଭାବ ବିଚିତ୍ରବର୍ଣ୍ଣା ଚିତ୍ରପଟ ଅନ୍ୟମାନଙ୍କ ଦ୍ୱାରା ଅଙ୍କିତ ହେବ ।"

କଟକରୁ ଆସି ଖୋର୍ଦ୍ଧାରେ ରହଣୀ ସମୟରେ ବି ତାଙ୍କ ଭିତରେ ଲୁଚି ରହିଥିବା କଳାପ୍ରାଣତା ପୁଣି ଫୁଟି ଉଠିଥିଲା । ଖୋର୍ଦ୍ଧା କଲେଜ ବା ପରବର୍ତ୍ତୀ ସମୟର ପ୍ରାଣନାଥ କଲେଜ ନାଟ୍ୟ ସଂସଦକୁ ସେ ଦୀର୍ଘ ବର୍ଷ ଧରି ନେତୃତ୍ୱ ଦେଇଥିଲେ, ନୂତନ ଆଭିମୁଖ୍ୟ ପ୍ରଦାନ କରିଥିଲେ । ତାଙ୍କରି ବଳିଷ୍ଠ ନିର୍ଦ୍ଦେଶନାରେ ଗୋଟିଏ ପରେ ଗୋଟିଏ ନାଟକ ମଞ୍ଚସ୍ଥ ହୋଇ ଅପୂର୍ବ ସଫଳତା ହାସଲ କରିଥିଲା । କଲେଜରେ ତାଙ୍କର ଛାତ୍ରଛାତ୍ରୀଙ୍କ ମଧ୍ୟରୁ ବହୁ କଳାକାରଙ୍କୁ ସେ ନିଜେ ସୃଷ୍ଟି କରିଥିଲେ, ସାଂସ୍କୃତିକ ଚେତନା ଉଦ୍ରେକ କରାଇପାରିଥିଲେ । ସେହି ସମୟର ସ୍ମୃତିଚାରଣ କରିଛନ୍ତି ଅଧ୍ୟାପକ ଅମରେନ୍ଦ୍ର ନାରାୟଣ ଷଡ଼ଙ୍ଗୀ । ତାଙ୍କରି ଭାଷାରେ -

"ପ୍ରାଣନାଥ କଲେଜର ନାଟ୍ୟସଂସଦର ସେ ପ୍ରାୟ ସବୁବେଳେ ଉପସଭାପତି ଥା'ନ୍ତି ଏବଂ ମୁଁ ଅନ୍ୟତମ ଉପସଭାପତି ସବୁବେଳେ ନୂଆ କିଛି କରିବା ପାଇଁ ତାଙ୍କର ପ୍ରବଳ ଆଗ୍ରହ । ଗୋଟିଏ ବର୍ଷ ନାଟ୍ୟ ସଂସଦ ଉତ୍ସବରେ ନିୟମିତ ନାଟକ କଲେ ଏକ ଇଂରାଜୀ ଏକାଙ୍କିକା (shivering shows) କରିବା ପାଇଁ ଆମେ ପ୍ରସ୍ତାବ ଦେଲୁ, ଏବଂ ସେ ସଙ୍ଗେ ସଙ୍ଗେ ରାଜିହୋଇ ଆମକୁ ଉତ୍ସାହିତ କଲେ । ସେଥିରେ ଗୋଟାଏ ଘରର Set କରିବା ଦରକାର ଥାଏ । କିନ୍ତୁ ସମ୍ବଳ ଓ ସମୟ ଅଭାବରୁ ତାହା ସମ୍ଭବ ହୋଇପାରୁନଥାଏ ନାଟକ ମଞ୍ଚସ୍ଥ ହେବାର ଆଗଦିନ ସେ ମତେ କଟକର ଏକ ଚିତ୍ରାଳୟ (ବୋଧହୁଏ ରୂପଶ୍ରୀ)କୁ ପଠାଇଲେ Set ଭଡ଼ାରେ ଆଣିବାକୁ ତାଙ୍କର ନାଁ କହି । ଯେତେବେଳ ଚିତ୍ରାଳୟରେ ପହଞ୍ଚି ତାର ମାଲିକଙ୍କୁ ଅବନୀ ବାବୁ ପଠାଇଛନ୍ତି ବୋଲି କହିଲୁ, ସେ ତି ଆଗ୍ରହରେ ତତ୍‌କ୍ଷଣାତ୍ Set ଟି କେବଳ ଦେଲେନି ସେଥିପାଇଁ ଅବିଶ୍ୱାସନୀୟ ଭାବେ ଖୁବ୍ ନଗଣ୍ୟ ଭଡ଼ା ମଧ୍ୟ ନେଲେ । ସେତିକିବେଳେ ସେ କହିଚାଲିଥିଲେ ଅବନୀବାବୁଙ୍କ ନାଟକ ଦିନମାନଙ୍କର କଥା । ସେଇଦିନ ମୁଁ ଜାଣିଲି ଓଡ଼ିଶାର ଏକ ପେଷାଦାର ମଞ୍ଚ ଜନତା ଥିଏଟର ସହ ଅବନୀ ବାବୁ କିପରି ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ ଥିଲେ ।

ଅଳ୍ପ କିଛିଦିନ ତଳେ ଆକାଶବାଣୀ କଟକ କେନ୍ଦ୍ରରେ ଏକ ନାଟକ ରେକର୍ଡ଼ିଂ ପାଇଁ ମୁଁ ଯାଇଥାଏ । ସେଠି ଜଣେ ପୁରୁଣା ବୟସ୍କ କଳାକାରଙ୍କ ସହ ଆଳାପବେଳେ, ସେ ଅବନୀବାବୁଙ୍କ ବିଷୟରେ କହୁ କହୁ କହିଲେ ଯେ ଜଣେ ଥିଏଟର ପରିଚାଳକଭାବେ ଅବନୀବାବୁଙ୍କ ସୁପରିଚାଳନା ହିଁ ଜନତା ଥିଏଟରକୁ ସଫଳତାର ଶୀର୍ଷକୁ ନେଇଥିଲା । ସେପରି ପରିଚାଳକର ଏବେ ଭୀଷଣ ଅଭାବ । ପ୍ରେକ୍ଷାଳୟ ମଞ୍ଚମାନଙ୍କର ଦୁର୍ଗତିର ଏହି ଅଭାବ ହିଁ ଏକ ମୁଖ୍ୟ କାରଣ । ଦୁଃଖରେ ମ୍ରିୟମାଣ ହୋଇପଡ଼ିଥିବା ସେଇ ବୟସ୍କ

କଳାକାର ଅନେକ ଆଶାର ସହ କହୁଥିଲେ ଯେ ସେ ଅବନୀ ବାବୁଙ୍କ ସହ ଯୋଗାଯୋଗ କରିବେ, ତାଙ୍କୁ ପ୍ରବର୍ତ୍ତାଇବେ କିଛି ସମୟ ଦେବାକୁ ଜନତା ଥିଏଟରର୍‌ର ପୁନରୁଦ୍ଧାର ପାଇଁ ।

ପ୍ରାଣନାଥ କଲେଜର ନାଟ୍ୟ ସଂସଦ ସହିତ ଜଡ଼ିତ ଥିବା ଦିନମାନଙ୍କର କେତୋଟି ସ୍ମୃତି ମନକୁ ଆସୁଛି । ଅବନୀ ବାବୁ ଜଣେ କଳାକାର, କଳାକାରର ହୃଦୟ ଖୋଲା ଏବଂ ବେପରୁଆ ନହେଲେ ତାର ସୃଜନଶୀଳତାର ପରିପ୍ରକାଶ ସମ୍ଭବ ନୁହେଁ । ଅବନୀ ବାବୁ ବି ଏଥିରେ ବ୍ୟତିକ୍ରମ ନୁହଁନ୍ତି । ଗୋଟାଏ କିଛି ନୂଆ କରିବା ପାଇଁ ଝୁଁକ୍ ଆସିଗଲେ, ପଇସା ଥାଉ ବା ନଥାଉ, ତାଙ୍କର ପରବାଏ ନାହିଁ । ହବ ମାନେ ହିଁ ହବ । ବାର୍ଷିକ ନାଟକରେ ଝିଅମାନେ ଭାଗନେବା ପାଇଁ କୁଣ୍ଠିତ ହେଉଥିବା ଦେଖି ସେ ଗୋଟାଏ ବର୍ଷ କହିଲେ କେବଳ ଝିଅମାନେ ଅଭିନୀତ ଏକ ପୂର୍ଣ୍ଣାଙ୍ଗ ଗୀତିନାଟ୍ୟ ମଞ୍ଚସ୍ଥ କରାଯିବ । ସେଇଆ ହେଲା, ବହୁତ ଝିଅ ଭାଗନେଲେ, ସ୍ୱର୍ଗତ ଧୀରେନ୍ ଦାଶ ଭୁବନେଶ୍ୱରରୁ ଆସିଲେ ନିର୍ଦ୍ଦେଶନା ଦେବା ପାଇଁ । ଅଭୂତ ପୂର୍ବ ସଫଳତାର ସହ ମଞ୍ଚସ୍ଥ ହେଲା ଗୀତିନାଟ୍ୟଟି । ପରେ ପରେ ଅନେକ ବର୍ଷ ଏଇ ପରମ୍ପରା ବଜାୟ ରହିଲା ।

ଆଉ ବର୍ଷେ ତତ୍‌କାଳୀନ ଅଧ୍ୟକ୍ଷ ଶ୍ରୀଯୁକ୍ତ ଅମୂଲ୍ୟ କୃଷ୍ଣ ମିଶ୍ରଙ୍କର ନାଟକ 'ଜୟୀ ରାଜଗୁରୁ' ମଞ୍ଚସ୍ଥ ହେବାର ଠିକ୍ ହେଲା । ଖୋର୍ଦ୍ଧା ମାଟି ସହ ଜଡ଼ିତ ତାର ବିଷୟ ବସ୍ତୁ । ଅବନୀ ବାବୁ ନିଜେ ନିର୍ଦ୍ଦେଶନା ଦେଲେ, କଲେଜ ଇତିହାସରେ ପ୍ରଥମ ଥର ପାଇଁ ଏକ ବିଶାଳ ତ୍ରିମୁଖୀ ମଞ୍ଚରେ ମଞ୍ଚସ୍ଥ ହେଲା 'ଜୟୀ ରାଜଗୁରୁ' । ଦର୍ଶକମାନଙ୍କ ପାଇଁ ଏହା ଥିଲା ଏବଂ ସମ୍ପୂର୍ଣ୍ଣ ନୂତନ ଅନୁଭୂତି ମୁଁ ନିଜେ ବି ଭାବି ନଥିଲି କଲେଜର ସ୍ୱଳ୍ପ ପାଣ୍ଠି ଏକ ସୀମିତ ପରିବେଶରେ ଏହା ସମ୍ଭବ ହୋଇପାରିବ ।

ଅନ୍ୟ ଏକ ବର୍ଷ, ଅବନୀ ବାବୁ ଉପସଭାପତି ଥିଲେ ମଧ୍ୟ ନାଟକସ୍ଥବର ୧୫/୨୦ ଦିନ ପୂର୍ବରୁ ବିଶ୍ୱ ଶିକ୍ଷକ ମହାସଂଘ କାମରେ ମସ୍କୋ ଚାଲିଯାଇଥିଲେ । ମୋ ଉପରେ ନାଟକ ସଂସଦର ସମସ୍ତ ଦାୟିତ୍ୱ ପଡ଼ିଲା । ମୋ ଉପରେ ନାୟିକା ଭୂମିକାରେ ଅଭିନୟ କରିବାକୁ ଝିଅଟି ନାଟକ ମଞ୍ଚସ୍ଥ ହେବାର ୪/୫ ଦିନ ପୂର୍ବରୁ ଅଭିନୟରୁ ଓହରିଗଲା । ଅବନୀ ବାବୁ ନାହାନ୍ତି, ମୁଁ ଭୀଷଣ ଅସୁବିଧାରେ ପଡ଼ି ଅଧ୍ୟକ୍ଷଙ୍କୁ ଅନୁରୋଧ କଲି ପେଷାଦାର ଅଭିନେତ୍ରୀ ଭଡ଼ାରେ ଆଣିବାକୁ ଅନୁମତି ଦେବା ପାଇଁ, ସେ ଅନୁମତି ଦେଲେ ଓ ନାଟକ ରିହରସାଲ୍ ହେଲା । ଅବନୀ ବାବୁ ଠିକ୍ ନାଟକ ମଞ୍ଚସ୍ଥ ହେବାର ପୂର୍ବଦିନ ମସ୍କୋରୁ ଫେରିଲେ । କଲେଜରେ ପହଞ୍ଚି ସଙ୍ଗେ ସଙ୍ଗେ ଷ୍ଟେଜ ରିହଲସାଲ୍ ଦେଖିଲେ । ନାଟକ ମଞ୍ଚସ୍ଥ ହେବା ଦିନ ସେ ପୁରାମାତ୍ରାରେ ନିଜକୁ ଏମିତି ସାମିଲ

କରିନେଲେ ଯେ ତାଙ୍କର ଏତେ ଦିନର ଅନୁପସ୍ଥିତି ମୁଁ ଆଦୌ ଅନୁଭବ କରିପାରିଲି ନାହିଁ । ମତେ ଲାଗିଲା ଯେମିତି ସେ ଏଇ ନାଟକର ମୂଳରୁ ହିଁ ମୋ ପାଖେ ପାଖେ ଥିଲେ ।"

ସେହିପରି କଳାକାରମାନଙ୍କ ପ୍ରତି ରହିଥିବା ଅବନୀଙ୍କ ଗଭୀର ଅନୁରାଗ ଓ ଦରଦର ଅନ୍ୟ ଏକ କୌତୁହଳପ୍ରଦ କାହାଣୀ ବର୍ଣ୍ଣନା କରି ବିଶିଷ୍ଟ ସାମ୍ବାଦିକ ଉମାପଦ ବୋଷ କହନ୍ତି -

"ମସିହାଟା ଠିକ୍ ମନେ ପଡୁନି । ତଥାପି ୭୦ ଦଶକର ପ୍ରଥମାର୍ଦ୍ଧ ହେବ । ଖୋର୍ଦ୍ଧାରେ 'ଜନତା' ଥିଏଟର୍ ପଡିଥାଏ । ହଁ, ଏଠାରେ ସୂଚେଇଦେବା ଉଚିତ ହେବ ଯେ, ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ଖୋର୍ଦ୍ଧା ସହରକୁ ଅନ୍ନପୂର୍ଣ୍ଣା ଥିଏଟର୍ ଆସୁଥିଲା ଏବଂ ମାସାଧିକ କାଳ 'ଶୋ' କରୁଥିଲା । ଅନ୍ନପୂର୍ଣ୍ଣା ଥିଏଟର୍ ଦେଖିବା ପାଇଁ ଶଗଡ଼ ଲାଗୁଥିଲା ସେତେବେଳେ । ଟିକେଟ୍ ପାଇଁ କି ଠେଲାପେଲା ! ଏବେକାର ଲୋକେ ସେ କଥା ଚିନ୍ତା କରିପାରିବେ ନାହିଁ । ଇଏ ୬୦ ଦଶକର କଥା । ୭୦ ଦଶକର ଆରମ୍ଭରେ ନଟବର ସେଣଙ୍କ ନେତୃତ୍ୱରେ ଜନତା ରଙ୍ଗମଞ୍ଚ ଖୋର୍ଦ୍ଧାର ଅସ୍ଥାୟୀ ରଙ୍ଗମଞ୍ଚରେ ଡେରା ପକାଇଲା । ଖୋର୍ଦ୍ଧା ଲୋକ ସ୍ୱାଭାବିକ ଭାବେ ଥିଏଟର୍ ପ୍ରେମୀ । ତେଣୁ ବେଶ୍ କିଛିଦିନ ଚାଲିଲା ଥିଏଟର୍ । ଜନତାର କଳାକାରମାନେ ଚିରାଚରିତ ଢଙ୍ଗରେ ଅଭିନୟ କରିଚାଲିଲେ । ମାତ୍ର ଦିନେ ହଠାତ୍ ନଟବର ସେଣ ଜନତାର ସଂଖ୍ୟାଧିକ କଳାକାରମାନଙ୍କୁ ଛାଡ଼ି ସାଜ ସରଞ୍ଜାମ ସହ ଖୋର୍ଦ୍ଧା ସହରରୁ ଚାଲିଗଲେ । ତା' ପରଠାରୁ ନାଟକ ବନ୍ଦ ।

ଶୋ' ବନ୍ଦ ହୋଇଯିବାର ଅଳ୍ପ କେଇଦିନ ପରେ ଖୋର୍ଦ୍ଧା ସହରରେ ରହିଯାଇଥିବା ଜଣେ ଥିଏଟର୍‌ର ସେଇ କଳାକାରଙ୍କ ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିଲା । ବହୁଦିନ ତଳର କଥା । ଠିକ୍‌ଭାବେ ମନେ ପଡୁନି । ତା' ଛଡ଼ା ମୋର ସେତେବେଳେ ବହୁତ କମ୍ ବୟସ । ଦେଶ ଦୁନିଆ ବିଷୟରେ ସେତେଟା ଜ୍ଞାନ ହୋଇନଥାଏ । ତେବେ ପରିସ୍ଥିତି କ'ଣ ହୋଇଥିଲା ମନେ ପକେଇ ନପାରିଲେ ବି ଗୋଟିଏ ଦୃଶ୍ୟ ମୋର ଖୁବ୍ ଭଲଭାବେ ମନେ ଅଛି । କଳାଶ୍ରୀର ଜଣେ ଲେଡ଼ି ଆର୍ଟିଷ୍ଟଙ୍କ ବାସନମଜା ଦୃଶ୍ୟ ଏବେ ବି ମୋ ସ୍ମୃତିରେ ଜୀଇ ରହିଛି । ଶୋ' ବନ୍ଦ ହୋଇଯିବା ପରେ ଗୋଟିଏବେଳା କଷ୍ଟେମଷ୍ଟେ ଖାଇବାକୁ ପାଉଥିଲେ ସେଇ କଳାକାରମାନେ । ନିଜେ ରୋଷେଇକରି ବାସନ ମାଜି ଦୁଃଖେ କଷ୍ଟେ ପଡ଼ିରହିଲେ ସେମାନେ । କୁଆଡ଼େ ଯିବେ ? କ'ଣ କରିବେ ? ଷ୍ଟେଜ୍ ଅଛି । ସାଜସରଞ୍ଜାମ ନାହିଁ । ବାଦ୍ୟଯନ୍ତ୍ର ନାହିଁ ।

କାହାକୁ ନେଇ 'ଶୋ' କରିବେ ! କଳାକାର ଜୀବନ । ଦୁଃଖର ଜୀବନ । ବେଦନାର ଜୀବନ...

ତେବେ ଏଥିରେ ଆଉ କିଏ ବ୍ୟସ୍ତ ବିବ୍ରତ ହେଉନହେଉ ଅବନୀ ବରାଳଙ୍କୁ କିନ୍ତୁ ଜନତାର କଳାକାରଙ୍କ ଦୟନୀୟ ଜୀବନ ବ୍ୟଥିତ କରିପକାଇଲା । ଦିନେ ତାଙ୍କ ପ୍ରସ୍ତାବ ମୁତାବକ ଖୋର୍ଦ୍ଧା କ୍ଲବ୍‌ରେ ମିଟିଙ୍ଗଟିଏ ହେଲା । ସହରର ସମସ୍ତ ଅଭିନୟପ୍ରେମୀ କଳାକାର ସେଥିରେ ଯୋଗଦେଲେ । ସେଇ ମିଟିଙ୍ଗରେ ଜନତା ରଙ୍ଗମଞ୍ଚର କଳାକାରଙ୍କୁ କେମିତି ସାହାଯ୍ୟ କରିହେବ ସେଥିନେଇ ଆଲୋଚନା ହେଲା । ସାର୍ କହିଲେ - ସ୍ଥାନୀୟ କଳାକାରମାନେ ଜନତାର ଆର୍ଟିଷ୍ଟଙ୍କ ସହ ମିଶି ଶୋ କରିବେ । ଏଥିପାଇଁ ଟିକେଟ୍ ବିକ୍ରି ହେବ । ଟିକେଟ୍ ବିକ୍ରିରୁ ଯାହା ଆୟ ହେବ ସେଥିରେ ସେମାନଙ୍କୁ କିଛିବାଟ ଟାଣିନେଇ ହେବ ।

ସେଇଆ ହେଲା । ଥିଏଟର ପ୍ରତି ଆଗ୍ରହୀ ଥିବା କୁନି ନନ୍ଦ, ଖୋକା ଭାଇ, ଚିତ୍ତ ଭାଇ, ମୋ କାକା (ପଟୁ), ପର୍ଶୁ ପଟ୍ଟନାୟକ ପ୍ରମୁଖଙ୍କୁ ନେଇ ଆରମ୍ଭ ହେଲା ନୂଆ ଥିଏଟର ଗୋଷ୍ଠୀ । ଗୋଟିଏ ବଙ୍ଗଳା ଡ୍ରାମାର ଓଡ଼ିଆ ଅନୁବାଦ ହେଲା । ପର୍ଶୁ ପଟ୍ଟନାୟକ ସମ୍ଭବତଃ ତାର କଞ୍ଚା ଅନୁବାଦ କରିଥିଲେ । ସାର୍ (ଅବନୀ ବରାଳ) ତାକୁ ଘଷିମାଜି ଚକ୍ ଚକ୍ କରିଦେଇଥିଲେ । ଡ୍ରାମାର ନାଁ ଥିଲା 'ଉଲ୍‌କା' । ଆଉଥରେ ବାଦ୍ୟଯନ୍ତ୍ର କିଣାହେଲା । ନୂଆ ସେଟିଂ ତିଆରି ହେଲା । ଏବେ ବି ମୋ କାକାଙ୍କ ନାଁରେ ସେଟିଂ କନାର ବାକି ଗଡୁଛି । କାକା ମାଉଥ୍ ଆର୍ଗାନ୍‌ରେ କିଛି ମ୍ୟୁଜିକ୍ କମ୍ପୋଜ୍ କରିଥିଲେ ଉଲ୍‌କା ଡ୍ରାମା ପାଇଁ । ତାଙ୍କ ଉପର ଭାଇ (ଟୁକୁ) ଏଥିରେ ଗୁଣ୍ଡା ଭୂମିକାରେ ଅଭିନୟ କରିଥିଲେ । କୁନିନନ୍ଦ, ଖୋଜା ଭାଇ, ଚିତ୍ତ ଭାଇ, ଦାମ ପଟ୍ଟନାୟକ (ଜୟା ବାବୁଙ୍କ ନାତୁଣୀ ଜ୍ୱାଇଁ) ଏମାନେ ସମସ୍ତେ ଚମତ୍କାର ଅଭିନୟ କରିଥିଲେ ।

ପ୍ରତିଦିନ ଲୋକେ ଟିକେଟ୍ କାଟି ଥିଏଟର ଦେଖିଲେ । ଜନତା ରଙ୍ଗମଞ୍ଚର ପରିତ୍ୟକ୍ତ ଭୋକିଲା କଳାକାରଙ୍କ ପେଟରେ କିଛି ଦାନା ପଡ଼ିଲା । ସେମାନଙ୍କ ଅଣ୍ଟା ସଳଖିଲା । ମୁହଁରେ ଅଳ୍ପ ହସ ଫୁଟିଲା । "କ'ଣ କରିବୁ" ଅନିଶ୍ଚିତତାର ଏଇ ୫ଟି ଅକ୍ଷର ଲିଭିଗଲା ସେମାନଙ୍କ ମନରୁ । ଏହାପରେ ଆଉ ଗୋଟିଏ ଡ୍ରାମା ଅଭିନୀତ ହେଲା । ସେଇଟା ବି ବେଶ୍ କିଛିଦିନ ଚାଲିଲା । ଶେଷରେ ସିନେ ଜନତାର କଳାକାରମାନେ ତାଙ୍କ ଡ଼େରା ଉଠାଇ ପିପିଲି ଚାଲିଗଲେ..... ଏହା ପରର କଥା ମୋର ବିଶେଷ ମନେ ନାହିଁ । କିନ୍ତୁ ମନେ ରହିଯାଇଛି ସାର୍ (ଅବନୀ ବାବୁ)ଙ୍କର କଳାକାରଙ୍କ ପ୍ରତି ଥିବା ଅହେତୁକ ଦରଦ ।"

ନାଟକ ଓ ରଙ୍ଗମଞ୍ଚ ପ୍ରତି ସଦା ସମର୍ପିତ ଅବନୀ ବରାଳ ଥିଲେ ଉଦାର ହୃଦୟର ମଣିଷ । ସଂସ୍କୃତିର ସମସ୍ତ ଦିଗକୁ ସେ ଭଲ ପାଉଥିଲେ । କେବଳ ନାଟକ ନୁହେଁ, ନୃତ୍ୟ ଓ ସଙ୍ଗୀତକୁ ପ୍ରୋତ୍ସାହନ ଦେବା, ଅସୁବିଧାରେ ପଡୁଥିବା ସଙ୍ଗୀତଜ୍ଞ ଓ କଳାକାର ସମସ୍ତଙ୍କ ସହଯୋଗର ହାତ ବଢ଼ାଇଦେବା ଥିଲା ତାଙ୍କର ବୈଶିଷ୍ଟ୍ୟ । ତାଙ୍କର ଖୋର୍ଦ୍ଧା ବାସଭବନ ଥିଲା ରାଜ୍ୟର ଅଭିନେତା, କଳାକାର, ନାଟ୍ୟକାର, ସଙ୍ଗୀତଜ୍ଞଙ୍କ ମିଳନପୀଠ । ପ୍ରତ୍ୟେକଙ୍କୁ ଆତିଥ୍ୟ ଯୋଗାଇଦେବା କ୍ଷେତ୍ରରେ ସେ ପଛାଉନଥିଲେ । ଓଡ଼ିଶାର ସଙ୍ଗୀତ ଜଗତର ଅନ୍ୟତମ ପ୍ରବାଦ ପୁରୁଷ ପ୍ରଫୁଲ୍ଲ କରଙ୍କ ଏକ ବର୍ଣ୍ଣନାରୁ ଅବନୀଙ୍କ ଉଦାର ହୃଦୟ, ଅତିଥି ପରାୟଣତା ଓ କଳାକାରଙ୍କୁ ପ୍ରୋତ୍ସାହନ ଦେବାର ମହାନୁଭବତାର ସ୍ପଷ୍ଟ ଚିତ୍ର ମିଳିଥାଏ । ପୂର୍ବରୁ ଆଦୌ ବ୍ୟକ୍ତିଗତ ଜଣାଶୁଣା ନଥିବା ପ୍ରଫୁଲ୍ଲ କରଙ୍କୁ କଳାପ୍ରାଣ ଅବନୀ କିପରି ସ୍ନେହ ମମତାର ବନ୍ଧନରେ ବାନ୍ଧି ଦେଇ ପାରିଥିଲେ, ତାହାର ଜାଣିଚ୍ଛଏଁ ସ୍ମୃତିଚାରଣ କରି ପ୍ରଫୁଲ୍ଲ କହନ୍ତି -

"ଭାରତ-ଚାଇନା ଯୁଦ୍ଧ ସମୟର କଥା - ମୁଁ ସେତେବେଳକୁ ଓକିଲାତି ଛାଡ଼ି, ଗୀତକୁ ମୋର ପେଶା କରିବି ବୋଲି ନିଷ୍ପତ୍ତି ନେଇଯାଇଥାଏ । ସେ ସମୟରେ ମୋ'ଠୁ ସିନିଅର ସଙ୍ଗୀତ କର୍ମୀମାନେ ଖଣ୍ଡେ ଖଣ୍ଡେ ଚାକିରୀ କରି ସଙ୍ଗୀତରେ ପାଦ ଦେଇଥାନ୍ତି । ତେଣୁ ଗୀତ ଶୁଣେଇ ଲୋକଙ୍କ ଠାରୁ ପଇସା କମେଇବା ସେ ସମୟରେ ଆରମ୍ଭ ହୋଇନଥିଲା । ମୁଁ ଏପରି ଅବସ୍ଥାରେ ଗୀତ ବୋଲି, ଲୋକଙ୍କୁ ଶୁଣେଇ, ପଇସା ରୋଜଗାର କରିବି, ଏକଥା ଚିନ୍ତା କରିବା ମୋର ଗୋଟାଏ ପାଗଳାମି ଥିଲା ବୋଲି ଲୋକେ କହୁଥିଲେ । ମୋ ଘର ଲୋକେ ମୁଣ୍ଡରେ ହାତ ଦେଇଦେଲେ ।

ମୁଁ ଦିନେ ବକ୍ସି ବଜାର ଛକ ଉପରେ ଗୋଟିଏ ପାନ ଦୋକାନରୁ ପାନ ଖାଉଥାଏ, ଏତିକିବେଳେ ଓଡ଼ିଶାର ଅନନ୍ୟ ପ୍ରତିଭା ସ୍ୱର୍ଗତ ପର୍ଶୁରାମ ପଟ୍ଟନାୟକ, ମତେ ଡାକି କହିଲେ, "ପ୍ରଫୁଲ୍ଲ, ଏ ଚାଇନା ଯୁଦ୍ଧ ପାଇଁ ଆମ ଦେଶର ପ୍ରତିରକ୍ଷା ବିଭାଗକୁ ଆମମାନଙ୍କର ସାହାଯ୍ୟ ଦରକାର - ସେଥିପାଇଁ ଖୋର୍ଦ୍ଧାରେ ଦୁଇଦିନ ଧରି ସଙ୍ଗୀତ ଏବଂ ନାଟକ କାର୍ଯ୍ୟକ୍ରମର ଆୟୋଜନ କରାଯାଉଛି । ତୁ ସେ କାର୍ଯ୍ୟକ୍ରମରେ ଭାଗ ନେଇ ଦୁଇଦିନ ଗୀତ ଗାଇବୁ - ଟିକଟ ସୋ ହବ - ଲବ୍ଧଧନ ପ୍ରଧାନମନ୍ତ୍ରୀଙ୍କ ପାଣ୍ଠିକୁ ପଠାହେବ ।" ତୋର ପାରିଶ୍ରମିକ ବାବଦକୁ ଅଶି ଟଙ୍କା ଦିଆହେବ, ତୁ ନିଶ୍ଚିତ ଯିବୁ, ମୁଁ ପର୍ଶୁଭାଇଙ୍କ ମୁହଁରୁ ଏକଥା ଶୁଣିଛି କି ସପନ ଦେଖୁଛି, ଏକଥା ଜାଣିପାରିଲିନି, ମୁଁ ଗୀତ ଗାଇବି ପୁଣି ମତେ ସେ ବାବଦରେ ଦି' ଦିନର ଅଶିଟଙ୍କା ମିଳିବ - ଏକଥା ସେଦିନ ମୋ ମନଟାକୁ ଯୋଉ ଆନନ୍ଦରେ ଫେଣ୍ଟି ଦେଇଥିଲା, ସେକଥା ମୁଁ ଭାଷାରେ ପ୍ରକାଶ

କରିପାରିବନି । ସେତେବେଳେ ପର୍ଶୁଭାଇ ଟିକିଏ ଅନ୍ୟ ମୁଡ୍‌ରେ ଥିଲେ - ଅର୍ଥାତ୍ ଅନ୍ୟ ରାଇଜରେ, ମସଗୁଲ ଥିଲେ - ତେଣୁ ତାଙ୍କ କଥାଟାକୁ ମୁଁ ପ୍ରଥମେ ଭରଷା କରିପାରିଲିନି । କିନ୍ତୁ ଯୋଉଦିନ ସେ କାର୍ଯ୍ୟକ୍ରମ ହେବାର ଦିନ ନିର୍ଧାର୍ଯ୍ୟ ହେଇଥିଲା, ତା'ର ଚାରିଦିନ ଆଗରୁ ପର୍ଶୁଭାଇ ପୁଣି ଥରେ ଦେଖାଦେଇ ତାଗିଦ୍ କରିଦେଇ କହିଲେ, "ତୁ ଦିନକ ଆଗରୁ ବସ୍‌ରେ ଖୋର୍ଦ୍ଧା ପଳେଇବୁ - ସେଠି ଅବନୀ ବରାଳଙ୍କ ଘରେ ତୋର ରହିବାର ବ୍ୟବସ୍ଥା ହୋଇଛି," ମୁଁ ସିନା ପେଶାଦାର କଳାକାର ହିସାବରେ ମୋ ଜୀବନର ପ୍ରଥମ ପାହାଚ ଚଢ଼ିବି ବୋଲି କୁରୁଳି ଖାଉଥିଲି, ହେଲେ ଦୁଇଦିନ ଗୀତ ଗାଇବା ପାଇଁ ମୋର ଗୀତ କାହିଁ ? ମୁଁ ତ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତ କିଛି ଜାଣିଥିଲି, ହେଲେ ଷ୍ଟେଜ୍‌ରେ ବସି ସାଧାରଣ ଲୋକଙ୍କ ମନୋରଞ୍ଜନ କଲାପରି ମୋ ପାଖରେ ଲଘୁ ସଙ୍ଗୀତ ବେଶୀ ନଥିଲା, ମୁଁ ଜାଣିଲି ଯେ ମୁଁ ଏକ ଜବରଦସ୍ତ ଅଗ୍ନି ପରୀକ୍ଷା ଦେବାକୁ ଯାଉଛି - ମତେ ରାତିରେ ନିଦ ହେଲାନି କି ଦିନରେ ଭୋକ ହେଲାନି - ସେତେବେଳର ଜଣାଶୁଣା ଗୀତିକାର ଏବଂ ସୁରକାରମାନେ ମତେ ବୟକଟ୍ କଲାପରି କରି ଦେଇଥାନ୍ତି - ତେଣୁ ରାତିଦିନ ଲାଗିପଡ଼ି ମୋ ବନ୍ଧୁ କବି ହରିହର ମିଶ୍ରଙ୍କ କିଛି ଲେଖା ଏବଂ କିଛି ପୁରାତନ ରଚନାରୁ ନେଇ ମୋ ମନଇଚ୍ଛା ସ୍ୱର କରି ପ୍ରୋଗ୍ରାମ ପାଇଁ ପ୍ରସ୍ତୁତ ହେଇଗଲି ।

ମୁଁ ସିନା ଜାଣିଥିଲି ମୋର ରହିବା ବ୍ୟବସ୍ଥା ଅବନୀ ବରାଳଙ୍କ ଘରେ ହେଇଛି, ହେଲେ ସେ ଅବନୀ ବରାଳ କିଏ ଏବଂ ଖୋର୍ଦ୍ଧାରେ କୋଉଠି ତାଙ୍କର ଘର ଏସବୁ ମୁଁ କିଛି ଜାଣିନଥିଲି । ମତେ ଏକୁଟିଆ ଯିବାକୁ ଭାରି ଅଡୁଆ ଅଡୁଆ ଲାଗିଲା - ମହାପ୍ରଭୁ, ପର୍ଶୁଭାଇଙ୍କ କଣ୍ଠରେ ବସିଲେ । ଦିନକ ଆଗରୁ ସେ ମତେ ସାଙ୍ଗରେ ଧରି ଖୋର୍ଦ୍ଧା ନେଇ ଅବନୀ ବରାଳଙ୍କ ଘରେ ପହଞ୍ଚାଇଦେଲେ । ବାସ୍ ଏଇଠୁ ମୋର ଅବନୀ ଭାଇଙ୍କ ସାଙ୍ଗରେ ପ୍ରଥମ ପରିଚୟ ହେଲା ଏବଂ ମୁଁ ସବୁଦିନ ପାଇଁ ତାଙ୍କ ପାଖରେ ବାନ୍ଧି ହୋଇଗଲି । ଆଉ ଯୋଉ ଡ଼ୋରି ମତେ ତାଙ୍କ ସହିତ ବାନ୍ଧି ଦେଇଥିଲା, ସେ ଡୋରି ହେଲେ ଆଦରମଣି ଭାଉଜ ; ଅବନୀ ଭାଇଙ୍କ ଅର୍ଦ୍ଧାଙ୍ଗିନୀ । ପ୍ରଥମ ଦେଖାରେ ସେ ଏମିତି ଆଦରରେ ମତେ ଘରକୁ ପାଛୋଟି ନେଇଥିଲେ ଯେ, ମୁଁ ସେଇ ଆଦରରେ ଅବନୀ ଭାଇଙ୍କ ଆଦରର ଭାଇ ହେଇ ଏ ଯାଏଁ ରହିଛି ।

ଅବନୀ ଭାଇଙ୍କ ଘରେ ତିନିଦିନ ତିନିରାତି ରହଣୀ ସତେ ତିନି ଘଣ୍ଟା ବିତିଗଲା ପରି ଲାଗିଲା । ଆଦରମଣୀ ଭାଉଜ ଆଉ ଅବନୀ ଭାଇ ମତେ ଏମିତି ତାଙ୍କ ସାଙ୍ଗରେ ମିଶେଇଦେଲେ ଯେ ମୋର ପ୍ରଥମ ମଞ୍ଚରେ ପେଶାଦାରୀ ପ୍ରବେଶର ଭୟ ଏକବାରେ ଛାଡ଼ିଗଲା । ମୋର ଗାଧୁଆପାଧୁଆ, ଖାଇବା ପିଇବା ଠାରୁ ବିଛଣା ବିଛେଇ ଦବା

ପର୍ଯ୍ୟନ୍ତ ଦି'ଜଣ ଯାକ ଏମିତି ଲାଗିଥାଆନ୍ତି, ଯେ ମୁଁ ମୋର ନିଜ ଘରଠୁ ଆହୁରି ଅଧିକ ସ୍ୱଚ୍ଛନ୍ଦ ଆଉ ମୁକ୍ତ ଅନୁଭବ କଲି । ତେଣୁ ତାଙ୍କ ଘରେ ହାରମୋନିୟମ ଖୋଲି ଖୋଲା କଣ୍ଠରେ ମୁଁ ଗୀତ ଅଭ୍ୟାସ ଚଳେଇଲି, ମୁଁ ଯେ ଆଉ କାହାଘରେ ଅଛି କି ମୋର ଗୀତ ଅଭ୍ୟାସ ଦ୍ୱାରା ତାଙ୍କର ଯେ କିଛି ଅସୁବିଧା ହେଉଥିବ, ସେକଥା ମୁଁ ଟିକିଏ ବି ଚିନ୍ତା କଲିନି । ମୁଁ ସେ ପର୍ଯ୍ୟନ୍ତ ଜାଣିନଥିଲି ଯେ ମୋ ଭାଇ ଭାଉଜ ଦି'ଜଣ ଯାକ ମୋରି ପରି ନାଟୁଆ ବୋଲି - ସେଥିପାଇଁ ମୋର ନର୍ଭସ ହେଉଥିବା ଲକ୍ଷଣ ଦେଖି ମତେ ସେମାନେ ଏମିତି ସାଉଁଳେଇ ଦେଲେ ଯେ ମୋର ସବୁ ଡରଭୟ ଛାଡ଼ିଗଲା ।

ଖୋର୍ଦ୍ଧାର ବସ୍‌ଷ୍ଟାଣ୍ଡ ପାଖରେ ଗୋଟିଏ ଚାଳଛପରିଆ ସିନେମା ଘରେ ଆମର କାର୍ଯ୍ୟକ୍ରମ ହେଲା ଦି ଦିନର । ମୋ ସଙ୍ଗୀତ ଲୋକମାନଙ୍କୁ ବହୁତ ଭଲ ଲାଗିଲା ବୋଲି ଖବର ପାଇଲି । ଅନବୀ ଭାଇଙ୍କ ଗରବ କହିଲେ ନସରେ । ଏମିତି ତ ତାଙ୍କ ଛାତିଟା ସବୁବେଳେ ଆଗକୁ ଠେଲେଇ ହେଇ ଏକ ନିର୍ଭୀକ ପୁରୁଷର ଛଟା ପରି ଦେଖାଯାଏ - କିନ୍ତୁ ସେଦିନ ମୋ ସଙ୍ଗୀତ କାର୍ଯ୍ୟକ୍ରମ ପରେ ତାଙ୍କ ଛାତିଟା ଆହୁରି ଆଗକୁ ବାହାରି ପଡ଼ିଥାଏ । ସେହି ଦିନଠୁ ମୁଁ ଅବନୀ ଭାଇଙ୍କ ପାଖରେ ଅଭିନ୍ନ ହୋଇ ରହିଆସିଛି ।"

ଯିଏ ରଙ୍ଗମଞ୍ଚରେ ନିଜେ ଅଭିନୟ କରି ବା କଳାକାରଙ୍କୁ ଅଭିନୟ ଶିଖାଇ ହଜାର ହଜାର ଲୋକଙ୍କୁ ମନୋରଞ୍ଜନର ଖୋରାକ୍ ଯୋଗାଇପାରନ୍ତି, ସେଇ ପୁଣି ସହରର ରାଜରାସ୍ତା ଉପରେ ଯୁଦ୍ଧ ବିରୋଧୀ ଶାନ୍ତି ଅଭିଯାନର ନେତୃତ୍ୱ ନେଇଛନ୍ତି, ସାମ୍ରାଜ୍ୟବାଦୀ ଆକ୍ରମଣ ବିରୋଧରେ ବଜ୍ର ଆବାଜ ତୋଳିଛନ୍ତି । ଶାନ୍ତି ଆନ୍ଦୋଳନର ଅନ୍ୟତମ ପ୍ରମୁଖ କାଣ୍ଡାରୀର ଭୂମିକା ନେଇଛନ୍ତି । ଶାନ୍ତି ଆନ୍ଦୋଳନ ଓ ଭାରତ-ସୋଭିଏତ ସାଂସ୍କୃତିକ ସମିତିର ବିକାଶରେ ଅବନୀଙ୍କ ଅଗ୍ରଗାମୀ ଭୂମିକାର ସୂଚନା ମିଳେ 'ଇସ୍‌କଫ୍' ସାଧାରଣ ସମ୍ପାଦକ ବିଜୟ କୁମାର ପଢ଼ିଆରୀଙ୍କ ନିମ୍ନୋକ୍ତ ବର୍ଣ୍ଣନାରୁ -

"୧୯୫୨ ମସିହାରେ ଚୀନ୍‌ର ରାଜଧାନୀ ପେକିଂଠାରେ ଅନୁଷ୍ଠିତ ହୋଇଥିଲା ବିଶ୍ୱର ପ୍ରଥମ ଶାନ୍ତି ସମ୍ମିଳନୀ । ଓଡ଼ିଶାର ରାମକୃଷ୍ଣ ପତି, ଶଶୀଭୂଷଣ ପଟ୍ଟନାୟକ ଓ ଚିନ୍ତାମଣୀ ପାଣିଗ୍ରାହୀ ଯୋଗ ଦେଇଥିଲେ । ଏହି ବିଶ୍ୱ ସମ୍ମିଳନୀରେ, ବିଶ୍ୱଶାନ୍ତିର ନୂତନ ବାର୍ତ୍ତା ନେଇ ଫେରି ଆସିଛନ୍ତି ଓଡ଼ିଶା । କଟକରେ ଆୟୋଜିତ ହୁଏ ଭବ୍ୟ ସମ୍ବର୍ଦ୍ଧନା । ଅବନୀ ବରାଳଙ୍କ ନେତୃତ୍ୱରେ ଅକ୍ଷୟ ମହାନ୍ତି, ସଞ୍ଜୁକ୍ତା ପାଣିଗ୍ରାହୀ, ପ୍ରଫୁଲ୍ଲ କର, ମିନତୀ ଦାସ (ମିଶ୍ର) ପ୍ରମୁଖ ବହୁ କଳାକାର ଏଥିରେ ଭାଗ ନିଅନ୍ତି । କବି ଅନନ୍ତ ପଟ୍ଟନାୟକ, କାଳନ୍ଦି ପାଣିଗ୍ରାହି, ମନୋଜ ଦାସ, ବ୍ରଜନାଥ ରଥ ଓ ଶଶୀଭୂଷଣ ପଟ୍ଟନାୟକଙ୍କ ଉପସ୍ଥିତିରେ

ପ୍ରକମ୍ପିତ ହୁଏ କଟକ ସହର । ଶାନ୍ତିର ବାର୍ତ୍ତା ପ୍ରଚରିତ ହୁଏ ସାରା ଓଡ଼ିଶାକୁ । ଶାନ୍ତି ପାଇଁ କଳା, ସାହିତ୍ୟ ଓ ସଂସ୍କୃତର ଧାରା ସୃଷ୍ଟି ହୋଇଥିଲା ସେହିଦିନ । ଏହି ଆନ୍ଦୋଳନ ଆହୁରି ଜୋରଦାର ହୋଇଛି ବିନାୟକ ଆଚାର୍ଯ୍ୟ, ନନ୍ଦକିଶୋର ପଟ୍ଟନାୟକ, ରମାକାନ୍ତ ମହାପାତ୍ର, ପ୍ରବୀର ପାଲିତ ଓ ବିଭୂଧେନ୍ଦ୍ର ମିଶ୍ର ପ୍ରମୁଖଙ୍କ ଯୋଗଦାନରେ । ବହୁ ଯୁବକ କଳାକାର, ସାହିତ୍ୟିକ, ରାଜନେତା ଆଗେଇ ଆସିଛନ୍ତି ଏହି ଶାନ୍ତି ଆନ୍ଦୋଳନକୁ । ସେତେବେଳେ ମନୋଜ ଦାସଙ୍କ ଲେଖନୀରେ ଝଙ୍କୃତ ହୁଏ –

"ଶାନ୍ତି କାମୀ ଆମେ ମୁକ୍ତି କାମୀ

ଚାହୁଁ ଶୁଭ ମଙ୍ଗଳ ଭୋର"

ଅଗଷ୍ଟ ୧୬ ତାରିଖ ହିରୋସିମା ଦିବସ । ଏହି ଦିବସର ଆହ୍ୱାନ ଆମେରିକା ସାମ୍ରାଜ୍ୟବାଦର ଏହି ଘୃଣ୍ୟ ଲୀଳାକୁ ସମଗ୍ର ବିଶ୍ୱବାସୀ ନିନ୍ଦା କରି ଗାନ କରନ୍ତି,

"Hirosima Nagasakhi never never

We want world piece war nomore"

ମହାନ୍ ଶାନ୍ତିକାମୀ ବ୍ୟକ୍ତି ଅବନୀ କୁମାର ବରାଳଙ୍କ ହୃଦୟରେ ଏହି ଗୀତ ଉନ୍ମାଦନା ସୃଷ୍ଟି କରିଥିଲା । ଯୁଦ୍ଧ ନୁହେଁ ଶାନ୍ତି ଚାହୁଁ, ଯୁଦ୍ଧ ନୁହେଁ ପ୍ରଗତି ଚାହୁଁ । ଏହି ଶାନ୍ତିର ବାର୍ତ୍ତା ପ୍ରଚାର କରିଥିଲେ ଓଡ଼ିଶାର ଅଗଣିତ ଜନଗଣଙ୍କ ମଧ୍ୟରେ । ସେଇଥିପାଇଁ ସେ ଭ୍ରମଣ କରିଥିଲେ ଜାପାନର ହିରୋସୀମା, ଦେଖିଥିଲେ ସାଇତି ହୋଇ ରହିଥିବା ମର୍ମନ୍ତୁଦ ଘଟଣାବଳୀ ଆଉ ଲୋମହର୍ଷଣକାରୀ ଦୃଶ୍ୟ । ବୁଲି ଦେଖିଥିଲେ ଧ୍ୱଂସ ଲୀଳାର ଅଞ୍ଚଳ, ମ୍ୟୁଜିୟମ୍ ଆଉ ଆମମାନଙ୍କ ପାଇଁ ଆଣିଥିଲେ ଅନେକ ଚିତ୍ର । ଯାହାକୁ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପ୍ରଦର୍ଶନ କରି ଯୁଦ୍ଧ ବିରୋଧରେ ଜନମତ ସୃଷ୍ଟି କରିଛନ୍ତି ।

ଖାଲି ସେତିକି ନୁହେଁ ଲେଖିଥିଲେ ତାଙ୍କର ପୁସ୍ତକ "ହିରୋସୀମା ନାଗାସାକୀ ଆଉ ନୁହେଁ ଆଉ ନୁହେଁ" ଯାହା ବହନ କରିଛି ସେହି ବିଭୀଷିକାର କରୁଣ ବ୍ୟଥା ଧ୍ୱଂସଲୀଳାର ହୃଦୟ ବିଦାରକ ଚିତ୍ର ।

ଭିଏତନାମ ଉପରେ ଆମେରିକାରେ ଦୀର୍ଘଦିନ ଧରି ବୋମା ବର୍ଷଣ ପାଲେଷ୍ଟାଇନ୍ ମୁକ୍ତି ଆନ୍ଦୋଳନ ଦବାଇ ଦେବା ପାଇଁ ଇସ୍ରାଏଲ୍‌ର ଘୃଣ୍ୟ ଚକ୍ରାନ୍ତ, ବଙ୍ଗଳା ଦେଶ ଯୁଦ୍ଧ ବିଶେଷ କରି ଇରାକ୍ ଉପରେ ଆମେରିକାର ଧ୍ୱଂସଲୀଳାର ସେ ଘୋର ବିରୋଧୀ । ଆମେରିକାର ଏହି ଅମାନୁଷିକ ଆକ୍ରମଣ ବିରୁଦ୍ଧରେ ଓଡ଼ିଶାରେ ଆୟୋଜିତ

ହେଉଥିବା ସଭା, ସମିତି, ସେମିନାର୍, ସମାବେଶ ଓ ଶୋଭାଯାତ୍ରା ମାନଙ୍କରେ ଅବନୀ ବାବୁ ସଂକ୍ରୀୟ ଅଂଶ ଗ୍ରହଣ କରିଥିଲେ ଓ ନେତୃତ୍ୱ ନେଇଥିଲେ ।

ଆମେରିକା ନିକଟରେ କ୍ୟୁବା ଏକ ଛୋଟିଆ ସମାଜବାଦୀ ଦେଶ । ଓଡ଼ିଶା ଠାରୁ ଆୟତନରେ ଛୋଟ । ସେହି ସମାଜବାଦୀ ଦେଶ କ୍ୟୁବାକୁ ଧ୍ୱଂସ କରିବା ଆଉ ତା'ର ବିପ୍ଳବୀ ନେତା ଫିଡ଼େଲ୍ କାଷ୍ଟ୍ରୋଙ୍କୁ ମାରିଦେବା ପାଇଁ ଆମେରିକାର ଚକ୍ରାନ୍ତକୁ ସମଗ୍ର ବିଶ୍ୱବାସୀ ନିନ୍ଦା କରିଛନ୍ତି । ଆମେରିକା କ୍ୟୁବାକୁ ଅର୍ଥନୈତିକ ଭାବେ ବାସନ୍ଦ କରିଛି । ଜାତିସଂଘରେ ସଂଖ୍ୟାଧିକ ଭୋଟରେ ଗୃହୀତ ପ୍ରସ୍ତାବକୁ ଆମେରିକାର ଖାତିର ନାହିଁ । ଆହୁରି ମଧ୍ୟ କ୍ୟୁବାର ୫ଜଣ ଦେଶପ୍ରେମୀ ଆଜି ଆମେରିକା କାରାଗାରରେ ବନ୍ଦୀ ।

ବିଶ୍ୱ ଜନମତକୁ ଆମେରିକାର ଖାତିର ନାହିଁ । ସମସ୍ତ ପ୍ରକାର ମାନବିକ ଅଧିକାରକୁ ଉଲଂଘନ କରିଚାଲିଛି । କ୍ୟୁବାର ଏହି ଦୁର୍ଦ୍ଦିନରେ କ୍ୟୁବା ପ୍ରତି ଆମର ସମର୍ଥନ ଜଣାଇବା ପାଇଁ ଅନୁଷ୍ଠିତ କ୍ୟୁବା ସଂହତି ଦିବସରେ କ୍ୟୁବା ଭ୍ରମଣ କରି ସମ୍ମିଳନୀରେ ଯୋଗଦେଇ ଫେରିଥିବା ଅବନୀ କୁମାର ବରାଳ ପୌରହିତ୍ୟ କରିଥିଲେ । ଏତ ଗଲା ଶାନ୍ତି ଆନ୍ଦୋଳନର କଥା । ଆସନ୍ତୁ ଆଲୋଚନା କରିବା ମୈତ୍ରୀ ଆନ୍ଦୋଳନରେ ତାଙ୍କର ଭୂମିକା । ଅବନୀ ବରାଳ କ୍ୟୁବା ଯାଇଛନ୍ତି ଏବଂ କ୍ୟୁବାର ନବଜୀବନର ନ୍ୟାସ ଦେଖି ତାଙ୍କ ରଚିତ "ଦୁନିଆର ଚଳାପଥରୁ ସାଉଁଟା ମଣିମାଣିକ"ରେ ବର୍ଣ୍ଣନା କରିଛନ୍ତି ମହାନ୍ କ୍ୟୁବାର ଗାଥା ।

ଭାରତ-ସୋଭିଏତ୍ ସାଂସ୍କୃତିକ ସମିତି (ISCUS) ଭାରତର ଏକ ପ୍ରମୁଖ ମୈତ୍ରୀ ଆନ୍ଦୋଳନ । ଅବନୀ ବାବୁ ଏହି ଆନ୍ଦୋଳନର ଏକ ଟାଣୁଆ ନେତା । ଭାରତ-ସୋଭିଏତ୍ ମୈତ୍ରୀର ଇତିହାସ ଭାରତ ଇତିହାସରେ ଏକ ସୁବର୍ଣ୍ଣ ଯୁଗ । ପାରସ୍ପରିକ ସହଯୋଗ ଫଳରେ ଏହା ମୈତ୍ରୀ ଆନ୍ଦୋଳନ ଥିଲା ସୁଦୂର ପ୍ରସାରୀ, ଏହା ଧରାରୁ ମହାକାଶ ଯାଏ ପରିବ୍ୟାପ୍ତ ଥିଲା ଏହି ଭାରତ-ସୋଭିଏତ ମୈତ୍ରୀ । ଭିଲାଇ-ବୋକାରେ ଇସ୍ପାତ କାରଖାନାଠାରେ ରାକେଶ ଶର୍ମାଙ୍କୁ ମହାକାଶକୁ ପଠାଇବା ଯାଏଁ ଅନେକ କୃତିର ଅଧିକାରୀ ।

ଶହଶହ କଳାକାର, ସାହିତ୍ୟିକ, ବିଜ୍ଞାନୀ ରାଜନେତା ସମାଜସେବୀ ସୋଭିଏତ ୟୁନିଅନକୁ ବୁଲିବାକୁ ଯାଇଛନ୍ତି । ଆଉ ତେରେସ୍କୋଭା ଓ ଗାଗାରିନଙ୍କ ପରି ବହୁ ସୋଭିଏତବାସୀ ଭାରତ ଏବଂ ଅନ୍ୟାନ୍ୟ ଦେଶକୁ ଆସିଛନ୍ତି । ଆଜି ମଧ୍ୟ ଅଭୁଲା ହୋଇ

ରହିଛି ସେ ଘଟଣାବଳୀ ଋଷୀୟ କଳାକାରଙ୍କ କଳାକୌଶଳରେ ପ୍ରକମ୍ପିତ ହୋଇଛି ବାରବାଟୀ ଷ୍ଟାଡ଼ିୟମ୍ ।

ସୋଭିଏତ୍ ୟୁନିୟନକୁ ଶିକ୍ଷାଲାଭ ପାଇଁ ଭାରତର ତଥା ଓଡ଼ିଶାର ଶହ ଶହ ଛାତ୍ରଛାତ୍ରୀ ଯାଇଛନ୍ତି । ସେଠାରୁ ଉଚ୍ଚଶିକ୍ଷା ଲାଭ କରି ଫେରିଛନ୍ତି । ଅନେକ ସାଂସ୍କୃତିକ ବିନିମୟର କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହୋଇଛି । ଅବନୀ କୁମାର ବରାଳ ମୈତ୍ରୀର ବାର୍ତ୍ତା ନେଇ ଅନେକ ଥର ସୋଭିଏତ ୟୁନିଅନ ଓ ଅନ୍ୟାନ୍ୟ ଦେଶକୁ ଯାଇଛନ୍ତି ଆଉ ସୋଭିଏତ ୟୁନିୟନ ଉପରେ ଅନେକ ଲେଖା ଲେଖିଛନ୍ତି । ସେ ଏହି ଭାରତ-ସୋଭିଏତ ମୈତ୍ରୀ ଆନ୍ଦୋଳନର ଜଣେ ଅଗ୍ରଗାମୀ ନେତୃତ୍ୱ ।

୧୯୮୨ରେ ଚଣ୍ଡୀଗଡ଼ଠାରେ ଅବନୀବାବୁ ଏଜୁକେଶନ୍ ଫର୍ ପିସ୍ "ଶାନ୍ତି ପାଇଁ ଶିକ୍ଷା" ଉପରେ ବିଶ୍ୱସମ୍ମିଳନୀ ଆହ୍ୱାନ କରିଥିଲେ । ପୃଥିବୀର ୨୩ଟି ଦେଶର ଶିକ୍ଷକ ପ୍ରତିନିଧି ତଥା ରମେଶଚନ୍ଦ୍ରଙ୍କ ନେତୃତ୍ୱରେ ବିଶ୍ୱଶାନ୍ତି ପରିଷଦର ୪୦ଜଣ ପ୍ରତିନିଧି ଯୋଗ ଦେଇଥିଲେ । ବିଶ୍ୱଶିକ୍ଷକ ୟୁନିୟନ ପକ୍ଷରୁ ଏହା ଅବନୀ ବାବୁ ଆହ୍ୱାନ କରିଥିଲେ ।

ସୋଭିଏତ ୟୁନିଅନର ବିଘଟନ ପରେ ୧୯୮୩ ଅକ୍ଟୋବରରେ ଚଣ୍ଡିଗଡ଼ ଠାରେ ଅନୁଷ୍ଠିତ ହୁଏ ISCUSର ସର୍ବଭାରତୀୟ ସମ୍ମିଳନୀ । ସମ୍ବିଧାନ ସଂଶୋଧନ କରି ISCUS କୁ ସେଦିନ ISCUF (ଭାରତର ସାଂସ୍କୃତିକ ସହଯୋଗ ଓ ମୈତ୍ରୀ ସମିତିରେ ନାମିତ କରାଯାଏ । ୧୯୯୪ ମସିହା ଅପ୍ରେଲ୍ ୨୩ ଓ ୨୪ ତାରିଖ ଦୁଇଦିନ ଧରି କଟକରେ ଅନୁଷ୍ଠିତ ହୁଏ ISCUS ର ୮ମ ରାଜ୍ୟ ସମ୍ମିଳନୀ । ସେହି ସମ୍ମିଳନୀ ଓଡ଼ିଶାରେ ISCUF ସଙ୍ଗଠନ ଆରମ୍ଭ ହୁଏ । ଏହା ଥିଲା ISCUF ର ପ୍ରଥମ ସମ୍ମିଳନୀ । ସେହି ପ୍ରଥମ ସମ୍ମିଳନୀ ଠାରୁ ସମ୍ବଲପୁର ଓ ରାଉରକେଲା ରାଜ୍ୟ ସମ୍ମିଳନୀରେ ଅବନୀ କୁମାର ବରାଳ ସଂଗଠନର ଇସ୍‌କଫ ସଭାପତି ମଣ୍ଡଳୀର ସଦସ୍ୟ ରହିଆସିଛନ୍ତି । ସେ ଆଜି ମଧ୍ୟ ଇସ୍‌କଫର ସଭାପତି । ଓଡ଼ିଶାର ପ୍ରମୁଖ ମୈତ୍ରୀ ଆନ୍ଦୋଳନର ସୁଦକ୍ଷ ନେତା । ତାଙ୍କ ନେତୃତ୍ୱରେ ମୈତ୍ରୀ ଆନ୍ଦୋଳନ ଚାଲିଛି । ଚାଲୁଥିବ ମଧ୍ୟ ।"

ସଂଗ୍ରାମ ଓ ସାଧନାମୟ ପଥରେ ଅବିଶ୍ରାନ୍ତ ଆଗେଇ ଚାଲିଥିବା ଏହି ବୀରଯୋଦ୍ଧା କୌଣସି ମୁହୂର୍ତ୍ତରେ ବି ଜନ ସଂସ୍କୃତି ଓ ନାଟକକୁ ପାଶୋରି ଦେଇନାହାନ୍ତି କିମ୍ବା ଓହରି ଯାଇନାହାନ୍ତି ଶାନ୍ତି, ମୈତ୍ରୀ ଓ ସଂହତି ଆନ୍ଦୋଳନରୁ । ଯଥାର୍ଥରେ ସେ ଆଧୁନିକ ଓଡ଼ିଶା ଇତିହାସର ଜଣେ ସଂସ୍କୃତି ପୁରୁଷ । 

## ଓଡ଼ିଆ ସାହିତ୍ୟାକାଶର ସମୁଜ୍ଜ୍ୱଳ ତାରକା



ନିଜର ସଂଘର୍ଷମୟ ଜୀବନରେ ଅବନୀ ବରାଳ ଯଦି ରାଜନୀତି ନକରି ଶିକ୍ଷକ ଆନ୍ଦୋଳନର ନେତୃତ୍ୱ ନନେଇ, କଳା, ସଂସ୍କୃତି, ନାଟକ ଓ ରଙ୍ଗମଞ୍ଚରେ ଆପଣାକୁ ସମର୍ପିତ ନକରି କେବଳ ସାରସ୍ୱତ ସାଧନାରେ ନିଜକୁ ନିୟୋଜିତ କରିଥାନ୍ତେ, ତେବେ ସମ୍ଭବତଃ ସେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସର୍ବାଧିକ ଲୋକପ୍ରିୟ ସ୍ରଷ୍ଟା ହେବାର ଗୌରବ ଲାଭ କରିପାରିଥାନ୍ତେ । ତଥାପି ଆଜି ସୁଦ୍ଧା ସେ ଯେତିକି ପୁସ୍ତକ ରଚନା କରି ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି, ନିତିଦିନିଆ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଜୀବନର ଘଟଣାବଳୀ ଉପରେ ଆଧାରିତ ତାଙ୍କର ଯେତିକି ସଂଖ୍ୟକ ସାରଗର୍ଭକ ପ୍ରବନ୍ଧ ଓ ନିବନ୍ଧ ନିୟମିତ ଭାବରେ ସମ୍ବାଦପତ୍ର ଏବଂ ପତ୍ରପତ୍ରିକା ପୃଷ୍ଠାରେ ପ୍ରକାଶିତ ହୋଇଛି ଓ ହେଉଛି, ତାହା ତାଙ୍କୁ ଜଣେ ଆଗ ଧାଡ଼ିର ସାହିତ୍ୟ ସାଧକ ରୂପେ ପ୍ରତିଷ୍ଠିତ କରାଇପାରିଛି । ଜଣେ ଉଚ୍ଚକୋଟୀର ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ପ୍ରାବନ୍ଧିକ, ଅନୁବାଦକ, ଭ୍ରମଣ କାହାଣୀ ଲେଖକ ରୂପେ ଅବନୀଙ୍କ ପ୍ରତିଭାର ପଟାନ୍ତର ନାହିଁ । ଗଳ୍ପ, ଉପନ୍ୟାସ ଓ ସମାଲୋଚନା ସାହିତ୍ୟ ସୃଷ୍ଟି କଲାବେଳେ, ତାଙ୍କର ଲେଖନୀ ସବୁବେଳେ କିଛି ନା କିଛି ନୂତନତ୍ୱ ସୃଷ୍ଟି କରିବା ପାଇଁ ଉଦ୍ୟମରତ ହୋଇଥାଏ । ପାଠକ ଅନୁଭବ କରେ କିଛିଟା ଭିନ୍ନତା, ଉଠିବାକୁ ଇଚ୍ଛା ହୁଏ ନାହିଁ, ଗୋଟିଏ ନିଃଶ୍ୱାସରେ ଶେଷ କରିଦିଏ ସାରା ପୁସ୍ତକକୁ । ଗଳ୍ପ ହେଉ କିମ୍ବା ଉପନ୍ୟାସ ହେଉ, ଖୁବ୍ ନିଖୁଣ ଭାବରେ ସେ ଚରିତ୍ରଗୁଡ଼ିକୁ ତିଆରି କରିଥାନ୍ତି । ଫଳରେ ତାଙ୍କ ଲେଖାର ପ୍ରତିଟି ଚରିତ୍ର

ପାଠକ ଆଗରେ ଜୀବନ୍ତ ରୂପରେ ପ୍ରତିଭାତ ହୁଏ । ଗଳ୍ପ ଓ ଉପନ୍ୟାସର ମୂଳ ଭିତ୍ତିଭୂମି ସୁଦୃଢ଼ ଥିବାରୁ ବଳିଷ୍ଠ ଚରିତ୍ର ଚିତ୍ରଣ ଦ୍ୱାରା ତାଙ୍କ ପୁସ୍ତକଗୁଡ଼ିକ ପାଠକଙ୍କ ଦ୍ୱାରା ଖୁବ୍ ଗ୍ରହଣୀୟ ହୋଇଥାଏ । ପ୍ରାୟ ଅର୍ଦ୍ଧଶତାବ୍ଦୀ ପୂର୍ବେ କଲିକତାରୁ ପ୍ରକାଶିତ ଲୋକପ୍ରିୟ ଓଡ଼ିଆ ପତ୍ରିକା 'ଆସନ୍ତାକାଲି'ରେ ଧାରାବାହିକ ଭାବରେ ଦୁଇବର୍ଷ ଧରି ଅବନୀଙ୍କ ଉପନ୍ୟାସ 'ପ୍ରେମର ଅନ୍ୱେଷଣରେ ଗୋଟିଏ ତରୁଣୀ' ପ୍ରକାଶ ପାଇଥିଲା । ସେତେବେଳେ ରାଜ୍ୟର ଯୁବପାଠକ ଗୋଷ୍ଠୀ ମଧ୍ୟରେ ଏହି ଧାରାବାହିକଟି ବେଶ୍ ଚହଳ ପକାଇ ଦେଇଥିଲା । ତାଙ୍କର ଏହି ପ୍ରଥମ ଭିନ୍ନ ସ୍ୱାଦର ପ୍ରେମମୂଳକ ଉପନ୍ୟାସ ଓଡ଼ିଆ ସାହିତ୍ୟରେ ଏକ ମାଇଲ ଖୁଣ୍ଟ ହୋଇ ରହିଛି । ଅବନୀଙ୍କ ଗଳ୍ପ ଓ ଉପନ୍ୟାସର ଅଧିକାଂଶ ଚରିତ୍ର ସମାଜର ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ଭିତରୁ ସୃଷ୍ଟି ହୋଇଥାନ୍ତି । ନାରୀ ଚରିତ୍ରଗୁଡ଼ିକ ମଧ୍ୟରେ ଦେହ ଓ ମନର ଦ୍ୱନ୍ଦ୍ୱ ପ୍ରାଣବନ୍ତ ହୋଇ କରୁଣ ରୂପରେ ଆତ୍ମପ୍ରକାଶ କରିଥାଏ । ଚରିତ୍ରମାନଙ୍କ ତୁଣ୍ଡରେ ଗଳ୍ପର ଭାବ, ଭାଷା ଓ ବିଷୟବସ୍ତୁର ପରିପ୍ରକାଶ ଘଟିଥାଏ ।

ଏହି ମହାନ୍ ସ୍ରଷ୍ଟାଙ୍କ ସାହିତ୍ୟ ସାଧନାର ପ୍ରଥମ ଉନ୍ମେଷ ଘଟିଥିଲା, ଯେତେବେଳେ ସେ ହାଇସ୍କୁଲରେ ଦଶମ ଶ୍ରେଣୀର ଛାତ୍ର ଥିଲେ । ଅବନୀଙ୍କ ନିଜ ଭାଷାରେ – "ପିଲାଦିନେ ସମ୍ଭବତଃ ଦଶମ ଶ୍ରେଣୀରେ ପଢ଼ିଲାବେଳେ 'ମୀନା ବଜାର' ('ପ୍ରଜାତନ୍ତ୍ର'ର ଏକ ପୃଷ୍ଠାରେ) 'ପିମ୍ପୁଡ଼ି' ବୋଲି କବିତାଟିଏ ବାହାରିଥିଲା । ତାକୁ ସମସ୍ତଙ୍କୁ ଦେଖାଇ ମୋର ଯେ କି ଆନନ୍ଦ ତାହା ଏବେ ବୁଝାଇ ହେବ ନାହିଁ । ଆଇ.ଏ. ପଢ଼ିଲା ବେଳୁ ଗପ, ଏକାଙ୍କିଆ ଧାରାବାହିକ ଭାବରେ ଲେଖିବାକୁ ଆରମ୍ଭ କରିଥିଲି । ସେତେବେଳେ କଲିକତାରୁ ପ୍ରକାଶିତ 'ଆସନ୍ତା କାଲି'ରେ ପ୍ରାୟ ପ୍ରତି ମାସରେ ଗଳ୍ପ ପ୍ରକାଶିତ ହେଉଥିଲା । ପରେ ପରେ ମୋର ପ୍ରଥମ ଉପନ୍ୟାସ 'ପ୍ରେମର ଅନ୍ୱେଷଣରେ ଗୋଟିଏ ତରୁଣୀ' ଆସନ୍ତା କାଲିରେ ପ୍ରାୟ ସୁଦୀର୍ଘ ଦୁଇବର୍ଷ ଧରି ପ୍ରତି ମାସରେ ବାହାରିଲା । କଲିକତାରୁ ପ୍ରକାଶ ପାଉଥିବା 'ଅଗ୍ରଣୀ', 'ସମାବେଶ', 'ଯୁଗଭାରତୀ', କଟକର 'ଶୁଭଶଙ୍ଖ', କ୍ରାନ୍ତିଧାରା, ଦିଗନ୍ତ, ବହୁ କ୍ଷଣକ ପାଇଁ ଜଳି ଉଠି ଲିଭିଯାଇଥିବା ପତ୍ରିକାରେ ଅସଂଖ୍ୟ ଗଳ୍ପ ଲେଖିଛି । 'ଲେଖା', 'ଡଙ୍କା' ଆଦି ପତ୍ରିକା ମଧ୍ୟ ପ୍ରକାଶ କରିଛି । 'ପୂର୍ଣ୍ଣ ଗ୍ରାସ' ଏବଂ 'ଯୁଗଯାତ୍ରୀ' ବୋଲି ଏକାଙ୍କିକା କଥାକାର ସଂଘ ପକ୍ଷରୁ କଟକରେ ବି.ଏ. ପଢ଼ିଲା ବେଳେ ମଞ୍ଚସ୍ଥ ହୋଇଥିଲା ।

ମୋର ଗଳ୍ପ ସଂକଳନଗୁଡ଼ିକ ମଧ୍ୟରୁ 'ଜାରଜ', 'ଉତ୍ତର ବସନ୍ତ', 'ଭିନ୍ନ ସ୍ୱାଦର ଗଳ୍ପ', ଅବନୀ ବରାଳଙ୍କ ସୁନିର୍ବାଚିତ ଗଳ୍ପ, ଉପନ୍ୟାସ ମଧ୍ୟରେ 'ମଞ୍ଚ କନ୍ୟାର କାହାଣୀ', 'ପ୍ରେମର ଅନ୍ୱେଷଣରେ ଗୋଟିଏ ତରୁଣୀ', 'ଏ ରାତ୍ରୀ ମାୟାବିନୀ', 'ମାୟାବିନୀ ମଞ୍ଚ',

ଅନୁବାଦ ଉପନ୍ୟାସ 'ଇସ୍ପାତ୍', ପୃଥିବୀ ପ୍ରସିଦ୍ଧ ରୁଷୀୟ ଉପନ୍ୟାସ 'How the steel was tempered'ର ଓଡ଼ିଆ ଅନୁବାଦ ଯାହା ପାଇଁ ସର୍ବଭାରତୀୟ ସୋଭିଏତ୍ ଲ୍ୟାଣ୍ଡ ନେହେରୁ ପୁରସ୍କାର ପାଇଛି ; 'ଲାଲ ଅଞ୍ଚଳ' ଭ୍ରମଣ କାହାଣୀ 'ଶାନ୍ତିତୀର୍ଥ ହିରୋସୀମା', 'ହୀରୋସୀମା-ନାଗାସାକୀ ଆଉ ନୁହେଁ-ଆଉ ନୁହେଁ', 'ଦୁନିଆର ଚଲାପଥରୁ ସାଉଁଟା ମଣି ମଣିକ', ଶିକ୍ଷା ସମ୍ପର୍କୀୟ ପ୍ରବନ୍ଧ 'ଶିକ୍ଷାର କେତେକ ବ୍ୟଥା', 'ଶିକ୍ଷାର ଅନେକ ସମସ୍ୟା', 'ଶିକ୍ଷାର ସ୍ଥିତି ଓ ଦୁଃସ୍ଥିତି', 'ଶିକ୍ଷା ବଞ୍ଚାଅ - ଓଡ଼ିଶା ବଞ୍ଚାଅ' - ୩ଖଣ୍ଡ ସିରିଜ୍, ଉପନ୍ୟାସ 'ସଂଳାପ ନିଃସଙ୍ଗତାର', ପ୍ରବନ୍ଧ 'ମାର୍କ୍ସବାଦୀ ସାହିତ୍ୟତତ୍ତ୍ୱ' ଆଦି ପ୍ରକାଶ ପାଇଛି । ଏହା ବ୍ୟତୀତ 'ବିଂଶ ଶତାବ୍ଦୀର ଓଡ଼ିଆ କବିତା', 'ନନ୍ଦ କିଶୋର ପଟ୍ଟନାୟକଙ୍କ ରଚନା ସମ୍ଭାର', 'ପ୍ରାଣନାଥ ସ୍ମରଣେ', ଅନନ୍ତ ପଟ୍ଟନାୟକଙ୍କ ଜୀବନୀ 'ଆସିଛି ମୁଁ ଆସିଛି', 'ଦୁର୍ଗାଚରଣ ମହାନ୍ତି ସ୍ମରଣେ' ମଧ୍ୟ ପ୍ରକାଶ ପାଇଛି । ସବୁଗୁଡ଼ିକର ଶେଷ କପି ମଧ୍ୟ ମୋ ପାଖରେ ନାହିଁ, କାରଣ ସାବଧାନତାର ସହିତ ମୁଁ ସମ୍ଭାଦି ରଖିପାରେ ନାହିଁ । ଏବେ ଚେଷ୍ଟା କରୁଛି ନିଜ ଲେଖା ପୁରୁଣା ବହି, ପତ୍ରପତ୍ରିକାରୁ କାଢ଼ି ବାହାର କରିବା ପାଇଁ ।"

କଲିକତାରୁ ପ୍ରକାଶିତ 'ଅଭିଯାନ' ପତ୍ରିକାରେ ୨୦୦୭ ଅକ୍ଟୋବର ମାସ ପୂଜା ସଂଖ୍ୟାରେ ପ୍ରକାଶିତ ଅବନୀ ବରାଳଙ୍କ ସାକ୍ଷାତକାରରେ ଏହି ଯେଉଁ କେତୋଟି ନିର୍ବାଚିତ ପୁସ୍ତକ ବିଷୟ ସେ ଉଲ୍ଲେଖ କରିଥିଲେ, ତା' ଠାରୁ ଆହୁରି ବେଶି ଲମ୍ବା ଅଦ୍ୟାବଧି ତାଙ୍କ ଦ୍ୱାରା ଲିଖିତ ପୁସ୍ତକର ତାଲିକା । ତାଙ୍କର ଅନନ୍ୟ ଗଳ୍ପ ସଂକଳନ 'ଭିନ୍ନ ସ୍ୱାଦର ଗଳ୍ପ' ଓଡ଼ିଆ କଥା ସାହିତ୍ୟରେ ଏକ ମାଇଲଖୁଣ୍ଟ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଗଳ୍ପଗୁଡ଼ିକ ବିଗତ ଶତାବ୍ଦୀର ଷଷ୍ଠ ଦଶକରୁ ଅଷ୍ଟମ ଦଶକ ମଧ୍ୟରେ ଲିଖିତ । ଠିକ୍ ସେହି ସମୟରେ ଓଡ଼ିଆ ଗଳ୍ପ ସାହିତ୍ୟରେ ଅନେକ ନୂତନ ପରୀକ୍ଷା ନିରୀକ୍ଷା ଚାଲିଥାଏ । ଗୋପୀନାଥ ମହାନ୍ତିଙ୍କ ଠାରୁ ଆରମ୍ଭ କରି ଅଖିଳ ମୋହନ, ଶାନ୍ତନୁ ଆଚାର୍ଯ୍ୟ, କୃଷ୍ଣ ପ୍ରସାଦ ମିଶ୍ର, ମହାପାତ୍ର ନୀଳମଣି ସାହୁ ଓ ମନୋଜ ଦାସଙ୍କ ଭଳି ଅନେକ ଯଶସ୍ୱୀ କଥାକାରଙ୍କ ଦ୍ୱାରା ଲିଖିତ ଉଚ୍ଚକୋଟୀର ଗଳ୍ପରେ ଓଡ଼ିଆ ଗଳ୍ପ ସାହିତ୍ୟ ସମୃଦ୍ଧ ହୋଇଥାଏ । ସେତିକିବେଳେ ଖୋରଧା କଲେଜର ତରୁଣ ଅଧ୍ୟାପକ ଅବନୀ ବରାଳ ଗଳ୍ପ ରଚନାରେ ହାତ ଦେଇ ଯେଉଁ କେତେକ ଉନ୍ନତ ମାନର ଗଳ୍ପ ରଚନା କଲେ, ଗୁଣାତ୍ମକ ଦୃଷ୍ଟିରୁ ତାହା ଯେ କୌଣସି ପ୍ରତିଷ୍ଠିତ ଗାଳ୍ପିକଙ୍କ ଗଳ୍ପ ଠାରୁ କୌଣସି ଗୁଣରେ କମ୍ ନୁହେଁ । 'ଭିନ୍ନ ସ୍ୱାଦର ଗଳ୍ପ' ସଂକଳନରେ ସ୍ଥାନିତ ଗଳ୍ପଗୁଡ଼ିକର ମୂଲ୍ୟାୟନ କରି ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର ଡକ୍ଟର ସଂଘମିତ୍ରା ମିଶ୍ର କହନ୍ତି -

"ସ୍ୱାଧୀନତା ପରବର୍ତ୍ତୀ ସମାଜରେ ସ୍ଲୋଗାନର ଭିଡ଼ । ଜୀବନରେ ଚାତୁର୍ଯ୍ୟ ଓ

କପଟାଚାର ଅଧିକ । ଧନୀ ଦରିଦ୍ର ମଧ୍ୟରେ ଥିବା ଭେଦଭାବ ବଢ଼ିଚାଲିଛି । ଅନ୍ନ ଚିନ୍ତାର ଚମତ୍କାରିତା ବଢ଼ିବା ସହିତ କମିଯାଉଛି, ପାରମ୍ପରିକ ମୂଲ୍ୟବୋଧ । ଭାଙ୍ଗିପଡୁଛି ଯୁଗ ଯୁଗର ବିଶ୍ୱାସ ମନ୍ଦିର ଖିଲାଣ । ସେହିପରି ରାଜନୀତି ମଧ୍ୟ ବ୍ୟକ୍ତିର ଜୀବନଧାରାକୁ ବିଡମ୍ବିତ କରିଦେଇଛି । 'ଗରିବୀ ହଟାଓ', 'ଦଳ ବଦଳ', 'ନିମିତ୍ତ ମାତ୍ର', 'ମନ୍ତ୍ରୀ ଦର୍ଶନ' ଓ 'ଗତାୟୁ' ଭଳି ଗଳ୍ପଗୁଡ଼ିକରେ ଏହି ଭାବଧାରା ପରିଦୃଷ୍ଟ ହୁଏ । 'ଗରିବୀ ହଟାଓ' ସ୍ୱାଧୀନତାର ରଜତ ଜୟନ୍ତୀ ସମାରୋହର ଅନ୍ଧାରୀ ଦିଗନ୍ତ ଉନ୍ମୋଚନ କରିଥାଏ । ବାର ତେର ବର୍ଷର କିଶୋରୀ କାଖରେ ଦେଢ଼ବର୍ଷର ଶିଶୁକୁ ଧରି ଭିକ ମାଗିବା ଓ ଭଡ଼ାରେ ଆଣିଥିବା ପୁତ୍ର ଶିଶୁକୁ ଭଉଣୀ ବୋଲି ଚିହ୍ନାଇ ଦେବା ଭିତରେ ଅଭାବର ରୁଗ୍ଣ ମନସ୍ତତ୍ତ୍ୱ ହିଁ ଆଖିରେ ପଡ଼େ । ପ୍ରଧାନ କଥା ପିଲାଟିଏ ଧରି ଭିକ ମାଗିଲେ ଲୋକେ ଦୟାରେ ଅଧିକ ପଇସା ଦିଅନ୍ତି । ଦ୍ୱିତୀୟରେ ଦେହ ବିକ୍ରିର ମୂଳଚାଲ ପାଇଁ ମଧ୍ୟ ସୁଯୋଗ ମିଳେ । କିଶୋରୀଟି ନିଜକୁ ଲେଖକଙ୍କ ନିକଟରେ ବିଜ୍ଞପିତ କରି ଭୋକିଲା ପେଟପାଇଁ ଯେଉଁ ଅପପ୍ରୟାସ କରିଛି ତାହା ଲେଖକଙ୍କୁ ଖୁବ୍ ଆଘାତ ଦେଇଛି । ଦଳବଦଳ ରାଜନୀତିକୁ ପେଷାକରି ବଞ୍ଚିବା ବୁଦ୍ଧିମାନ ମଣିଷର କାର୍ଯ୍ୟ । କିନ୍ତୁ ଶ୍ୟାମସୁନ୍ଦର ଓ କରୁଣାକରଙ୍କ ଭଳି କିଞ୍ଚିତ ମୂଲ୍ୟବୋଧକୁ ପୁଞ୍ଜି କରି ଆଜିଯାଏ ବଞ୍ଚି ଆସିଥିବା ଲୋକମାନେ ଏ ଗହଳିରେ ପଶିପାରନ୍ତି ନାହିଁ । ଭିନ୍ନ ଗୋଷ୍ଠୀଭୁକ୍ତ ଏହି ପ୍ରୌଢ଼ ବ୍ୟକ୍ତିଦ୍ୱୟ ପରସ୍ପରକୁ ଏଡ଼ାଇ ଚାଲୁଚାଲୁ ହାତ ଧରାଧରି ହୋଇ ଅତିଥି ଶାଳାରୁ ରାଜରାସ୍ତାକୁ ଓହ୍ଲାଇ ଆସିବା ଦେଖାଯାଏ । ନିଃସ୍ୱାର୍ଥପର ଜନସେବକ ଧର୍ମଭାବାପନ୍ନ ମାଧବାନନ୍ଦ ମୁଖ୍ୟମନ୍ତ୍ରୀ ପଦ ଗ୍ରହଣ କରିବା ପରେ ନିଜର ବୈଶିଷ୍ଟ୍ୟର ପ୍ରମାଣ ଦେବା ପାଇଁ ଗେରୁଆ ପିନ୍ଧିବା, ରାମଧୂନ କରିବା ଭଳି ଲୋକ ଦେଖାଣିଆ କାର୍ଯ୍ୟ କରି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରନ୍ତି । କିନ୍ତୁ ନିଜକୁ ନିମିତ୍ତ ମାତ୍ର ମଣୁଥିବା ଏହି ଭଦ୍ରଲୋକ ତାଳୁରୁ ତଳିପା ଯାଏ ଦୁର୍ନୀତିରେ ବୁଡ଼ି ଥାଆନ୍ତି । ଶେଷରେ ମନ୍ତ୍ରୀମଣ୍ଡଳ ଭାଙ୍ଗିଯିବା କଥାକୁ ମଧ୍ୟ ସେ ଈଶ୍ୱରଙ୍କ ଲୀଳାବୋଲି ପ୍ରଚାର କରିଦିଅନ୍ତି । ମନ୍ତ୍ରୀଦର୍ଶନ ଗଳ୍ପରେ ମନ୍ତ୍ରୀଙ୍କୁ ଭେଟିବାକୁ ସାଧାରଣ ମଣିଷର ଆଗ୍ରହ କିପରି ତଥାକଥିତ ଚେଲାଚାମୁଣ୍ଡାଙ୍କ ଦ୍ୱାରା ନଷ୍ଟ ହୋଇଯାଏ ତା'ର ଏକ ଅନୁପମ ଆଲେଖ୍ୟ । ମିଟିଂ, ପାର୍ଟି କାମ ପ୍ରଭୃତିରେ ବ୍ୟସ୍ତ ରହି ନିଜ ଚାରିପାଖରେ ନିବୁଜ୍ ବଳୟ ସୃଷ୍ଟି କରିଥିବା ରାଜନୀତିଟି କେତେବେଳେ ସାଧାରଣ ମଣିଷର ଆସ୍ଥା ହରାଇ ବସେ ବୁଝିପାରେ ନାହିଁ । 'ଗତାୟୁ' ଗଳ୍ପ ବୃଦ୍ଧ ଶିକ୍ଷକ ସ୍ୱପ୍ନେଶ୍ୱରଙ୍କ ସ୍ୱପ୍ନଭଙ୍ଗର କଥା ହିଁ କହିଥାଏ । ସେ କୃତିଛାତ୍ର ରମାକାନ୍ତ ଓ ଶିକ୍ଷାମନ୍ତ୍ରୀ ଗୋବର୍ଦ୍ଧନଙ୍କୁ ତୁଳନା କରିବସନ୍ତି । ଏକଦା ବାରମ୍ବାର ଫେଲ୍ ହୋଇ ରେକର୍ଡ଼ କରିଥିବା ଚତୁର ଗୋବର୍ଦ୍ଧନ ନିରକ୍ଷରତା ଦୂରୀକରଣ ପାଇଁ ଭାଷଣ ଦିଅନ୍ତି ଓ ସପନି ମାଷ୍ଟରଙ୍କୁ ଅବସର ଦିଆଇବାର ବନ୍ଦୋବସ୍ତ

କରନ୍ତି । ସେରିକରି ହାଜତରେ ଦିନ କଟାଉଥିବା କେତେକ କଏଦୀ ବିବରଣୀ ଗଳ୍ପରେ ନିଜ ନିଜର ନିରପରାଧିତାର ବୟାନ କରନ୍ତି ସତ କିନ୍ତୁ ଆଇନ୍ ସେମାନଙ୍କୁ ଅନୁକମ୍ପା ଦେଖାଏ ନାହିଁ । 'ମୋହ' ଗଳ୍ପରେ ଜୀବନ ପ୍ରତି ମନୁଷ୍ୟର ମୋହ କେତେ ଅଧିକ ତାହା ଦେଖାଇ ଦିଆଯାଇଛି । ସୁରଜିତର ମୃତ୍ୟୁପରେ ସୁନନ୍ଦାର ଜୀବନ ରଙ୍ଗହୀନ । ଶିଶୁପୁତ୍ର କୁନାକୁ ବଞ୍ଚାଇବା ଦୂରୁହ ହେବାରୁ ସେ ଟ୍ରେନ୍ ତଳେ ଆତ୍ମହତ୍ୟା କରିବାକୁ ଚେଷ୍ଟା କରେ । କିନ୍ତୁ ପତ୍ନୀତ୍ୱଠାରୁ ମାତୃତ୍ୱ ତାକୁ ଅଧିକ ଗୌରବମୟ ମନେହୁଏ ଓ ଶେଷ ମୁହୂର୍ତ୍ତରେ ସେ କୁନାକୁ ବଞ୍ଚାଇ ରଖିବାର ଦୁର୍ବାର ଶପଥ ନେଇ ଆତ୍ମହତ୍ୟାରୁ ଓହରି ଆସେ । 'ଗୋଟିଏ ମାଆର କାହାଣୀ'ରେ ସେହି ଦୁର୍ଦ୍ଦମନୀୟ ମାତୃତ୍ୱର ଜୟଯାତ୍ରା । ବାପାଙ୍କ ମୃତ୍ୟୁ ପରେ ଭାଇ ବିପଥଗାମୀ ହୋଇଛି । ତେଣୁ ଗଳ୍ପର ନାୟିକା ବାଳିକା ବିଧବା ମାଆ ସହିତ ମାମୁଁଘର ଆଶ୍ରୟରେ ରହେ । ସେଠାରୁ ସେ ଜନୈକ ନର୍ସର ସଂସ୍ପର୍ଶରେ ଆସିଛି ଓ ସୁଧାଂଶୁ ନାମକ ବ୍ୟକ୍ତି ତାକୁ ବିବାହ କରିବାର ଲୋଭ ଦେଖାଇ ଏହି ଅବାଞ୍ଛିତ ମାତୃତ୍ୱ ପ୍ରଦାନ କରିଛି । ଏକଥା ଜଜ୍‌ଙ୍କ ସାମନାରେ କହିଥିବା କମଳିନୀ ଜଜ୍ ସାହେବଙ୍କ ଦ୍ୱାରା ମଧ୍ୟ ଲାଞ୍ଛିତା ହୋଇଛି ତଥାପି ତାର ଏକାନ୍ତ ଇଚ୍ଛା ତାର ସନ୍ତାନ ଏକ ସୁନ୍ଦର ଭବିଷ୍ୟତ ପାଇଁ ବଞ୍ଚିରହୁ ।

ଠିକ୍ ଏହାର ବିପରୀତ ଘଟଣା ଘଟିଛି 'ପୌରୁଷ' ଓ 'ଭଦ୍ରଲୋକ' ଗଳ୍ପରେ । ଅନ୍ୟକୁ ବାରମ୍ବାର ଅଭଦ୍ର ଅସାମାଜିକ ବୋଲି ଆଖ୍ୟା କରୁଥିବା ଭଦ୍ରଲୋକ ରାତ୍ରୀର ନିର୍ଜନ ମୁହୂର୍ତ୍ତରେ ସହଯାତ୍ରୀଙ୍କର ସବୁ ଜିନିଷପତ୍ର ନେଇ ରେଳଡବାରୁ ଓହ୍ଲାଇ ଯାଆନ୍ତି ।

ପୌରୁଷ ଗଳ୍ପରେ ଅସହାୟ ତରୁଣୀଟିକୁ ସାହାଯ୍ୟ କରିବାକୁ ଯାଇ ଲେଖକ କିପରି ଅସମଞ୍ଜସ ପରିସ୍ଥିତିରେ ପଡ଼ି ସର୍ବସ୍ୱାନ୍ତ ହୋଇଛନ୍ତି, ତାହା ବର୍ଣ୍ଣିତ ହୋଇଛି । ଏହିଭଳି ଭଦ୍ରଲୋକ ଓ ଅସହାୟ ନାରୀଙ୍କର ଖଳବୁଦ୍ଧି ପାଇଁ ମନୁଷ୍ୟ ଉପହସିତ ହୁଏ । ଲୋକେ ବିପଦଗ୍ରସ୍ତକୁ ସାହାଯ୍ୟ କରିବାକୁ କୁଣ୍ଠାବୋଧ କରିଥାଆନ୍ତି । 'ଚୋର' ଗଳ୍ପର ନାୟକ କିନ୍ତୁ ପାଠକୀୟ ସହାନୁଭୂତିର ହକ୍‌ଦାର ହୁଏ । ଅଭାବରୁ ବସ୍ତାଏ ଚାଉଳ ଚୋରି କରିଥିବା ଶଙ୍କର ଦାସ ପାଇଁ ଥାନା ପୋଲିସ୍ ସମସ୍ତେ ଜାଗ୍ରତ ହୋଇଯାଆନ୍ତି ଅଥଚ ଅଚିହ୍ନା ବୋହୂଟି ପାଇଁ ସେ ପାଲଟିଯାଏ ଦେବତା ।

'ସାମନ୍ତବାଦର ଶେଷ ଇସ୍ତାହାର' ଗଳ୍ପଟି ଟ୍ରାଜିକ୍‌ଧର୍ମୀ, ପୁଞ୍ଜିପତି ହେବାର ସ୍ୱପ୍ନ ଦେଖୁ ଦେଖୁ ରାଜେନ୍ଦ୍ରନାଥ ପୁଞ୍ଜିପତିର ଦଲାଲ୍ ହିଁ ପାଲଟି ଯାଆନ୍ତି । ବର୍ଣ୍ଣାଶ୍ରମ ଈଶ୍ୱରଙ୍କ ସୃଷ୍ଟି, ସୋମରସପାନ ବୈଦିକ ସଂସ୍କୃତି ଓ ଏହା ମଣିଷକୁ ମୁକ୍ତିର ମାର୍ଗରେ ଆଗେଇ ନିଏ କହି ଆତ୍ମପ୍ରସାଦ ଅନୁଭବ କରୁଥିବା ମଣିଷଟି ଏକା ସମୟରେ କୁମାର

ସାହେବ ଓ ରମଣୀ ରଞ୍ଜନଙ୍କ ନିମନ୍ତେ ଭାଷଣ ଲେଖେ । ଗଣ୍ତକ୍ରମ ପ୍ରସ୍ତୁତ କରେ । କିନ୍ତୁ ଏକ ଆଧିଦୈବିକ ଭୟ ତାକୁ ସର୍ବଦା କାବୁ କରି ରଖେ । ସେ ରେକର୍ଡ଼ଟିଏ ଭଳି ସାରା ଜୀବନ ବାଜିଯାଏ ।

'ଚୋର' ଓ 'ଜୀବନ' ଗଳ୍ପଦ୍ୱୟ କିନ୍ତୁ ମଣିଷ ଚରିତ୍ରର ଏକ ଏକ ମହିମାମୟ ଦିଗ ଉନ୍ମୋଚନ କରନ୍ତି । ଭୋକ ଦାଉରେ ଚୋରି କରୁଥିବା ଶଙ୍କର ଦାସ ଅଚିହ୍ନା ଯୁବତୀ ଓ କ୍ଷୁଧାର୍ତ୍ତ ଶିଶୁକୁ ଯେଉଁଭଳି ସାହାଯ୍ୟ କରିଛି ତାହା ମହାମାନବ ପକ୍ଷେ ହିଁ ସମ୍ଭବ । ପୋଲିସ୍ ଶଙ୍କରଙ୍କୁ ବାନ୍ଧି ନେଲା ବେଳେ ବୋହୂଟିର ଉକ୍ତି, 'ତାଙ୍କୁ ମାର ନାହିଁ ବାବୁ' । ଦେବତା ସିଏ -" ପଦକ ଶଙ୍କରର ସମଗ୍ର ଜୀବନଠାରୁ ମହୀୟାନ ପାଲଟି ଯାଇଛି, 'ଜୀବନ' ଗଳ୍ପରେ ପ୍ରତୀକ୍ଷାର ଶେଷ ପାହାଚରେ ପ୍ରୌଢ଼ ନିରଞ୍ଜନ ଓ ତାଙ୍କର ନୀରବ ପୂଜାରିଣୀ ତମସାଙ୍କର ସ୍ୱପ୍ନ ସାର୍ଥକ ହେବାର ଆଶା ଦିଶିଯାଇଛି । ସମୟର ପରିବର୍ତ୍ତନରେ ମଣିଷ ବଦଳି ଯାଏ ସତ କିନ୍ତୁ ସକଳ ଦୁଃସ୍ଥିତି ଭିତରେ ସେ ମଣିଷର ସ୍ନେହ ପ୍ରେମକୁ ଯେ ସମ୍ମାନ ଦେଇପାରେ 'ଜୀବନ' ଗଳ୍ପ ତାହା ହିଁ କହେ ।

'ଅଭିନୟ' ଓ 'ଦୁଇଭଉଣୀ' ଗଳ୍ପ ଦ୍ୱୟ ସମପର୍ଯ୍ୟାୟବାଚୀ । ଗାଳ୍ପିକଙ୍କ ରଙ୍ଗମଞ୍ଚ ସମ୍ପର୍କୀୟ ପ୍ରତ୍ୟକ୍ଷ ଅନୁଭୂତି ଓ ତା'ର ମନସ୍ତତ୍ତ୍ୱିକ ଦିଗ ଏ ଉଭୟ ଗଳ୍ପରେ ପ୍ରକାଶିତ । ଅଭିନେତା ଦର୍ଶକ ସ୍ଥାନରେ ନିଜକୁ ରଖି ଓ ନିଜ ସ୍ଥାନରେ ଦର୍ଶକଙ୍କୁ ରଖି ଭାବେ ସତରେ, ଆପଣଙ୍କ ଆଗରେ ବେଶବାସ ଓହ୍ଲାଇ, ସତ ମୁଁ ଠିଆ ହୋଇଗଲେ, ଆପଣ ମଜ୍ଜି ଯିବେ, ଥମିଯିବେ, ଚମକି ଉଠିବେ । ବିଳିବେଳେଇ ଉଠିପାରନ୍ତି ବି । "ଦୁଇ ଭଉଣୀ ଯୌବନର ପ୍ରାନ୍ତଭାଗରେ ଦଣ୍ଡାୟମାନ ଇଲା ଓ ଶୀଳା ନିର୍ଦ୍ଦେଶକ ନିରୋଦ ଦତ୍ତଙ୍କର କନ୍ୟା । ଗ୍ରାମ୍ୟ ପରିବେଶରେ ସେମାନେ ନିଜକୁ ସ୍ୱତନ୍ତ୍ର ସମ୍ମାନର ଅଧିକାରିଣୀ ଭାବୁଛନ୍ତି ସତ କିନ୍ତୁ ଗ୍ରାମ୍ୟଯୁବକ ନରହରିର ଅଭିନୟରେ ଉଭୟ ମୁଗ୍ଧ । ମାନପୁର ବଜାରରେ ସିରାଜଉଦ୍ଦୌଲା ଓ କର୍ଣ୍ଣବଧ ଭଳି କ୍ଲିଷ୍ଟ ଐତିହାସିକ ବା ପୌରାଣିତ ନାଟକ କାହିଁକି ଅଭିନୀତ ହେବ ଏ ବିଷୟରେ ସେମାନେ ଭାବିପାରୁନଥିଲେ ମଧ୍ୟ ନରହରି ସମ୍ପର୍କରେ ଭାବି ଭାବି ରାତି ଅନିଦ୍ରା ହୁଅନ୍ତି । ଉଭୟ ନରହରିର ପାଖକୁ ଯିବାର ପ୍ରତିଯୋଗିତା କରିବସନ୍ତି । ନାଟକ ଅଭିନୟ ପରେ ସେମାନେ ଗାଁରୁ ବିଦାୟ ଦେବାବେଳେ ନରହରି ସେମାନଙ୍କୁ ଦୁଇଟି ମୁଦି ଉପହାର ଦିଏ । ଯାହାକୁ ସେମାନେ ବାପାଙ୍କ ଦୃଷ୍ଟି ଏଡ଼ାଇ ପରସ୍ପର ସହିତ ବଦଳି କରିଦିଅନ୍ତି । ଏହି ଗଳ୍ପରେ ମନସ୍ତତ୍ତ୍ୱର ପ୍ରୟୋଗ ଚମତ୍କାର ।

ଅନ୍ୟ ଏକ ପ୍ରକାରର ଗଳ୍ପ ହେଉଛି "ଜୁଆର ଯେଉଁଠି ଉଠେ ଓ ଚାଲିଯାଏ" ଏବଂ "ଶେଷ ରାତିର କବିତା" । ଜୁଆର ଯେଉଁଠି ଉଠେ ଓ ଚାଲିଯାଏ ସ୍ମୃତିଚାରଣ ଶୈଳୀରେ ରଚିତ । ଏହାର ନାୟକ ରତିକାନ୍ତ ଆନା, ରମା, ଉଷସୀ, ସୁନନ୍ଦା ଭଳି ତାକୁ ଭେଟିଥିବା ବହୁ ତରୁଣୀଙ୍କ ସ୍ମୃତି ମନେ ପକାଇ ଆଗନ୍ତୁକ ନାରୀକୁ ଚିହ୍ନିପାରେ ନାହିଁ ଶେଷ ପର୍ଯ୍ୟନ୍ତ । 'ଶେଷ ରାତ୍ରର କବିତା'ର ନାୟିକା ପ୍ରୌଢ଼ । ମିସ୍ ନୋରା ଅବସାଦଗ୍ରସ୍ତ ମୁହୂର୍ତ୍ତରେ ନିଜକୁ ପ୍ରତାରିତ ମନେ କରିଛନ୍ତି । ମିସ୍ ନୋରା ନିଜର ଦୈହିକ ସୌନ୍ଦର୍ଯ୍ୟରେ ଏତେ ମୁଗ୍ଧ ଯେ ପୁରୁଷମାନଙ୍କୁ ପ୍ରତ୍ୟାଖ୍ୟାନ କରିବା ଭିତରେ ତାଙ୍କର ଯୌବନ ଶେଷ ହୋଇଯାଇଛି । ରାତ୍ରିର ବିଳମ୍ବିତ ପ୍ରହରରେ ଅତ୍ୟଧିକ ମଦ୍ୟପାନ କରି ମଧ୍ୟ ସେ ନିଜକୁ ଅବସାଦରୁ ମୁକ୍ତ କରିପାରିନାହାନ୍ତି । ଏହି ଦୀର୍ଘ ଗଳ୍ପର ଟ୍ରାଜିକ୍ ପରିଣତି କେବଳ ମିସ୍ ନୋରାଙ୍କର ନୁହେଁ ବରଂ ଅଯଥା ଦମ୍ଭ ନେଇ ଜୀବନ ବଞ୍ଚିଥିବା ପ୍ରତ୍ୟେକ ପ୍ରୌଢ଼ର ପରିଣତି । ସମୟ କାହାକୁ ଅପେକ୍ଷା କରେନାହିଁ ଏବଂ ପ୍ରତ୍ୟେକ ମଣିଷକୁ ନିଃସ୍ୱକରିଦିଏ ।"

'ଭଗବତୀ'ଙ୍କୁ ସାମ୍ୟବାଦର ଭଗୀରଥ ଭଗବତୀ ପାଣିଗ୍ରାହୀଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧା ନିବେଦନ ମାତ୍ର । ଏଥିରେ ସେ ଓଡ଼ିଶାରେ ସାମ୍ୟବାଦର ଅବସ୍ଥା ଦେଖି ଭଗବତୀଙ୍କୁ ସମ୍ବୋଧନ କରି ଲେଖକ ନିଜର ଖେଦ ବ୍ୟକ୍ତ କରିଛନ୍ତି । "ଗୋବିନ୍ଦ ସରଦାରର ବଡ଼ପୁଅ, ସେ ଅଞ୍ଚଳର ଏମ୍.ଏଲ୍.ଏ. ××× ସେ କାହାରି ଇଜ୍ଜତ ନେବାକୁ ଯିବାର ଦରକାର ପଡୁନାହିଁ । ଇଜ୍ଜତ ଦେବାପାଇଁ, ଲୁଟେଇବା ପାଇଁ ତା' ପାଖକୁ ଅନେକ ଝିଅ ବୋହୂ କୁଆଡ଼େ ଆସୁଛନ୍ତି । କାରଣ, ତା'ର ପ୍ରଭାବ ପ୍ରତିପତ୍ତି ଅନେକ ବେଶି ।" ଏହି ପତ୍ରରେ ଲେଖକ ଅନନ୍ତ ପଟ୍ଟନାୟକ ସଚ୍ଚିରାଉତରାୟଙ୍କ ଜ୍ୱାଳାମୁଖୀ ଲେଖନୀର ଗତି ଥମି ଯାଇଛି ବୋଲି ଭଗବତୀଙ୍କୁ ପତ୍ର ଲେଖି ଜଣାଇ ଦେଇଛନ୍ତି ।

ଭାଷା ପ୍ରୟୋଗରେ ଗାଳ୍ପିକଙ୍କର ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ବାରି ହୋଇପଡ଼େ । 'ନିମିତ୍ତ ମାତ୍ର' ଗଳ୍ପରେ ପରିହାସାତ୍ମକ ଭାଷା ପ୍ରୟୋଗ ଦେଖିବା - "ଭକ୍ତିରେ ଦେଲେ ଭଗବାନ ବି ଫୁଲମାଳ ଠାରୁ ଆରମ୍ଭ କରି ହୀରା ହାର ପର୍ଯ୍ୟନ୍ତ ଭକ୍ତ ଠାରୁ ଗ୍ରହଣ କରନ୍ତି । ମାଧବ ତ ନିମିତ୍ତ ମାତ୍ର । ମନସ୍ତତ୍ତ୍ୱ ସମ୍ପର୍କୀୟ ଗୂଢ଼ ରହସ୍ୟକୁ ମଧ୍ୟ ସେ ସହଜ ଭାବରେ ପରିବେଷଣ କରିଛନ୍ତି । 'ଅଭିନୟ' ଗଳ୍ପରେ ଏହାର ଉଦାହରଣ ×××" "ସବୁ ଗଳି ଭିତରକୁ, ସେ ଯେତେ ଦୁର୍ଗମ ହେଉନା କାହିଁକି, ପଶି ହେବ । ଅନ୍ଦି କନ୍ଦି ବୁଲି ହେବ । ହେଲେ, ମନଗଳିର ଅନ୍ଦିକନ୍ଦିରେ ଆପଣଙ୍କର କେହି ପଶିପାରିବେ ନାହିଁ ବୋଲି ଆପଣ ନିଶ୍ଚିତ ।" ବୃଦ୍ଧ ଶିକ୍ଷକ ସ୍ୱପ୍ନେଶ୍ୱର ପାଣିଗ୍ରାହୀଙ୍କୁ ଶିକ୍ଷାମନ୍ତ୍ରୀ ଗୋବର୍ଦ୍ଧନ ତାଙ୍କର ହାତ ଗଢ଼ା ବିଦ୍ୟାଳୟରୁ ଅବସର ନେବା ପାଇଁ ବାଧ୍ୟ କରିଛନ୍ତି । ଲେଖକଙ୍କ କ୍ଷୋଭ ଯେ

ପ୍ରଗତି ପଥରେ ବୁଢ଼ାହଡ଼ା ଧୋତରା ପୁରୁଣା ଲୋକମାନେ ଅନ୍ତରାୟ ସେମାନେ ଅକର୍ମଣ୍ୟ । ତାଙ୍କୁ ବିଦା କରି ନୂଆ ଲୋକଙ୍କୁ ନିଯୁକ୍ତ କରାଯିବ ।

ଗାଳ୍ପିକ ଶ୍ରୀଯୁକ୍ତ ବରାଳଙ୍କର ଅଧିକାଂଶ ଗଳ୍ପ ରେଳ ଷ୍ଟେସନ୍, ଟ୍ରେନ୍ କମ୍ପାର୍ଟମେଣ୍ଟ, ବସ୍‌ଷ୍ଟାଣ୍ଡ ପ୍ରଭୃତିରେ ଘଟିଥିବା ଘଟଣା ଉପରେ ପର୍ଯ୍ୟବସିତ । ଅନ୍ୟ କେତେକ ଗଳ୍ପ ଶିକ୍ଷାବିଭାଗର ତ୍ରୁଟି ବିଚ୍ୟୁତି ଓ ରଙ୍ଗମଞ୍ଚର ଅବସାଦ ସମ୍ପର୍କରେ ରଚିତ । ଏ ଗଳ୍ପରେ ଜୀବନର ବିଚିତ୍ରାବର୍ଣ୍ଣୀ ଅନୁଭୂତି ରହିଛି । ଦୁଃଖ ବିଷାଦର ଚିତ୍ର ଦେବାରେ ସେ ଯେତିକି କଳାତ୍ମକତା ପ୍ରକାଶ କରିଛନ୍ତି ସେହି ବିଷାଦରୁ ଉତ୍ତରଣରେ ଏକ ବିଶ୍ୱାସ ପୂର୍ଣ୍ଣ ଜୀବନର ରୂପାୟନରେ ସେତିକି ଆନ୍ତରିକତା ଦେଖାଯାଇଛି ।

ଏହି ଆଲୋଚନା ଅଧ୍ୟାପକ ଅବନୀ କୁମାର ବରାଳଙ୍କର ସାହିତ୍ୟ ସୃଷ୍ଟିର ପୂର୍ଣ୍ଣାଙ୍ଗ ଆଲୋଚନା ନୁହେଁ । ବରଂ ତାଙ୍କର ସ୍ରଷ୍ଟାପଣର ଏକ ଝଲକ ମାତ୍ର । ଏଠି ସମାଜ, ବ୍ୟକ୍ତି, ଜୀବନ ଯନ୍ତ୍ରଣା ସବୁ ତିଳତଣ୍ଡୁଳିତ । ଏଠି ସାଧାରଣ କଥାକୁ ଅସାଧାରଣ କରି ଗଢ଼ିବାର କ୍ଷମତା ସ୍ପଷ୍ଟ ଅନୁଭୂତ ହୁଏ । ନିତି ପ୍ରତି ଅଙ୍ଗେଲିଭାଉଥିବା ଘଟଣା ପାଲଟିଯାଏ ଅନନ୍ୟ ସାଧାରଣ । ଜୀବନର ବହୁ ଦିଗକୁ ସ୍ପର୍ଶ କରିଥିବା ଏହି ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ସମାଜ ପ୍ରତି ଅବଦାନ ଯଥେଷ୍ଟ, ତାଙ୍କର ଗଳ୍ପ ସୃଷ୍ଟି ସେହି ସବୁ ଅବଦାନ ମଧ୍ୟରୁ ଅନ୍ୟତମ ।"

ସାରସ୍ୱତ ସାଧକ ଅବନୀ କଟକର ଖ୍ରୀଷ୍ଟ କଲେଜରେ ବି.ଏ. ଶେଷ ବର୍ଷର ଛାତ୍ର ଥିବାବେଳେ ଜଣେ ତରୁଣ ଅଧ୍ୟାପକ କଲେଜରେ ଯୋଗ ଦେଇଥିଲେ । ଅବନୀଙ୍କର ସେ ହେଲେ ଶିକ୍ଷାଗୁରୁ । ପରବର୍ତ୍ତୀ ସମୟରେ ସେହି ଅଧ୍ୟାପକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ଯଶସ୍ୱୀ ସ୍ରଷ୍ଟା ରୂପେ ପ୍ରତିଷ୍ଠା ଅର୍ଜନ କରିଥିଲେ । ନାଁ ତାଙ୍କର ପଠାଣି ପଟ୍ଟନାୟକ । 'ପ୍ରଫେସର ପଠାଣି ପଟ୍ଟନାୟକ' ରୂପେ ସୁବିଖ୍ୟାତ ଏହି ସାରସ୍ୱତ ସ୍ରଷ୍ଟା ଏକଦା ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଏବଂ ରାଜ୍ୟର ସର୍ବପୁରାତନ ସାହିତ୍ୟ ଅନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ'ର ସଭାପତି ହୋଇଥିଲେ । ନିଜ ଛାତ୍ରର ନିରନ୍ତର ସାହିତ୍ୟ ସାଧନା ଓ ବିଦ୍‌ବତ୍ତା ଗୁଣମୁଗ୍ଧ ଅଧ୍ୟାପକଙ୍କୁ ଉଲ୍ଲସିତ କରିଛି । ଅବନୀଙ୍କ ସାମଗ୍ରିକ ସାହିତ୍ୟ କୃତୀର ଏକ ନିରପେକ୍ଷ ମୂଲ୍ୟାୟନ କରିବାକୁ ସେ ଆଗେଇ ଆସିଛନ୍ତି । ତାଙ୍କର ଗଳ୍ପ ସାହିତ୍ୟର ମୂଲ୍ୟାୟନ କରି ସେ କହନ୍ତି -

"ରାଜନୀତି ସୁନ୍ଦରୀର ଆକର୍ଷଣ ଅତ୍ୟନ୍ତ ମାଦକତା ପରିପୂର୍ଣ୍ଣ ହେଲେ ହେଁ ଅତ୍ୟନ୍ତ ଜଞ୍ଜାଳ ଓ ଝଡ଼ଝଞ୍ଜାରେ ଭାରାକ୍ରାନ୍ତ । ତାହା କବଳରୁ ମୁକ୍ତି ଲାଭ କରିବା

ଅତ୍ୟନ୍ତ ଆୟାସସାଧ୍ୟ । ଏହି କାରଣରୁ ଯେଉଁମାନେ ରାଜନୀତିର ପ୍ରେମବନ୍ଧନରେ ଆଜୀବନ ବନ୍ଦୀ, ନିଜର ଭାରାକ୍ରାନ୍ତ ମନକୁ କିଞ୍ଚିତ ଶାନ୍ତିର ପ୍ରଲେପ ଆଣିଦେବା ପାଇଁ ସାହିତ୍ୟସୁନ୍ଦରୀର ଅଭୟ କାନି ତଳେ ଆଶ୍ରୟ ଗ୍ରହଣ କରନ୍ତି । ଯେ କୌଣସି ବରେଣ୍ୟ ରାଜନେତାଙ୍କର ଜୀବନ କାହାଣୀ ଏହାର ଉଜ୍ଜ୍ୱଳ ଉଦାହରଣ । ସେଥିପାଇଁ ଲେଖକ ଅବନୀ କୁମାର ଗଳ୍ପ, ଉପନ୍ୟାସର ମାୟାଜାଲ ମଧ୍ୟରେ ସୃଷ୍ଟି ଧର୍ମକୁ ପାଳନ କରି ଅପୂର୍ବ ଶାନ୍ତି ଲାଭ କରିଛନ୍ତି । ତାଙ୍କର ଏକାଧିକ କ୍ଷୁଦ୍ରଗଳ୍ପର ସଂକଳନ ପ୍ରକାଶିତ ହୋଇଥିଲେ ହେଁ ଏହି କ୍ଷୁଦ୍ର ପ୍ରବନ୍ଧର ସୀମିତ ପରିସୀମା ମଧ୍ୟ କେବଳ "ସ୍ୱନିର୍ବାଚିତ ଭିନ୍ନ ସ୍ୱାଦର ଗଳ୍ପ" ସଂକଳନକୁ ଆଲୋଚନା କରିବା ସମୀଚୀନ ହେବ ।

ଏହି ଗଳ୍ପ ସଂକଳନରେ ଅଠରଟି ଗଳ୍ପ ସ୍ଥାନିତ ହୋଇଛି । ମନେହୁଏ, ଶ୍ରୀ ବରାଳଙ୍କର ଗଳ୍ପ ସଂସାରରେ ଏଗୁଡ଼ିକ ପ୍ରତିନିଧିମୂଳକ । ଏହି ଗଳ୍ପ ସଂଗ୍ରହ ବିଷୟରେ ଲେଖକଙ୍କର ନିଜର ଅଭିମତ ଏଠାରେ ଉଦ୍ଧାର କରୁଛି । "ଗଳ୍ପଗୁଡ଼ିକରେ ସାମାଜିକ - ରାଜନୈତିକ ଜୀବନର କେତେକ ବ୍ୟଙ୍ଗ ତିକ୍ତ ରୂପ ପ୍ରକାଶିତ ହୋଇଛି ବୋଲି ମୋର ଆଶା । ଗୋଟିଏ କଥା ପାଠକ ବର୍ଗଙ୍କୁ ଜଣାଇ ରଖିବା ଉଚିତ ଯେ, ଗଳ୍ପଗୁଡ଼ିକର ପ୍ରତ୍ୟେକ ଚରିତ୍ର, ପ୍ରତ୍ୟେକଟି ମଣିଷ ଆମ ଆଖପାଖର ଏବଂ ମିଛ ବା କାଳ୍ପନିକ ନୁହନ୍ତି । ମୁଁ ସେମାନଙ୍କୁ ଯେଉଁ ରୂପରେ ଦେଖିଛି, ଭେଟିଛି ସେଇଭଳି ଭାବରେ ପ୍ରକାଶ କରିଛି ।"

ତେବେ ଏକଥା ସ୍ୱୀକାର କରିବାକୁ ହେବ ଯେ ଏହି ଗଳ୍ପ ସଂସାରରେ ବିଚରଣ କରୁଥିବା ଚରିତ୍ରମାନେ ନିଛକ ଫଟୋଗ୍ରାଫ ନୁହଁନ୍ତି । ସେମାନଙ୍କର ହାବଭାବ ଓ ଆଚରଣର ଅନ୍ତରାଳରେ ଯେଉଁ ଗୁମ୍ଫିତ ରହସ୍ୟ ଛପି ରହିଛି, ଲେଖକ ତାହାର ଉଦ୍‌ଘାଟନ କରିଛନ୍ତି ସ୍ୱକୀୟ କଳ୍ପନାବିଳାସ ମାଧ୍ୟମରେ । ଅନେକ ସମୟରେ ବ୍ୟଙ୍ଗୋକ୍ତି ଛଳରେ ଚରିତ୍ରମାନଙ୍କର ପ୍ରତିକ୍ରିୟା ରୂପାୟିତ ହୋଇଅଛି ।

ଏହି ଗଳ୍ପ ସଂସାରରେ ଯେଉଁ ଚରିତ୍ରମାନେ ବିଚରଣ କରୁଛନ୍ତି ସେମାନେ ଆମର ଆଖିଆଗରେ ଚଲାଫେରା କରୁଥିବା ନିତିଦିନର ମଣିଷ । ସେ ସପନି ମାଷ୍ଟ୍ରେ, ଗୋବରା ମନ୍ତ୍ରୀ, ମସୀଜୀବି ରମାକାନ୍ତ, ଶିକ୍ଷକ କରୁଣାକର, ଜୟନ୍ତି ଆଣ୍ଟି, ଜେଲବନ୍ଦୀ ମାଗୀନାୟକ, ବାଉଁଶ ରାଣୀ ଲବଙ୍ଗ, ମଣିଆ କେଳା, ରାଜନେତା ନର ସୁନ୍ଦର, ଦେହବେପାରୀ ରତନି, ପିତେଇ ପ୍ରଭୃତି ଅନେକ ନରନାରୀ । ସାଧାରଣ ମଣିଷ ସେମାନଙ୍କୁ ଦେଖି ମଧ୍ୟ ଦେଖେ ନାହିଁ । ନିଜ ବାଟରେ ଚାଲିଯାଏ । କିନ୍ତୁ ଜଣେ ଅର୍ନ୍ତଦୃଷ୍ଟି ସମ୍ପନ୍ନ ଲେଖକ ଆଖିରେ ସେମାନେ ଧରାଦିଅନ୍ତି ଲେଖନୀରେ ରୂପାୟିତ ହେବା ପାଇଁ । ସେମାନଙ୍କର ମନ ଗହନର ଅନେକ କଥା ପାଠକ ପାଇଁ ବାସ୍ତବ ହୋଇ ଉଠନ୍ତି ।

ଅବନୀ ବରାଳଙ୍କ ଗଳ୍ପ ସଂସାରର ଚରିତ୍ରମାନେ ପାଠକର ଅତ୍ୟନ୍ତ ଆପଣାର । ସେମାନଙ୍କର ମନଗହୀରର ଅନେକ ଅନୁଭୂତି ଧରାଦେଇଛି ଗଳ୍ପମାଧ୍ୟମରେ । ଉଦାହରଣ ଛଳରେ ଏଠାରେ କେତୋଟି ଗଳ୍ପର ମର୍ମବାଣୀ ପ୍ରକାଶ କରାଯାଉଛି । ଯେପରି "ଗତାୟୁ" ଗଳ୍ପ । ଏହାର ମର୍ମବାଣୀ ହେଲା - ସାମ୍ପ୍ରତିକ ସମାଜରେ ଅତ୍ୟନ୍ତ ଅଯୋଗ୍ୟମାନେ ଅର୍ଥ ଓ କ୍ଷମତାବଳରେ ଉଚ୍ଚପଦାସୀନ ହୁଅନ୍ତି, ଶାସନର ଡ଼ୋରୀ ହାତରେ ଧରି ଧରାକୁ ଶରାଜ୍ଞାନ କରନ୍ତି । ସେଠାରେ ବଳିପଡ଼ନ୍ତି ବୁଦ୍ଧିମାନ, ସାଧୁ ଓ ନିଷ୍ପାପର ଲୋକମାନେ ଅଯୋଗ୍ୟମାନେ ହୁଅନ୍ତି ଯୋଗ୍ୟତାର ମାପକାଠି । ବାସ୍ତବରେ ଆମ ଆଗରେ ନିତିଦିନ ଚଲାଫେରା କରୁଥିବା ସପନି ମାଷ୍ଟ୍ରେ, ଗୋବରା ଓରଫ ମନ୍ତ୍ରୀ ଗୋବର୍ଦ୍ଧନ ଓ ଜୀବନଯୁଦ୍ଧରେ ଅଯୋଗ୍ୟ ପ୍ରମାଣିତ ରମାକାନ୍ତଙ୍କ ଜୀବନର ସାର୍ଥକ ପ୍ରତିଫଳନ ଏ ଗଳ୍ପ ।

ମଣିଷ ଅନେକ ବିଷୟରେ ସ୍ୱପ୍ନ ଦେଖେ । ସମାଜରେ ଜଣେ ପ୍ରଭାବଶାଳୀ ବ୍ୟକ୍ତି ହେବା ପାଇଁ ନାନା ଉଦ୍ୟମ କରି ବାରମ୍ବାର ବିଫଳ ହୁଏ । ଗୁରୁଜନମାନଙ୍କର କେତେ ଆଶା ଭରସାକୁ ସେ ଯୋଗ୍ୟ ହୁଏ ନାହିଁ । ଶେଷରେ ଜୀବନ ହୁଏ ଅବସାଦମୟ । ଆତ୍ମସନ୍ତୋଷର ଛଳନା କରି ଜୀବନ ବିତେଇବା ପାଇଁ ପରିଶେଷରେ ବାଧ୍ୟ ହୋଇଥାଏ । ଶିକ୍ଷକ କରୁଣାକରଙ୍କର ଅବସାଦଗ୍ରସ୍ତ ଜୀବନର ଅନ୍ତିମ ପରିଣତି ରୂପାୟିତ ହୋଇଛି କରୁଣାକରଙ୍କ ନିଷ୍କରୁଣ 'ଆତ୍ମକଥନ' ଗଳ୍ପରେ । 'ଖଣ୍ଡିଉଡ଼ା' ଗଳ୍ପରେ ପୁପୁଲ ଚରିତ୍ର ଗଭୀର ରେଖାପାତ ଧର୍ମୀ । ଏଥିରେ ମନସ୍ତାତ୍ତ୍ୱିକ ବିଶେଷଣ ଜରୀଆରେ ଚରିତ୍ରର ରୂପାୟନ ସହିତ ଉଠପଡ଼ ପାରିବାରିକ ଜୀବନର ପରିଚୟ ପାଠକକୁ ପ୍ରଭାବିତ କରିଥାଏ । "ବିବରଣୀ" ଗଳ୍ପଟି ଆଧୁନିକ ଜୀବନ ପ୍ରତି ଏକ ସାଟାୟାର । ଏଠାରେ ନୀତି ନାମରେ ଅନୀତିର ପ୍ରଦୁର୍ଭାବ । ଅବସ୍ଥାଚକ୍ରରେ ନିର୍ଦ୍ଦୋଷୀମାନେ ଦୋଷୀ ଆଖ୍ୟା ନେଇ ସାରାଜୀବନ ଜେଲଦଣ୍ଡ ପାଉଛନ୍ତି । ଅଥଚ ନୃଶଂସ ଅତ୍ୟାଚାରୀ ଓ ଶୋଷଣକାରୀ ଆଇନର ଅପବ୍ୟବହାର କରି, ଆଇନ ଆଖିରେ ଆଙ୍ଗୁଠି ଗେଞ୍ଜି ସମାଜପତି ହୋଇଛନ୍ତି । ଏମାନଙ୍କୁ ଆମେ ଦେଖିପାରିବା ରାଜନେତାଙ୍କ ଗହଣରେ ପ୍ରଭାବଶାଳୀ ପ୍ରଶାସକ ହାକିମ୍‌ମାନଙ୍କ ମଧ୍ୟରେ । ଏମାନେ ହେଉଛନ୍ତି ଧୋବଲି ଠକ ଓ ପ୍ରତାରକ ଯେଉଁମାନେ ପ୍ରକୃତପକ୍ଷେ ଜେଲ୍‌ରେ ଆବଦ୍ଧ ହେବା ଉଚିତ । ଝେଡ ମୂଲିଆ ମାଗାନାୟକ ହାକିମମାନଙ୍କ ଚକ୍ରାନ୍ତରେ ବିନା ଦୋଷରେ ଆଜୀବନ ଜେଲ୍ ଦଣ୍ଡ ଭୋଗିଲା ବେଳେ ପ୍ରକୃତ ଅପରାଧୀ ଜୀବନକୁ ସ୍ୱାଧୀନ ଭାବରେ ଉପଭୋଗ କରୁଛି । ଲେଖକ ଆଶାବାଦୀ । ସେ ସ୍ୱପ୍ନ ଦେଖିଛନ୍ତି, ହୁଏତ ସେ ଦିନ ପାଖେଇ ଆସୁଛି, ଯେତେବେଳେ ଏହି ଧୋବଲି ଠକମାନେ ବେଡ଼ି ପିନ୍ଧି କାରାଗାରରେ ନିକ୍ଷିପ୍ତ ହେବେ । "ଭଗବତୀ"ଙ୍କୁ - ଗଳ୍ପଟି

ମହାନ୍ ସାମ୍ୟବାଦୀନେତା ଭଗବତୀ ଚରଣ ପାଣିଗ୍ରାହୀଙ୍କ ସ୍ମୃତିଚାରଣ ଅନୁରୋଧରେ ବର୍ତ୍ତମାନର ସାମାଜିକ ଓ ରାଜନୈତିକ ଜୀବନରେ ଅବକ୍ଷୟ ଓ ଅବ୍ୟାପାରକୁ ନିର୍ଦ୍ଦେଶ କରିଛନ୍ତି । ରାଜନୈତିକ ଆଦର୍ଶ ଆଜି ଏକ ପ୍ରହେଳିକାର ପରିଣତ ହୋଇଛି । ଆଦର୍ଶ ପ୍ରତି ନିଷ୍ଠା ନାହିଁ, ନୀତି ପ୍ରତି ଆନୁଗତ୍ୟ ନାହିଁ । ସର୍ବତ୍ର କେବଳ ରାଜନୀତି, ଶାସନ ଓ ଧର୍ମବିଶ୍ୱାସ ନାମରେ ଛଳନାର ପ୍ରହସନ ।

ପଲ୍ଲୀ ସଂସାରରେ ଏକଦା କେଳାମାନେ ବାଉଁଶରାଣୀ ଖେଳ ଦେଖାଇ ପେଟ ପୋଷୁଥିଲେ ଏବଂ ଜନତାଙ୍କୁ ଆନନ୍ଦ ଦେଉଥିଲେ । କ୍ରମେ ଏ ଦୃଶ୍ୟ ଦୁର୍ଲ୍ଲଭ ହୋଇଯାଉଛି ନଗର ସଭ୍ୟତାର ସଞ୍ଚାର ଯୋଗୁଁ । "ବାଉଁଶ ରାଣୀ" ଗଳ୍ପର ନାୟିକା 'ଲବଙ୍ଗ' ଜୀବନର କାହାଣୀ ପାଠକଲେ ସହାନୁଭୂତିରେ ପାଠକର ମନ ଦ୍ରବୀଭୂତ ହୋଇଯାଏ । ମନର ଓ ଦେହର ଶୋଷକୁ ଗୋପନ କରି ନିଜର ଯୌବନ ଓ ଦେହ ନଚାଇ ପଇସା ରୋଜଗାର କରେ ବୁଢ଼ାବୁଢ଼ୀ ବାପ ମାଙ୍କ ପ୍ରତିପାଳନ ପାଇଁ । ଅନେକ ସମୟରେ ଯୌବନର ଆହ୍ୱାନ ହାହାକାର କରି ନୀରବରେ ମରିଯାଏ । ତାର ଅଜାଣତରେ କେତେବେଳେ ଯୌବନ ଅପସରି ଯିବ । ଜୀବନ ସଂଭୋଗର କଳ୍ପନା ସ୍ୱପ୍ନ ହୋଇ ରହିଯିବ । ପରିସ୍ଥିତିର ଚାପରେ ଦୁଃଖିନୀ ବାଉଁଶରାଣୀର ନିଷ୍ଫଳ ଜୀବନର ବେଦନାଦଗ୍ଧ କାହାଣୀ ପାଠ କଲେ ପାଠକର ଆଖିରେ ଲୁହ ବାଧା ମାନିବ ନାହିଁ । "ଗଣତନ୍ତ୍ର ମରୁଡ଼ି" ଗଳ୍ପରେ ଆମ ସମୟର ରାଜନେତାର ପ୍ରକୃତ ସ୍ୱରୂପ ଉଦ୍‌ଘାଟିତ । ଯେକୌଣସି ଉପାୟରେ କ୍ଷମତା ଦଖଲ କରି ନିଜର ସ୍ୱାର୍ଥ ହାସଲ ହେଲା ସେମାନଙ୍କର ଆଦର୍ଶ ଓ ଆଭିମୁଖ୍ୟ । ଲୋକସ୍ୱାର୍ଥ ସର୍ବଦା ପଛକୁ ରହିଯାଏ । ଏମାନଙ୍କର ଆଦର୍ଶ ନାହିଁ । ଦେଶ ସେବାରେ ବିଶ୍ୱାସ ରଖନ୍ତି ନାହିଁ । ଶୋଷଣ ଓ କ୍ଷମତାର ଅପବ୍ୟବହାର ହେଲା ଜୀବନର ବ୍ରତ । ସରକାରୀ ଦଳ ହେଉ, ବିରୋଧୀ ଦଳ ହେଉ, ସମସ୍ତେ ଗୋଟିଏ ଭାଡ଼ିର ପାରା । "ଅଭିନୟ" ଗଳ୍ପରେ ପାଠକ ଅନୁଭବ କରେ ଜୀବନଟା ଏକ ଛଳନା ଓ ଅଭିନୟ । ଏଠାରେ ଅସଲ ରୂପରେ ପ୍ରକାଶ ହୁଅନ୍ତି କେତେଜଣ ? ସର୍ବତ୍ର ମୁହଁରେ ଗୋଟିଏ ପେଟରେ ଗୋଟିଏ କଥା । ଯେଉଁମାନେ ଲୋକ ଚକ୍ଷୁରେ ଅଭିଜାତ, ବୁନିଆଦିର ପୋଷାକ ପିନ୍ଧି ଦଣ୍ଡାୟମାନ, ସେମାନଙ୍କର ଅସଲ ରୂପ କି ଭୟଙ୍କର, ଅନ୍ଧକାର ପରିପୂର୍ଣ୍ଣ, ବୀଭତ୍ସ ଓ ଅତ୍ୟନ୍ତ କଦାକାର । ସେମାନଙ୍କର ମୁଖା ଖୋଲି ଦେଇଛନ୍ତି ଲେଖକ ଏ ଗଳ୍ପରେ । "ଗରୀବୀ ହଟାଓ" "ଦଳବଦଳ", "ମନ୍ତ୍ରୀଦର୍ଶନ" ପ୍ରଭୃତି କେତୋଟି ଗଳ୍ପରେ ଆମର ରାଜନୀତି ଓ ରାଜନେତାଙ୍କର ଆଚରଣ ଉଦ୍‌ଘାଟିତ ହୋଇଅଛି । ଦେଶର ବିଭିନ୍ନ ଉତ୍ସବ ପାଳନ ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରାଯାଏ କେବଳ କ୍ଷମତାର ପଟୁଆର ପ୍ରଦର୍ଶନ ପାଇଁ । ଅଥଚ ଏ ଦେଶରେ

ଚତୁର୍ଦ୍ଦିଗରେ ଦାରିଦ୍ର୍ୟର ବିକଟ ସମାରୋହ । ଦୁର୍ନିତିର ଭସ୍ମାସୁର ଆଜି ସମାଜ ଓ ଶାସନକଳକୁ ଅକ୍ତିଆର କରି ସାରିଲାଣି । ଏଠାରେ ନୀତି ନାହିଁ, ଆଦର୍ଶ ନାହିଁ । ଲୋକଙ୍କୁ ଭୁଆଁ ବୁଲାଇ ଦେଶସେବାରେ ଡିଣ୍ଡିମ ପିଟା ଚାଲିଛି । ଥରେ କ୍ଷମତାର ସିଂହାସନ ଅଧିକାର କଲାପରେ ଜନସାଧାରଣ ଆଉ ପାଖ ପଶିପାରନ୍ତି ନାହିଁ । ମନେ ରହିଛି ଗଳ୍ପରେ ଲେଖକ ପଲ୍ଲୀଜୀବନର ସେହି ସରଳ ଓ ନିରୀହ ରୂପକୁ ସ୍ମରଣ କରିଛନ୍ତି । କାହିଁ ଆଜି ଗାଁର ସେହି ପ୍ରାକୃତିକ ମନୋହର ପରିବେଶ, କୁଆଡ଼େ ଗଲେ କାଉ, କୋଇଲି, ଘରଚଟିଆ, ଶୁଆ ସାରି, ବଣି, ଶାଗୁଣା ଓ ଚିଲ, ଦେଉଳ ବେଢ଼ାରେ ପାରାପଲ, ଗାଁ ମଶାଣିରେ ସନ୍ଧ୍ୟାପହରରେ ବିଲୁଆ, ଗଧିଆ ଓ କୋକିଶିଆଳି, ବାରିପଟେ ଗଛରେ କାପ୍ତା ଓ ଡାହୁକ । ଏ ସବୁ ଆଜି ସ୍ୱପ୍ନ ହୋଇଗଲାଣି । ସେ ଦିନର ସବୁଜଶ୍ରୀ ବିବର୍ଣ୍ଣ ଏବଂ କେତେଚଞ୍ଚଳ ଅନ୍ତର୍ହିତ ! ପରାଧୀନ ସମାଜରେ ଚାଷୀକୁଳ ନୀରବରେ ଧନୀକ, ସାହୁକାର ଓ ରାଜା ଜମିଦାରଙ୍କର ଅତ୍ୟାଚାର ସହ୍ୟ କରୁଥିଲେ । ଏହି ରାକ୍ଷସମାନଙ୍କ କବଳରୁ ଝିଅ ବୋହୂଙ୍କର ଇଜ୍ଜତ ରକ୍ଷା ପାଉନଥିଲା । ଆଜି ସ୍ୱାଧୀନ ଭାରତରେ କିଛି ପରିବର୍ତ୍ତନ ହୋଇନାହିଁ । ଶୋଷଣ ଓ ଅତ୍ୟାଚାରର ତାଣ୍ଡବଲୀଳା ଆଜି ମଧ୍ୟ ଲାଗି ରହିଛି । ତେବେ ଲେଖକ ଆଶା କରିଛନ୍ତି, ସମୟ ଆସୁଛି, ଜାଗ୍ରତ ଜନସାଧାରଣ ଏହି ଅନ୍ୟାୟର ମୁକାବିଲା କରିବେ । ଆଉ ଅନ୍ୟାୟ ବରଦାସ୍ତ ହେବ ନାହିଁ ।

କେତୋଟି ଗଳ୍ପରେ ଦରିଦ୍ର ଖଟିଖିଆଙ୍କର ଦହଗଞ୍ଜ ଜୀବନର ଅନୁଭୂତି ଅତ୍ୟନ୍ତ ପ୍ରାଞ୍ଜଳ । ଏହି ସଂକଳନରେ 'ପୌରୁଷ' ଓ 'ଭଦ୍ରଲୋକ' ଗଳ୍ପ ଦୁଇଟି ଅତ୍ୟନ୍ତ ରୋମାଞ୍ଚକର । ଛଳନା ରାକ୍ଷସୀ ନାରୀମାନେ ବାଟ ଘାଟରେ ସରଳ ମଣିଷକୁ ବିଭ୍ରାନ୍ତ କରି ଲୁଟି ନିଅନ୍ତି । ବିଚରା ଅସହାୟ ମଣିଷଟି ଇଜ୍ଜତ ବଞ୍ଚାଇବାକୁ ଯାଇ ଆଖି ପିଛୁଳାକେ ନିଃସ୍ୱ ହୋଇଯାଏ । ସହର, ବଜାର, ରେଳଗାଡ଼ି, ବସଯାତ୍ରାରେ ଏହିପରି କୁହୁକିନୀ ନାରୀମାନେ ଶିକାର ଖୋଜି ବୁଲୁଛନ୍ତି । ସାଧୁ ସାବଧାନ ? କେବଳ କୁହୁକିନୀ ନାରୀ ନୁହନ୍ତି, ଭଦ୍ରବେଶରେ ଅନେକ ଚତୁର ମଣିଷ ମଧ୍ୟ ସହଯାତ୍ରୀଙ୍କୁ ନାନା ଭାବରେ ପ୍ରବଞ୍ଚିତ କରିବାର ଉଦାହରଣ ବିରଳ ନୁହେଁ ।

ମୋଟ ଉପରେ ଅବନୀ ବରାଳ ଜଣେ ସାର୍ଥକ କଥାକାର । ମଣିଷ ଜୀବନକୁ ଚିହ୍ନି ଚିହ୍ନାଇବାରେ ତାଙ୍କର ଲେଖନୀ ସାଫଲ୍ୟମଣ୍ଡିତ ହୋଇଅଛି ।"

ବିଶିଷ୍ଟ ସାହିତ୍ୟିକ ବିଭୂତି ପଟ୍ଟନାୟକ ମଧ୍ୟ ଗାଳ୍ପିକ ଅବନୀ ବରାଳଙ୍କ ସାରସ୍ୱତ ସାଧନାରେ ମୁଗ୍ଧ ହୋଇ ତାଙ୍କ ଗଳ୍ପର ମୂଲ୍ୟାୟନ କରିଛନ୍ତି । ତାଙ୍କ ଭାଷାରେ -

"ଯୋଶେଫ୍ ଷ୍ଟାଲିନ୍ କହିଥିଲେ ଲେଖକ ହେଉଛି ଜଣେ ଆତ୍ମାର କାରିଗର Engineer of Soul ମଣିଷର ବାହ୍ୟ ଚେହେରାକୁ ଦେଖି ତାକୁ ଚିହ୍ନି ହୁଏ ନାହିଁ । ସେଥିପାଇଁ ତା'ର ଆତ୍ମାକୁ ଆବିଷ୍କାର କରିବାକୁ ହୁଏ । ସେଥିରେ ଲେଖକଙ୍କୁ ତା'ର ଆତ୍ମା ସହିତ ଏକାତ୍ମ ହେବାକୁ ପଡ଼େ । ଗୋଲାପର କଣ୍ଟା ବୁଲବୁଲ୍ ପକ୍ଷୀର କୋମଳ ଶରୀରରେ ଯେତେ ଗଭୀର ପ୍ରଦେଶରେ ପ୍ରବେଶ କରେ, କ୍ଷରିତ ରକ୍ତରେ ଗୋଲାପର ପାଖୁଡ଼ା ସେତେ ଉଜ୍ଜଳ ଲାଲ ହୁଏ । ଅବନୀ ବାବୁଙ୍କ 'ସ୍ୱନିର୍ବାଚିତ ଭିନ୍ନ ସ୍ୱାଦର ଗଳ୍ପ' ସଂକଳନରେ 'ଖଣ୍ଡିଉଡ଼ା', 'ବାଉଁଶ ରାଣୀ' ଭଳି କେତୋଟି ମନସ୍ତତ୍ତ୍ୱ - କୈନ୍ଦ୍ରିକ ଗଳ୍ପ ଅଛି ଯେଉଁ ଗଳ୍ପର ନାୟକ, ନାୟିକାଙ୍କ ଅନ୍ତଃସ୍ଥଳରେ ପ୍ରବେଶ କରି ସେମାନଙ୍କ ମର୍ମବେଦନାକୁ ଗଳ୍ପରେ ଚମତ୍କାର ଭାବରେ ଫୁଟାଇ ଦେଇଛନ୍ତି । "ଖଣ୍ଡିଉଡ଼ା" ଗଳ୍ପର କିଶୋର ନାୟକ ପୁପୁଲ୍ ଆତ୍ମମୁଖୀ ପିତା, ମାତା ଏବଂ ଭଙ୍ଗା ପରିବାରର ଅସୁସ୍ଥ ପରିବେଶ ମଧ୍ୟରେ କିପରି ବଡ଼ ହୋଇ ଉଠୁଛି - ତା'ର ମର୍ମନ୍ତୁଦ ଚିତ୍ର ପାଠକମାନଙ୍କ ମନକୁ ସମବେଦନାରେ ଆର୍ଦ୍ର କରିଦିଏ । ଟିଭି ସିରିୟଲରେ ସେଇ ନିଃସଙ୍ଗ ଝିଅଟି ସହିତ ଜୀବନରେ ଅପୂର୍ବ ସାଦୃଶ୍ୟ ଲକ୍ଷ୍ୟକରି ପୁପୁଲ୍ ବଡ଼ ହୋଇ ଯାଇଥିବାର ଶକ୍ତି ସଂଗ୍ରହ କରେ । କଅଁଳି ଉଠେ ମଲା ଦୁବଘାସ । ବଞ୍ଚିବାକୁ ଶିଖିବାର ପହିଲି ପାହାଚ ସେ ବ୍ୟତିକ୍ରମ କରିପାଏ ।

ବାଉଁଶ ରାଣୀର ଲବଙ୍ଗ ସେହିପରି ଖେଳଘରର ବନ୍ଦୀଶାଳରୁ ମୁକ୍ତି ନେଇ ବଂଶୀବାଦକ ଦୀପକ ସହିତ ପଳାଇ ଯିବାକୁ ସ୍ୱପ୍ନ ଦେଖିଛି । କିନ୍ତୁ ମାତାଲ ବୁଢ଼ାବାପାର ହୁଙ୍କାର ଶୁଣି ତା'ର ସେ ସ୍ୱପ୍ନ ଭାଙ୍ଗି ଯାଇଛି । ଖେଳ ଦେଖାଇବା ନାମରେ ଦେହ ଦେଖାଇ ବଞ୍ଚି ରହିବାର ରସଦ ସଂଗ୍ରହରେ ତାର କୁମାରୀ ମନ ବୁଢ଼ୀ ହୋଇଯାଇଛି ।

'ଶତାୟୁ', 'ମନ୍ତ୍ରୀଦର୍ଶନ' ଓ 'ଗରିବୀ ହଟାଓ' ପ୍ରଭୃତି ରାଜନୈତିକ ଗଳ୍ପ ଲେଖକଙ୍କ ବାସ୍ତବ ଅନୁଭୂତି ଉପରେ ଆଧାରିତ । ଏ ଗଳ୍ପ ଗୁଡ଼ିକରେ ଆଧୁନିକତା ଅପେକ୍ଷା ସମକାଳୀନତା ଅଧିକ ପ୍ରାଧାନ୍ୟ ଲାଭ କରିଛି । 'ଖଣ୍ଡିଉଡ଼ା', 'ବାଉଁଶରାଣୀ'ର ସୂକ୍ଷ୍ମ କଳା ତାଙ୍କର ସ୍ଥୁଳ ଘଟଣା ପ୍ରଧାନ ବାସ୍ତବବାଦୀ ଗଳ୍ପ ଗୁଡ଼ିକରେ ନାହିଁ । କିନ୍ତୁ ଅବନୀବାବୁଙ୍କ ସାବଲୀଳ ଭାଷା ଓ ଅନୁଭୂତିମୟ ଆବେଗ ତାଙ୍କର ସବୁ ଗଳ୍ପଗୁଡ଼ିକୁ ସୁଖପାଠ୍ୟ କରିପାରିଛି ।"

ଅବନୀ ବରାଳ ଓ ତାଙ୍କ ସମସାମୟିକ କୃତବିଦ୍ୟ କଥାକାରମାନଙ୍କର ଗଳ୍ପ ସମ୍ଭାର ଉପରେ ଏକ ନିରପେକ୍ଷ ସମୀକ୍ଷା କରିଛନ୍ତି ସୋମନାଥ ବିଷୋୟୀ । ଅବନୀଙ୍କ କଥା ସାହିତ୍ୟରେ ସମସାମୟିକ ସମାଜ ଜୀବନର ଚିତ୍ର କିପରି ସୁନ୍ଦର ଭାବରେ ଫୁଟି ଉଠିଛି, ତାହା ବର୍ଣ୍ଣନା କରି ସେ କହନ୍ତି -

"ଏଇଭଳି ନିଷ୍ଠାବାନ୍ କଥାକାରମାନେ ନିଜସ୍ୱ ମନ ଓ ହୃଦୟର ସ୍ୱାଭାବିକ ସୃଷ୍ଟି ପ୍ରେରଣାରେ ଅନୁପ୍ରାଣିତ ହୋଇ ରଚନା କରିଯାଇଛନ୍ତି ବହୁ କ୍ରାନ୍ତିକାରୀ ସୃଷ୍ଟି । ସର୍ବଜନ ଓ ସର୍ବକାଳ ପାଇଁ ଛାଡ଼ିଯାଇଛନ୍ତି ଏକ ଏକ କ୍ଲାସିକ୍ ଆବେଦନ । ଯା'ରି ଭିତରେ ଗଳ୍ପ ରଚନାର ପରମ୍ପରାଟି ସହ ଆମେ ବେଶ୍ ପରିଚିତ । ଗୋଟିଏ ଗୋଟିଏ ଗଳ୍ପ ଗୋଟିଏ ଗୋଟିଏ ଅମଳିନ ରକ୍ତ ଗୋଲାପ ପରି ଏବେ ବି ଆମ ସାହିତ୍ୟର ଉପବନରେ ଶୋଭାଦୀପ୍ତ । ଏଇଭଳି ଅନ୍ତର୍ଚେତନାର ଅନୁପ୍ରାଣୀତ ଗଳ୍ପକାରମାନଙ୍କ ଭିତରୁ ଯେଉଁମାନେ ବିଂଶ ଶତକର ଦ୍ୱିତୀୟାର୍ଦ୍ଧର ପ୍ରଥମ ଦଶନ୍ଧି ବେଳକୁ ନିଜସ୍ୱ ସୃଷ୍ଟି କ୍ଷେତ୍ରରେ ଧ୍ୟାନସ୍ଥ, ସେମାନଙ୍କ ମଧ୍ୟରୁ ଜଣେ ଗାଳ୍ପିକ ହେଉଛନ୍ତି ଅବନୀ କୁମାର ବରାଳ ।"

ଶ୍ରୀ ବରାଳ ନିଜେ ସ୍ୱୀକାର କରନ୍ତି ଯେ, ଦୀର୍ଘକାଳ ଧରି ସେ ନିରୋଳା ସାହିତ୍ୟ ସୃଷ୍ଟି କରିନାହାନ୍ତି । ଏହାର କାରଣ ସ୍ୱରୂପ କୁହାଯାଇପାରେ ଯେ ଅନ୍ୟାନ୍ୟ ଅନେକ କର୍ମବହୁଳତା ହେତୁ ସେ ଏଥିପାଇଁ ମାନସିକ ସ୍ତରରେ ଏକ ସ୍ୱତନ୍ତ୍ର ସମୟ ଦେଇପାରିନାହାନ୍ତି । ତେଣୁ ଓଡ଼ିଆ କଥା ସାହିତ୍ୟକୁ ତାଙ୍କର ସୁବିପୁଳ ଅବଦାନ କିଛି ନାହିଁ । ମାତ୍ର ଏଇଠି ଭୁଲିଗଲେ ଚଳିବ ନାହିଁ ଯେ ସାହିତ୍ୟର ବିପୁଳ ଭଣ୍ଡାର କେବଳ ସାହିତ୍ୟକୁ ଋଦ୍ଧିମନ୍ତ କରେନାହିଁ, କରେ ତା'ର ଗୁଣାତ୍ମକ ଭଣ୍ଡାର । ଖୁବ୍ କମ୍ ସାହିତ୍ୟ ସୃଷ୍ଟିକରି ଏପରିକି ମାତ୍ର କେତୋଟି ଗଳ୍ପ ଲେଖି ଏବଂ ତନ୍ମଧ୍ୟରୁ ଗୋଟିଏ / ଦୁଇଟି ଗଳ୍ପ ପାଇଁ ସର୍ବଭାରତୀୟ ସ୍ତରରେ ସୁବିପୁଳ ଖ୍ୟାତି ଅର୍ଜନ କରିଥିବା ଗାଳ୍ପିକ ବି ଏ ଓଡ଼ିଆ ସାହିତ୍ୟରେ ଅଛନ୍ତି । ସେଠି ବିପୁଳ ସାହିତ୍ୟର କି ମୂଲ୍ୟ ? ତେଣୁ ସମୟର ଆବେଦନ ଦୃଷ୍ଟିରୁ କେଉଁ ଗାଳ୍ପିକ କେଉଁଭଳି କଳାନୈପୁଣ୍ୟର ପରିଚୟ ଦେଇପାରୁଛି, କେଉଁଭଳି କେତେ ନିକଟକୁ ଯାଇ ଉଭୟ ସମାଜ ଜୀବନ ଓ ବ୍ୟକ୍ତି ଜୀବନକୁ ଦେଖିପାରୁଛି - ଏହା କେବଳ ଗାଳ୍ପିକର ଗଳ୍ପର ଗୁଣାତ୍ମକ ବିଚାର ଉପରେ ହିଁ ନିର୍ଭର କରେ । ଏଇ ପରିପ୍ରେକ୍ଷୀରେ ତେଣୁ ବରାଳଙ୍କର କେତୋଟି ଗଳ୍ପକୁ ବିଚାର କରିବା କଥା । ଗଳ୍ପଗୁଡ଼ିକର ରଚନାକାଳ ନିଶ୍ଚେ ସ୍ୱାଧୀନତାର ପରବର୍ତ୍ତୀ ଅର୍ଥାତ୍ ସମୟର ଆବେଦନ ଦୃଷ୍ଟିରୁ ବଡ଼ ଗୁରୁତ୍ୱପୂର୍ଣ୍ଣ କାଳ । ଏ ସମୟରେ ବହୁ ପ୍ରତିଷ୍ଠିତ କଥାକାର ଏକ ଏକ ଗଳ୍ପ ପାଇଁ ବହୁ ପ୍ରତିଷ୍ଠାର ଅଧିକାରୀ ହୋଇପାରିଛନ୍ତି । ଏମାନଙ୍କର ପରମ୍ପରାର ସ୍ରୋତରେ ସମୟ ଓ ପରିବେଶ କିପରି ଓ କେତେ ସଫଳତା ଦେଇପାରିଛି ଶ୍ରୀ ବରାଳଙ୍କ ସୃଷ୍ଟି ଓ ଦୃଷ୍ଟିରୁ ତାହା ହିଁ ବିଚାର୍ଯ୍ୟ ।"–

–"ଏହି ଆଲୋଚନାରେ ଆଲୋଚିତ ହେବାକୁ ଥିବା ଗଳ୍ପଗୁଡ଼ିକ ସ୍ୱାଧୀନତା ପରବର୍ତ୍ତୀ ପ୍ରାୟ ଅର୍ଦ୍ଧଶତାବ୍ଦୀର ଭାରତୀୟ ଜୀବନଧାରାର ଏକ ବାସ୍ତବ ରୂପାୟନ । କେବଳ ବାସ୍ତବ ନୁହେଁ ବରଂ କରୁଣ-ବାସ୍ତବ-ବୈଚିତ୍ର୍ୟପୂର୍ଣ୍ଣ-ଆବେଗିକ-ସ୍ୱପ୍ନଭଙ୍ଗଜାତୀୟ ଜୀବନର

ହିଁ ନିଖୁଣ ନିପୁଣ ରୂପାୟନ । ଏଥିରେ ପ୍ରଗତିବାଦୀ ଚେତନାର ସ୍ୱର, ବିଦ୍ରୋହୀ ଆତ୍ମାର ଆହ୍ୱାନ, ନୂଆ ଏକ ସମୟ ପାଇଁ ପ୍ରସ୍ତୁତି ସୃଷ୍ଟି କରିଛି । ଗୋଟେ ପ୍ରତୀକ୍ଷା ପ୍ରାୟ ଗଳ୍ପଗୁଡ଼ିକରେ ହିଁ ଲକ୍ଷ୍ୟ କରାଯାଏ । ବିଦ୍ରୋହ ବା ପ୍ରତିବାଦ ଏ ସାମୁହିକ ରୂପ ନନେଲେ, ଏକ ଗଣ ଆନ୍ଦୋଳନର ରୂପ ଗ୍ରହଣ ନକଲେ ସେ ପରିକଳ୍ପିତ ନୂଆ ସମୟ ଜମା ଆସିବ ନାହିଁ । ବିଡ଼ମ୍ବନା ସେମିତି ବିଡ଼ମ୍ବନା ହୋଇ ରହିଥିବ । ତେଣୁ ଜାତୀୟ ଜୀବନର ଜଡ଼ତାକୁ, ସ୍ଥିତାବସ୍ଥାକୁ ଭାଙ୍ଗିଦେବା ପାଇଁ ଗାଳ୍ପିକଙ୍କର ବିଦ୍ରୋହୀ ଆତ୍ମା ଅନେକତ୍ର ବିଳପି ଉଠିଛି । କାରୁଣ୍ୟରେ ଜଡ଼ସଡ଼ ହୋଇଯାଇଛି ଗଳ୍ପର ଚାରିତ୍ରିକ ଜୀବନ ଭୂମି । ଚରିତ୍ରମାନେ କାୟମନୋବାକ୍ୟରେ ଖୁବ୍ ପ୍ରତିକ୍ରିୟାଶୀଳ ହୋଇଉଠିଛନ୍ତି ଏ ଅଗଣତାନ୍ତ୍ରିକ ବିଧିବ୍ୟବସ୍ଥା ପ୍ରତି । ପ୍ରତିବାଦ ତେଣୁ ସମାଜ ଆର୍ଥନୀତିକ ଶୋଷଣ ପିଷ୍ଟ ଜୀବନ ବିରୁଦ୍ଧରେ, ରାଜନୀତିକ ଭ୍ରଷ୍ଟାଚାର ଓ ଦୁର୍ନୀତି ବିରୁଦ୍ଧରେ, ସ୍ୱାର୍ଥାନ୍ୱେଷୀ ଶୋଷକ ପୀଡ଼କ ଗୋଷ୍ଠୀ ବିରୁଦ୍ଧରେ, ଅମାନବିକତା ବିରୁଦ୍ଧରେ, ଅପ-ମୂଲ୍ୟବୋଧ ବିରୁଦ୍ଧରେ ସ୍ୱାର୍ଥାନ୍ୱେଷୀ ଶୋଷକ ପୀଡ଼କ ଗୋଷ୍ଠୀ ବିରୁଦ୍ଧରେ, ଅଶିକ୍ଷା, ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ।

–"ପ୍ରଖ୍ୟାତ ପ୍ରଗତିବାଦୀ କଥାକାର ଭଗବତୀ ଚରଣ ପାଣିଗ୍ରାହୀଙ୍କ ମତକୁ ଉଦ୍ଧାର କରି ଆଲୋଚନାଟିକୁ ଆଗକୁ ନିଆଯାଇପାରେ । ତାଙ୍କ ମତରେ ଗଳ୍ପ ଦୁଇପ୍ରକାରର । ପ୍ରଥମଟି ହେଉଛି ମହତ୍‌ଭାବ ଓ ନୀତି ପ୍ରକାଶମୂଳକ ଓ ଦ୍ୱିତୀୟଟି ହେଉଛି ଜୀବନର ନିଚ୍ଛକବାସ୍ତବତା ମୂଳକ । ଏଇ ଦ୍ୱିତୀୟ ଶ୍ରେଣୀର ଗଳ୍ପ ସ୍ୱାଧୀନୋତ୍ତର ଭାରତୀୟ କଥାସାହିତ୍ୟକୁ ବେଶ୍ ଋଦ୍ଧିମନ୍ତ କରିଛି । ଏହି ଧରଣର ଗଳ୍ପରେ ଜୀବନର ଏକ ଏକ ନିରାଟବାସ୍ତବ ଛବି ଦିଆଯାଇଥାଏ, କିନ୍ତୁ ଏହି ବାସ୍ତବତା ମଧ୍ୟରେ ଜୀବନର ଗୋଟିଏ ଗୋଟିଏ ସୂକ୍ଷ୍ମତତ୍ତ୍ୱ ପ୍ରଚ୍ଛନ୍ନଥାଏ । ଏପରି ଗଳ୍ପରେ ଉଦ୍ଦେଶ୍ୟ ହେଉଛି ସାଧାରଣ ଜୀବନର ବୈଚିତ୍ର୍ୟ ଉଦ୍‌ଘାଟନ ।"–

–"ଏହି ବାସ୍ତବତା ଓ ବୈଚିତ୍ର୍ୟ ଉଦ୍‌ଘାଟନର ଚିତ୍ର ଶ୍ରୀ ବରାଳଙ୍କର ବହୁ ଗଳ୍ପରେ ଲକ୍ଷ୍ୟ କରାଯାଏ । 'ଝୁଲାକୁଣ୍ଢେଇ' ଗଳ୍ପରୁ ଆରମ୍ଭ କରାଯାଉ । ଗୁଡ଼ିଆ ଦୋକାନୀ ଦାମ ସାହୁ ତା' ନିକଟରେ ବାକିଖାଇ ଧାରୁଆ ହୋଇଥିବା 'ବାବୁ' ଗୋଷ୍ଠୀ (ତାଙ୍କ ଭାଷାରେ ବଜାରୀ)ଙ୍କ ପ୍ରତି ଯେଉଁ ମାନସିକ ପ୍ରତିବାଦ ପୋଷଣ କରିଛି, ତାହା ଏକ ପରୋକ୍ଷ ପ୍ରତିବାଦ ହେଲେ ହେଁ ବଡ଼ କୌତୁହଳୋଦ୍ଦୀପକ । ପ୍ରତିବାଦ ବା ବିଦ୍ରୋହ ପୁଣି ଏମିତି କୌତୁହଳ ପଦ୍ଧତିରେ କରାଯାଏ । ଏଭଳି ଗଳ୍ପ ରଚନାର କୌଶଳ ଓଡ଼ିଆ କଥାସାହିତ୍ୟରେ ନିଶ୍ଚେ ଅଭିନବ । ବୈଚିତ୍ର୍ୟ ବି କମ୍ ନାହିଁ ଏଥିରେ । ଲେଖକଙ୍କ ପ୍ରତି ପ୍ରଶ୍ନରେ ସେ ପୁଣି ଉତ୍ତର ହେଉଛି – ଯେଉଁ ଗୁଡ଼ାକ ଏମିତି ଧପ୍‌ପାମୀ କରନ୍ତି, ତାଙ୍କୁ

ଏଭଳି ବ୍ୟବହାର ଦରକାର । ଅର୍ଥାତ୍ ଏମାନଙ୍କ ନାମରେ କୁଣ୍ଢେଇ ଝୁଲାଇ ଝାଟୁଆରେ ପିଟିବା ଦରକାର ।"-

-"ଏଇଠି ସ୍ପଷ୍ଟ ହୋଇଯାଇଛି ଯେ ସ୍ୱାଧୀନତା ପରେ ଯେଉଁ ଦେଶୀ ସାହେବମାନେ ଆମର ଗଣତନ୍ତ୍ରକୁ, ରାଜନୀତିକୁ ଆବୋରି ବସିଲେ ଆମର ଭାଗ୍ୟବିଧାତା ପାଲଟିଗଲେ, ଝୁଲାକୁଣ୍ଢେଇର ବଜାରୀବାବୁ ମାନେ ଏଇ ଗୋଷ୍ଠୀର । ଏଇମାନଙ୍କ ବିରୁଦ୍ଧରେ ଦାମ ସାହୁର ବ୍ୟଙ୍ଗାତ୍ମକ ପ୍ରତିବାଦ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ ନିଶ୍ଚେ । ଦାମ ସାହୁ ନିମ୍ନମଧ୍ୟବିତ୍ତ ଗୋଷ୍ଠୀର ଏକ ଚରିତ୍ର । ପ୍ରାୟ ସବୁ ଚରିତ୍ର ଏଇଭଳି ନିମ୍ନ ମଧ୍ୟବିତ୍ତ ଗୋଷ୍ଠୀର । ପ୍ରାୟ ସମସ୍ତେ ଅବହେଳିତ, ଲାଞ୍ଛିତ, ଶୋଷିତ, ନିର୍ଯ୍ୟାତିତ ଏବଂ ଶାସିତ ମଧ୍ୟ ।"-

-"ଅନ୍ୟ ଏକ ଗଳ୍ପ 'ଅଭିନୟ ନୁହେଁ' । ବାସ୍ତବରେ ଏହା ଅଭିନୟ ନୁହେଁ । ଏହା ନାରୀ ଜୀବନର ବାସ୍ତବ ଚିତ୍ରକୁ ନେଇ ରଚିତ ଏକ ସଫଳ ଓ ସାର୍ଥକ ଗଳ୍ପ । ସ୍ୱାଧୀନ ଭାରତର ନାରୀ ଜୀବନର ସ୍ଥିତି କିପରି ବିଭିନ୍ନ ଏଇଭଳି ବହୁଗଳ୍ପରେ ଗାଳ୍ପିକ ଦେଖାଇ ଦେଇଛନ୍ତି । ସବୁଠୁ ବଡ଼ କଥା ହେଲା, ବାସ୍ତବତା ନିଖୁଣ ଭାବରେ ଚିତ୍ରିତ ହେଲେ, କଳାନୈପୁଣ୍ୟ କିପରି ଫୁଲଟିଏ ପରି ଫୁଟିଯାଏ, ଏଇ ଗଳ୍ପ ତା'ର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ବାସ୍ତବତା ଓ କଳାତ୍ମକତାର କରୁଣ ଚିତ୍ରାୟନ । ଚରିତ୍ର ସହ ଏକାତ୍ମ ନହେଲେ ଏଭଳି ସାର୍ଥକ ସୃଷ୍ଟି ଅସମ୍ଭବ । କାରୁଣ୍ୟ ଏକ ଅନ୍ତରୀଣ ଫଲ୍‌ଗୁ ଭଳି ଅନୁଭବ୍ୟ କେବଳ । ଗଳ୍ପଟିରେ ପେଟର କ୍ଷୁଧା ନିକଟରେ ଦେହର କ୍ଷୁଧା ହାର ମାନିଚି । ହାରମାନିଚି ଯେତେ ସାମାଜିକ-ପାରିବାରିକ ଶୃଙ୍ଖଳାବୋଧ । ସ୍ତ୍ରୀଟି ସ୍ୱାମୀର ସମ୍ମତିରେ ପରପୁରୁଷକୁ ଦେହଦାନ କରୁଛି । ଏଭଳି କର୍ମ ଯେତେ ଘୃଣ୍ୟ - କୁତ୍ସିତ ହେଲେ ବି ଏକ ପନ୍ଥା ଏକ ଆଶ୍ରୟ । ଗାଳ୍ପିକଙ୍କ ଭାଷାରେ "ଜୀବନର ଇଏତ ଏମିତି ଗୋଟିଏ ଦିଗ । ବଞ୍ଚିବା ପାଇଁ ମଣିଷ ଏମିତି ପୁଣି ମରେ ।" ନିଅଣ୍ଟିଆ ସଂସାରକୁ ମେଣ୍ଟେଇବାର ଏକ ଘୃଣ୍ୟତମ ପୁଣି ଅନିବାର୍ଯ୍ୟ ଆବଶ୍ୟକତା, ଏକ ଅନନ୍ୟୋପାୟତା ଚେତନାକୁ ଆହୁରି ଅଧିକ ଅର୍ନ୍ତମୁଖୀ କରାଇଦେଇଛି ସ୍ତ୍ରୀ ଲୋକଟିର ମୁହଁର ଭାଷା । ସେ ଧରାପଡ଼ିଯାଇଥିବା ବ୍ୟକ୍ତିଟି ପାଖରେ ବି ଆଇନ୍ କାନୁନ୍ ଓ କୋର୍ଟ କଚେରୀ ମାମଲାଠୁ ମୁକ୍ତି ପାଇବା ନିମନ୍ତେ ଠିକ୍ ସେଇଭଳି ଆଦିମ ବ୍ୟବହାର ଦେଖାଇଛି । ଦେଢ଼ଶୁର ଆଖିରେ ଧରାପଡ଼ିଯିବ ବୋଲି ପରପୁରୁଷକୁ ଧରାଇଛି ମିଛରେ ଧର୍ଷଣକାରୀ ଭାବରେ ।"

-"ପୁଣି କୋର୍ଟ କଚେରୀକୁ ଟଣା ହେବା ଭୟରେ, ଦଣ୍ଡିତ ହେବା ଭୟରେ ଅନୁସନ୍ଧାନକାରୀ ସହ ମଧ୍ୟ ଘର ଭିତରେ ଏକାନ୍ତରେ ସେଇ ଏକାପରି ବ୍ୟବହାର ।

କାଳେ ତା'ର କାମନାମେଣ୍ଟାଇ ଦେଲେ ସେ ଦୟାକରି ୟାକୁ ମୁକ୍ତିଦେବ ସରକାରୀ ଦଣ୍ଡାଦେଶରୁ । ତେଣୁ ତା'ର ଅତି ଚମତ୍କାର କରୁଣ ଉକ୍ତି ପାଠକକୁ ଚକିତ କରାଇଦିଏ - "ବୁଡ଼ିଗଲା ଗୋଡ଼ ତଳକୁ ତଳକୁ ବାବୁ । ସେଇ ବାଟରେ ତ ବଞ୍ଚୁଛି । ସେଇଆ କରିତ ମଲି - ଭାବିଥିଲି, ସେମିତି ଉଦ୍ଧାର ପାଇଯିବି ।" ଏଇଠି ଗଳ୍ପଟିର ବାସ୍ତବତା ଓ କଳାତ୍ମକତା ଏକାକାର । ନିଖୁଣ ବାସ୍ତବତା ନିକଟରେ ଆଉ କେଉଁ କଳାତ୍ମକତା ତିଷ୍ଠିପାରେ ! ଇଏ ଏକ ଅନନ୍ୟ ସଫଳତାର ଗଳ୍ପ ।

-"ଏଇଭଳି ବହୁଗଳ୍ପରେ ନାରୀ ଜୀବନର ବିପନ୍ନ ସ୍ଥିତିର ଚିତ୍ର ରହିଛି । "ଗୋଟିଏ ମା'ର କାହାଣୀ'ରେ ପାପଗର୍ଭା ହୋଇ ସାମାଜିକ ତାଡ଼ନା ସହିଛି କମଳିନୀ । ପରପୁରୁଷ ଉପରେ ଆସ୍ଥା ରଖି ଦେହଦାନ କରି ହୋଇଛି ପରିତ୍ୟକ୍ତା । ସେ ସେଇ ଅବୈଧ ସନ୍ତାନକୁ ଜନ୍ମ ଦେଇଛି ମାତୃତ୍ୱର ଦାୟରେ ଏବଂ କହିଛି - "ହଁ, ମୋତେ ଆପଣମାନେ କୁଳଟା, ବ୍ୟଭିଚାରିଣୀ କହନ୍ତୁ । କିନ୍ତୁ ଇଏତ ଦୋଷୀ ନୁହେଁ । କାହିଁକି ତା'ର ଜୀବନବ୍ୟର୍ଥ ହୋଇଯିବ ? ତାକୁ ରକ୍ଷା କରନ୍ତୁ ଆପଣମାନେ । ସିଏ ବି ବଡ଼ ମଣିଷ ହେବ । ସିଏ ବି ଜଜ୍ ବାରିଷ୍ଟର ହେବ । କେତେ କ'ଣ କରିବ । ବଞ୍ଚି ରହିବ ନିଜ ଦାବୀ ଘେନି । ଏ ଦୁନିଆର କଳଂକମୟ ଇତିହାସକୁ ଚିରି, ପୋଡ଼ି ବଦଳାଇ ଦେବାପାଇଁ ମୁଁ ତାକୁ ବଞ୍ଚାଇ ରଖିବି । ମାଆର ଏ ପ୍ରତିଜ୍ଞା ବେଶ୍ ବିଦ୍ରୋହାତ୍ମକ । କିନ୍ତୁ ସମୟକୁ ଅପେକ୍ଷା ।"

ଏଭଳି ସମୟକୁ ଅପେକ୍ଷା କରି ରହିଥିବା ଚରିତ୍ରମାନେ ଲେଖକଙ୍କର ବହୁଗଳ୍ପରେ ଆତଯାତ ହୁଅନ୍ତି । ଉପରୋକ୍ତ ଗଳ୍ପରେ ଧନତାନ୍ତ୍ରିକ ବ୍ୟବସ୍ଥା ପାଖରେ ପେଶାଦାରୀ ନ୍ୟାୟକର୍ତ୍ତାଙ୍କର ନୀରବତା ଓ ଉଦାସୀନତା କେବଳ ପ୍ରକଟିତ ହୋଇନାହିଁ, ତା'ର ବିପକ୍ଷରେ ଯାଇ ପ୍ରକୃତ ଦୋଷୀକୁ ମୁକ୍ତ କରିଦିଆଯାଇଛି । କମଳିନୀକୁ ନ୍ୟାୟ ମିଳିନାହିଁ । ତେଣୁ ତା'ର ଆତ୍ମଲିପି ସେ କହିଲାବେଳେ ଯେଉଁ ଉତ୍ତପ୍ତ ଛାତିରେ ଉକ୍ତି ପ୍ରକଟ କରିଛି, ତହିଁରୁ ଗୋଟେ ନୀରହ ସରଳା ନାରୀର ଏ ବ୍ୟଭିଚାରୀ ଲମ୍ପଟ ପୁରୁଷ ସମାଜ ପ୍ରତି ବିଦ୍ରୋହ ହିଁ ପ୍ରକଟିତ ହୋଇଛି ।

'ଅଭିନୟ' ଗଳ୍ପରେ ଧୋବଧାଉଳିଆ ବାବୁମାନଙ୍କର, ଭଦ୍ରଲୋକମାନଙ୍କର ଅସଲ ଚେହେରା, ଅନ୍ତରର କୁତ୍ସିତ କାମନା ବାସନା, କୁପ୍ରକୃତିକୁ ହିଁ ପଦାକୁ କାଢ଼ି ଦିଆଯାଇଛି । ଏମାନଙ୍କ ପ୍ରତି ଗୋଟେ ଦେହଜୀବୀର ମୁହଁରେ ଯେଉଁ କଟୂକ୍ତି ଶୁଣାଇଛନ୍ତି ଲକ୍ଷ୍ୟ କରନ୍ତୁ - "ଆମେ ତ ଦିନରେ ଦୁଇଘଣ୍ଟା କି ତିନିଘଣ୍ଟା ଅଭିନୟ କରୁ, ତା'ପରେ ବେଶ୍ ପୋଷାକ ଓହ୍ଲାଇ, ରଙ୍ଗ ଛିଟା ଲିଭାଇ ତୁଚ୍ଛା ମଣିଷ ପାଲଟିଯାଉ । ଆଉ ଆପଣ ?

ଆପଣ ତ ଚବିଶ ଘଣ୍ଟା ରଙ୍ଗ ନଲଗାଇ ବି ଅଭିନୟ କରୁଛନ୍ତି । ସାରା ଜୀବନଟା ଆପଣଙ୍କର ରଙ୍ଗମଞ୍ଚ ।" ଏଠି ବି ଗୋଟେ ଆଗାମୀ ସମୟ ପାଇଁ ଅପେକ୍ଷା । "କିନ୍ତୁ ମନେରଖନ୍ତୁ ଦିନ ଆସିବ ଯେବେ ଏସବୁ ଓଲଟିଯିବ । ଆପଣମାନେ ରହିପାରିବେ ନାହିଁ ମୁଖା ଭିତରେ, ମୁଖା ଖୋଲିଯିବ ।"

'ମନେ ରହିଛି' ଗଳ୍ପରେ ବି ସେଇ ଏକା କଥା । ନାରୀ ଜୀବନର କରୁଣ ବାସ୍ତବତା । କିନ୍ତୁ ନୂତନତା ରହିଛି ଘଟଣା ବିନ୍ୟାସରେ, ସଂଳାପରେ । ଉତ୍କଣ୍ଠା ଯେ କୌଣସି ଭଲ ଗପର ପ୍ରାଣପ୍ରବାହ । ଯାହା ଖୁବ୍ ସଚେତନ ଭାବରେ ସୃଷ୍ଟି କରିପାରିଛନ୍ତି ଗାଳ୍ପିକ । ଗଳ୍ପଟି ପଢ଼ିବାକୁ ଆରମ୍ଭ କଲା ମାତ୍ରେ ଆଗକୁ କ'ଣ କେମିତି ଘଟିବ'ର ଉତ୍କଣ୍ଠା ଯେତିକି ତୀବ୍ରତର ହୁଏ, ଗଳ୍ପର ପରିଣତିରେ କ'ଣ ଏମିତି ସବୁ ଘଟିଗଲା । ବ୍ୟାକୁଳ କାରୁଣ୍ୟର ଏକ ରାଗରେ ରୂପାନ୍ତରିତ ହୋଇଯାଏ । ଭଲ ଗଳ୍ପଟିଏ ସରି ସୁଦ୍ଧା ସରିନଥାଏ । ଅନନ୍ତ ଆକାଂକ୍ଷା ଓ ଅନ୍ୱେଷାବୋଧ, ଛାଡ଼ି ଦେଇଥାଏ ସ୍ରଷ୍ଟା ପାଠକମାନଙ୍କ ଚେତନାର ଅନ୍ତର୍ମୁଖୀନତା ପାଇଁ । ତେଣୁ ଗାଳ୍ପିକ ଏଥିପ୍ରତି ଖୁବ୍ ସଚେତନ ଥାଏ । ଗଳ୍ପ ଲେଖିଲାବେଳେ (ଗାଳ୍ପିକ କିଶୋରୀଚରଣ ଦାସଙ୍କ ଭାଷାରେ) କ୍ଷୁଦ୍ରଗଳ୍ପର କ୍ଷୁଦ୍ରତା ହିଁ ଲେଖକକୁ ଆଦେଶ ଦିଏ ଯେ ଏଇ ଗଣ୍ଡୁଷ ଭିତରେ ପାଠକକୁ ରସେଇବାକୁ ହେବ, ଭସେଇବାକୁ ହେବ, ଡୁବେଇବାକୁ ହେବ । ଯାହା ଶ୍ରୀ ବରାଳଙ୍କର ଗଳ୍ପମାନଙ୍କରେ ହିଁ ପ୍ରମାଣିତ ହୋଇଯାଇଛି ।

ସ୍ୱାଧୀନତା ପରେ ଆମର ସ୍ୱପ୍ନଭଙ୍ଗ ଘଟିଛି । ଘିଅ ମହୁର ଦେଶ ଲୁହଲହୁରେ ଭାସିଯାଇଛି । ଗାନ୍ଧୀବାଦ, ସାମ୍ୟବାଦ, ମାର୍କ୍ସବାଦ ପରି କେତେ ବାଦ କୁଆଡ଼େ ଅର୍ଥହୀନ ହୋଇଗଲେଣି । ନାରୀଦେହ ପଣ୍ୟ ହୋଇଯାଇଛି । କେଉଁଠି ସେ ଜାଣିଜାଣି ଦେହଦାନ କରୁଛି ତ କେଉଁଠି ତାକୁ ଧର୍ଷଣ କରାଯାଉଛି ଯୋଜନାବଦ୍ଧ ଭାବରେ । ଗଣତନ୍ତ୍ର, ସ୍ୱାଧୀନତା, ସ୍ୱରାଜ୍ୟ, ଜାତୀୟତା ସବୁ କବର ନେଇଛନ୍ତି । ନବ୍ୟ ବେପାରୀଦଳ, ଶୋଷକ ଦଳ ମାତି ଉଠିଛନ୍ତି । ଗାଳ୍ପିକଙ୍କର 'ଭଗବତୀଙ୍କୁ' (ଭଗବତୀ ଚରଣଙ୍କୁ) ତେଣୁ ସେଇ ପ୍ରଶ୍ନ - ଆପଣ କ'ଣ କଳନା କରିଥିଲେ, ଘିନୁଆର ପୁଅ ଘିନୁଆ ହୋଇ ରହିବ ଓ ଗୋବିନ୍ଦ ସରଦାରର ପୁଅ ଅନେକଗୁଣ ବଢ଼ିଯାଇ, ମହାଜନୀ ସାହୁକାର ହୋଇ ବାପର ଛୋଟ ଅଞ୍ଚଳରୁ ବଡ଼ ଅଞ୍ଚଳରେ ନିଜକୁ ପରିବ୍ୟାପ୍ତ କରିବ ? ଏବେ ସେୟା ହୋଇଛି । ଆପଣଙ୍କ ପ୍ରିୟ ଘିନୁଆର ବୋକାପୁଅ, ବୋକା ରହିଗଲା - ଏ ମହାମାନବର ସାଗରତୀରକୁ ଆସିପାରିଲା ନାହିଁ ।

ସ୍ୱାଧୀନ ଭାରତର ସବୁଠୁ ବଡ଼ ବିଡ଼ମ୍ବନାର ପ୍ରସଙ୍ଗ ହେଉଛି ଅଯୋଗ୍ୟମାନେ ଯୋଗ୍ୟତମର ଆସନରେ ଅଧିଷ୍ଠିତ ହେବା, ଯାହାକୁ ରୂପ ଦେଇଛନ୍ତି ଗାଳ୍ପିକ ତାଙ୍କର 'ଗତାୟୁ' (ଯାହା ପୂର୍ବ ଗ୍ରନ୍ଥରେ ସପନିମାଷ୍ଟ୍ରେ ନାମରେ ପ୍ରକାଶିତ) ଓ 'କରୁଣାକରଙ୍କ ନିଷ୍କରୁଣ ଆତ୍ମକଥନରେ' । ଯାହାଙ୍କର ପୃଷ୍ଠଭୂମି ଗୋଟିଏ । ଅଯୋଗ୍ୟ ଗୋବର୍ଦ୍ଧନ ଶିକ୍ଷାମନ୍ତ୍ରୀ ହୋଇଛି, ଯିଏକି ଦିନେ ଠିକ୍‌ରେ 'ନିରକ୍ଷରତା' ଲେଖିପାରୁନଥିଲା । ଠିକ୍‌ରେ 'ସମସ୍ୟା' ଉଚ୍ଚାରଣ କରିପାରୁନଥିଲା । ସିଏ ପୁଣି ନିରକ୍ଷରତା ଦୂର କରିବ ଏବଂ ଶିକ୍ଷା ସମସ୍ୟାର ସମାଧାନ କରିବ । ଗଳ୍ପ ଦୁଇଟିରେ ପାର୍ଥକ୍ୟ ହେଉଛି ଦୁଇଜଣ ଶିକ୍ଷକଙ୍କୁ ନେଇ । ଜଣେ ସପନିମାଷ୍ଟ୍ର ଓ ଅନ୍ୟ ଜଣେ କରୁଣାକର ମାଷ୍ଟ୍ର ।

କରୁଣାକର ଅଯୋଗ୍ୟମାଷ୍ଟ୍ର । ଖୁବ୍ ଉଚ୍ଚାଭିଳାଷୀ ଥିଲା । ଉପ୍‌ସିତ ଚାକିରୀ ନପାଇବାରୁ ମାଷ୍ଟର ହୋଇଗଲା ମାତ୍ର ପରିଣତିରେ ତା'ର ପରିବର୍ତ୍ତନ ଆସିଛି । କାରୁଣ୍ୟରେ ବ୍ୟଞ୍ଜିତ ହୋଇଛି ଗଳ୍ପର ଅନ୍ତପର୍ବ । ପରାଧୀନ ଭାରତର ସ୍ୱପ୍ନ ସ୍ୱାଧୀନ ଭାରତରେ ବିଡ଼ମ୍ବିତ ହୋଇଛି । ରମାକାନ୍ତ ଭଳି ଯୋଗ୍ୟ ପିଲା କିରାଣୀ ହୋଇଛି ଏବଂ ଗୋବର୍ଦ୍ଧନ ହୋଇଛି ଶିକ୍ଷାମନ୍ତ୍ରୀ ।

–"ଏଇଭଳି ଅଯୋଗ୍ୟ, ଅପଦାର୍ଥ ଓ ଅପରାଧ ପ୍ରବଣ ବହୁ ଚରିତ୍ର ଏ ଖୋଲା ଆକାଶତଳେ ଆତଯାତ ହେଉଛନ୍ତି ଏବଂ ଦଳେ ନିରୀହ ନିରପରାଧ, ସରଳ ମଣିଷ ଜେଲ୍‌ରେ ରହି ସଢୁଛନ୍ତି । ଯେଉଁମାନଙ୍କ ମୁହଁରେ ଗାଳ୍ପିକ ଏ ଭଦ୍ରମୁଖାଧାରୀ ସମାଜକୁ ଶୁଣାଇଛନ୍ତି – "ଆପଣମାନେ ମନ୍ତ୍ରୀ, କାନତରାଟି, ଅଫିସର, ହାକିମ, ଦୋକାନୀ, ବ୍ୟବସାୟୀ, ଯେଉଁମାନେ ସବୁ ସତର ପସରା ମେଲି ବସିଛନ୍ତି, ଆପଣମାନଙ୍କୁ ପଚାରୁଚୁ, ଥରେ ଆପଣଙ୍କ ପଛ ଆଡ଼କୁ ଅନାଇ କହିଲେ, "ଆପଣମାନେ ସମସ୍ତେ, ସମାଜର ସବୁ ଠିକାଦାରଙ୍କୁ ଏଠିକି ଆସିବା କ'ଣ ଉଚିତ୍ ନୁହେଁ ?" ଏ ପ୍ରଶ୍ନର ଉତ୍ତର ସତରେ କିଏ ଦେବ ? ଏ ଠିକାଦାରୀ ସଭ୍ୟତାର ଜବାବ୍ କିଏ ଦେବ ? କିଏ ମୁକାବିଲା କରିବ ଏମାନଙ୍କର ? ବୋଧେ ସମୟ । ସମୟ ନଆସିଲେ ପରିବର୍ତ୍ତନ ଅସମ୍ଭବ । "ଏବେ ନାଆ ଉପରେ ଗାଡ଼ିଯାଉଛି । ଦିନେ ଗାଡ଼ି ଉପରେ ନାଆଯିବ ଯେ ।"

–"ବିଡ଼ମ୍ବିତ ଗଣତନ୍ତ୍ରର ସ୍ୱରୂପ, ଉତ୍କଟ ରାଜନୀତିର ବୀଭତ୍ସ ଚିତ୍ର, ଶୋଷିତ ଜନତା କରୁଣ ଆର୍ତଚିତ୍କାର ଯେଉଁ ଗଳ୍ପଗୁଡ଼ିକରେ ଅତି ନିଖୁଣ ଭାବରେ ରୂପାୟିତ ହୋଇଛି ସେଗୁଡ଼ିକ ହେଲା 'ଗଣତନ୍ତ, ମଗୁଡ଼ି', 'ଗରିବୀ ହଟାଓ', 'ଦଳବଦଳ', 'ମନ୍ତ୍ରୀଦର୍ଶନ', 'ସାମନ୍ତବାଦର ଶେଷ ଇସ୍ତାହାର' ପରି ବହୁ ଗଳ୍ପରେ । ପ୍ରାୟ ସବୁ ଗଳ୍ପରେ ନୀରବରେ – କୋଳାହଳରେ, ପରୋକ୍ଷରେ-ପ୍ରତ୍ୟକ୍ଷରେ ପ୍ରତିବାଦର ସ୍ୱର ହିଁ ପ୍ରକଟିତ ହୋଇଛି ।

ଏତଦ୍‌ଭିନ୍ନ ଚରିତ୍ରମାନଙ୍କ ସହ ଏକାତ୍ମହୋଇ ତାଙ୍କ ମନ ଗହୀରର ଭାବ ଓ ଭାବନା ସବୁକୁ ନିଛକ ଭାବେ ଅବଧାରଣା କରିବାରେ ଗାଳ୍ପିକ ଶ୍ରୀ ବରାଳଙ୍କର ଲେଖନୀମୁନର ଦକ୍ଷତା ହିଁ ପ୍ରମାଣିତ ହୋଇଛି । ପ୍ରମାଣିତ ହୋଇଛି ଅନ୍ତରତମ ପ୍ରଦେଶର ସ୍ୱାଭାବିକ ସୃଷ୍ଟି ପ୍ରେରଣାରେ ଅନୁପ୍ରାଣିତ ହୋଇ ହିଁ ସେ ଗଳ୍ପଗୁଡ଼ିକ ରଚନା କରିଛନ୍ତି । ସେଥିପାଇଁ କୃତ୍ରିମତାର ଲେଶମାତ୍ର ସଂକେତ ପରିଦୃଷ୍ଟ ହୁଏ ନାହିଁ । ସେଥିପାଇଁ ଏକାନ୍ତ ଗୋପନୀୟ କଥା ସୁଦ୍ଧା ଖୋଲି କହିଦେବାରେ ଚରିତ୍ରମାନଙ୍କଠି ତିଳେ ବି କାର୍ପଣ୍ୟ କରିନାହାନ୍ତି ।

ଗଳ୍ପଗୁଡ଼ିକର ଗାଠନିକ କୁଶଳତା ବେଶ୍ ଚମକପ୍ରଦ । ସଂଳାପ ସଂଯୋଜନା ଆବଶ୍ୟକତାର ପରିଧି ମଧ୍ୟରେ ପରିସୀମିତ, ଅଥଚ ଭାଷା ପରିପ୍ରକାଶରେ, ଅଭିବ୍ୟକ୍ତିର ଅବବୋଧ ଜମାରୁ ବାଧକ ନୁହଁ । ଚରିତ୍ରମାନେ ନିଜକଥା ହିଁ ନିଜେ ଖୁବ୍ ନିଷ୍କପଟ ଭାବରେ ହିଁ କହିଛନ୍ତି । ବର୍ଣ୍ଣନା ତେଣୁ ଜୀବନ୍ତ ଓ ପରିପକ୍ୱ ଓ ଚେତନାଧର୍ମୀ । ପ୍ରାୟ ସବୁ ଚରିତ୍ର ନିମ୍ନ ମଧ୍ୟବିତ୍ତ ଶ୍ରେଣୀର । ସମାଜର ନିମ୍ନବର୍ଗର ଅବହେଳିତ ଜନତା । ନାରୀ ଚରିତ୍ରଗୁଡ଼ିକ ମଧ୍ୟରେ ଦେହ ଓ ମନର ଦ୍ୱନ୍ଦ୍ୱ ବେଶ୍ ପ୍ରାଣବନ୍ତ ଓ କରୁଣ - ଆବେଗଧର୍ମୀ । ବୈଚିତ୍ର୍ୟ ଅନାଦୃତ । ପରିବର୍ତ୍ତନ କେଉଁଠି ସମାହିତ ଓ କେଉଁଠି ଆକାଂକ୍ଷିତ । ଆକାଂକ୍ଷା ଗୋଟେ ରାମରାଜ୍ୟ ପାଇଁ । ଜୀବନ ଯେତିକି ସଂଘାତପୂର୍ଣ୍ଣ, ସେତିକି ସ୍ୱପ୍ନ ଜର୍ଜର, ଯେତିକି ତିକ୍ତ ; ସେତିକି ମଧୁର । ପ୍ରାୟ ସମସ୍ତେ ବଞ୍ଚିବାର ରାହା ଖୋଜୁଛନ୍ତି । ମୃତ୍ୟୁକୁ ଭେଟିଛନ୍ତି, ବିଡ଼ମ୍ବନାକୁ ଭେଟିଛନ୍ତି ; ପୁଣି ନୂଆ ସକାଳର ଆବାହନ ପାଇଁ ବିଦ୍ରୋହ ପ୍ରସ୍ତୁତି ଚଳାଇଛନ୍ତି ।"

କଥାକାର ଅବନୀ ବରାଳଙ୍କ ଗଳ୍ପଗୁଡ଼ିକର ଯାଦୁକାରୀ ସ୍ପର୍ଶରେ ପାଠକ ଯେତିକି ବିମୋହିତ ହୁଅନ୍ତି, ତାଙ୍କର ଉପନ୍ୟାସଗୁଡ଼ିକ ମଧ୍ୟ ପାଠକଙ୍କ ଦ୍ୱାରା ସମପରିମାଣରେ ଗ୍ରହଣୀୟ ଓ ଆଦୃତ ହୋଇଥାଏ । ସଂଖ୍ୟାରେ ହାତଗଣତି ହେଲେ ହେଁ ସେହିସବୁ ଉପନ୍ୟାସଗୁଡ଼ିକର ଭାବ, ଭାଷା, ଶବ୍ଦ ଗଠନ ଓ ବିଷୟବସ୍ତୁ ଚୟନ ପାଠକଙ୍କୁ ଅକ୍ଳେଶରେ ବାନ୍ଧି ରଖିପାରେ, ଚିନ୍ତା ରାଜ୍ୟରେ ସୃଷ୍ଟିକରେ ଆଲୋଡ଼ନ । ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ, ବିଗତ ଶତାବ୍ଦୀର ଷଷ୍ଠ ଦଶକରେ କଲିକତାରୁ ପ୍ରକାଶିତ 'ଆସନ୍ତାକାଲି' ପତ୍ରିକାରେ ପ୍ରାୟ ଦୁଇବର୍ଷ କାଳ ଧାରାବାହିକ ଭାବରେ ପ୍ରକାଶ ପାଇ ଚାଲିଥିବା 'ପ୍ରେମର ଅନ୍ୱେଷଣରେ ଗୋଟିଏ ତରୁଣୀ' ପରବର୍ତ୍ତୀ ସମୟରେ ପୁସ୍ତକ ଆକାରରେ ଆତ୍ମପ୍ରକାଶ କରିଥିଲା । ସେହି ସମୟରେ ପାଠକ ମହଲରେ ଚହଳ ସୃଷ୍ଟି କରିଥିବା ଏହି ଉପନ୍ୟାସଟି ସମ୍ଭବତଃ ଅବନୀଙ୍କ ଶ୍ରେଷ୍ଠ ଉପନ୍ୟାସ ଭାବରେ ବିବେଚନା କରାଯାଇପାରେ ।. ପରେ ପରେ ବଜାରକୁ ଆସିଥିଲା ତାଙ୍କର ଅନ୍ୟ ଏକ ପ୍ରଭାବଶାଳୀ ଉପନ୍ୟାସ 'ମାୟାବିନୀ

ମଞ୍ଚ' । ଏହା ମଧ୍ୟ ପାଠକଙ୍କ ପାଇଁ ଏକ ଭିନ୍ନ ସ୍ୱାଦର ଅନୁଭବ ଆଣିଥାଏ । ଗତାନୁଗତିକ ଧାରାଠାରୁ ଏଥିରେ କିଛିଟା ପାର୍ଥକ୍ୟ ପରିଲକ୍ଷିତ ହୋଇଥିଲା । ତାଙ୍କର ଅନ୍ୟ ଏକ ସାର୍ଥକ ଉପନ୍ୟାସ ହେଉଛି 'ଏକା ଏକା... ସଂଳାପ ନିର୍ଜନତାର' । ଏହା ଏକ ନିର୍ଦ୍ଦିଷ୍ଟ ପାଠକ ଗୋଷ୍ଠୀ ସୃଷ୍ଟି କରିବାରେ ସକ୍ଷମ ହୋଇଥିଲା । ତାଙ୍କର ଉପନ୍ୟାସ ତାଲିକାର ଅନ୍ୟ ପୁସ୍ତକଗୁଡ଼ିକ ମଧ୍ୟରେ ରହିଛି – 'ମଞ୍ଚ କନ୍ୟାର କାହାଣୀ', 'ଏ ରାତ୍ରୀ ମାୟାବିନୀ', 'ଅପରାହ୍ନର ଛାୟା', 'ଇସ୍ପାତ' (ଅନୁବାଦ ଉପନ୍ୟାସ) ଏବଂ 'ଲାଲ ଅଝାଳ' (କିଶୋର ଉପନ୍ୟାସ) । ଯେତେଦୂର ମନେହେଉଛି ଉପନ୍ୟାସ 'ଏ ରାତ୍ରୀ ମାୟାବିନୀ ମଧ୍ୟ 'ଆସନ୍ତାକାଲି' ପତ୍ରିକାର ୧୯୬୩ ଅକ୍ଟୋବର ଓ ନଭେମ୍ବର ସଂଖ୍ୟାରେ ପ୍ରକାଶ ପାଇଥିଲା । 'ପ୍ରେମର ଅନ୍ୱେଷଣରେ ଗୋଟିଏ ତରୁଣୀ' ଉପନ୍ୟାସର ଦ୍ୱିତୀୟ ପରିବର୍ଦ୍ଧିତ ସଂସ୍କରଣର ଉନ୍ମୋଚନ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ ରେଭେନ୍ସା ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ତଥା ଜଣାଶୁଣା ସାହିତ୍ୟିକ ଦେବଦାସ ଛୋଟରାୟ ବକ୍ତବ୍ୟ ଛଳରେ କହିଥିଲେ –

"୧୯୬୨ ମସିହାରେ ସିରିଆଲ୍ ହୋଇ ଆରମ୍ଭ ହେଲା ଏ ବହି । ଆଜି ପ୍ରାୟ ୫୦ ବର୍ଷ ପରେ ଆମେ ସେ ବିଷୟରେ କଥାବାର୍ତ୍ତା କରୁଛୁ । ବାସ୍ତବରେ ମୁଁ ଆଉ ଏ ବହିର ନାୟିକା ଆଉ ମୁଖ୍ୟ ଚରିତ୍ର ମାଳିନୀ ଦାସ ପ୍ରାୟ ସମବୟସ୍କ କହିଲେ ଚଳେ । ମାଳିନୀଙ୍କର ସମସ୍ତ ପ୍ରେମିକ, ବହିରେ ଥିବା ମୋଟ ଚରିଜଣ, ଯଥା ରମେଶ, ଧୀରେନ୍, ଜଗନ୍ନାଥ ଆଉ ମନୋଜ, ଏମାନେ ସମସ୍ତେ ପ୍ରାୟ ମୋର ସମତୁଲ୍ୟ ବା ମୋଠାରୁ ଅଳ୍ପ କିଛି ସିନିଅର୍ କଲେଜ ଛାତ୍ର ପରି ଲାଗୁଥିଲେ । ସେମାନେ ସମସ୍ତେ ପ୍ରେମର ଅନ୍ୱେଷଣର ପଥିକ । ମୁଁ ବି ସେତେବେଳେ ସେ ଅନ୍ୱେଷଣର ରାସ୍ତା ଖୋଜୁଥିଲି । କିନ୍ତୁ ମୁଁ ବହି ପଢୁଥିଲା ବେଳେ କାହିଁକି କେଜାଣି, ମାଳିନୀର ଚରିଜଣ ପୁରୁଷବନ୍ଧୁଙ୍କ ଭିତରୁ କାହାରି ସହିତ ନିଜକୁ ସାମିଲ କରିପାରୁନଥିଲି । ରମେଶ ଥିଲା ମାଳିନୀର ପ୍ରଥମ ପ୍ରେମିକ । ତା' ପାଖରୁ ଭଲ ପାଇବାର ଅଢ଼େଇ ଅକ୍ଷର ଶିଖି, ମାଳିନୀ ନିଜକୁ ଉତ୍ସର୍ଗ କରିଥିଲା, ସ୍ୱତଃପ୍ରବୃତ ହୋଇ ସବୁ ଆବେଗର ସହିତ ଧୀରେନ୍ ପାଖରେ । ଧୀରେନ୍ ପାଖରୁ ପ୍ରତ୍ୟାଖ୍ୟାତ ହୋଇ, ମାଳିନୀ ଟାଣି ହୋଇ ଯାଇଥିଲା, ଜଗନ୍ନାଥ ଆଡକୁ Some what on the rebound ପ୍ରଥମଥର ପାଇଁ ହୃଦୟ ଭାଙ୍ଗିବାର ଦୁଃଖ ଆଉ ଆକ୍ରୋଶ ଗଢ଼ି ଉଠିଥିଲା ତା' ଭିତରେ । ସେଠି ସେ ଲୁଣ୍ଠିତା ହେଲା, ଅନ୍ତଃସତ୍ତ୍ୱା ହେଲା । ପ୍ରେମର ଅନ୍ୱେଷଣରେ ରକ୍ତାକ୍ତ ହୋଇସାରିଥିଲା ମାଳିନୀ, ନଦୀ ସାଗରଲଗ୍ନା ହେଲାପରି, ତା' ଜୀବନର ପ୍ରଥମ ପୂର୍ଣ୍ଣତା ପାଇଲା ମନୋଜ ପାଖରେ । ୧୯୬୨ ମସିହାରେ, ଏକ

ଛୋଟ ଗ୍ରାମୀଣ ସହରର ପରିବେଶ ଭିତରେ, ଯେମିତି କଟକ, ମନୋଜ ଏକ ଅବିବାହିତା ମା'କୁ ତା'ର ସନ୍ତାନ ସମେତ୍ ସ୍ୱୀକାର କରି, ଯେଉଁ ପୁରୁଷ ପଣର ପରିଚୟ ଦେଇଚି, ସେଥିରେ ଆମର ସ୍ୱାଧୀନତା ଆନ୍ଦୋଳନ ବେଳୁ ସୃଷ୍ଟି ହୋଇଥିବା, ସାମାଜିକ ମନୋଭାବର ନୂତନତ୍ୱ ସୁସ୍ପଷ୍ଟ । ସେଇଥିପାଇଁ ମୁଗ୍ଧା ମାଳିନୀ, ମନୋଜ ବିଷୟରେ କହୁଛି ଯେ ସେ ଖୋଳପା ନୁହେଁ, ଏକ ପରିପୂର୍ଣ୍ଣ ମଣିଷ ।

୧୯୬୨ରେ ଆସନ୍ତାକାଲିର ଏ ଧାରାବାହିକର ଅଗଣିତ ପାଠକଙ୍କ ପରି, ମୁଁ ମଧ୍ୟ ମାଳିନୀକୁ କୌଣସି ନା କୌଣସି ବାଟେ ପାଖରେ ପାଇବାକୁ ଚାହୁଁଥିଲି । ସାଁବାଳୁଆର ଖୋସାରୁ ପ୍ରଜାପତି ବାହାରିଲାପରି, ସ୍କୁଲ ଝିଅ କିଶୋରୀ ମାଳିନୀର କଲେଜଛାତ୍ରୀ 'ପ୍ରେମର ଅନ୍ୱେଷଣରେ ତରୁଣୀ'କୁ ପରିବର୍ତ୍ତନ, ବିଶେଷକରି ତା' ଦେହ ଓ ମନର - ତା' ଅଭିଜ୍ଞତାର ନୁହଁ - ମତେ ଆଚ୍ଛନ୍ନ କରି ରଖିଥିଲା । ସେଇଥିପାଇଁ ହୁଏତ, ମୁଁ ଅବନୀ ବାବୁଙ୍କ ଦେଖିଲା ମାତ୍ରେ ପଚାରୁଥିଲି, ଆସନ୍ତା ସଂଖ୍ୟାରେ କ'ଣ ହେବ ? କିନ୍ତୁ କେଜାଣି କାହିଁକି ମୁଁ ତା'ର ଅଭିଜ୍ଞତାକୁ ବୋଧହୁଏ ସହ୍ୟ କରିପାରୁନଥିଲି । ମତେ ରମେଶର କୌଣସି ନା କୌଣସି ଆଳରେ ମାଳିନୀ ପାଖରେ ପହଞ୍ଚିଯିବାଟା ଆଦୌ ଭଲ ଲାଗୁନଥିଲା । ତା'ର ସିଗାରେଟ୍ ଖାଇ ଧୂଆଁର କୁଣ୍ଡଳୀ ସୃଷ୍ଟି କରିବା ଅଭ୍ୟାସଟା, ତା'ର ବୟସର କଞ୍ଚାପଣକୁ, ଆହୁରି ପ୍ରମାଣିତ କରୁଥିଲା । ମାଳିନୀପରି, ଧୀରେନ୍ ପ୍ରତି ମୋର ଆସ୍ଥା ଠିକ୍ ଜମି ଆସୁଥିଲା ବେଳେ, ଧୀରେନ୍ ଧୋକା ଦେଲା । ଧୀରେନ୍ ଧୋକା ଦେଲା, କିନ୍ତୁ ସହାନୁଭୂତି ବଦଳରେ ମୋର ରାଗ ହେଲା ମାଳିନୀ ଉପରେ । ଆଉ ଜଗନ୍ନାଥର ନାଁ ଶୁଣିଲା ମାତ୍ରେ ମୁଁ ଜାଣିଥିଲି ମାଳିନୀ ଭୟଙ୍କର ଭୁଲ କରିବ । ଆଉ ମୁଁ ହାଁ ହାଁ କହୁ କହୁ ମାଳିନୀ ଗଳିପଡିଲା କୂଅ ଭିତରେ । ମନୋଜର ଆଦର୍ଶବାଦ, ମନୋଜର ସାଦାପଣ, ଆଉ ଲେଖକ ତ କହିନେଇଛନ୍ତି ଯେ ତା' ଦେହରେ ତାରୁଣ୍ୟର ଉତ୍ତାପ ନଥିଲା, ମତେ ମନୋଜ ପ୍ରତି ମୋଟେ ଆକୃଷ୍ଟ କରି ପାରିଲା ନାହିଁ, ସେ ମାଳିନୀର 'ମୋକ୍ଷ' ହୋଇଥାଉ ପଛକେ ମାଳିନୀ ପାଇଁ ମୁଁ ଯେମିତି ପୁରୁଷ ବନ୍ଧୁ ଖୋଜୁଥିଲି । ଏ ଚାରିଜଣଙ୍କ ଭିତରେ ତା'ର ନମୁନା ମୁଁ ପାଇଲିନାହିଁ । କାହିଁକି ?

ଅବନୀବାବୁ ତାଙ୍କ ବହିରେ ମାଳିନୀର ସାନିଧ୍ୟ ପାଇବା ପାଇଁ ..... ଫର୍ମୁଲାର ବ୍ୟବହାର କରିଛନ୍ତି । ମାଳିନୀର ଦୁର୍ବଳତାର ମୁହୂର୍ତ୍ତ ହେଲା ଆସନ୍ନ ସନ୍ଧ୍ୟା, ଈଷତ୍ ଅନ୍ଧକାର ଘର, ତା' ଭିତରେ ମାଳିନୀ ଆଉ ତା'ର ବନ୍ଧୁ । ମାଳିନୀର ପ୍ରେମର ଅୟମାରମ୍ଭରେ ଏମିତି ସନ୍ଧ୍ୟା ସବୁବେଳେ ଆସେ । ଲେଖକ ଲେଖିଛନ୍ତି "ଈଷତ୍ ଅନ୍ଧକାର ଘର ଭିତରେ ଆସନ୍ନ ସନ୍ଧ୍ୟାରେ, ଜଣେ ଯୁବକ ଓ କିଶୋରୀ, କିଶୋରୀ ନୁହେଁ ତ

ଯୁବତୀ ସମ୍ପର୍କ ହୀନ ଭାବରେ ମଧ୍ୟ, ଏକତ୍ର ରହିବାର ଇଚ୍ଛାଛଡା ଆଉ କ'ଣ ପ୍ରତ୍ୟାଶା କରିପାରନ୍ତି" ଏତିକି ପଢ଼ିଲେ ସେତେବେଳେ ମୋର ଦେହର ଉତ୍ତାପ ବଢ଼ି ଯାଉଥିଲା । ବର୍ତ୍ତମାନ ମୁଁ ବୁଝିପାରୁଛି ଯେ ମୁଁ କାହିଁକି ମାଳିନୀର ସେ ଗରିଜଣ ପ୍ରେମିକ ଭିତରୁ କାହାକୁ ବି ସହ୍ୟ କରିପାରୁନଥିଲି । ତା'ର କାରଣ ମୁଁ ମାଳିନୀକୁ ନିଜେ ଭଲ ପାଉଥିଲି । ଆଉ ପଚଶ ବର୍ଷ ପରେ ବି ତାକୁ ଭୁଲିନି । ଅନ୍ୟ ଜଣେ ଲେଖକ ଲେଖିଥିବା ବହି ବିଷୟରେ, ମୋର କି କାହାର ମଧ୍ୟ ଏତେ ବେଶି ଆତ୍ମକୈନ୍ଦ୍ରିକ ହୋଇ ପଡିବା ଭଲ ନୁହେଁ । ବହିର ଆଲୋଚନା ବେଳେ, ବହିରେ ଯାହା ଅଛି ତାହା ହିଁ କେବଳ ଆଲୋଚନାର ବିଷୟବସ୍ତୁ ହୋଇପାରିବ । ମୋର ବ୍ୟକ୍ତିଗତ ଅସୂୟାଯୋଗୁଁ, ମୁଁ ଯଦି ମାଳିନୀର କୌଣସି ପୁରୁଷବନ୍ଧୁକୁ ବରଦାସ୍ତ କରିପାରିଲିନି, କେବଳ ସେତିକି ଯଥେଷ୍ଟ କାରଣ ନୁହେଁ ଯେ ଅବନୀବାବୁ ତାଙ୍କର ଗରିଜଣ ନାୟକ, ଉପନାୟକଙ୍କ ଚରିତ୍ରର ପୁନର୍ଲିଖନ କରିବେ । ଅସଲକଥା, ଧାରାବାହିକଟି ପଢୁପଢୁ ମୋର ଭୂମିକା ହୋଇଯାଇଥିଲା ଗୋଟିଏ ଦେଖଣାହାରୀର । ମାଳିନୀର ଏ ସଂଘାତପୂର୍ଣ୍ଣ ଅନ୍ୱେଷଣ, ହାତ ପାପୁଲିର ଆଙ୍ଗୁଠି କଡଦେଇ ଗଡିଯାଉଥିବା ପ୍ରେମକୁ ମୁଠାକରି ଧରିବାର ନିଷ୍ଫଳ ପ୍ରଚେଷ୍ଟା, ଆଉ ନିଜ ଜୀବନକୁ ପରିଚିତ ସୀମାରେଖାର ବାହାରକୁ ନେଇ ବଞ୍ଚିବାର ଢଙ୍ଗ ମତେ ମୁଗ୍ଧ କରିଥିଲା । ନକରିବ କାହିଁକି ? ଆମେ ଆଗରୁ ଓଡିଆ ନଭେଲ ବୋଲି ଯାହା ପଢ଼ିଥିଲୁ, ଯଥା ଚନ୍ଦ୍ରମଣି ଦାସଙ୍କଠୁ ଆରମ୍ଭ କରି ବିଭୂତି ପଟ୍ଟନାୟକଙ୍କ ପର୍ଯ୍ୟନ୍ତ, କେଉଁଥିରେ ବି ମାଳିନୀ ପରି ଝିଅର ସାକ୍ଷାତ ଘଟିନଥିଲା । ଧରନ୍ତୁ ଉପେନ୍ଦ୍ର କିଶୋର ଦାସଙ୍କର 'ମଲାଜହ୍ନ' । ପ୍ରାୟ ସେତିକି ବେଳକୁ ଫିଲ୍ମ ହୋଇଥିଲା । 'ମଲାଜହ୍ନ'ର ସତୀ, ତା'ର ନାଥନନାଙ୍କ ସହିତ ଧବଳେଶ୍ୱରଙ୍କ ମେଳାରେ, ଝଡବର୍ଷାରେ ଡଙ୍ଗା ନପାଇ, ଗୋଟିଏ ରାତି ରହିଯାଇଥିଲା ବୋଲି, ଆତ୍ମହତ୍ୟାର ଦାଢ଼ରେ ଆସି ଛିଡା ହୋଇଛି । ମାଳିନୀ କିନ୍ତୁ ତା'ର ଅବିବାହିତ ମାତୃତ୍ୱକୁ ଘୃଣା କରିଛି ସତ, କିନ୍ତୁ ବଞ୍ଚିବାର ବାଟ ଖୋଜିଛି ।

କେବଳ ବଞ୍ଚିନି, ତା'ର ଅନ୍ୱେଷଣର ଶେଷରେ ମାଳିନୀର ପୂର୍ବଜନ୍ମ ହୋଇଛି । ଏଇଥି ପାଇଁ ନୁହେଁ ଯେ ସେ ତା'ର ଦୁଃସାହାସିକ ଅନ୍ୱେଷଣର ଶୀକାର ହୋଇଚି । ବରଂଚ ଏଇଥିପାଇଁ ଯେ ସେ ଅନ୍ୱେଷଣର ଘୂର୍ଣ୍ଣିପାକରୁ ବର୍ତ୍ତି ଯାଇଛି । ମାଳିନୀର ଗଳ୍ପ ତା'ର ଅନ୍ତଃସାରରେ ଏକ ଝିଅର ବାଜେ ବା କେହି ଜଣ ଖରାପ ପିଲାଙ୍କ ସାଙ୍ଗରେ ପ୍ରେମରେ ପଡିବାର ଗଳ୍ପ । The story of bad boy lovers – ଯେମିତି ରମେଶ, ଧୀରେନ୍, ଜଗନ୍ନାଥ, ମନୋଜ does not count. ସେ କେବଳ ଲେଖକଙ୍କର କୌଶଳରେ

ତିଆରି ଏକ ଚରିତ୍ର, a writers contrivance to complete a story. ତା'ର ପାରିବାରିକ ପରିସ୍ଥିତି ଓ ନିଜ ପ୍ରକୃତି ଯୋଗୁଁ ମାଳିନୀ ଆରମ୍ଭରୁ ସ୍ୱାଧୀନଚେତା ଓ ଦୃଢ଼ । ଭଲପାଇବାର ଇତିହାସରେ ଏଇ ରକମର ଝିଅ ସବୁବେଳେ କିଛି ଖରାପ ଲୋକଙ୍କ ପ୍ରେମରେ ପଡନ୍ତି । ଏଇ ପ୍ରେମର ଅଳୀକତା, ସ୍ୱାର୍ଥପରତା ତାଙ୍କ ଭିତରର ବିଦ୍ରୋହକୁ ଚକ୍ଷୁଦାନ ଦିଏ । ବାଜେ ପ୍ରେମିକର ଦାୟରେ ମାଳିନୀର ହୃଦୟଭଙ୍ଗ ହେଲା ସିନା, କିନ୍ତୁ ତା'ର ବୁଝିପାରିବାର ବିଚାର କରିବାର ମସ୍ତିଷ୍କକୁ ବ୍ୟବହାର କରିବାର, ତୃତୀୟ ନୟନ ଖୋଲିଗଲା ।

"ପ୍ରେମର ଅନ୍ୱେଷଣରେ ଗୋଟିଏ ତରୁଣୀ" ପରି ବହିରେ କେବଳ ଏଇ ଆକର୍ଷଣ ଶୀର୍ଷକ ବ୍ୟତୀତ, ଦେହଜ ଅନୁଭୂତିର କୌଣସି ଉତ୍ତେଜକ ଦୃଷ୍ଟାନ୍ତ ନାହିଁ । ବରଂ ଅବନୀବାବୁଙ୍କର ସେତେବେଳର ଲେଖା, ସେଇ ଆସନ୍ତାକାଲିରେ ପ୍ରକାଶିତ, "ଧକ୍କା" ବୋଲି ଗୋଟିଏ ଗଳ୍ପ, ଏକ ସାମାନ୍ୟ ଘଟଣାରୁ ପ୍ରଚଣ୍ଡ ଦୈହିକ ଉତ୍ତେଜନା ଦେଇପାରେ । ଆମର ଆଲୋଚ୍ୟ ବହି କିନ୍ତୁ ତା'ର ଦୁଇ ତୃତୀୟାଂଶ କହିଲେ ଅତ୍ୟୁକ୍ତି ହେବାନାହିଁ । ନାୟିକା ମାଳିନୀର ମାନସିକ ବିବର୍ତ୍ତନର ବର୍ଣ୍ଣନାରେ ଭରା । ୧୯୬୧ ମସିହାରେ, ମାତ୍ର କଲେଜ ପଢୁଆ ମାଳିନୀ, ପ୍ରେମ ଆଉ ସମ୍ପର୍କ ବିଷୟରେ ଏତେ କଥା ଭାବିଚି ଯେ ତାକୁ ଧାଡି ଧାଡି କରି ପଢ଼ିବା ମତେ ବେଳେବେଳେ ବିରକ୍ତିକର ଲାଗେ । ମୁଁ ବରଂ ଖୋଜେ ସେ ଆସନ୍ନ ସନ୍ଧ୍ୟାରେ ଅନ୍ଧକାରରେ ବସି ପ୍ରାୟ ଅପରିଚିତ ପୁରୁଷ ପାଖରେ ମାଳିନୀର ପଶାଖେଳ ଆଉ ପ୍ରତ୍ୟୁତ୍ପନ୍ନମତିତା । କିନ୍ତୁ ସେ ସବୁ ବେଶିନାହିଁ । ଅଛି ବରଂ ମାଳିନୀର ଈଶ୍ୱରଙ୍କ ଭୂମିକା ବିଷୟରେ ଏକ ଅଭୂତପୂର୍ବ ବିବେଚନା, ଯାହା ମୁଁ ଆଉ କେଉଁଠି ପଢ଼ିନି । ମାଳିନୀ ଭାବେ, ମଣିଷ ଭଗବାନଙ୍କୁ ମୂକ ଓ ବଧିର କରି ତିଆରି କରିଛି ଏଇଥିପାଇଁ ଯେ ସେ ମଣିଷ ଜୀବନର ସବୁଠୁ ଗୋପନତମ ଅଭିବ୍ୟକ୍ତିକୁ ଶୁଣି ସୁଦ୍ଧା ଆଉ କାହା ଆଗରେ ପ୍ରକାଶ କରିପାରିବେନି, ଗୁମର ଖୋଲି ପାରିବନି ନୀରବ ରହିବା ପରି ମଣିଷଟିଏ ସିନା ମିଳିବେ ନାହିଁ ସଂସାରରେ, କିନ୍ତୁ ଜଗନ୍ନାଥ ମିଳିବେ । ଈଶ୍ୱର ସୃଷ୍ଟିର ଏଭଳି କାରଣ, ମୁଁ ପ୍ରଥମେ ମାଳିନୀ ମୁହଁରୁ ଶୁଣିଛି ।

କୌଣସି ବହି ଲେଖା ହେଲାବେଳେ, ସମୟର ଯେଉଁ ପରିପ୍ରେକ୍ଷୀ ଥାଏ, ତା'ର ଅବଦାନ ଅନସ୍ୱୀକାର୍ଯ୍ୟ । ୧୯୬୨ ମସିହାରେ, ଆମେରିକାର ସୁପ୍ରିମକୋର୍ଟ ଅବଶେଷରେ ହେନେରୀ ମିଲ୍‌ରଙ୍କର ୧୯୩୪ ମସିହା ନଭେଲ, Tropic of Cancerକୁ ଯୁକ୍ତରାଷ୍ଟ୍ରରେ ପ୍ରକାଶନ ପାଇଁ ଅନୁମୋଦନ ଦେଲା । ମୁକ୍ତ ଚିନ୍ତନର ପରିସର ହଠାତ୍ ବ୍ୟାପକ ହୋଇଗଲା । ପ୍ରତ୍ୟେକ ସମୟ ଏକ ବିଶିଷ୍ଟ ମାନସିକତାର ପରିଚାୟକ । ଅବନୀବାବୁଙ୍କୁ ଓଡିଆ ହେନେରୀ ମିଲର କହିବା ତ ସତ୍ୟର ଅପଳାପ ହେବ । କିନ୍ତୁ

ମୁକ୍ତ ଚିନ୍ତନର ମାନସିକତା ଅବନୀବାବୁଙ୍କ ବିଦ୍ରୋହୀ ବ୍ୟକ୍ତିତ୍ୱରେ ଥିଲା । ତେଣୁ ସାରା ପୃଥିବୀରେ Tropic of Cancer ର ନ୍ୟାୟିକ ଅନୁମୋଦନ ପରେ, ଯେମିତି ସାହିତ୍ୟ ଅଧିକରୁ ଅଧିକ ମଣିଷ ଶୋଇବା ଘର ବା ବେଡ୍ ରୁମ୍ ଭିତରକୁ ପଶିବାକୁ ଲାଗିଲା । ଖୁପିଆ କ୍ୟାମେରା ନୁହେଁ, ପରିଷ୍କାର ସାମ୍ନାସାମ୍ନି ପରି, ଯେମିତି ଜନ୍ ଅପ୍‌ଡାଇକ୍‌ଙ୍କର Couples, ସେମିତି ସଜ୍ଞାନରେ ନହେଉ ପଛକେ, କେବଳ ସମୟର ପବନରେ ପରିପୁଷ୍ଟ ହୋଇ ଏକ ଅଧାସହରୀ, ଅଧାଗ୍ରାମୀଣ ମାଳିନୀକୁ ହଠାତ୍ ବିମୁକ୍ତ କରି ଦେଇଛନ୍ତି ଶ୍ରୀ ଅବନୀ କୁମାର ବରାଳ । ଓଡିଆରେ ସେ ସମୟରେ ଏକ ଭିନ୍ନ ସ୍ୱାଦର ଅଗ୍ରଗାମୀ ନଭେଲ ରଚନା କରିବାର ଶ୍ରେୟ ତାଙ୍କର ।"

ଅବନୀ ବରାଳଙ୍କ ଅନ୍ୟ ପ୍ରଭାବଶାଳୀ ଉପନ୍ୟାସ 'ମାୟାବିନୀ ମଞ୍ଚ' ଏକ ବଳିଷ୍ଠ କାହାଣୀର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଓଡ଼ିଆ ସାହିତ୍ୟରେ ଅଧିକାଂଶ ଉପନ୍ୟାସର ନାୟକ-ନାୟିକା ମଧ୍ୟବିତ୍ତ ଶିକ୍ଷିତ ଗୋଷ୍ଠୀର ହୋଇଥିବାବେଳେ 'ମାୟାବିନୀ ମଞ୍ଚ'ରେ ଘଟିଛି ଏହାର ବ୍ୟତିକ୍ରମ । ରଙ୍ଗମଞ୍ଚରେ ଯେଉଁ ନାୟିକାମାନେ ରଙ୍ଗବୋଳି ହୋଇ ଅସୁମାରୀ ଦର୍ଶକମାନଙ୍କୁ ରାତି ରାତି ଆନନ୍ଦ ଦାନ କରନ୍ତି, ନିଜର ରୂପ ଓ ଯୌବନକୁ ତିଳତିଳ କରି ଉଜାଡ଼ି ଦିଅନ୍ତି, ସେମାନେ ହଠାତ୍ ଅଲୋଡ଼ା ହୋଇ ଯାଆନ୍ତି ଯୌବନ ଖସିଗଲେ । ସେମାନଙ୍କର ମଧ ସ୍ୱପ୍ନ ଥିଲା ସଂସାର କରିବେ । ନିରାପଦ ଜୀବନ ଅତିବାହିତ କରିବେ । ତାହା ସମ୍ଭବ ହୁଏ ନାହିଁ । ସେମାନେ ଦେହ ଓ ରୂପକୁ ପଣ୍ୟ କରି ଜୀବନ ନିର୍ବାହ କରନ୍ତି । ବହୁପୁରୁଷଙ୍କର ଶଯ୍ୟା ସଙ୍ଗିନୀ ହୁଅନ୍ତି । ସନ୍ତାନବତୀ ହୁଅନ୍ତି, ଯାହାଙ୍କର ପିତୃ ପରିଚୟ ନଥାଏ । ସେମାନଙ୍କର ସମାଜରେ ନା ଥାଏ ସମ୍ମାନ, ନଥାଏ ସାମାଜିକ ସ୍ୱୀକୃତି ।

ଜୀବନ ଯୁଦ୍ଧରେ କ୍ଷତବିକ୍ଷତ ଦୁଇଟି ଭଉଣୀ ସୁନୀଲା ଓ ଅନୀଲାଙ୍କର ଦୀର୍ଣ୍ଣବିଦୀର୍ଣ୍ଣ ହୃଦୟର କରୁଣ ଲୋତକାପ୍ଳୁତ କାହାଣୀ ହେଉଛି ଉପନ୍ୟାସ । ଚରିତ୍ରର ବିକାଶ କ୍ରମରେ ସେମାନଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଉପନ୍ୟାସକୁ କରିଛି ଅତ୍ୟନ୍ତ ହୃଦୟଗ୍ରାହୀ । ରଙ୍ଗମଞ୍ଚର ନାୟିକା ସେମାନେ । ସମସ୍ତଙ୍କୁ ଆନନ୍ଦ ପରିବେଷଣ କରିବା ତାଙ୍କର ଧର୍ମ । ମାତ୍ର ତାଙ୍କର ମନ ଗହୀରରେ ଯେଉଁ ଅତୃପ୍ତ ଅଗ୍ନିଦାହ ଅବିରତ ଯନ୍ତ୍ରଣା ଦେଉଥାଏ ତାର ଖବର କେହି ରଖନ୍ତି ନାହିଁ । ସମସ୍ତେ କେବଳ ଛଳନାରେ ହିଁ ବଞ୍ଚିବାକୁ ଶିଖନ୍ତି । ସେଠାରେ ଲାଜ ନାହିଁ । ଲାଜ ବି ଏଠି ମିଛ, ରଙ୍ଗମଞ୍ଚର ଅଭିନୟ ଭଳି । ମାୟାବିନୀ ମଞ୍ଚରେ ଯାଦୁକରୀ ଆଲୋକ ନିର୍ବାପିତ ହେଲା ପରେ କୌଣସି ସ୍ୱାର୍ଥପର ଦେହ ଲୋଲୁପ ନାୟକ ଏମାନଙ୍କର ଅନ୍ତର୍ଦାହ ବୁଝିବାକୁ ଚିନ୍ତା କରନ୍ତି ନାହିଁ । ଲେଖକଙ୍କ ଭାଷାରେ,

"ଦେହ ସର୍ବସ୍ୱ ପ୍ରାଣୀ ଏମାନେ - ମନଟାକୁ ଫିଙ୍ଗି ଦେଇଛନ୍ତି କାହିଁ କେଉଁ କୋଣରେ କେଉଁଠି, ଏ ମଞ୍ଚ ଉପରେ ପାଦ ଦେଲା ଦିନୁ ।" ଅଭିନୟ ଆଳରେ ଅନେକଙ୍କର ପ୍ରଣୟିନୀ ହେବାର ସୁଯୋଗ ମିଳେ । ତାହା କ୍ଷଣିକ । କିନ୍ତୁ ମନ କାନ୍ଦୁଥାଏ ଜଣେ କାହାର ପ୍ରକୃତ ଜୀବନସାଥୀ ହୋଇ ଜୀବନକୁ ଆଦରି ନେବା ପାଇଁ । ତାହା କ'ଣ ସମ୍ଭବ ? ଦୁଇଟି ଯୁବତୀ ଝିଅଙ୍କୁ ଅଭିନୟ ବଜାରରେ ପଣ୍ୟ କରି ସ୍ୱାର୍ଥପର ବାପା, ମା', ଭାଇ ଜୀବନ ଅତିବାହିତ କରନ୍ତି । ସେମାନଙ୍କର ଭବିଷ୍ୟତ କଥା କେହି କ୍ଷଣକ ପାଇଁ ଚିନ୍ତା କରନ୍ତି ନାହିଁ । ଏହି ଉପନ୍ୟାସରେ ଆଉ ଏକ ଉଲ୍ଲେଖନୀୟ ଚରିତ୍ର 'ବୁଲା' । ସେ ପରିଚୟ ହୀନ, ଅଜ୍ଞାତ କୁଳଶୀଳ । ତାଙ୍କୁ ସମସ୍ତେ ହେୟ ମନେ କରନ୍ତି । ବୁଲା ହସି ହସି ସବୁ ସହ୍ୟ କରେ । ସେ କାନ୍ଦି ଜାଣେନା । ତାର ଆତ୍ମାଭିମାନ ନାହିଁ । କେବଳ ହସୁଥାଏ । ଉପରେ ପଡ଼ି ଅନ୍ୟକୁ ସାହାଯ୍ୟ କରେ । ବୁଲାର ମନ କଳୁଷିତ ନୁହେଁ ।

ମୋଟ ଉପରେ ରଙ୍ଗର ଚଷମା ପିନ୍ଧି ଦୁନିଆକୁ ଚାହିଁଲେ ରଙ୍ଗ ଦେଖାଯାଏ ସାରା ଦୁନିଆଁଟା । ସେମିତି ସବୁ ଭଳିକି ଭଳି ରଙ୍ଗ ବେରଙ୍ଗ ଦିଶୁଥିଲା ଆଖିକି -

ସେ ରଙ୍ଗ କିନ୍ତୁ କେତେଦିନ ? ମଣିଷ ଜୀବନରେ ଏବେ ଏ ବସନ୍ତ କେଇଟା ଦିନ ପାଇଁ ଆସେ ? ଆସୁ ଆସୁ ତ ହଜିଯାଏ । ପୁଣି, ଝିଅ ପାଇଁ ଆମୋଦ ସରିଯାଏ । ରାତିର ତାତି, ରଙ୍ଗ, ଆମୋଦ, ଖାଲି କ'ଣ ଏତିକି ଆମର ଦରକାର ? ଜୀବନଟା କ'ଣ ଆମର ଖାଲି ଛଳନା ? ଅଭିନୟ ?

-- "ମିଛ ମଣିବୁ ଲୋ" -- ଜୀବନରେ ମୁଁ ସବୁ ପାଇଛି -- କେତେ ମଉଜ, ମଜଲିସ୍, କେତେ ଛାତି ଥରା ଦୀର୍ଘଶ୍ୱାସ -- ଜହ୍ନରାତି-- 'ତୁ ମୋର, ମୁଁ ତୋର' ବଚନିକା -- ସବୁ ଶୁଣିଚି" --

"କିନ୍ତୁ ମନ ମୋର ଡହଳ ବିକଳ ହୋଇ ଲୋଡୁଥିଲା ଗୋଟିଏ ନିରାପଦ ଆଶ୍ରୟ । କାନ୍ଦୁଥିଲା ଭିତରେ ଭିତରେ । ଗୋଟିଏ ଆଶ୍ରୟ -- ଯୋଉଠି ମୁହଁ ଗୁଞ୍ଜି ମୁଁ ଜୀବନଟା ପାଇଁ ଭରସା ପାଇବି - ନିର୍ଭରତା ପାଇବି ।"

ଉପନ୍ୟାସର ନାୟିକା ସୁନୀଲା ନିଜର ପ୍ରିୟ ସଖୀଠାରୁ ଯାହା ଶୁଣୁଥିଲା, ଏ ମଧ୍ୟ ଥିଲା ତାଙ୍କର ମନର କଥା । ଅବସ୍ଥା ଚକ୍ରରେ ଏପରି ଏକ ସନ୍ଧ୍ୟାରେ ସେ ନିଷ୍ପତ୍ତି କଲା - ପିତା, ମାତା, ଭାଇ, ଭଉଣୀ, ଘରଦ୍ୱାର ସମସ୍ତଙ୍କୁ ପର କରି ରାତ୍ରିର ଘନ ଅନ୍ଧକାରରେ ଚାଲି ଚାଲି ବାହାରି ଗଲା । ବୁଲା ଭାଇ କୋଳକୁ ସବୁଦିନ ପାଇଁ

ଆଉଜିଯିବାକୁ । ଦୁଇଟି ଭୋକିଲା ଆତ୍ମା ଏକ ହୋଇଗଲା । ଜୀବନର ଅସରନ୍ତି ଅବଶୋଷ ମିଳେଇଗଲା ମୁହୂର୍ତ୍ତକ ମଧ୍ୟରେ । "ମାୟାବିନୀ ମଞ୍ଚ"ର ଯାଦୁକାରୀ ପ୍ରଭାବକୁ ପାଠକ ସହଜରେ ବିସ୍ମୃତ ହୁଏ ନାହିଁ ।

ଓଡ଼ିଆ ସାହିତ୍ୟରେ ଯୁଗାନ୍ତକାରୀ ଭୂମିକା ଗ୍ରହଣ କରିଥିବା ଅବନୀ ଅନେକ ଦିନଧରି ନବଯୁଗ ସାହିତ୍ୟ ସଂସଦ, ପ୍ରଗତିଶୀଳ ଲେଖକ ସଂଘ ଓ ସାପ୍ତାହିକ 'ନୂଆ ଦୁନିଆ'ର ପ୍ରକାଶନ ସହ ସମ୍ପୃକ୍ତ ଥିଲେ । ଓଡ଼ିଆ ସାହିତ୍ୟରେ ଯେଉଁ କେତେଜଣ ପ୍ରାବନ୍ଧିକ ମାର୍କ୍ସବାଦୀ ଦର୍ଶନ ଓ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ରାଶି ରାଶି ଉଚ୍ଚକୋଟିର ପ୍ରବନ୍ଧ ଲେଖିଚାଲିଛନ୍ତି, ସେମାନଙ୍କ ମଧ୍ୟରେ ସେ ଅଗ୍ରଗଣ୍ୟ । ରାଜ୍ୟ ତଥା ଦେଶର ଶିକ୍ଷା ବ୍ୟବସ୍ଥାରେ ମୁଣ୍ଡ ଟେକିଥିବା ତ୍ରୁଟିବିଚ୍ୟୁତି ଓ ଅବ୍ୟବସ୍ଥା, ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ବଢ଼ି ଚାଲିଥିବା ବୈଷମ୍ୟ ଓ ଶୋଷଣ, ନବ୍ୟ ଉପନିବେଶବାଦ ଓ ସାମ୍ରାଜ୍ୟବାଦର ଭୟାନକ ବିପଦ ଉପରେ ତାଙ୍କର ପ୍ରବନ୍ଧଗୁଡ଼ିକରେ ମୁଖ୍ୟତଃ ସ୍ୱର ଉତ୍ତୋଳନ କରାଯାଇଛି । ଏସବୁରେ ତାଙ୍କର ଚିନ୍ତାଧାରା ଖୁବ୍ ଶାଣିତ ଓ ମତାମତ ସ୍ପଷ୍ଟ । ଜଗତୀକରଣ ରାକ୍ଷସର ଅସଲ ମୁଖା ଖୋଲିଦେବା ପାଇଁ ତାଙ୍କର ଲେଖନୀ ସଦା ତତ୍ପର ଓ ଚଳଚଞ୍ଚଳ । ଅବନୀଙ୍କ ପ୍ରବନ୍ଧଗୁଡ଼ିକରେ ନୂତନତ୍ୱର ଝଲକ ଦେଖିବାକୁ ମିଳେ । ତାଙ୍କର ଅନେକ ପ୍ରବନ୍ଧ ପୁସ୍ତକ ଆକାରରେ ପ୍ରକାଶିତ ହୋଇସାରିଥିବା ବେଳେ ସମ୍ବାଦପତ୍ର ଗୁଡ଼ିକରେ ସ୍ଥାନିତ ଅସଂଖ୍ୟ ପ୍ରବନ୍ଧ ଏବେ ବି ପୁସ୍ତକର ରୂପ ନେଇନାହିଁ । ପ୍ରକାଶିତ ପ୍ରବନ୍ଧ ସଂକଳନଗୁଡ଼ିକ ମଧ୍ୟରେ ମୁଖ୍ୟ ଭାବରେ ରହିଛି 'ଶିକ୍ଷାର କେତେକ ବ୍ୟଥା', 'ଶିକ୍ଷାର ଅନେକ ସମସ୍ୟା', 'ଶିକ୍ଷାର ସ୍ଥିତି ଓ ଦୁଃସ୍ଥିତି', 'ଶିକ୍ଷା ବଞ୍ଚାଅ : ଓଡ଼ିଶା ବଞ୍ଚାଅ', 'ଶିକ୍ଷାନୀତି-୧୯୮୬', 'ସତ କହିବାକୁ କିଆଁ ଡରିବି', 'ଶିକ୍ଷା ବ୍ୟବସ୍ଥା ଠିକ୍ ଚାଲିଛି ତ ?' ଭଳି ଶିକ୍ଷା ସମସ୍ୟା ଉପରେ ଆଧାରିତ ପୁସ୍ତକାବଳୀ ।

ଶିକ୍ଷକ ଆନ୍ଦୋଳନରେ ଜଣେ ଆଗ ଧାଡ଼ିର ପ୍ରବକ୍ତା ଓ ନେତା ହୋଇଥିବାରୁ ଆମ ଦେଶର ଶିକ୍ଷା ବ୍ୟବସ୍ଥାର ନାନା ସମସ୍ୟା ବିଷୟରେ ବର୍ଷ ପରେ ବର୍ଷ ସେ କେବଳ ଭାଷଣ ଆଲୋଚନାରେ ସୀମିତ ନରଖି ଏକାଧିକ ପୁସ୍ତକ ପ୍ରଣୟନ କରିଛନ୍ତି । ଶିକ୍ଷାନୀତି ବିଷୟରେ ଏକାଧିକ ଗ୍ରନ୍ଥ ଲେଖିବାରେ ଲେଖକଙ୍କ ମୁଖ୍ୟ ଆଭିମୁଖ୍ୟ ହେଲା ଶିକ୍ଷକ ସମାଜକୁ ତଥା ସମଗ୍ର ସମାଜକୁ ସଚେତନ ଓ ଜାଗ୍ରତ କରିବା ।

ଅବନୀ କୁମାରଙ୍କର ଉଚ୍ଚକୋଟୀର ପ୍ରବନ୍ଧ ସଂକଳନ "ସତ କହିବାକୁ କିଆଁ ଡରିବି ?" ଅଗଷ୍ଟ - ୨୦୦୮ରେ ପ୍ରକାଶିତ ହୋଇଥିଲା । ଏଥିରେ ପଞ୍ଚତିରିଶଟି ପ୍ରବନ୍ଧ ସଂକଳିତ । ପ୍ରତ୍ୟେକଟି ଆଲୋଚନା ହେଉଛି ସାମ୍ପ୍ରତିକ ଘଟଣାବଳୀର ଚମତ୍କାର

ବିଶ୍ଲେଷଣ ସମ୍ପୂର୍ଣ୍ଣ ସମ୍ବାଦଧର୍ମୀ ଶୈଳୀରେ । ଏହି ଆଲୋଚନାଗୁଡ଼ିକ ଆମ ସମୟର କେତୋଟି ପ୍ରଭାବଶାଳୀ ସମ୍ବାଦପତ୍ରରେ ପ୍ରଚାରିତ ହୋଇ ପାଠକୀୟ ଦୃଷ୍ଟି ଆକର୍ଷଣ କରିଥିଲା । ବର୍ତ୍ତମାନ ପୁସ୍ତକ ରୂପରେ ଏହା ପାଠକୀୟ ଶ୍ରଦ୍ଧାରୁ ବଞ୍ଚିତ ହେବନାହିଁ ବୋଲି ଭରସା କରିବା ଅସମୀଚୀନ ହେବନାହିଁ ।

ଏଠାରେ ଏହି ସଂକଳନ ସମ୍ପର୍କରେ ଲେଖକଙ୍କର ମନ୍ତବ୍ୟ ବିଶେଷ ପ୍ରଣିଧାନ ଯୋଗ୍ୟ । ତାଙ୍କ ଭାଷାରେ - "ଏ ଲେଖାଗୁଡ଼ିକର ବକ୍ତବ୍ୟରେ କୌଣସି କାଳ୍ପନିକତା ବା ଆଧୁନିକତା ନାହିଁ । ନିତି ନିତି ଏପରି ଘଟଣାମାନ ଘଟି ଚାଲିଛି । ସମ୍ବାଦପତ୍ରରେ, ଇଲେକ୍‌ଟ୍ରୋନିକ୍ ମିଡ଼ିଆରେ ସମ୍ପ୍ରଚାରିତ ହେଉଛି । ଯାହା ସମାଜପ୍ରତି ଅଙ୍ଗୀକୃତ ମଣିଷର ଆତ୍ମାକୁ ବ୍ୟଥିତ କରୁଛି । ସେହିପରି ନିତି ଦେଖୁଥିବା, ଶୁଣିଥିବା, ପଢୁଥିବା ସତ୍ୟଘଟଣା, ଯାହା ମୋତେ ମୋ ଆତ୍ମାକୁ ଆହତ, ବ୍ୟଥିତ କରିଛି, ସେହିଭଳି କେତେକ ଘଟଣାର, ସମ୍ବାଦର ବିଶ୍ଲେଷଣ ଏ ଲେଖାଗୁଡ଼ିକ ।"

ଆପଣଙ୍କ ପାଇଁ ମୋ ପାଇଁ ମଧ୍ୟ ହିସାବ ବାହାରୁଛି ଯେ ଆମ ଦେଶର ଅଭିବୃଦ୍ଧି ଶତକଡ଼ା ନଅ ହେଲାଣି । ଆହୁରି ବଢ଼ତି ହେବ । ସେହି ହିସାବରେ ବାହାରୁଛି, ଭାରତବର୍ଷର ୭୭ ଭାଗ ମଣିଷଙ୍କର କିଣିବା ଶକ୍ତି ଦୈନିକ କୋଡ଼ିଏ ଟଙ୍କାରୁ ମଧ୍ୟ କମ୍ । ଏବଂ ଦୁଃଖିନୀ ଓଡ଼ିଶାର ତାହା ଜଣ ପ୍ରତି ବାରଟଙ୍କା ମାତ୍ର । ଆଉ ରାଉରକେଲା ଇସ୍ପାତ କାରଖାନା ଥିବା ସୁନ୍ଦରଗଡ଼ରେ ତାହା ଜଣପ୍ରତି ମାତ୍ର ନଅ ଟଙ୍କା ।

"ଦୁର୍ଲ୍ଲଭ ମଣିଷ ଜନମ ପାଇଥିବା ମଣିଷମାନେ କାହିଁକି ବିଦେଶକୁ ଚାଲାଣ ହେଉଛନ୍ତି ? କାହିଁକି ଇସ୍ପାତ କାରଖାନା, କି ବେପାରୀ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ଅଗଣନ ମଣିଷ ଭିଟାମାଟି ହରାଇ ବାସ୍ତୁହରା ହେବେ ? ଆମ ଓଡ଼ିଆ ଲୋକେ କାହିଁକି ବିଭିନ୍ନ ବିଷୟରେ ନିଜ ପ୍ରତିକ୍ରିୟା ପ୍ରକାଶ କରୁନାହାନ୍ତି ?"

"ସତେ କି ବିଚିତ୍ର ଏ ଦେଶ" ଆଲୋଚ୍ୟ ସଂକଳନରେ ପ୍ରଥମ ପ୍ରବନ୍ଧ । ଏଥିରେ ଲେଖକ "ଆଓ୍ୱାର ଇଣ୍ଡିଆ"ର ଲେଖକ ମିନୁ ମାସାନୀଙ୍କ ପରି ପ୍ରତିପାଦନ କରିଛନ୍ତି ଆମ ଦେଶର ଅର୍ଥନୈତିକ ଓ ସାମାଜିକ ଦୁର୍ଗତି ଓ ଅବକ୍ଷୟ । ସରକାରୀ ପରିସଂଖ୍ୟାନ ଯେତେ ଆଶାରବାଣୀ ଘୋଷଣା କରୁନା କାହିଁକି, ଆମ ଓଡ଼ିଶାର କରୁଣ ଜୀବନ ଚିତ୍ରର ଅବତାରଣା କରି କହିଛନ୍ତି ଏଠାରେ ମୁଷ୍ଟିମେୟଙ୍କର ପ୍ରାଚୁର୍ଯ୍ୟର କୋଳାହଳ ମଧ୍ୟରେ ସମଗ୍ର ଜନତାର ଦାରିଦ୍ର୍ୟର ତୀବ୍ର ଅଭିଶାପ କାହାରି ମନକୁ ଉଚାଟ କରୁନାହିଁ । ବାସ୍ତବିକ ବିଚିତ୍ର ଏ ଦେଶ । "ପ୍ରତିକ୍ରିୟା ବିହୀନ ଓଡ଼ିଆ" ଏକ ପ୍ରଭାବଶାଳୀ

ଆଲୋଚନା । ଓଡ଼ିଶାର ଲୋକମାନେ ଏକପ୍ରକାର ପ୍ରତିକ୍ରିୟାହୀନ । ମୁକ୍ତ ଭାବରେ ଯେ କୌଣସି ସମସ୍ୟା ଉପରେ ପ୍ରତିକ୍ରିୟା ପ୍ରକାଶ କରିବାକୁ କେହି ଆଗେଇ ଆସନ୍ତି ନାହିଁ । ଏଠାରେ ଅଧିକାଂଶ ବ୍ୟକ୍ତି ଆତ୍ମମନସ୍କ ଓ ଭୟଙ୍କର ଭାବରେ ସ୍ୱାର୍ଥପର । ଅତ୍ୟନ୍ତ ଆବେଗର ସହିତ ଲେଖକ ଅନେକ ଉଦାହରଣ ଦେଇସାରି ଉପସଂହାରରେ ଲେଖିଛନ୍ତି - "ନ କହିଲେ କୁଳ ଭାସି ଯାଉଛି ବୋଲି କହୁଛି । କାରଣ ମୋ ନାତି ନାତୁଣୀ ବି ଓଡ଼ିଆ ଜାଣିବେ ନାହିଁ । ଜାଣି ନାହାନ୍ତି । ଆପଣା ସୁନା ତ ଭେଣ୍ଡି ନ୍ୟାୟରେ ହୀନ ସ୍ୱାର୍ଥର ବଶବର୍ତ୍ତୀ ହୋଇ ଆମର ଲୋକମାନେ ସମଗ୍ର ସମାଜର ଅକଲ୍ୟାଣ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଓଡ଼ିଶାର ଦାରିଦ୍ର୍ୟ ବିମୋଚନ ଆଳରେ ଓ ଏହାର ପ୍ରାକୃତିକ ବିଭବକୁ ଅନ୍ୟ ଦେଶ ନିକଟରେ ବିକ୍ରି କରିବାର ଚକ୍ରାନ୍ତ କରି ଆସିଛନ୍ତି ଉଦାରୀକରଣ, ଜଗତୀକରଣର ସ୍ଲୋଗାନ ଦେଇ ।" ଆପେ ବଞ୍ଚିଲେ ବାପର ନାମ । ଦେଶ ପଛକେ ରସାତଳକୁ ଯାଉ । ଏ ଦେଶର ମିର୍‌ଜାଫର ମିରକାଶିମ୍‌ଙ୍କ ମୁଖା ଖୋଲିଛନ୍ତି ଲେଖକ, "କୁରାଢ଼ୀରେ କାଠ ବେଣ୍ଟ ହୋଇ ଲାଗିଲେ କୁରାଢ଼ି କାଠ କାଟେ" ପ୍ରବନ୍ଧରେ ।

ଆମର ଏହି ବିଶାଳ ଦେଶର ଦୁର୍ଗତି ସମ୍ପର୍କରେ ଲେଖକଙ୍କର ଚେତାବନୀ ହେଲା, ଆମ ଦେଶର ଗତି କୁଆଡ଼େ ? ପ୍ରବନ୍ଧରେ । ସ୍ୱାଧୀନ ଭାରତର ସମ୍ବିଧାନ ଘୋଷଣା କରେ - ଭାରତ ଏକ ସାର୍ବଭୌମ ରାଷ୍ଟ୍ର । ମାତ୍ର ଏହା କେବଳ ମନବୁଝିବା ପାଇଁ । କାରଣ ବିଶ୍ୱବ୍ୟାଙ୍କର ଋଣ ଜାଲରେ ଏହି ମହାନ୍ ଦେଶ ବନ୍ଧା ପଡ଼ିଛି । ଆବାଳ ବୃଦ୍ଧ ବନିତା ପ୍ରତ୍ୟେକ ଭାରତୀୟ ମୁଣ୍ଡରେ ଏହି ଋଣ ଜାଲ ଝୁଲୁଛି । ଆମର ସମ୍ବିଧାନ ଘୋଷଣା କରିଛି - ଆମର ଦେଶ ଏକ ଧର୍ମନିରପେକ୍ଷ ରାଷ୍ଟ୍ର, ସମାଜବାଦୀ ରାଷ୍ଟ୍ର, ମାତ୍ର ଏଠାରେ ଧର୍ମନାମରେ, ଜାତି ଓ ଗୋଷ୍ଠି ନାମରେ ଭୋଟ କିଣିବା ପାଇଁ ତୃଣମୂଳ ସ୍ତରରେ ମଧ୍ୟ ଏହି ବିଭାଜନକୁ ପୂରେଇ ସାରିଲୁଣି । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ଏଠାରେ ଲୋକପ୍ରତିନିଧିମାନେ ଘୋଷଣା କରନ୍ତି ଲିଖିତ ଆକାରରେ ଦୁର୍ନୀତି ତାଙ୍କର ପେଶା । କାରଣ ଅନ୍ୟ କୌଣସି ପେଶା ପାଇଁ ସେମାନେ ଯୋଗ୍ୟ ହୋଇନାହାନ୍ତି । ଚତୁର୍ଦ୍ଦିଗରେ ଦୁର୍ନୀତିର ଭସ୍ମାସୁରମାନେ ନିର୍ଭୟରେ ଘୁରି ବୁଲୁଛନ୍ତି । ଲେଖକ ଯଥାର୍ଥରେ ଅଭିମତ ପ୍ରଦାନ କରିଛନ୍ତି - "ଭାରତ ବର୍ଷରେ ଗଣତନ୍ତ୍ର, ଧର୍ମନିରପେକ୍ଷ, ସମାଜବାଦ ଓ ସର୍ବୋପରି ସାର୍ବଭୌମତ୍ୱ ବିପନ୍ନ । ଆମକୁ ବିଚାର କରିବାର ଅଛି ସତରେ ଆମ ଦେଶର ଗତି କୁଆଡ଼େ ?

ଏହି ଗ୍ରନ୍ଥର ରାଶି ରାଶି ପ୍ରବନ୍ଧ ମାଧ୍ୟମରେ ଅତ୍ୟନ୍ତ ସାବଲୀଳ ଭାଷାରେ ଲେଖକ ଆଲୋକପାତ କରିଛନ୍ତି ଦେଶୀୟ ଓ ଆନ୍ତର୍ଜାତୀୟ ରାଜନୀତି, ଅର୍ଥନୀତି ଓ ସମାଜନୀତିର

ଅନେକ ସମସ୍ୟା । ଅନାସକ୍ତ, ବ୍ୟକ୍ତି ମନସ୍କ ବୁଦ୍ଧିଜୀବୀମାନଙ୍କର ମନର ବୁଦ୍ ବୁଦ୍‌କୁ ଜିଆଇଁ ରଖିବା ପାଇଁ ଏହି ଆଲୋଚନା ଫଳପ୍ରସୂ ହେବ ବୋଲି ଆଶା କରାଯାଏ । ଏଠାରେ ମାତ୍ର ଅଳ୍ପ କେତୋଟିର ଅବତାରଣା କରାଯାଇଛି ।

'ଶିକ୍ଷାର ସ୍ଥିତି ଓ ଦୁଃସ୍ଥିତି' ଏବଂ 'ଶିକ୍ଷା ବ୍ୟବସ୍ଥା ଠିକ୍ ଚାଲିଛି ତ ?' ପୁସ୍ତକ ଦୁଇଟିରେ କେବଳ ଓଡ଼ିଶାର ନୁହେଁ, ସାରା ଦେଶରେ ଶିକ୍ଷା କ୍ଷେତ୍ରରେ ଦେଖାଦେଇଥିବା ବିଭ୍ରାଟର ଟିକିନିଖି ବିବରଣୀ ପ୍ରଦାନ କରାଯିବା ସଙ୍ଗେ ସଙ୍ଗେ ସେସବୁର ନିରାକରଣ ନିମନ୍ତେ କେତେକ ସୁଚିନ୍ତିତ ପରାମର୍ଶ ଦେଇଛନ୍ତି ଅବନୀ । ଭାରତ ସରକାରଙ୍କ ଦ୍ୱାରା ଘୋଷିତ ତଥା ବହୁ ଚର୍ଚ୍ଚିତ ଶିକ୍ଷା ଅଧିକାର ଆଇନ କିପରି ମୂଲ୍ୟହୀନ ହୋଇପଡ଼ିଛି ଏବଂ ଲକ୍ଷ ଲକ୍ଷ ପିଲା ଏବେ ମଧ୍ୟ ଏହାର ସୁଫଳରୁ ବଞ୍ଚିତ ହୋଇଛନ୍ତି, ତାହାର ନିଖୁଣ ଚିତ୍ର ପ୍ରଦାନ କରିଛନ୍ତି ଏହି ଯଶସ୍ୱୀ ପ୍ରାବନ୍ଧିକ ।

ତାଙ୍କର ନିଜ ଭାଷାରେ "ଶିକ୍ଷା ବ୍ୟବସ୍ଥା କହିଲେ ପିଲାଟିଏ ଶିଶୁ ଶ୍ରେଣୀ ଠାରୁ ଆରମ୍ଭ କରି (ଏବେ ଆଉ ଆମ ପିଲା ବେଳର 'ଶିଶୁ ଶ୍ରେଣୀ'ଟି ନାହିଁ - ତା' ସ୍ଥାନ ନେଇଛି ସହର, ଅର୍ଦ୍ଧ ସହରମାନଙ୍କରେ ବାବୁ ଭୟାଙ୍କ ପିଲାମାନେ, ଇଂରାଜୀ ମାଧ୍ୟମ ପ୍ରି-ପ୍ରାଇମେରୀ ସ୍କୁଲ ଭଳିକି ଭଳି ନାଁ, ମଣ୍ଟେଶ୍ୱରୀ ମେଥଡ୍ ସ୍କୁଲ, ବ୍ଲୋଜମିଙ୍ଗ ଫ୍ଲାୱାର୍ସ, ମର୍ଣ୍ଣିଂ ଷ୍ଟାରର୍ସ, ଟିନି ଟଟ୍, ଡାଫୋଡିଲ୍ସ, ଲିଟଲ୍ ଫ୍ଲାୱାର୍ସ ଆଦି ହରେକ୍ ନାଆଁର ଛୋଟ ଛୋଟ ଛୁଆଙ୍କ ପାଇଁ ଗଢ଼ି ଉଠିଥିବା ଦାମିକା ପାଠ ପଢ଼ାଉଥିବା ଶିକ୍ଷାଳୟ) ଗାଁ ଗହଳର ସିଙ୍ଘାଣୀ ନାକିଆ, ପେଟ ଟୁମୁକି ଯାଇଥିବା ଲଙ୍ଗଳା ଗାଣ୍ଡିଆ ପିଲାଙ୍କର ଅଙ୍ଗନବାଡ଼ି, ପ୍ରାଥମିକ ସ୍କୁଲ, ଉ.ପ୍ରା. ସ୍କୁଲ, ତା' ଉପରକୁ ଉପରକୁ ଗଢ଼ା ହେଉଥିବା ହାଇସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ, ମେଡ଼ିକାଲ କଲେଜ, ଇଞ୍ଜିନିୟରିଂ ଆଦି ଶିକ୍ଷାନୁଷ୍ଠାନ, ତାହା ପୁଣି ସରକାରୀ ମାଲିକାନା ବା ଘରୋଇ ମାଲିକାନାର ହେଉ, ସେସବୁ ସ୍ଥାନରେ / ଅନୁଷ୍ଠାନରେ ପାଠଶାଠ ପଢ଼ି ପିଲାମାନେ ବଢ଼ିଲେ, ଡାକ୍ତର / ଇଞ୍ଜିନିୟର, ଅଫିସର, ହାକିମ, ଶିକ୍ଷକ-ଅଧ୍ୟାପକ, କିରାଣୀ-ଅମଲା ହୋଇ ବାହାରନ୍ତି । କଞ୍ଚା ମାଟିକୁ ବା ସିମେଣ୍ଟକୁ ଗୋଳେଇ, ଚକଟି ଛାଞ୍ଚରେ ପକାଇ ଇଟା ତିଆରି କଲାପରି ମଣିଷ ଇଟାମାନେ ଭାରି କି ଭାରି ବାହାରନ୍ତି !"

"ସେଇ ପାଠପଢ଼ା ଶିକ୍ଷା ବ୍ୟବସ୍ଥା ପାଇଁ ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟମାନଙ୍କର ପ୍ରକାଣ୍ଡ କୋଠା, ବହିଖାତା, ବିଜ୍ଞାନାଗାର, ବିଜ୍ଞାନ ଉପକରଣ, ଇଞ୍ଜିନିୟରିଙ୍ଗ ଉପକରଣ, ସହାୟକ ପୁସ୍ତକ ସବୁ ପିଲାଏ ପଢ଼ିବେ ବୋଲି ସମ୍ବିଧାନ ସଂଶୋଧନ କରାଯାଇ ସବୁ ପିଲାଙ୍କୁ ଶିକ୍ଷା ଅଧିକାର ଆଇନ, ନିୟମ ଇତ୍ୟାଦି ସବୁ ।

ନିରିଖି ଦେଖିଲେ ସେହି ଶିକ୍ଷା ବ୍ୟବସ୍ଥାର ଶାଖା-ପ୍ରଶାଖା, ଅନ୍ଦିକନ୍ଦି, ଶିକ୍ଷକ-ଛାତ୍ର-ଶିକ୍ଷାନୁଷ୍ଠାନ, ସେମାନଙ୍କର ମିଳିତ ପୁଣି ସ୍ୱତନ୍ତ୍ର ସମସ୍ୟାକୁ ନେଇ ସାମଗ୍ରିକ ଶିକ୍ଷା ବ୍ୟବସ୍ଥା । ତାକୁଇ ବିଭିନ୍ନ ସମୟରେ ନିରିଖି ନିରିଖି ଦେଖି ତା'ର ସ୍ଥିତି ଓ ଦୁଃସ୍ଥିତି ବିଷୟରେ ଭିନ୍ନ ଭିନ୍ନ ପତ୍ରପତ୍ରିକାର, ଦୈନିକ ସମ୍ବାଦପତ୍ରର ସ୍ତମ୍ଭକାର ଭାବରେ ଆଲୋଚନା ସମାଲୋଚନା କରିଛି । ଭଲ, ଭେଲ ସବୁ ବଖାଣିଛି । ନିରୋଳା ଭାବରେ ଶିକ୍ଷା ବ୍ୟବସ୍ଥା ସହିତ ପରୋକ୍ଷରେ ସମ୍ପୃକ୍ତ କେତେକ କଥା ଉପରେ ମଧ୍ୟ ଟିପ୍ପଣୀ ଲେଖିଛି ।

ମୋର ଦୃଢ଼ ବିଶ୍ୱାସ ଆମ ରାଜ୍ୟର ଅବସ୍ଥା, ଦୁରାବ୍ସ୍ଥାକୁ ନେଇ ଆମର ଶିକ୍ଷା ବ୍ୟବସ୍ଥା ମାନବ ସମ୍ବଳର ବିକାଶ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ । ମାନବ ସମ୍ବଳ ବିକଶିତ ନୁହେଁ ବୋଲି ଆମର ନିଷ୍କରୁଣ ଦାରିଦ୍ର୍ୟ । ଆମର ପଛୁଆ ପଣିଆ । ସେହି ବ୍ୟବସ୍ଥାକୁ ସୁଧାରିବାକୁ ଉଦ୍ୟମ କରିଛି ଲେଖାଗୁଡ଼ିକରେ ।"

ଅବନୀଙ୍କ ଉପରୋକ୍ତ ବିଶ୍ଳେଷଣ ଓ ଶିକ୍ଷା ବ୍ୟବସ୍ଥାକୁ ନିରିଖି ଚହିଁବାର ପ୍ରତିବନ୍ଧତାରୁ ବିଦ୍ୟାଳୟ ଦ୍ୱାର ମାଡ଼ି ପାରୁନଥିବା ଲକ୍ଷାଧିକ ଗରିବ, ଅବହେଳିତ ଓ ଅର୍ଦ୍ଧାହାରକ୍ଳିଷ୍ଟ ପିଲାଙ୍କ ଭବିଷ୍ୟତ ଗଠନ ପାଇଁ ପ୍ରାଣର ଆବେଗ ଫୁଟି ଉଠିଛି । କେବଳ ଶିକ୍ଷା ବ୍ୟବସ୍ଥା ନୁହେଁ, ଦେଶର ସାମାଜିକ ଓ ଅର୍ଥନୈତିକ ସମସ୍ୟାବଳୀ ଉପରେ ତାଙ୍କର ଧାରାବାହିକ ପ୍ରବନ୍ଧ ସର୍ବଜନାଦୃତ ହୋଇପାରିଛି । ୧୯୫୬-୫୭ ମସିହାରେ ସାପ୍ତାହିକ 'ନୂଆ ଦୁନିଆ'ର ସମ୍ପାଦନା ମଣ୍ଡଳୀରେ କାର୍ଯ୍ୟ କରିବାବେଳେ ସେଥିରେ ପ୍ରକାଶିତ ତାଙ୍କର ନିୟମିତ ସ୍ତମ୍ଭ ବେଶ ଲୋକପ୍ରିୟତା ହାସଲ କରିଥିଲା । ଆଜି ପରିଣତ ବୟସରେ ଉପନୀତ ହେବା ପରେ ମଧ୍ୟ ସେହି ଧାରାକୁ ଅକ୍ଷୁର୍ଣ୍ଣ ରଖିଛନ୍ତି ଅବନୀ । ଆଦ୍ୟ ଯୌବନରେ ନୂଆ ଦୁନିଆ ପୃଷ୍ଠାରେ ତାଙ୍କ ସହ ଲେଖାଲେଖି କରୁଥିବା ସମବୟସ୍କ ସାହିତ୍ୟ ସାଧକମାନଙ୍କର ଲେଖନୀ କାହିଁ କେତେ ଦିନରୁ ନିରବୀ ଯାଇଥିଲେ ହେଁ ଅବନୀ ବରାଳଙ୍କ ଲିଖିତ, ସୁଚିନ୍ତିତ ପ୍ରବନ୍ଧାବଳୀରେ 'ନୂଆ ଦୁନିଆ'ର ପୃଷ୍ଠା ଆଜି ବି ସମୃଦ୍ଧ ।

ଗାଳ୍ପିକ, ଔପନ୍ୟାସିକ ଓ ପ୍ରାବନ୍ଧିକ ଅବନୀ ବରାଳ ଯେ ଜଣେ ଉଚ୍ଚକୋଟୀର ଜୀବନ ଲେଖକ, ତାହା ପ୍ରମାଣିତ ହୋଇଛି, ତାହା ଦ୍ୱାରା ଲିଖିତ ବିପ୍ଳବୀ କବି ଅନନ୍ତ ପଟ୍ଟନାୟକଙ୍କ ସାର୍ଥକ ଜୀବନୀ ଗ୍ରନ୍ଥ 'ଆସିଛି ମୁଁ ଆସିଛି'ରୁ । ଆଧୁନିକ ଓଡ଼ିଆ ସାହିତ୍ୟରେ ଏହାକୁ ଏକ ଦୁର୍ଲ୍ଲଭ ଜୀବନୀ ପୁସ୍ତକ କହିଲେ ଅତ୍ୟୁକ୍ତି ହେବନାହିଁ । ନବଯୁଗ ସାହିତ୍ୟ ସଂସଦର ଅନ୍ୟତମ ପ୍ରାଣ ପ୍ରତିଷ୍ଠାତା, ସ୍ୱାଧୀନତା ସଂଗ୍ରାମୀ, ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତା ଅନନ୍ତ ପଟ୍ଟନାୟକଙ୍କ ସଂଗ୍ରାମମୟ ଜୀବନ ଏବଂ ସାରସ୍ୱତ ସାଧନାର ଏକ ଅଭୁଲା ଆଲେଖ୍ୟ ହେଉଛି 'ଆସିଛି ମୁଁ ଆସିଛି' । ମାର୍କ୍ସବାଦୀ ଦର୍ଶନରେ ବିଶ୍ୱାସୀ ଅବନୀ ସେହି ଦୃଷ୍ଟିକୋଣରୁ କବି ଅନନ୍ତଙ୍କ ଜୀବନର ମୂଲ୍ୟାୟନ କରି ଏକ ନୂତନ ଦିଗନ୍ତ

ଉନ୍ମୋଚନ କରିପାରିଛନ୍ତି । ଏହି ମହତ୍ତ୍ୱପୂର୍ଣ୍ଣ ଜୀବନୀ ଗ୍ରନ୍ଥର ବୈଶିଷ୍ଟ୍ୟ ଆଲୋଚନା କରି ବିଶିଷ୍ଟ ପ୍ରାବନ୍ଧିକ ତଥା ଟ୍ରେଡ୍ ୟୁନିୟନ ନେତା ସୌରୀବନ୍ଧୁ କର କହନ୍ତି –

"ଅବନୀ ବାବୁଙ୍କ ଦ୍ୱାରା ରଚିତ ଜୀବନୀ 'ଆସିଛି ମୁଁ ଆସିଛି' ଟିର ଆଲୋଚନା କରିବାବେଳେ ମୁଁ ବିଚାର କରେ ଏହା ଅନ୍ୟ ଜୀବନୀ ଲେଖକମାନଙ୍କୁ ଜୀବନୀ ଲେଖିବାର ଶୈଳୀ, କଳା ଓ କୌଶଳ ସମ୍ପର୍କରେ ସଚେତନ କରାଇବ । ଅବନୀ ବାବୁ ଏହି ଜୀବନୀଟିକୁ କାହିଁକି ଲେଖିଲେ ତାହାକୁ ଉଲ୍ଲେଖ କରି ସେ ନିଜେ ଲେଖିଛନ୍ତି, "ତାଙ୍କ ଜୀବନ ଓ ଜୀବନୀ ଅନୁଧ୍ୟାନ କଲେ, ବେଳେବେଳେ ପ୍ରତେ ଆସିବ ବା ଭ୍ରମ ଆସିବ ଯେ, ଏଇ କ'ଣ ନିରୋଳା କବି ? ଇଏ ତ ରାଜନୈତିକ କର୍ମୀ, ସଙ୍ଗଠକ, ପ୍ରଜାମଣ୍ଡଳ ଆନ୍ଦୋଳନର ଭାଗୀଦାର, ଛାତ୍ର ଆନ୍ଦୋଳନରୁ ଓଡ଼ିଶାର କୃଷକ, ଶ୍ରମିକ ଆନ୍ଦୋଳନର ପ୍ରତ୍ୟକ୍ଷ କାର୍ଯ୍ୟ । ନିରୋଳା କବିର ସାଧନା ଓ ଜୀବନ ଅଭିଜ୍ଞତା ଠାରୁ ଅନନ୍ତଙ୍କର ଜୀବନ ଦର୍ଶନ, ଜୀବନ ଅଭିଜ୍ଞତାରେ ଢ଼େର ତଫାତ୍ ।"

ଅନନ୍ତଙ୍କର Vagrant, Gypsy ଜୀବନ ବା ଭବଘୁରା ଜୀବନ ନ ଜାଣିଲେ, ଚଣାହଟା ଗାଁର ସାମନ୍ତ ପରିବାର ଛେଉଣ୍ଡ ପିଲାଟିର କିଭଳି ଓଡ଼ିଶାର ସାମ୍ୟବାଦୀ ଆନ୍ଦୋଳନରେ ପଥୀକୃତ ଭିତରୁ ଜଣେ ହୋଇ ସାହିତ୍ୟକୁ, କବିତାକୁ, କଲମକୁ ତାଙ୍କର ସଂଗ୍ରାମରେ ହତିଆର କରି ତୋଳିଛନ୍ତି, ତାହା ଜାଣିହେବ ନାହିଁ । 'ବାଜି, ରଘୁ, ଗୁରି, ହୃଷି, ନଟଙ୍କ' ଶବବାହକ ହେବା, ଢ଼େଙ୍କାନାଳ ରାଜା ବନ୍ଦୀଶାଳାରେ ନିର୍ଯ୍ୟାତିତ ହେବା ମଣିଷଟି ତାସକେଣ୍ଟରେ ଆଫ୍ରୋ-ଏସୀୟ କବି ସମ୍ମିଳନୀରେ କବିତା ପଢ଼ିବା ପର୍ଯ୍ୟନ୍ତ ଜୀବନ ସହିତ ଏକାତ୍ମ ନହେଲେ, ଭୁଲ ବୁଝାମଣା ହେବା ସ୍ୱାଭାବିକ ।

ତା'ଛଡ଼ା କିଏ ଉତ୍ତର ପୁରୁଷଙ୍କୁ ଜଣାଇବ ନବଯୁଗ ସାହିତ୍ୟ ସଂସଦ ଗଢ଼ିବାର, 'ଆଧୁନିକ' ପ୍ରକାଶନର, "ସାରଥୀ" ବାହାରିବାର, ଅବା "ଆଗେଇଚାଲ" ବାହାରିବାର ପଶ୍ଚାତ୍‌ପଟର ଘଟଣା – ଦିନ, ତାରିଖ, ପଟଭୂମି ?

ମୁଁ ଅନନ୍ତ ପଟ୍ଟନାୟକଙ୍କର ସାହିତ୍ୟ ଆଲୋଚକ ନୁହେଁ । କିନ୍ତୁ ଜଣେ କବି । ସାହିତ୍ୟକର ଜୀବନୀକୁ ପୁଣି ନିରୋଳା ଅଲଗା ଭାବରେ ଉପସ୍ଥାପିତ କରିବାକୁ ମଧ୍ୟ ଚାହୁଁଥିବା ମଣିଷ ମୁଁ ନୁହେଁ, ଅନନ୍ତ ବି ତାହା ନୁହଁନ୍ତି । ଏଣୁ ଖୋଜି ଲୋଡ଼ି, ପଚାରିବୁଝି, ନଥିପତ୍ର ଘାଣ୍ଟି ଅନନ୍ତ ପଟ୍ଟନାୟକଙ୍କର ଜୀବନୀ ବିଶ୍ଳେଷଣ କରିବାର ପ୍ରୟାସ କରିଛି ।"

ଅନନ୍ତଙ୍କୁ ଅବନୀବାବୁ ଯେପରି ବୁଝିଥିଲେ, ଜାଣିଥିଲେ ଅନ୍ୟ କେହି ସେପରି ତାଙ୍କୁ ଜାଣିଥିଲେ ବୋଲି ମୁଁ ଭାବୁନି । ଏଣୁ ଅବନୀ ବାବୁଙ୍କ ଦ୍ୱାରା ଲିଖିତ ଏହି ଜୀବନୀଟି ଅନନ୍ତ ପଟ୍ଟନାୟକଙ୍କ ଜୀବନର ଏକ ତଥ୍ୟପୂର୍ଣ୍ଣ, ସତ୍ୟନିଷ୍ଠ ପରିପ୍ରକାଶ ।

ସେହିପରି ଓଡ଼ିଆ ସାହିତ୍ୟରେ ଜଣେ ଯଶସ୍ୱୀ ଭ୍ରମଣ କାହାଣୀ ଲେଖକ ରୂପେ ମଧ୍ୟ ଅବନୀଙ୍କ ସ୍ଥାନ ଖୁବ ଉଚ୍ଚରେ । ଦୁଇଟି କାଳଜୟୀ ଭ୍ରମଣ କାହାଣୀର ସେ ହେଉଛନ୍ତି ସଫଳ ସ୍ରଷ୍ଟା । ଏହି ଦୁଇ ଭ୍ରମଣ ପୁସ୍ତକ ମଧ୍ୟରେ ରହିଛି 'ଦୁନିଆର ଚଲାପଥରୁ ସାଉଁଟା ମଣିମାଣିକ' ଏବଂ 'ହିରୋସୀମା-ନାଗାସାକୀ ଆଉ ନୁହେଁ ଆଉ ନୁହେଁ' । ଜଣେ ବିଶ୍ୱବାଦୀ ମଣିଷର ଦୃଷ୍ଟିଭଙ୍ଗୀ ନେଇ ସେ ରଚନା କରିଛନ୍ତି ପୁସ୍ତକ ଦୁଇଟି । ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟଙ୍କର ବିଭୀଷିକା ଭିତରେ ସାମ୍ରାଜ୍ୟବାଦୀ ଆମେରିକାର ପ୍ରଥମ ଓ ଦ୍ୱିତୀୟ ପରମାଣୁ ବୋମା ଆକ୍ରମଣରେ ଧ୍ୱଂସ ପାଇଥିଲା ଜାପାନର ଦୁଇଟି ସମୃଦ୍ଧ ସହର ହିରୋସୀମା ଓ ନାଗାସାକୀ । ସେହି ସହରକୁ ପରିଦର୍ଶନରେ ଯାଇ ଲେଖକଙ୍କ ଭିତରେ ଯେଉଁ ଭାବାନ୍ତର ସୃଷ୍ଟି ହୋଇଛି, ତାହାର ପରିପ୍ରକାଶ ଘଟିଛି, 'ହିରୋସୀମା-ନାଗାସାକୀ ଆଉ ନୁହେଁ, ଆଉ ନୁହେଁ' ଭ୍ରମଣ ଗ୍ରନ୍ଥରେ । ଦୁଇଟିଯାକ ପୁସ୍ତକରେ ବିଶ୍ୱଶାନ୍ତି, ସହାବସ୍ଥାନ, ସାମ୍ୟ, ମୈତ୍ରୀ ଓ ଭ୍ରାତୃତ୍ୱ ପ୍ରତିଷ୍ଠା ପାଇଁ ଲେଖକଙ୍କ ପ୍ରାଣର ବ୍ୟାକୁଳତା ଫୁଟି ଉଠିଛି ।

'ଦୁନିଆର ଚଲାପଥରୁ ସାଉଁଟା ମଣିମାଣିକ' ପୁସ୍ତକରେ ସ୍ଥାନିତ 'ମୋ କଥା'ରେ ଲେଖକଙ୍କ ଅଭିମତର ବିଶେଷ ପ୍ରାସଙ୍ଗିକତା ରହିଛି । "ଜୀବନସାରା ଅନେକ ଦେଶ ବୁଲିଲି । ଅନେକ ମଣିଷ ଦେଖିଲି । ମଣିଷ ଜୀବନର ବହୁବର୍ଣ୍ଣୀ ନାନା ରୂପ ଅନୁଭୋଗ କଲି । ମଣିଷର ଦେଶ, କାଳ ଭାଷାର ବିଭିନ୍ନତା ମଧ୍ୟରେ ମଧ୍ୟ ଆଦିମ ଆବେଗ, ସ୍ନେହ, ପ୍ରେମ, ସୌଭାତୃତ୍ୱକୁ ସମ୍ପତ୍ତି ଭାବରେ ଗୋଟାଇଲି ।

ଦେବା ଅପେକ୍ଷା ପାଇବା ମୋର ଅନେକ -- ଅନେକ ବେଶୀ । ଏ ପ୍ରାପ୍ୟ ସବୁ ତ ମୋର ନୁହେଁ - ସମସ୍ତଙ୍କର । ସମାଜର, ସାରାଜଗତର । ତାକୁ କାଙ୍ଗାଳ ଭଳି, କୃପଣ ଭଳି ସଞ୍ଚି ସଞ୍ଚି ଢ଼େର ଦିନ ରଖିଲି । ସବୁବେଳେ କିନ୍ତୁ ମନରେ ଥିଲା, ଯାହା ପାଇଛି, ତାକୁ ସମସ୍ତଙ୍କ ଭିତରେ ବାଣ୍ଟିବି ନାହିଁ ?"-

ଏହି ଭାବନାର ଫଳଶ୍ରୁତି ହେଲା ଅବନୀ ବରାଳଙ୍କ ଭ୍ରମଣ କାହାଣୀ । ଜଣେ ଶିକ୍ଷକ ନେତା ଭାବରେ ସେ ଆଜୀବନ ନିଜକୁ ଉତ୍ସର୍ଗ କରିଛନ୍ତି ଶିକ୍ଷକ ସମାଜର ସ୍ୱାଭିମାନ ପ୍ରତିଷ୍ଠା ପାଇଁ । ତାଙ୍କର ବ୍ୟକ୍ତିତ୍ୱ ଓ ସାଧନା କେବଳ ଓଡ଼ିଶାରେ ସୀମିତ ରହିନାହିଁ । ତାହା ବିସ୍ତାରିତ ହୋଇଛି ଭାରତୀୟ ଶିକ୍ଷକ ଆନ୍ଦୋଳନ ଏବଂ ସର୍ବୋପରି ବିଶ୍ୱ ଶିକ୍ଷକ ଆନ୍ଦୋଳନରେ ଅଗ୍ରଣୀ ଭୂମିକା ହାସଲ କରି ବିଶ୍ୱ ଶିକ୍ଷକ ମହାସଂଘର ପ୍ରତିନିଧି ଭାବରେ ସମଗ୍ର ୟୁରୋପର ବିଭିନ୍ନ ଦେଶ ଏବଂ ଏସିଆ ଆଫ୍ରିକାର ଅନେକ ଦେଶକୁ ଯାତ୍ରା କରିଛନ୍ତି ନାନା ଆନ୍ଦୋଳନରେ ସାମିଲ୍ ହେବା ପାଇଁ, ଶିକ୍ଷା ସମ୍ପର୍କୀୟ ସେମିନାରରେ ଅଂଶ ଗ୍ରହଣ କରିବା ପାଇଁ । ବିଶ୍ୱ ଶିକ୍ଷକ ଆନ୍ଦୋଳନରେ ତାଙ୍କର ନେତୃତ୍ୱର ସ୍ୱୀକୃତି

ଓଡ଼ିଶା ପାଇଁ ଓ ଭାରତ ପାଇଁ ଗର୍ବ ଓ ଗୌରବ ନିଶ୍ଚୟ । ଏହି ଗ୍ରନ୍ଥ ଦ୍ୱୟରେ ବାହାର ଦୁନିଆକୁ ଚିହ୍ନି ଚିହ୍ନାଇବା ପାଇଁ ଲେଖକଙ୍କର ପ୍ରଚେଷ୍ଟା ଅଭିନନ୍ଦନୀୟ ।

ଅବନୀଙ୍କ ଭ୍ରମଣ ସାହିତ୍ୟର ଯଥାର୍ଥ ମୂଲ୍ୟାୟନ କରି ତାଙ୍କର ଶିକ୍ଷାଗୁରୁ ପ୍ରଫେସର ପଠାଣି ପଟ୍ଟନାୟକ କହନ୍ତି - "ଲେଖକ କେବଳ "ଗଲି ଆଇଲି, ଯାହା ଦେଖିଲି, ତାହା କହିଲି" ଧାରାରେ ଏ ଭ୍ରମଣ ପୁସ୍ତକ ଲେଖିନାହାନ୍ତି । ପ୍ରସଙ୍ଗକ୍ରମେ ବିଭିନ୍ନ ଦେଶର ଲୋକଚରିତ୍ର, ଆଦର୍ଶ ଓ ପରମ୍ପରା, ଚଳଣି ଓ ଆଚାର ବ୍ୟବହାର ସମ୍ପର୍କରେ ବର୍ଣ୍ଣନା କରିବା ଅବସରରେ ତୁଳନା କରିଛନ୍ତି ସାମ୍ରାଜ୍ୟବାଦୀ ଦେଶ, ସାମ୍ୟବାଦୀ ଦେଶ ଏବଂ ଆମ ଭାରତବର୍ଷର ଲୋକଚରିତ୍ର ଓ ସମାଜ ଜୀବନ । ସେହି କାରଣରୁ ଏହି ଭ୍ରମଣକାହାଣୀ କେବଳ ମନୋରଞ୍ଜନ ନୁହେଁ, ଅତ୍ୟନ୍ତ ଶିକ୍ଷଣୀୟ ମଧ୍ୟ । ରାତ୍ରିର ନିଭୃତ ପ୍ରହରରେ ପୁଞ୍ଜିବାଦୀ ଦେଶର ବିମାନ ଘାଟିରେ ବିପଣିକୁ ଲକ୍ଷ୍ୟ କରି ଲେଖକ ଲେଖିଛନ୍ତି, 'ଦୁନିଆର ଚଲାପଥରୁ ସାଉଁଟା ମଣିମାଣିକ' ପୁସ୍ତକରେ ଏହିପରି "ମଣିଷ ଜୀବନର ମୂଲ୍ୟ ଅପେକ୍ଷା, ଜିନିଷର ମୂଲ୍ୟକୁ ଅଧିକ କରି ଦେଖାଯାଏ ବୋଲି ଜଣେ ପରିଚାରିକା ବା ପରିଚାରକ ବିନିଦ୍ର ରାତି ଜାଗି ଜାଗି ଦୋକାନ ଖୋଲା ରଖି ଦାନ୍ତ ଦେଖାଇ ହସି ହସି ନ ବିକିଲେ ଜିନିଷ କଟିବ କିପରି ବା ବିକେଇ ହେବ କିପରି ?"

ଭାରତ ଭ୍ରମଣରେ ଆସିଥିବା ସହଯାତ୍ରିଣୀମାନଙ୍କର କାନରେ ଭାରତ ବଜାରର ସୁନାଫାସିଆ, ହାତରେ ଶାନ୍ତିନିକେତନୀ ବ୍ୟାଗ, ବେକରେ ତୁଳସୀମାଳି, ରାଜସ୍ଥାନୀ ଘାଘରା ଓ ଜାମା, ଆଙ୍ଗୁଳି ମାନଙ୍କରେ ଝୁଣ୍ଟିଆ ଲକ୍ଷ୍ୟ କରି ଲେଖକଙ୍କର ଅନୁଭବ ହେଲା - "ଭାରତ ବର୍ଷରେ ୟୁରୋପୀୟମାନଙ୍କୁ ଦେଖାଇଲା ଭଳି ଆଧୁନିକତା କିଛି ନାହିଁ । ବୈଚିତ୍ର୍ୟମୟତା ପୁରାତନ ଓ ଇତିହାସ ଭିତରକୁ ନେଇଯାଇ, ନାନା ବୈଚିତ୍ର୍ୟମୟ ପୋଷାକ ପରିଚ୍ଛଦ ଆଚାର ବ୍ୟବହାର ଆମେ ଜଣାଉ, ଶିଖାଉ ଓ ଦେଖାଉ ।"

ବିଦେଶ ମାଟିରେ ଲେଖକ ଅନେକ ପ୍ରଶ୍ନର ସମ୍ମୁଖୀନ ହୋଇଛନ୍ତି ବାରମ୍ବାର । ଭାରତୀୟ ନାରୀ ମୁଣ୍ଡରେ ଲାଲଟିପା କାହିଁକି ଦିଏ ? ଭାରତୀୟ ସହରମାନଙ୍କରେ ଟ୍ରାଫିକ୍ ନିୟମ କିଛି ନାହିଁ । ଭାରତବର୍ଷରେ ଯୁବକ ଯୁବତୀ ପରସ୍ପରକୁ ନଦେଖି, ନଜାଣି ବିବାହ କରନ୍ତି କିପରି ? ଜୀବନ ଭରି ବୈବାହିକ ଜୀବନ କଟେ କିପରି ?

ବୈଷୟିକ ସମୃଦ୍ଧିବନ୍ତ ପାଶ୍ଚାତ୍ୟ ଦେଶକୁ ଦେଖିଲା ବେଳେ ଲେଖକଙ୍କ ଆଖି ଆଗରେ ନାଚି ଉଠିଛି ଆମ ଦେଶର ଦାରିଦ୍ର୍ୟ, ରକ୍ଷଣଶୀଳତା, ନାରୀ ନିର୍ଯ୍ୟାତନା, ଅର୍ଥନୈତିକ ଶୋଷଣ ଏବଂ ଜାତୀୟ ଚରିତ୍ରର ଅଭାବ ।

ସେ ଦେଖିଛନ୍ତି ତୁର୍କମେନିଆର କାରାକୋରାମ ମରୁଭୂମିରେ ମଣିଷର ସଂଗ୍ରାମ । ସେମାନେ କାରାକୋରମ୍ କେନାଲ୍ ଖୋଲାଇ ମରୁଭୂମିକୁ ଶସ୍ୟଶ୍ୟାମଳା କରିଛନ୍ତି ।

ପୋଲାଣ୍ଡର ଲୁବ୍‌ଲିନ୍ ସହର ଉପକଣ୍ଠରେ ଥିବା ମଇଦାନେକ୍ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପର ବୀଭତ୍ସ ଦୃଶ୍ୟ ଦେଖି ବିଚଳିତ ହୋଇଛନ୍ତି । ଏଠାରେ ତାଙ୍କର ସ୍ମରଣ ହୋଇଛି ପୁରାଣ ବର୍ଣ୍ଣିତ ରାକ୍ଷସମାନଙ୍କର କଥା । ଏହି କ୍ୟାମ୍ପରେ ନାରୀର ସୁଶୋଭିତ ସ୍ତନକାଟି ତାର ଚର୍ମରେ ସିଗାରେଟ୍ ପାଉଚ ଓ ନରମୁଣ୍ଡ ଖପୁରୀରେ ଆସଟ୍ରେ । ୨୬ଟି ଦେଶର ଲକ୍ଷ ଲକ୍ଷ ନରନାରୀଙ୍କର ବିପୁଳ କବର । ସେଠାରେ ବିଶାଳ ସ୍ମୃତି ସ୍ତମ୍ଭରେ ଉତ୍‌କୀର୍ଣ୍ଣ ହୋଇଛି । "ଆମ ଭାଗ୍ୟ ଆଉ କାହାରି ପାଇଁ ନଘଟୁ । ଆଜି ମଧ୍ୟ ୟୁରୋପରେ ଅନେକଙ୍କ ମନରେ ଭାରତବର୍ଷ ବିଷୟରେ ବିଚିତ୍ରଧାରଣା । ଏହା ସେମାନଙ୍କ ଆଖିରେ ଏକ ଯାଦୁଘର ।"

ଐଶ୍ୱର୍ଯ୍ୟଶାଳିନୀ ପାରୀ ସହରର ରାଜରାସ୍ତାରେ ଲେଖକଙ୍କୁ ଜଣେ ବୟସ୍କା ମହିଳା ସାବଧାନ କରି ଦେଲେ ଝୁଲାଇ ରଖିଥିବା ପର୍ସ ବ୍ୟାଗଟିକୁ ସାବଧାନରେ ଧର । ନଚେତ୍ କେହି ଝିଙ୍କି ନେଇଯିବେ । ମଣିଷ ଚରିତ୍ର କି ବିଚିତ୍ର । କଳା ସାହିତ୍ୟର ପୀଠଭୂମି ପାରୀ ସହରରେ ମଧ୍ୟ ଏକ ପ୍ରକାର ଅବକ୍ଷୟର ଦୃଶ୍ୟ । ଭାରତର ଗଣତନ୍ତ୍ର ଶାସନର ଅସଲ ସ୍ୱରୂପ ସେମାନେ ଜାଣନ୍ତି । କାରଣ ଏଠାରେ ସାଧାରଣ ନିର୍ବାଚନରେ ୩୪ ବା ୩୬ ଭାଗ ପାଇଥିବା ଭୋଟରେ ଭାରତବର୍ଷକୁ ଶାସନ କରନ୍ତି । ସଂଖ୍ୟାଗରିଷ୍ଠ ଭୋଟ ପାଇଥିବା ଦଳ ବିଚ୍ଛିନ୍ନ ଭାବରେ ବିରୋଧୀ ଦଳରେ ବସନ୍ତି । ସେମାନଙ୍କ ମତରେ ଲୋକମତକୁ ଭାରତବର୍ଷରେ ଉଚିତ୍ ସମ୍ମାନ ଦିଆଯାଏ ନାହିଁ । ଫ୍ରାନ୍ସରେ ଜଣେ କ୍ୟାବିନେଟ୍ ମନ୍ତ୍ରୀ ଅପେକ୍ଷା ଶିକ୍ଷକ ଆନ୍ଦୋଳନର ନେତା ଅଧିକ ସମ୍ମାନିତ । ଅଥଚ୍ ଆମ ଦେଶରେ ଥରେ ଯେ କୌଣସି ଉପାୟରେ ମନ୍ତ୍ରୀ ଆସନରେ ବସିପଡ଼ିଲେ ସେ ହୁଅନ୍ତି ସର୍ବମାନ୍ୟ ସବ୍‌ଜାନ୍ତା ପୁରୁଷ ।

ଲେଖକ ଯାଇଛନ୍ତି ମୋରିସସ୍, ସିଂହଳ, ଥାଇଲାଣ୍ଡ । ଏହି ଦେଶଗୁଡ଼ିକରେ ପ୍ରାଚୀନ କଳିଙ୍ଗ ସଭ୍ୟତାର ପଦଚିହ୍ନ ସେ ଦେଖି ପାରିଥିଲେ ଚଳଣି ଓ ଖାଦ୍ୟପେୟରେ । ଆଲୋଚ୍ୟ ଭ୍ରମଣ କାହାଣୀରେ ପାଠକ ସାକ୍ଷାତକରେ ଜଣେ ପାଶ୍ଚାତ୍ୟ କୁମାରୀ ୟୁୟୁଙ୍କୁ ଯେ ଅବନୀ ବରାଳଙ୍କର ଧରମ ଝିଅ । ଏହି ଇଣ୍ଡିଆନ୍ ଡାଡ଼ିଙ୍କର ଅତିଥି ହୋଇ ସେ ଓଡ଼ିଶାରେ ଅନେକ ଅଞ୍ଚଳ ଦର୍ଶନ କରି ମୁଗ୍ଧ ହୋଇଥିଲେ । ଫରାସୀ ଝିଅ ୟୁୟୁ ରକ୍ଷଣଶୀଳ ଖ୍ରୀଷ୍ଟିଆନ୍ ପରିବାରରେ ଜନ୍ମ । ସେ ମେକ୍ସିକୋର ଜଣେ ମୁସଲମାନ ଯୁବକକୁ ଭଲପାଏ । ମାତ୍ର ରକ୍ଷଣଶୀଳ ପିତାମାତା ଏପରି ବିବାହକୁ ସମର୍ଥନ କରନ୍ତି ନାହିଁ । ଏପରି ଧର୍ମାନ୍ଧତାରୁ ତାହା ହେଲେ କେହି ବର୍ତ୍ତି ନାହାନ୍ତି ! ଭାରତରେ ତ ଏ ସ୍ରୋତ ପ୍ରବହମାନ । ୟୁରୋପର ଲୋକମାନେ ଭାରତୀୟଙ୍କ ପରି ଭାବପ୍ରବଣ ନୁହନ୍ତି, ସେମାନେ ନିଜ ବନ୍ଧୁଙ୍କୁ ମଧ୍ୟ ଘର ଭିତରକୁ ପ୍ରବେଶ କରାଇ ଦିଅନ୍ତି ନାହିଁ । ଏହି ବିଦେଶିନୀ ଝିଅ ୟୁୟୁ ପ୍ୟାରିସ୍ ସହରରେ ଅନେକ ସାହାଯ୍ୟ କରିଥିଲେ ଲେଖକଙ୍କୁ । ପର୍ତ୍ତୁଗାଲର ଜାହାଜ କାରଖାନା ଦେଖିଲା ବେଳେ ଲେଖକ ସ୍ମରଣ କରୁଥିଲେ କଳିଙ୍ଗ ଗୌରବ ବିଜୁ

ପଟ୍ଟନାୟକଙ୍କର ବ୍ୟାକୁଳତା ଓଡ଼ିଶାକୁ କିପରି ବଡ଼ କରିପାରିବା ଜଗତ ଆଖିରେ । ଏକଦା ନୌବହିରରେ ଜାତି କଳିଙ୍ଗ ଅଧିବାସୀ, ଯୋଦ୍ଧା ଜାତି, ଆଜି ଦରିଦ୍ର ଭିକାରୀ ଏବଂ କୁଲି । ଅଥଚ ଦରିଦ୍ର ଦେଶ ହୋଇ ମଧ୍ୟ ପର୍ତ୍ତୁଗାଲ ନିଜର ନୌବିହାର ଗୌରବ ଅକ୍ଷୁର୍ଣ୍ଣ ରଖିପାରିଛି । କ୍ୟୁବା ପରିଦର୍ଶନ ବେଳେ ସେଠାରେ କାଷ୍ଟ୍ରୋଙ୍କ ବିପ୍ଳବର କାହାଣୀ ପାଠକକୁ ମନ୍ତ୍ରମୁଗ୍ଧ କରିଥାଏ । ଜାପାନୀ ଜାତିର ଦ୍ୱିତୀୟ ମହାଯୁଦ୍ଧର ଭସ୍ମ ଗଦାରୁ ନବଜନ୍ମର କାହାଣୀ ଅତ୍ୟନ୍ତ ବିସ୍ମୟକର । ଲେଖକ କହନ୍ତି, ସେମାନେ ପ୍ରତିରକ୍ଷା ଦିଗରେ ଗୋଟିଏ ପଇସା ବ୍ୟୟ ନକରି ଜାତିର ପୁନର୍ଗଠନରେ ଧ୍ୟାନ ଦେଇଥିଲେ । ବର୍ତ୍ତମାନ ବିଶ୍ୱବଜାରରେ ଜାପାନୀ କ୍ୟାମେରା, ଟିଭି, ରେଡ଼ିଓ, ଜାପାନୀ ଗାଡ଼ି ଇତ୍ୟାଦି ଲକ୍ଷ ଲକ୍ଷ ସାମଗ୍ରୀ ଛାଇ ହୋଇଗଲାଣି । ଆମେରିକାର ଗାଡ଼ି କାରଖାନା ଦେବାଳିଆ ଓ ବହୁ ଶିଳ୍ପ ପ୍ରତିଷ୍ଠାନକୁ ଜାପାନୀ ଶିଳ୍ପ ପତି କିଣି ନେଇଛନ୍ତି ।

ଏହିପରି ତୁଳନାତ୍ମକ ଚିତ୍ର ପ୍ରଦାନ ଛଳରେ ଆଲୋଚ୍ୟ ଭ୍ରମଣକାହାଣୀର ଶୈଳ୍ପିକ ଓ ଶୈକ୍ଷିକ ମୂଲ୍ୟ ଅତ୍ୟନ୍ତ ଉଚ୍ଚକୋଟିର । ଏହା କେବଳ ମାମୁଲି ଫଟୋଗ୍ରାଫି ବର୍ଣ୍ଣନା ବିଳାସ ନୁହେଁ । ଲେଖକଙ୍କର ଅନ୍ୟ ଏକ ଭ୍ରମଣ କାହାଣୀ "ହିରୋସୀମା - ନାଗାସାକି ଆଉ ନୁହେଁ - ଆଉ ନୁହେଁ ।" ୧୯୮୨ ମସିହା ଅକ୍ଟୋବର ମାସ ୨୫ ତାରିଖଠାରୁ ୨୯ ତାରିଖ ପର୍ଯ୍ୟନ୍ତ 'ଶାନ୍ତି ପାଇଁ ଶିକ୍ଷା' ଉପରେ ଏକ ଆନ୍ତର୍ଜାତିକ ସେମିନାର ସଙ୍ଗଠିତ ହେଉଥାଏ ଜାପାନ ଦେଶରେ । ଏହି ସେମିନାରରେ ଶ୍ରୀ ଅବନୀ କୁମାର ବରାଳ ବିଶ୍ୱଶିକ୍ଷକ ମହାସଂଘର ପ୍ରତିନିଧି ଭାବରେ ଯୋଗ ଦେଇଥିଲେ । ଜାପାନର ହିରୋସୀମା ଓ ନାଗାସାକି ସହର ଉପରେ ୧୯୪୫ ମସିହା ଅଗଷ୍ଟ ୬ ତାରିଖରେ ପୃଥିବୀର ପ୍ରଥମ ପରମାଣୁ ବୋମା ଆମେରିକା ଯୁକ୍ତରାଷ୍ଟ୍ର ନିକ୍ଷେପ କରେ । ଏଥିରେ ଯେଉଁ ନାରକୀୟ ନରସଂହାର ଓ ଧ୍ୱଂସଲୀଳା ସଙ୍ଗଠିତ ହେଲା, ତାହା ଥିଲା ସମ୍ପୂର୍ଣ୍ଣ କଳ୍ପନାତୀତ । ଏହି ସହରର ଅଧିବାସୀ ଦୁଇଲକ୍ଷ ନରନାରୀ ପୋଡ଼ି ପାଉଁଶ ହୋଇଗଲେ ମୁହୂର୍ତ୍ତକ ମଧ୍ୟରେ । ଯେଉଁମାନେ ବର୍ତ୍ତିଗଲେ, ସେମାନେ ଆଜୀବନ ହୋଇଗଲେ ବିକଳାଙ୍ଗ । ଏ ପର୍ଯ୍ୟନ୍ତ କାନ ଶୁଣିନଥିବା ଭୟଙ୍କର ବିଭୀଷିକା ହିରୋସୀମା - ନାଗାସାକୀରେ ସଂଗଠିତ ହେଲା । ଜାପାନରେ ସେହିଠାରେ ଶାନ୍ତି ସ୍ମାରକୀ ସ୍ତୂପରେ ବିଶ୍ୱର ଶାନ୍ତିକାମୀ ପ୍ରତିନିଧିମାନେ ପୁଷ୍ପସ୍ତବକ ପ୍ରଦାନ କରିଥାଆନ୍ତି । ଜାପାନର ଛାତ୍ରଛାତ୍ରୀଙ୍କର ଆନ୍ତରିକ ଆହ୍ୱାନ ବିଶ୍ୱବାସୀଙ୍କ ଉଦ୍ଦେଶ୍ୟରେ - "ଆମକୁ ବଞ୍ଚିବାକୁ ଦିଅନ୍ତୁ । ପୃଥିବୀରେ ନୂଆ ନାଗାସାକୀ ନ ହେଉ ।" ଅତ୍ୟନ୍ତ ଦୁର୍ଭାଗ୍ୟର କଥା ଯେ ଆଜି ପୃଥିବୀର ଅଧିକାଂଶ ଦେଶରେ ପ୍ରତିଯୋଗିତା ପରମାଣୁ ବୋମାର ଅଧିକାରୀ ହେବା ପାଇଁ । ଯଦି କୌଣସି କାରଣରୁ ଏ ସବୁର ପ୍ରୟୋଗ ହେବ, ଏହି ସୁନ୍ଦର ପୃଥିବୀ ମୁହୂର୍ତ୍ତକ ମଧ୍ୟରେ ଶ୍ମଶାନରେ ପରିଣତ ହୋଇଯିବ । ସେଥିପାଇଁ ଆଜି ଶାନ୍ତି ପାଇଁ ଆନ୍ଦୋଳନ । ଲେଖକ ଜାପାନ ଦେଶର ଅଭ୍ୟୁଦୟ ଓ ଜାପାନୀ ଚରିତ୍ର ବିଷୟରେ

କେତୋଟି ଚମତ୍କାର ଅନୁଭୂତି ଉଲ୍ଲେଖ କରିଛନ୍ତି ଆମ ଦେଶ ସହିତ ତୁଳନା କରି । ଜାପାନୀ ଜାତି ଖାଦ୍ୟକୁ କେବେ ହେଲେ ଫୋପାଡ଼ନ୍ତି ନାହିଁ ! ଆମ ଦେଶରେ ବିବାହ ଭୋଜିରେ ଖାଦ୍ୟର ଯେପରି ଅପଚୟ ହୁଏ, ତାହା ଅତ୍ୟନ୍ତ ମର୍ମନ୍ତୁଦ । ଅଥଚ ଏଠାରେ ଖାଦ୍ୟ ପାଇଁ ଭୋକିଲା ମଣିଷ ଡଷ୍ଟବିନ୍‌ରୁ କୁକୁର ସହିତ ଲଢ଼େଇ କରୁଛି ଖାଦ୍ୟ ପାଇଁ । ଜାପାନ ଜାତି ପରମାଣୁ ବୋମା ବିସ୍ଫୋରଣର କୁଫଳ ଭୋଗ କରି ବିଶ୍ୱବାସୀଙ୍କୁ ଚେତାବନୀ ଦେଉଛି, ନିରସ୍ତ୍ରୀକରଣ ଓ ବିଶ୍ୱଶାନ୍ତି ପ୍ରୟୋଜନ ମାନବ ଜାତିକୁ ରକ୍ଷା କରିବା ପାଇଁ । ଜାପାନର ଦ୍ରୁତଗାମୀ ବୁଲେନ୍ ଟ୍ରେନ୍‌ର ଗତି ଘଣ୍ଟାରେ ତିନିଶହ କୋଡ଼ିଏ କିଲୋମିଟର । ପୃଥିବୀର ଇଲେକ୍‌ଟ୍ରୋନିକ୍ସ ମାର୍କେଟ ଜାପାନ ଅଧିକାର କରି ସାରିଲାଣି । କିଏ ଶୁଣୁଛି ଜାପାନର ଶାନ୍ତି ପାଇଁ ଆହ୍ୱାନ । ଶାନ୍ତିରେ ରହିଲେ ଦେଶର ପ୍ରଗତି ଆକାଶ ଛୁଆଁ ହୋଇଯିବ । ଆଜି କିନ୍ତୁ ପୃଥିବୀର ଶକ୍ତିଶାଳୀ ରାଷ୍ଟ୍ରମାନେ ପରମାଣୁ ଠାରୁ ଆହୁରି ଭୟଙ୍କର ନିଉଟ୍ରନ୍ ବୋମା ନିର୍ମାଣ କରି ଜମା ରଖିଲେଣି । ସହସ୍ରଗୁଣ ଭୟଙ୍କର ଏହି ବୋମା ଯୋଗୁଁ ମୃତ୍ୟୁ ଆତଙ୍କର କୋଟି କୋଟି ଖଡ୍‌ଗ ଏବେ ବିଶ୍ୱ ଉପରେ ଝୁଲି ରହିଲାଣି । ତଥାପି ମଣିଷର ଚେତା ପଶୁନାହିଁ ।

ଆଲୋଚ୍ୟ ପୁସ୍ତକ ଏହି ଶାନ୍ତି ସମ୍ମିଳନୀରେ ଏକ ବିସ୍ତୃତ ରିପୋର୍ଟ ବା ବିବରଣୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଲେଖକ ଏଥିରେ କାମନା କରିଛନ୍ତି ଏକ ଶୋଷଣବିହୀନ ଯୁଦ୍ଧବିହୀନ ବିଶ୍ୱ ।

ଏହି ଦୁଇଟି ଗ୍ରନ୍ଥରେ ଜଣେ ସୌଖୀନ ଭ୍ରମଣକାରୀର ବିବରଣୀ ଲିପିବଦ୍ଧ ହୋଇନାହିଁ । ଜଣେ ସାହିତ୍ୟିକ, ସମାଜସେବୀ ଓ ଶିକ୍ଷାବିତ୍‌ର ଦୃଷ୍ଟିରେ ନାନା ଦେଶର ଘଟଣାବଳୀ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରିଛି, ତାହାକୁ ଲିପିବଦ୍ଧ କରାଯାଇଛି ଏହି ଦୁଇଟି ଗ୍ରନ୍ଥରେ । ରାଜନୀତି ଓ ସମାଜସେବା କ୍ଷେତ୍ରରେ ଯେତେ ନିମଗ୍ନ ରହିଲେ ମଧ୍ୟ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅବନୀ କୁମାରଙ୍କ ଭୂମିକା ପାଠକୀୟ ଶ୍ରଦ୍ଧା ଓ ସମ୍ମାନ ଆହରଣରେ କେବେହେଲେ ପଛରେ ପଡ଼ିବ ନାହିଁ ।"

ରେଭେନ୍‌ସା କଲେଜରୁ ଓଡ଼ିଆରେ ଏମ୍.ଏ. ପାଶ୍ କରିବା ପରେ ଅବନୀ ବରାଳ କିଛିଦିନ ପାଇଁ କଟକ ସହରର ଅନତି ଦୂରରେ ଥିବା ତେଲଦିଆ ହାଇସ୍କୁଲରେ ଶିକ୍ଷକତା କରିଥିଲେ । ମାତ୍ର ସାହିତ୍ୟ, ସଂସ୍କୃତି, ସଂଗ୍ରାମ ଓ ସାଧନା ପଥରେ ଯିଏ ସଦା ସମର୍ପିତ, ସେ କ'ଣ ଗୋଟିଏ ଗାଁ ସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ ଅଧିକ ଦିନ କାର୍ଯ୍ୟ କରିପାରିବେ ? ତେଣୁ ଅଳ୍ପଦିନ ଚାକିରୀ କରିବା ପରେ ସେ ପୁଣି ଫେରି ଆସିଲେ ତାଙ୍କର ପ୍ରିୟ କର୍ମଭୂମି କଟକ ସହରକୁ । ସେଠି ଲେଖକ ଅବନୀ ଜଣେ ପ୍ରକାଶକର ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ବିଶିଷ୍ଟ ସାହିତ୍ୟିକ ଶରତ ମହାନ୍ତିଙ୍କ ପରି ଅବନୀ

ମଧ ପ୍ରତିଷ୍ଠା କରିଥିଲେ ଏକ ପ୍ରକାଶନ ସଂସ୍ଥା, ଯାହାର ନାମ ରଖିଲେ 'ଆଧୁନିକ ପ୍ରକାଶନୀ' । କଟକର ଦୋଳମୁଣ୍ଡାଇ ଛକରେ ୧୯୫୮ରେ ଖୋଲିଥିଲା 'ଆଧୁନିକ ପ୍ରକାଶନୀ' । ସେତେବେଳେ ଆଜି ଭଳି ଦୋଳମୁଣ୍ଡେଇରେ ଏତେ ଦୋକାନ ବଜାର ନଥାଏ । ବଜ୍ରକବାଟି ଦେଇ ରାଣୀହାଟ ଛକ ପର୍ଯ୍ୟନ୍ତ ଦୁଇ ପାଖରେ ଫାଙ୍କା ଜମିରେ ପାଣି ଓ ବିଲାତି ଦଳ ଭର୍ତ୍ତି ହୋଇଥାଏ । ରାତିରେ ଏକା ଯିବାକୁ ଭୟ ଲାଗେ । ଯା' ହେଉ ଏକ ସ୍ୱାଧୀନ ସାରସ୍ୱତ ଜୀବନ ବିତାଇବା ଲକ୍ଷ୍ୟ ନେଇ ଅଳ୍ପ କିଛିଦିନ ପାଇଁ ପ୍ରକାଶକ ବନିଥିଲେ ଅବନୀ ବାବୁ । ଉଦ୍ଦେଶ୍ୟ ଓ ଲକ୍ଷ୍ୟ ଥିଲା ମହତ୍ । ଓଡ଼ିଶାରେ ପ୍ରଗତିଶୀଳ ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ଅତ୍ୟଧିକ ଆଗ୍ରହୀ ହୋଇ କିଛି ଟଙ୍କା ଧାରକରଜ କରି ସେ ଏହି ପ୍ରକାଶନ ସଂସ୍ଥା ଆରମ୍ଭ କଲେ ସିନା, ଏହା କିନ୍ତୁ ବେଶିଦିନ ଚାଲିପାରିଲା ନାହିଁ । ଆୟଠୁ ବ୍ୟୟ ବଳି ପଡ଼ିଲା । ପୁଣି ଅବନୀ ବାବୁଙ୍କ ଭଳି ଚଳଚଞ୍ଚଳ ଲୋକଟି ପକ୍ଷରେ ଗୋଟିଏ ସ୍ଥାନରେ ସାରାଦିନ ବସିରହିବା ସମ୍ଭବ ହେଲା ନାହିଁ । 'ଆଧୁନିକ ପ୍ରକାଶନୀ' ପକ୍ଷରୁ ଅଳ୍ପ କେତୋଟି ବହି ପ୍ରକାଶ କରିଥିଲେ । ଅବନୀ ବାବୁ ନିଜର ପ୍ରଥମ ଗଳ୍ପ ସଂକଳନ 'ଜାରଜ' ନିଜ ସଂସ୍ଥା ପକ୍ଷରୁ ପ୍ରକାଶ କରିଥିଲେ । ପ୍ରଥମ ମୁଦ୍ରଣ (୧୯୫୮) ଦୁଇ ହଜାର ଛପାଇବା ଏକ ପ୍ରକାର ବ୍ୟବସାୟିକ ନିର୍ବୋଧତା ଥିଲା । ଆଜି ତ ଯାହା ଅବସ୍ଥା ପୁଣି ୫୪ ବର୍ଷ ତଳେ ଦୁଇହଜାର ବହି କେବେ ବିକ୍ରି ହୋଇଥାଆନ୍ତା ? 'ଆଧୁନିକ ପ୍ରକାଶନୀ' ପକ୍ଷରୁ ସେ ଭଗବତୀ ଚରଣ ପାଣିଗ୍ରାହୀଙ୍କ 'ଶିକାର ଓ ଅନ୍ୟାନ୍ୟ ଗଳ୍ପ', କବି ଅନନ୍ତ ପଟ୍ଟନାୟକଙ୍କ ଅନୂଦିତ ବିଖ୍ୟାତ ରୁଷୀୟ ଲେଖକ ମିଖାଇଲ୍ ସୋଲୋକୋଭଙ୍କ 'ଭାଗ୍ୟରୁ ଖିଏ' ପ୍ରଭୃତି କେତୋଟି ବହି ମଧ ପ୍ରକାଶ କରିଥିଲେ । କିନ୍ତୁ ଅଳ୍ପ କିଛି ମାସ ପରେ ଏହି ପ୍ରକାଶନ ସଂସ୍ଥା ବନ୍ଦ ହୋଇଗଲା ।

ବିଶିଷ୍ଟ କବି, ମନିଷୀ ଓ ବାଗ୍ମୀ ପ୍ରବର ନୀଳକଣ୍ଠ ଦାସଙ୍କ 'କୋଣାର୍କେ' କାବ୍ୟର ମୁଖବନ୍ଧରେ କବି ମାୟାଧର ମାନସିଂହ ଲେଖିଥିଲେ - "ରାଜନୈତିକ ନୀଳକଣ୍ଠ କାଲି ଧୂଳି ମାଟିରେ ବିଲୀନ ହୋଇଯିବେ, କିନ୍ତୁ 'କୋଣାର୍କେ'ର କବି ନୀଳକଣ୍ଠଙ୍କ ମୃତ୍ୟୁ ନାହିଁ" ଏହି ଅମର ବାକ୍ୟ ସାରସ୍ୱତ ସାଧକ ଅବନୀ ବରାଳଙ୍କ କ୍ଷେତ୍ରରେ ମଧ ପ୍ରଯୁଜ୍ୟ । ଓଡ଼ିଆ ସାହିତ୍ୟାକାଶର ସମୁଜ୍ଜ୍ୱଳ ତାରକା ରୂପେ ଅବନୀ ଚିର ଭାସ୍ୱର ଚିର ଅମଳିନ ହୋଇ ବଞ୍ଚିରହିବେ କାଳକାଳକୁ ।



## ଅଖ୍ୟାତ ତେଲଦିଆ ସ୍କୁଲରୁ ପ୍ରଖ୍ୟାତ ଖୋର୍ଦ୍ଧା, ଜଣେ ସମର୍ପିତ ଶିକ୍ଷାବିତ୍‌ଙ୍କ ଗାଥା



ଛାତ୍ର ଜୀବନରୁ ବାମପନ୍ଥୀ ଆଦର୍ଶବାଦରେ ଅନୁପ୍ରାଣିତ ହୋଇ ଜନସେବାକୁ ଜୀବନର ବ୍ରତ କରିଥିବା ଅବନୀ ବରାଳ ରେଭେନ୍‌ସା କଲେଜରୁ ଏମ୍.ଏ. ପାଶ୍ କରିବା ପରେ ସରକାରୀ ଚାକିରୀ ନକରିବା ପାଇଁ ଦୃଢ଼ ନିଷ୍ପତ୍ତି ନେଇଥିଲେ । ଶିକ୍ଷକତା ଭଳି ଏକ ପବିତ୍ର ବୃତ୍ତିକୁ ଆଦରି ନେଇ ସେ ଅବିଭକ୍ତ କଟକ ଜିଲ୍ଲାର ତେଲଦିଆ ଠାରେ ସ୍ଥାପିତ ଏକ ଘରୋଇ ସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟରେ ଯୋଗ ଦେଇଥିଲେ । ସେତେବେଳେ ଶିକ୍ଷକମାନଙ୍କ ପାଇଁ ବର୍ତ୍ତମାନ ଭଳି ସୁବିଧା ସୁଯୋଗ ବା ଚାକିରୀ ସର୍ତ୍ତାବଳୀ ଆଦି ନଥାଏ । ଘରୋଇ ଶିକ୍ଷାନୁଷ୍ଠାନର ଶିକ୍ଷକ-ଶିକ୍ଷୟିତ୍ରୀମାନେ ପରିଚାଳନା କମିଟି ଦ୍ୱାରା ନାନା ଭାବରେ ଶୋଷିତ ଓ ଉତ୍ପୀଡ଼ିତ ହେଉଥାନ୍ତି । ତେଲଦିଆ ସ୍କୁଲକୁ ଏକ ଆବାସିକ ବିଦ୍ୟାଳୟରେ ପରିଣତ କରିବାର ସ୍ୱପ୍ନ ନେଇ ପ୍ରଧାନ ଶିକ୍ଷକ ପଦବୀ ଗ୍ରହଣ କରିଥିବା ଅବନୀଙ୍କର ଅଳ୍ପଦିନ ମଧ୍ୟରେ ମୋହଭଙ୍ଗ ଘଟିଥିଲା । ତେଲଦିଆ ସ୍କୁଲରେ ଶିକ୍ଷକତା କଲାବେଳର ସ୍ମୃତିଚାରଣ କରି ସେ ନିଜେ କହନ୍ତି - "ପ୍ରଥମେ ୧୯୫୭-୫୮ ମସିହାରେ ପୁରୁଣା କଟକ ଜିଲ୍ଲା ଏବେର ଜଗତସିଂହପୁର ଜିଲ୍ଲାର ତେଲଦିଆ ସ୍କୁଲରେ ପ୍ରଧାନ ଶିକ୍ଷକ ଭାବରେ ଯୋଗଦେଇ ତାହାକୁ ଏକ ଆବାସିକ ବିଦ୍ୟାଳୟ କରିବାରେ ଲାଗିଲି । ଅନ୍ୟ ସ୍କୁଲମାନଙ୍କ ସହିତ ସେଇ ସ୍କୁଲରେ ଏବେର ବହୁ ବିଖ୍ୟାତ ଲୋକ ଯଥା ଶିକ୍ଷା ନିର୍ଦ୍ଦେଶକ, ଅତିରିକ୍ତ ଶିକ୍ଷା ସଚିବ ହୋଇ ଅବସର ନେଇଥିବା ଶିବରାମ ପଟ୍ଟନାୟକ, ସ୍କୁଲ ଜିଲ୍ଲା ଶିକ୍ଷାଧିକାରୀ ହୋଇ ଅବସର ନେଇଥିବା

ଯତୀନ୍ଦ୍ର ମିଶ୍ର, ସର୍ବେଶ୍ୱର ଇତ୍ୟାଦି ସଂଗୋଷ୍ଠୀରେ ଥିଲେ । ନାଁ ଥିଲା ଚାକିରୀ ସର୍ତ୍ତ - ନାଁ ଥିଲା ଦରମା । ଏପରିକି କେଇଦିନ ଛୁଟି ନିଆଯିବା କଥା, ତାହା ମଧ୍ୟ ଲିପିବଦ୍ଧ ନଥିଲା । ପିଲାମାନେ ହିଁ କେବଳ ମାନସିକ ଯନ୍ତ୍ରଣାକୁ ଲାଘବ କରୁଥିଲେ ।”

-“ସେଠାରୁ ବୀତସ୍ପୃହ ହୋଇ ସବୁ ବନ୍ଧୁଙ୍କୁ ଏକାଠି ଧରି ଇସ୍ତଫା ପତ୍ର ଲେଖିଦେଇ ବାହାରି ଆସିଲୁ । ଭାବିଥିଲି ଆଉ ଚାକିରୀ କରିବି ନାହିଁ । ପାର୍ଟି କାମ କରିବି ଏବଂ ପ୍ରକାଶନ ସଂସ୍ଥା କରିବି । ଆଧୁନିକ ପ୍ରକାଶନୀ ବୋଲି ଦୋକାନ ଓ ପ୍ରକାଶନ ସଂସ୍ଥା ଆରମ୍ଭ କରିଥିଲି । କେତେଗୁଡ଼ିଏ ବହି ମଧ୍ୟ ପ୍ରକାଶ କରିଥିଲି ।” ଶିକ୍ଷକତା ବୃତ୍ତିରେ ଡୋରି ବାନ୍ଧି କଟକ ଚାଲି ଆସିଥିବା ଅବନୀଙ୍କ ପାଇଁ ତେଲଦିଆ ସ୍କୁଲର ଅନୁଭୂତି ଯଦିଓ ଅତ୍ୟନ୍ତ ତିକ୍ତ ଓ ନିରାଶଜନକ ହୋଇଥିଲା, ତଥାପି ପରବର୍ତ୍ତୀ ସମୟରେ ତାଙ୍କର ସୁଦୀର୍ଘ ଗୌରବାବହ ଶିକ୍ଷକ ଜୀବନର ପ୍ରଥମ ମୂଳଦୁଆ ଯେ ସେହିଠାରେ ପଡ଼ିଥିଲା, ଏଥିରେ ସନ୍ଦେହ ନାହିଁ ।

୧୯୫୯ ମସିହା ଜୁଲାଇ ୧୯ ତାରିଖ । ଅବନୀଙ୍କ ଜୀବନରେ ଆସିଲା ଏକ ନୂଆ ମୋଡ଼, ଅଭୁଲା ଅନୁଭୂତି । ଐତିହାସିକ ଖୋର୍ଦ୍ଧା ମାଟିର ବରୁଣେଇ ପାଦଦେଶରେ ଜନ୍ମ ନେଇଥିଲା ଏକ ବେସରକାରୀ ମହାବିଦ୍ୟାଳୟ । ତତ୍କାଳୀନ ଶାସକ ଗୋଷ୍ଠୀର ପ୍ରବଳ ବାଧାଦାନ ଓ ପ୍ରତିବନ୍ଧକକୁ ଅତିକ୍ରମ କରି ମହାନ୍ ସ୍ୱାଧୀନତା ସଂଗ୍ରାମୀ, ବିପ୍ଳବୀ ନେତା ତଥା ସାମ୍ୟବାଦୀ ଆନ୍ଦୋଳନର ଅନ୍ୟତମ ଆଦ୍ୟ ପ୍ରବର୍ତ୍ତକ ପ୍ରାଣନାଥ ପଟ୍ଟନାୟକ ଯେଉଁ ମହାବିଦ୍ୟାଳୟ ସ୍ଥାପନ କଲେ, ସେଥିରେ ଅବନୀଙ୍କୁ ହିଁ ପ୍ରଥମ ଅଧ୍ୟାପକ ଭାବରେ ନିଯୁକ୍ତ କରାଯାଇଥିଲା । ତେଲଦିଆ ସ୍କୁଲର ତିକ୍ତ ଅନୁଭୂତି ପରେ ଆଉ ଶିକ୍ଷକତାକୁ ନଫେରିବା ପାଇଁ ଦୃଢ଼ ନିଷ୍ପତ୍ତି ନେଇଥିବା ଅବନୀ ବରାଳ କେଉଁ ପରିସ୍ଥିତିରେ ଖୋର୍ଦ୍ଧା କଲେଜରେ ଯୋଗଦେଲେ ତାହାର ପୃଷ୍ଠଭୂମି ବର୍ଣ୍ଣନା କରି ନିଜେ କହନ୍ତି - “ପ୍ରାତଃ ସ୍ମରଣୀୟ ଜନନେତା ପ୍ରାଣନାଥ ପଟ୍ଟନାୟକ ଖୋର୍ଦ୍ଧା କଲେଜ (ଏବେକାର ପ୍ରାଣନାଥ ମହାବିଦ୍ୟାଳୟ) ଆରମ୍ଭ କରୁଥାନ୍ତି । ତାହା ୧୯୫୯ ମସିହା ଜୁଲାଇ ୧୯ ତାରିଖରୁ ଆରମ୍ଭ ହୁଏ । ତା’ପୂର୍ବରୁ ପ୍ରାଣନାଥ ବାବୁ, ଶିବାଜୀ ପଟ୍ଟନାୟକ, (ସେତେବେଳର ଯୁବନେତା)ଙ୍କୁ ସାଥୀରେ ଧରି ମୋ ପାଖେ ପହଞ୍ଚିଲେ ଏବଂ ମୋ ବାପା, ବୋଉଙ୍କୁ ମଧ୍ୟ କହିଲେ । ପ୍ରାଣନାଥ ବାବୁଙ୍କ ଅନୁରୋଧ, ବାପା, ବୋଉଙ୍କ ନିର୍ଦ୍ଦେଶ ମାନି ‘ଆଧୁନିକ ପ୍ରକାଶନୀ’ ଓ ପାର୍ଟି କାମଦାମ ସବୁ ଛାଡ଼ି ଖୋର୍ଦ୍ଧା କଲେଜରେ ୧୯.୦୭.୧୯୫୯ରେ ଯୋଗଦେଲି । ସେଇଠାରେ ଲେକ୍‌ଚରରରୁ ରିଡର ହେଲି - ପରେ ସେଇ କଲେଜର ଅଧ୍ୟକ୍ଷ ହୋଇ ୧୯୯୪ରେ ଅବସର ନେଲି ।”

୧୯୫୯ ଜୁଲାଇ ମାସ ବେଳକୁ ଓଡ଼ିଶାରେ କଂଗ୍ରେସ ଓ ଗଣତନ୍ତ୍ର ପରିଷଦର ମିଳିତ ମନ୍ତ୍ରୀମଣ୍ଡଳ କ୍ଷମତାସୀନ ଥାଏ । ଏହି ମନ୍ତ୍ରୀମଣ୍ଡଳରେ ମୋଟ ତିନିଜଣ ମନ୍ତ୍ରୀ ଥାଆନ୍ତି । ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ଛାଡ଼ି ଗଣତନ୍ତ୍ର ପରିଷଦର ନେତା ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ ରାଧାନାଥ ରଥ ମନ୍ତ୍ରୀ । ଯଦିଓ କଲେଜ ପ୍ରତିଷ୍ଠା ଉଦ୍ୟମକୁ ମୁଖ୍ୟମନ୍ତ୍ରୀ ମହତାବ ମୂଳରୁ ବିରୋଧ କରିବା ସହ ବାଧାସୃଷ୍ଟି କରୁଥିଲେ, ତଥାପି ପ୍ରତିଷ୍ଠାତା ପ୍ରାଣନାଥ ତାଙ୍କରି ଦ୍ୱାରା ହିଁ ଖୋର୍ଦ୍ଧା କଲେଜର ଉଦ୍‌ଘାଟନ କରାଇଥିଲେ । ତାଙ୍କ ମନ୍ତ୍ରୀମଣ୍ଡଳର ଅନ୍ୟ ଦୁଇ ସଦସ୍ୟ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ ରାଧାନାଥ ରଥ ମଧ୍ୟ ଉତ୍ସବରେ ଅତିଥି ରୂପେ ଯୋଗ ଦେଇଥିଲେ । ଅର୍ଥାତ୍ ସେଦିନର ଉଦ୍‌ଘାଟନ ଉତ୍ସବରେ ସମଗ୍ର ରାଜ୍ୟ ମନ୍ତ୍ରୀମଣ୍ଡଳର ପ୍ରତିନିଧିତ୍ୱ ହୋଇଥିଲା । ଖୁବ୍ ଧୁମ୍‌ଧାମ୍‌ରେ ସେଦିନର ଉତ୍ସବ ସମାହିତ ହୋଇଥିଲା । ଅଧ୍ୟାପକ ଅବନୀ ଯଦିଓ ପ୍ରଥମ ଦିନରେ ହିଁ କଲେଜରେ ଆନୁଷ୍ଠାନିକ ଭାବରେ ଯୋଗ ଦେଇଥିଲେ, ମାତ୍ର ତା' ପୂର୍ବରୁ କଲେଜ ପ୍ରତିଷ୍ଠା କାର୍ଯ୍ୟରେ ପ୍ରାଣନାଥଙ୍କୁ ସହଯୋଗ କରୁଥିଲେ । କଲେଜର ଏକ ଜରୁରୀ କାର୍ଯ୍ୟରେ ସେଦିନ ତାଙ୍କୁ କଟକ ଯିବାକୁ ପଡ଼ିଥିବାରୁ ସେ ସାମାନ୍ୟ ବିଳମ୍ବରେ ଆସି ଆନୁଷ୍ଠାନିକ ରୀତିରେ ଚାକିରୀରେ ଯୋଗ ଦେଇଥିଲେ । ଫଳରେ ସେହିଦିନ କାର୍ଯ୍ୟରେ ଯୋଗ ଦେଇଥିବା ଅନ୍ୟ ଜଣେ ଅଧ୍ୟାପକ ଇତିହାସ ବିଭାଗର ବିଜୟ କୁମାର ମହାପାତ୍ର ମାତ୍ର କେତେ ଘଣ୍ଟାର ବରିଷ୍ଠତା ଲାଭ କରିବାର ସୁଯୋଗ ପାଇଥିଲେ । ସେହି ଘଟଣାର ପୃଷ୍ଠଭୂମି ବର୍ଣ୍ଣନା କରି ବିଶିଷ୍ଟ ମାର୍କ୍ସବାଦୀ ନେତା ଶିବାଜୀ ପଟ୍ଟନାୟକ କହନ୍ତି -

"ଖୋର୍ଦ୍ଧା କଲେଜ ପ୍ରତିଷ୍ଠା ହେଲା ବେଳେ ଅଧ୍ୟାପକ ଭାବେ ତାଙ୍କୁ ହିଁ ଆମେ ପ୍ରଥମେ ବାଛିଥିଲୁ । ମୋ ଯୋଗୁଁ ଅବଶ୍ୟ ତାଙ୍କୁ ସିନିୟରିଟି ହରାଇବାକୁ ପଡ଼ିଥିଲା । ସେଇ କଲେଜ କାମରେ ମୁଁ କଟକ ଆସିଥିବା ବେଳେ ସେଥିରେ ସହାୟତା କରିବାକୁ ତାଙ୍କୁ ଅଟକାଇ ଦେବାରୁ ସେ ଖୋର୍ଦ୍ଧା ଯାଇ କାମରେ ଯୋଗ ଦେବାରେ ବିଳମ୍ବ ହେଲା । ଅନ୍ୟ ଜଣେ ତାଙ୍କ ପୂର୍ବରୁ କାମରେ ଯୋଗ ଦେଇଥିଲେ । ଖୋର୍ଦ୍ଧାରେ କଲେଜ ପ୍ରତିଷ୍ଠା କିଛି ସାଧାରଣ ଘଟଣା ନଥିଲା । ଶାସକ ଦଳ ଓ ରାଜ୍ୟ ସରକାରଙ୍କ ପ୍ରତିରୋଧକୁ ଅତିକ୍ରମ କରି ତାହା ପ୍ରତିଷ୍ଠା କରିବାକୁ ପଡ଼ିଥିଲା, ତାହା ସମ୍ଭବ ହୋଇଥିଲା ପ୍ରାଣନାଥ ପଟ୍ଟନାୟକଙ୍କ ନେତୃତ୍ୱ ଯୋଗୁଁ । ସାଥୀ ଅବନୀ ବରାଳ ଅଧ୍ୟାପକ ଭାବେ ଯୋଗ ଦେବା ପରେ ପ୍ରତି ପାଦେ ପାଦେ ଆସୁଥିବା ପ୍ରତିବନ୍ଧକଗୁଡ଼ିକୁ ଅତିକ୍ରମ କରିବାରେ ଅବନୀ ବରାଳଙ୍କ ସହାୟତା ବେଶ୍ କାମରେ ଲାଗିଲା । ସେହି କାରଣରୁ ତାଙ୍କ ସହ ଓ ତାଙ୍କ ପରିବାର ସହ ମୋ ସମ୍ପର୍କ ହେଲା ଆହୁରି ନିବିଡ଼ । ତାଙ୍କ ପତ୍ନୀ ଆଦରମଣି ରେଭେନ୍‌ସା

କଲେଜରେ ପଢୁଥିଲା ବେଳୁ ଛାତ୍ର ଫେଡ଼େରେସନ୍‌ର ଜଣେ ଆଗୁଆ କର୍ମୀ ଭାବେ ଆମ ସହ ସମ୍ପୃକ୍ତ ଥିଲେ । ସାଥୀ ଅବନୀ ଖୋର୍ଦ୍ଧାରେ ଅବସ୍ଥାପିତ ହେବା ପରେ ତାଙ୍କ ଘର ଆମମାନଙ୍କର ଗୋଟାଏ ଆଡ୍ଡା ବା ଏକ ପ୍ରକାର ଚର୍ଚ୍ଚା କେନ୍ଦ୍ରରେ ପରିଣତ ହୋଇଗଲା । ଅଧ୍ୟାପକ ଓ ବିଭିନ୍ନ ସ୍ତରର ବୁଦ୍ଧିଜୀବୀଙ୍କୁ ନେଇ ସେଠାରେ ବୌଦ୍ଧିକ ଚର୍ଚ୍ଚାର ଆସର ଜମି ଉଠୁଥିଲା । ଅଧ୍ୟାପକ ଚାକିରୀର କଟକଣା ଭିତରେ ଥିଲାବେଳେ ମଧ୍ୟ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ, ବିଶ୍ୱଶାନ୍ତି ଆନ୍ଦୋଳନ ଓ ଆଲୋଚନା ଚକ୍ର ଆଦିରେ ସେ ଆମ ସହିତ ଖୋଲାଖୋଲି ଭାବେ ଆଗେଇ ଆସୁଥିଲେ ।”

ଖୋର୍ଦ୍ଧାରେ କଲେଜ ପ୍ରତିଷ୍ଠା କାମରେ ଆଗେଇବା ପୂର୍ବରୁ ପ୍ରାଣନାଥ ତାଙ୍କର ପ୍ରିୟ କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ ପରିଷଦ ବୈଠକରେ ଏହି ପ୍ରସଙ୍ଗ ଉତ୍‌ଥାପନ କରି ସାଥୀ ସହକର୍ମୀମାନଙ୍କର ମତାମତ ଲୋଡ଼ିଥିଲେ । ରାଜ୍ୟ ସରକାରଙ୍କ ବାଧା ପ୍ରତିବନ୍ଧକକୁ ଅତିକ୍ରମ କରି ଏହି କଲେଜ ସ୍ଥାପନ ସମ୍ଭବପର ହେବା ନେଇ ପାର୍ଟିର ଅନ୍ୟ ବରିଷ୍ଠ ନେତାମାନେ ସନ୍ଦେହ ପ୍ରକାଶ କରିଥିଲେ । ମାତ୍ର ଅବନୀ ବରାଳଙ୍କ ପରି ଜଣେ ଉଚ୍ଚଶିକ୍ଷିତ, ପ୍ରଗତିଶୀଳ, ବାମପନ୍ଥୀ ଚିନ୍ତାଧାରାର ଯୁବକଙ୍କୁ ଅଧ୍ୟାପକ ରୂପେ ନିଯୁକ୍ତି ପ୍ରସ୍ତାବକୁ ସମସ୍ତେ ସ୍ୱାଗତ କରିଥିଲେ । ସେଦିନର ରାଜ୍ୟ ପରିଷଦ ବୈଠକରେ ଥିବା ଜଣେ ତରୁଣ ସଦସ୍ୟ ପରବର୍ତ୍ତୀ ସମୟର ବିଶିଷ୍ଟ କୃଷକ ଓ କମ୍ୟୁନିଷ୍ଟ ନେତା ବିଶ୍ୱନାଥ ସାହୁ ନିଜର ଅନୁଭୂତି ବର୍ଣ୍ଣନା କରି କହନ୍ତି - “୧୯୫୭ ସାଲରେ ସାଧାରଣ ନିର୍ବାଚନ ଅନୁଷ୍ଠିତ ହେଲା ଏବଂ ପ୍ରାଣନାଥ ବାବୁ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହେଲେ । ସେତିକିବେଳେ ସେ ଖୋର୍ଦ୍ଧା ଠାରେ କଲେଜ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କଲେ । ଏହି ପ୍ରସ୍ତାବ ସେ ରାଜ୍ୟ ପରିଷଦ ବୈଠକରେ (କମ୍ୟୁନିଷ୍ଟ ପାର୍ଟିର) ପ୍ରଥମେ ଉପସ୍ଥାପିତ୍ କରିଥିଲେ । ଏତେ ବଡ଼ ଯୋଜନା । ଆମେ ସବୁ ଅଳ୍ପ ବୟସ୍କ ସାଥୀ ଏବଂ ସାଥୀ ଗୁରୁଚରଣ ପଟ୍ଟନାୟକ, ଶରତ ପଟ୍ଟନାୟକ, ରାମକୃଷ୍ଣ ପତି, ଗଙ୍ଗାଧର ପାଇକରାୟ, ଗୋକୁଳ ଦା, ସାଧୁଚରଣ ମହାନ୍ତି ପ୍ରମୁଖ ସାଥୀମାନେ ମଧ୍ୟ ଏତେ ବଡ଼ ଯୋଜନା ସମ୍ପାଦନ କରିବା କଷ୍ଟସାଧ୍ୟ ବୋଲି ବିଚାର କଲେ । କିନ୍ତୁ ପ୍ରାଣନାଥ ବାବୁ ସାହସର ସହିତ କଲେଜ କରିବା ଏବଂ ତାହା ଏକ ଆଦର୍ଶ କଲେଜ ହେବ - ଏଇ ପ୍ରତିଜ୍ଞା ନେଇ କଲେଜ ଆରମ୍ଭ କଲେ ଏବଂ ଅର୍ଥ ସଂଗ୍ରହ ପାଇଁ ମଦନ ମୋହନ ମାଲବ୍ୟଙ୍କ କଥା କହିଲେ । ସେ ଯେପରି ପଇସାଏ ଲେଖାଏଁ ମାଗି ମାଗି ଏତେ ବଡ଼ ହିନ୍ଦୁ ବିଦ୍ୟାଳୟ ପ୍ରତିଷ୍ଠା କରିପାରିଲେ ଆମେ ମଧ୍ୟ ମାଗି ମାଗି କଲେଜଟିଏ କରିପାରିବାନି କାହିଁକି ବୋଲି କହିଲେ । ସେ କଲେଜ ଆରମ୍ଭ କଲାବେଳେ ବହୁ ପ୍ରତିବନ୍ଧକ

ରାଜନୈତିକ ହିଂସା ସତ୍ତ୍ୱେ ଖୋର୍ଦ୍ଧାରେ କଲେଜ ଆରମ୍ଭ ହେଲା । ଭଲ ଭଲ ପ୍ରଗତିଶୀଳ ମନୋବୃତ୍ତି ଶିକ୍ଷାବିତ୍‌ମାନଙ୍କୁ ନିଯୁକ୍ତି ଦେଲେ । କିନ୍ତୁ ଏସବୁ କାମ ଅର୍ଥ ସଂଗ୍ରହ ଠାରୁ କଲେଜ ନିର୍ମାଣ, ଶିକ୍ଷା ଦିଗରେ ଉତ୍କର୍ଷତା, ଜନସମ୍ପର୍କ ପ୍ରତିଷ୍ଠା ପ୍ରଭୃତି କାମ ପାଇଁ ବାଛି ବାଛି ସାଥି ଅବନୀ କୁମାର ବରାଳଙ୍କୁ କଲେଜରେ ଅଧ୍ୟାପକ ହିସାବରେ ନିଯୁକ୍ତି ଦେଲେ । ସେଇଦିନରୁ ଅବନୀ ବାବୁ ଅଧ୍ୟାପକ ହେବା ସଙ୍ଗେ କଲେଜର ସଂଗଠକ ହିସାବରେ ପ୍ରାଣନାଥ ବାବୁଙ୍କ ସହକର୍ମୀ ହୋଇ ସମସ୍ତ ଜୀବନ ଓ ସମୟ ଉତ୍ସର୍ଗ କଲେ ।"

ଖୋର୍ଦ୍ଧା କଲେଜରେ ପାଦ ଥାପିବା ଦିନରୁ ହିଁ ସେହି କଲେଜର ବିକାଶ ଓ ସମୃଦ୍ଧିରେ ମନପ୍ରାଣ ଢ଼ାଳି ଦେଇଥିଲେ ଅବନୀ । ଖୁବ୍ କମ୍ ଦିନ ମଧ୍ୟରେ ଜଣେ ସ୍ନେହଶୀଳ, ଛାତ୍ରବତ୍ସଳ ଅଧ୍ୟାପକ ରୂପେ ତାଙ୍କର ଗ୍ରହଣୀୟତା ଯେତିକି ବଢ଼ିଥିଲା, ବନ୍ଧୁ ଓ ସହକର୍ମୀ, ଅଧ୍ୟାପକ ମହଲରେ ତାଙ୍କର ଆଦର ସେତିକି ବୃଦ୍ଧି ପାଇଲା । ବହୁମୁଖୀ ପ୍ରତିଭା ସମ୍ପନ୍ନ ଏହି ତରୁଣ ଅଧ୍ୟାପକ ବହୁବିଧ କାର୍ଯ୍ୟକଳାପ ସହ ସମ୍ପୃକ୍ତ ଥିଲେ ମଧ୍ୟ ପାଠପଢ଼ା କ୍ଷେତ୍ରରେ କେବେ ସାଲିସ୍ କରୁନଥିଲେ । ତାଙ୍କର ଶିକ୍ଷାଦାନ ଶୈଳୀ ଥିଲା ଖୁବ୍ ଉଚ୍ଚକୋଟୀର । ସୁଦୀର୍ଘ ଅଧ୍ୟାପକ ଜୀବନରେ ଯିଏ ଥରେ ତାଙ୍କର ଛାତ୍ର ହେବାର ସୁଯୋଗ ଲାଭ କରିଥିଲେ, ସେ ସାରା ଜୀବନ ତାଙ୍କର ଚୁମ୍ବକୀୟ ବ୍ୟକ୍ତିତ୍ୱ ଦ୍ୱାରା ଆକର୍ଷିତ ହୋଇ ପଡୁଥିଲେ । ଶିକ୍ଷକ ଆନ୍ଦୋଳନ ଓ ଅନ୍ୟାନ୍ୟ କାର୍ଯ୍ୟକଳାପରେ ଜଡ଼ିତ ରହିବା ଯୋଗୁଁ ଅବନୀ ବରାଳ କଲେଜରେ ଶିକ୍ଷାଦାନକୁ ଅଣଦେଖା କରିଥିଲେ ବୋଲି କେହି କେହି ଅପପ୍ରଚାରକାରୀଙ୍କ ଅସତ୍ୟ ଅଭିଯୋଗକୁ ଦୃଢ଼ ଭାବରେ ଖଣ୍ଡନ କରି ତାଙ୍କର ଅନ୍ୟତମ ଛାତ୍ର ତଥା ଜଣେ ଜଣାଶୁଣା ସାମ୍ବାଦିକ ଚନ୍ଦ୍ର ରାଓ ପଟ୍ଟନାୟକ କହନ୍ତି –

"୧୯୭୦ ମସିହାରେ ସିକୋ ହାଇସ୍କୁଲରୁ ମାଟ୍ରିକ ପାସ୍ ହେବା ପରେ ପରେ ଗାଁର ପ୍ରଥମ ଏମ୍.ଏ. ତଥା ଲେଖକର ହିତାକାଂକ୍ଷୀ ଲକ୍ଷ୍ମୀନାରାୟଣ ରାୟସିଂହଙ୍କ ଠାରୁ ମୋର ବାବା ଖଣ୍ଡିଏ ପୋଷ୍ଟକାର୍ଡ଼ ପାଇଲେ ପୁଅର ନାମ ଲେଖା ପାଇଁ ପଞ୍ଚାଅଶି ଟଙ୍କା ଲାଗିବ, ଯୋଗାଡ଼ କରି ଖୋର୍ଦ୍ଧା ଆସନ୍ତୁ । ବିଶିଷ୍ଟ ସାମ୍ୟବାଦୀ ପ୍ରାଣନାଥ ପଟ୍ଟନାୟକଙ୍କ ନେତୃତ୍ୱରେ ଅବନୀ ବାବୁଙ୍କ ଭଳି ଅଗ୍ରଣୀ ସହଯୋଦ୍ଧା ଯେଉଁ ତ୍ୟାଗ ଓ ତିତିକ୍ଷା ସହକାରେ ଖୋର୍ଦ୍ଧା କଲେଜ ଗଢ଼ିଛନ୍ତି, ତାହା ଶୁଣିଥିଲି । କଲେଜରେ ନାମ ଲେଖାଇବା ପରେ ପାଇଲି ତା'ର ନଗଦ ପ୍ରମାଣ । ଅଭାବୀ ପରିବାରରୁ ଆସିଥିବା ଜଣେ ପିଲା ପାଠପଢ଼ାରୁ ବଞ୍ଚିତ ହୋଇ ନରହୁ, ସେ ବାବଦରେ କ'ଣ ସବୁ କରାଯାଇପାରେ ସେଥିପାଇଁ ଯାବତୀୟ ଯତ୍ନ ନେଇପାରନ୍ତି ଅବନୀ ବରାଳ ଓ ତାଙ୍କର ବାନର ସେନା । ସମାଜର ସମ୍ଭବତଃ ଅବହେଳିତ ଅଥଚ ସୁବିଧାବାଦୀ ବର୍ଗକୁ ଆନ୍ଦୋଳନର ରାସ୍ତା ଦେଖାଇଥିବା ନେତା

କହିଲେ ଯାହାର ନାମ ପ୍ରଥମରେ ଆସିବ ସିଏ ଆଉ କେହି ନୁହଁନ୍ତି ଅବନୀ ବରାଳ । ସେ ଅଧିକାଂଶ ସମୟ କଲେଜ ଆସନ୍ତି ନାହିଁ ବୋଲି ଗୋଟିଏ ପ୍ରଚାର ଚାଲିଥାଏ । ଅବନୀ ବାବୁଙ୍କୁ ପାଠ ପଢ଼ାଇବାକୁ ସମୟ କାହିଁ, ଆଜି ଦିଲ୍ଲୀ ତ' କାଲି ମସ୍କୋ ଇତ୍ୟାଦି । ମାତ୍ର ବିଭାଗୀୟ ମୁଖ୍ୟ ହିସାବରେ ସେ କେମିତି ଅନର୍ସ ପିଲାଙ୍କର ପାଠ ପାଇଁ ଛାତ୍ରଛାତ୍ରୀଙ୍କୁ ଅଲଗାରେ ପଲଟଣ ପଡ଼ିଆ ପାଖ ଘରକୁ ଡକାଇ କ୍ଲାସ୍ ନିଅନ୍ତି ଆଉ କୋର୍ସ ସାରନ୍ତି, ତାହା ଦେଖିଲା ଲୋକ ହିଁ କହିପାରିବେ । ପ୍ରତିପକ୍ଷର ପ୍ରଚାରର ଅନ୍ତଃସାରହୀନତା ସେଥିରୁ ହିଁ ପ୍ରମାଣିତ ହୋଇଯାଏ ।"

ଖୋର୍ଦ୍ଧା କଲେଜ ପ୍ରତିଷ୍ଠାରେ ଅବନୀଙ୍କ ବହୁମୁଖୀ ଅବଦାନର ସ୍ମୃତିଚାରଣ କରି ତାଙ୍କର ଅନ୍ୟ ଜଣେ ପୁରାତନ ଛାତ୍ର ତଥା ପରବର୍ତ୍ତୀ ଜୀବନରେ ଶିକ୍ଷକ ଆନ୍ଦୋଳନ ସହ ଜଡ଼ିତ ଭାଗିରଥୀ ରାଉତରାୟ କହନ୍ତି - "୧୯୭୩ ମସିହାରୁ ଖୋର୍ଦ୍ଧା କଲେଜର ମୁଁ ଜଣେ ଆଗ ଧାଡିର ଛାତ୍ର ଥିଲି, ୧୯୭୮ ମସିହା ପର୍ଯ୍ୟନ୍ତ । କଲେଜର ବିକାଶମୂଳକ କାର୍ଯ୍ୟ ହେଉ ଅଥବା ସାଂସ୍କୃତିକ କାର୍ଯ୍ୟକ୍ରମ ହେଉ ମୁଁ ସେଥିରେ ଅଙ୍ଗାଙ୍ଗୀ ଭାବେ ଜଡିତ ଥିଲି । ମୁଁ ଖୋର୍ଦ୍ଧା କଲେଜ ଛାତ୍ର ସଂଘର ସକ୍ରୀୟ ସଦସ୍ୟ ଥାଇ ଛାତ୍ର ସଂସଦର ସାଧାରଣ ସମ୍ପାଦକ ରୂପେ ନିର୍ବାଚିତ ହୋଇ ୰ ପ୍ରାଣନାଥ ବାବୁ, ଅବନୀ ସାର୍, କ୍ଷୀରୋଦ ସାର୍ ଓ ଅନ୍ୟ ଶିକ୍ଷକମାନଙ୍କ ସହିତ ଉତ୍ତମ ସମ୍ପର୍କ ସ୍ଥାପନ ପୂର୍ବକ ନବନିର୍ମିତ ଖୋର୍ଦ୍ଧା କଲେଜକୁ ଆଗେଇ ନେବାରେ ଯଥାସାଧ ସାହାଯ୍ୟ, ସହଯୋଗ ପ୍ରଦାନ କରିଥିଲି । ୰ ପ୍ରାଣନାଥ ବାବୁଙ୍କ ହସହସ ମୁହଁ, ଅବନୀ ସାର୍‌ଙ୍କ ଗଠନମୂଳକ ପରାମର୍ଶ ଓ ସୁନ୍ଦର, ସାବଲୀଳ କଥା ମୋ ପାଇଁ ପ୍ରେରଣାର ଉତ୍ସ ଥିଲା ।"

"ମୋ କଲେଜ ଶିକ୍ଷକମାନେ ଭିନ୍ନ ଭିନ୍ନ ଆଦର୍ଶର ଥିଲେ ମଧ୍ୟ କଲେଜ ଉନ୍ନତି ପାଇଁ ସମସ୍ତଙ୍କ ସହମତି ଏକ ଓ ଅଭିନ୍ନ ଥିଲା । ଅବନୀ ସାର୍‌ଙ୍କ ନେତୃତ୍ୱ ନେବାର ଦକ୍ଷତା ତାଙ୍କ ଅଧ୍ୟାପକ ଜୀବନରୁ ବାରି ହୋଇପଡୁଥିଲା । ମୋର ମନେଅଛି ସନ୍ ୧୯୭୬ ମସିହାରେ ୰ ପ୍ରାଣନାଥ ପଟ୍ଟନାୟକ ଘରୋଇ କଲେଜର ସମ୍ପାଦକମାନଙ୍କୁ ଖୋର୍ଦ୍ଧା କଲେଜଠାରେ ଏକତ୍ରିତ କରାଇଥିଲେ । ସେତେବେଳେ ଯେଉଁଠି କଲେଜ ଛାତ୍ରାବାସ ସେଇଠି ମଧ୍ୟ କଲେଜର ଅଧ୍ୟାପନା କାର୍ଯ୍ୟ ହେଉଥିଲା । ସେଇ ଆଉଟହାଉସ୍ ଗୃହରେ ୰ ପ୍ରାଣନାଥ ବାବୁଙ୍କ ସହ ଅବନୀ ସାର୍ ମିଶିକରି କଲେଜ ସବୁର ସମସ୍ୟା ସମ୍ପର୍କ ଆଲୋଚନା କରି ଏହାର ବିହିତ ବ୍ୟବସ୍ଥା ପାଇଁ ଉଦ୍ୟମ ଆରମ୍ଭ କରିଥିଲେ ।

"ଘଟଣା କ୍ରମରେ ଥରେ ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ତତ୍‌କାଳୀନ ମନ୍ତ୍ରୀ ନିତ୍ୟାନନ୍ଦ ମହାପାତ୍ର କଲେଜକୁ ଅତିଥି ହୋଇ ଆସିଥିଲେ । ଶିକ୍ଷା ସମ୍ପର୍କିତ

ଆଲୋଚନାରେ ଅଂଶ ଗ୍ରହଣ କରି ଅବନୀ ସାର୍ ତାଙ୍କର ଓଜସ୍ୱିନୀ ଭାଷଣ ଏପରି ଢଙ୍ଗରେ ଉପସ୍ଥାପିତ କଲେ, ମନ୍ତ୍ରୀ ମହୋଦୟ ଏଥିରେ ଆଶ୍ଚର୍ଯ୍ୟ ପ୍ରକଟ କରିଥିଲେ । ସେ ନିର୍ଭିକ ଭାବରେ ଶିକ୍ଷା କ୍ଷେତ୍ରରେ ପରିଲକ୍ଷିତ ଦୋଷ, ତ୍ରୁଟି ଦର୍ଶାଇ ଥିବାରୁ ମନ୍ତ୍ରୀ ମହୋଦୟ ତାଙ୍କର ନିର୍ଭିକତା ପାଇଁ ପ୍ରଶଂସା କରିବା ସହ ଭବିଷ୍ୟତରେ ସେ କିଛି ସେବା କାର୍ଯ୍ୟ କରିବାର ଆଶା ପ୍ରକଟ କରିଥିଲେ ।

ଂ ପ୍ରାଣନାଥ ବାବୁ ଓ ଅବନୀ ସାର୍‌ଙ୍କ ଉଦ୍ୟମକ୍ରମେ କଲେଜ ମଧ୍ୟରେ ଏକ ହାଇସ୍କୁଲ ପ୍ରତିଷ୍ଠା କରାଯାଇ ଏହା ଶହୀଦ ଜୟୀ ରାଜଗୁରୁଙ୍କ ନାମରେ ନାମିତ ହୋଇଥିଲା ଓ କଲେଜର ଗରିବ ଓ ମେଧାବୀ ପିଲାମାନେ ସ୍ୱଳ୍ପ ପାରିଶ୍ରମିକରେ ଶିକ୍ଷାଦାନ କାର୍ଯ୍ୟ କରିବା ସହ ନିଜେ ଅଧ୍ୟୟନ କରିପାରୁଥିଲେ । ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ପରାମର୍ଶରେ (ଡଃ. ସଦାଶିବ ମିଶ୍ର ହିଁ ଏଥିପାଇଁ ପରାମର୍ଶ ଦେଇଥିଲେ) "Earn while you learn" ସ୍କିମ୍‌ରେ ଏପରି ବିଦ୍ୟାଳୟଟିଏ ହୋଇଥିଲା ।

ଖୋର୍ଦ୍ଧାର କିଛି ଖଳ ପ୍ରକୃତିର ଲୋକ ଂ ପ୍ରାଣନାଥ ବାବୁଙ୍କ କଲେଜ ଗଠନକୁ ବିରୋଧ କରି ତାଙ୍କର ନିନ୍ଦାଗାନ କରୁଥିବାବେଳେ ଉକ୍ତ ନିନ୍ଦୁକମାନଙ୍କ ନିନ୍ଦାଗାନକୁ ପ୍ରତିହତ କରିବା ପାଇଁ ଅବନୀ ସାର୍ ଆମ୍ଭମାନଙ୍କୁ ପରାମର୍ଶ ଦେଇଥିଲେ । ମୋର ମନେ ଅଛି ଆମେମାନେ ଖୋର୍ଦ୍ଧା ମଧ୍ୟରେ ବୁଲି ବୁଲି ନିନ୍ଦୁକମାନଙ୍କ ନିନ୍ଦାଗାନକୁ ପ୍ରତିହତ କରିପାରିଥିଲୁ । ଆଜିର ପ୍ରାଣନାଥ ସ୍ୱୟଂଶାସିତ ମହାବିଦ୍ୟାଳୟ ନିକଟରେ ଉଦ୍‌ଯାପିତ ସୁବର୍ଣ୍ଣ ଜୟନ୍ତୀ ସମାରୋହରେ ଅଧ୍ୟାପକ ଅବନୀ କୁମାର ବରାଳଙ୍କୁ ଯଥାର୍ଥ ସମ୍ମାନ ପ୍ରଦାନ କରାନଯିବା ସବୁଠାରୁ ଦୁଃଖଦ ଘଟଣା ଥିଲା, ମୁଁ ସେଠାରେ ଉପସ୍ଥିତ ଥିଲେ ମଧ୍ୟ ଯେଉଁ ଅଧ୍ୟାପକ ଗଣ କଲେଜ ଗଠନରେ ଆପ୍ରାଣ ଉଦ୍ୟମ କରିଥିଲେ ସେମାନଙ୍କର ସେଠାରେ ଅନୁପସ୍ଥିତି ଅନେକ ପୁରାତନ ଛାତ୍ରଙ୍କ ମଧ୍ୟରେ ଆଲୋଡନ ସୃଷ୍ଟି କରିଥିଲା । ପ୍ରାତଃ ସ୍ମରଣୀୟ ଂ ପ୍ରାଣନାଥ ବାବୁଙ୍କ ସହ ଯେଉଁ ଅଧ୍ୟାପକ ବୃନ୍ଦ ସମଯୋଦ୍ଧା ଭାବରେ କାନ୍ଧକୁ କାନ୍ଧ ମିଶାଇ ଖୋର୍ଦ୍ଧା କଲେଜକୁ ନିର୍ମାଣ କରାଇଥିଲେ ଆଜି କାର୍ଯ୍ୟରତ ଅଧ୍ୟକ୍ଷ, ଅଧ୍ୟାପକ ବନ୍ଧୁମାନେ ଭବିଷ୍ୟତରେ ସେମାନଙ୍କୁ ଅଣଦେଖା .ନକରନ୍ତୁ, ଏତିକି ମୋର ସେମାନଙ୍କୁ ନିବେଦନ ।"-

ବନ୍ଧୁ ଓ ସହକର୍ମୀଙ୍କ ପ୍ରତି ଅନାବିଳ ସ୍ନେହ ଓ ସହାୟତାର ହାତ ବଢ଼ାଉଥିଲେ ଅବନୀ । ନୂତନ ଅଧ୍ୟାପକମାନଙ୍କ ପାଇଁ ସେ ଥିଲେ ପ୍ରେରଣାର ଉତ୍ସ । ଯେଉଁ ଅଧ୍ୟାପକ କଲେଜକୁ ନିଯୁକ୍ତି ପାଇ ଆସୁଥିଲେ, ସେମାନଙ୍କର ସୁବିଧା ଅସୁବିଧା, ଭଲମନ୍ଦ ବୁଝିବାକୁ ସେ ନିଷ୍ଠାପର ଭାବେ ଉଦ୍ୟମ କରୁଥିଲେ । ଏପରିକି କିଛି ଅଧ୍ୟାପକଙ୍କୁ ନିଜ ଘରେ ରଖି

ଆତିଥ୍ୟ ପ୍ରଦାନ କରିବାକୁ ବି କୁଣ୍ଠାବୋଧ କରୁନଥିଲେ । ପ୍ରାଣନାଥ କଲେଜର ଓଡ଼ିଆ ବିଭାଗରେ କାର୍ଯ୍ୟ କରିଥିବା ତାଙ୍କର ଜଣେ କନିଷ୍ଠ ସହକର୍ମୀ ରାମରଜ୍ଜୁ ନନ୍ଦଙ୍କ ଅନୁଭୂତି ବର୍ଣ୍ଣନାରୁ ହିଁ ଅବନୀ ବରାଳଙ୍କ ବ୍ୟକ୍ତିତ୍ୱର ମହନୀୟତା ଦେଖିବାକୁ ମିଳିଥାଏ । ତାଙ୍କରି ଭାଷାରେ –

"ଖୋର୍ଦ୍ଧା କଲେଜ (ପରବର୍ତ୍ତୀ କାଳରେ ପ୍ରତିଷ୍ଠାତାଙ୍କ ନାମାନୁସାରେ ପ୍ରାଣନାଥ କଲେଜ ଭାବେ ନାମିତ)ରେ ଅଧ୍ୟାପନା କରୁଥିଲା ବେଳେ ଅଧ୍ୟାପକ ବରାଳ ମୋର ବରିଷ୍ଠ ସହକର୍ମୀ ଥିଲେ । ତାଙ୍କ ସହ ପରିଚିତ ହେବା ଦିନଠାରୁ ମୁଁ ତାଙ୍କୁ ବରାବର ଅଗ୍ରଜର ସମ୍ମାନ ଦେଇଆସିଛି । ତାଙ୍କ ସହ ଆମର ଏକ ପ୍ରକାର ପାରିବାରିକ ସମ୍ପର୍କ ଥିଲା । ମୁଁ ପ୍ରଥମେ ସପରିବାର ଖୋର୍ଦ୍ଧାରେ ଅବସ୍ଥାନ କରୁଥିଲା ବେଳେ ଖୋର୍ଦ୍ଧା ସହରର ଉପର ସାହିରେ ଅଧ୍ୟାପକ ବରାଳଙ୍କ ପ୍ରତିବେଶୀ ଭାବେ ରହୁଥିଲି । ସେତେବେଳେ ଆମ ପରିବାର ପ୍ରତି ଥିବା ଅଧ୍ୟାପକ ବରାଳଙ୍କ ସ୍ନେହ ସମ୍ପର୍କ ବୟାଳିଶ ବର୍ଷ ପରେ ମଧ୍ୟ ଅଦ୍ୟାପି ଅକ୍ଷୁର୍ଣ୍ଣ ତଥା ଅବିସ୍ମରଣୀୟ ହୋଇ ରହିଛି । ମୋ ସ୍ତ୍ରୀଙ୍କୁ ସାର (ମୁଁ ଅଧ୍ୟାପକ ବରାଳଙ୍କୁ ଏହା ହିଁ ସମ୍ବୋଧନ କରିଥାଏ) ଡାକ ନାଁରେ ସମ୍ବୋଧନ ହିଁ କରନ୍ତି । ଆମର ଉତ୍ତର ବିବାହିତ ଜୀବନରେ ପ୍ରଥମ ଥର ପାଇଁ ଘରଛାଡ଼ି ଆସିଥିବାରୁ ଆମର ସୁଖ ସ୍ୱାଚ୍ଛନ୍ଦ୍ୟରେ ଯେପରି କିଛି ହାନି ନହୁଏ ସେଥିପ୍ରତି ତାଙ୍କର ଥାଏ ସଜାଗ ଦୃଷ୍ଟି । ଅଧିକାଂଶ ଦିନ ତ ସାର୍‌ଙ୍କ ଘରେ ଆମର ଖିଆପିଆ ପର୍ବ ସମାପନ ହେଉଥିଲା । ଅନ୍ୟ ଗୋଟିଏ ପରିବାରକୁ ଆପଣେଇ ନେବାରେ ଏପରି ଆଗ୍ରହ, ଅପର ପ୍ରତି ଏପରି ଅବାରିତ ଆତ୍ମୀୟତାର ସ୍ପର୍ଶ ମୋ ବିଚାରରେ କେବଳ ଜଣେ 'ଭଲ ମଣିଷ' ପକ୍ଷରେ ହିଁ ସମ୍ଭବ । ଅଧ୍ୟାପକ ବରାଳ କେବଳ ଯେ ଆମ ପରିବାର ପ୍ରତି ସ୍ନେହାର୍ଦ୍ର ଆତିଥେୟତା ପ୍ରଦାନ କରୁଥିଲେ ତାହା ନୁହେଁ, ଖୋର୍ଦ୍ଧା କଲେଜ ପ୍ରତିଷ୍ଠା ହେବା ପରେ ଯେଉଁ ନୂତନ ଅଧ୍ୟାପକମାନେ ଯୋଗ ଦେଉଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ସାର୍‌ଙ୍କ ଘରେ ପ୍ରଥମେ ଦିନକ ପାଇଁ ହେଉ ପଛେ ସ୍ଥାନ ମିଳୁଥିଲା । ଅଧ୍ୟାପକମାନଙ୍କ ମଧ୍ୟରେ ଅଧ୍ୟାପକ ବରାଳ କେବଳ ଅନ୍ୟତମ ବରିଷ୍ଠ ଅଧ୍ୟାପକ ନଥିଲେ, ଖୋର୍ଦ୍ଧାରେ ଅବସ୍ଥାନ କରୁଥିବା ଅଧ୍ୟାପକମାନଙ୍କ ମଧ୍ୟରେ ସେ ମଧ୍ୟ ଥିଲେ ପ୍ରଥମ ସସ୍ତ୍ରୀକ ଅଧ୍ୟାପକ । ସୁତରାଂ ଖୋର୍ଦ୍ଧା କଲେଜରେ ଯୋଗ ଦେଉଥିବା ନବୀନ ଆଗନ୍ତୁକମାନଙ୍କୁ ଆବଶ୍ୟକତାନୁଯାୟୀ ଯେ କୌଣସି ଭାବେ ସାହାଯ୍ୟ କରିବାକୁ ସେ ତାଙ୍କର ନୈତିକ ଦାୟିତ୍ୱ ଭାବେ ଗ୍ରହଣ କରିନେଇଥିଲେ ।"

ପୂର୍ବର ଖୋର୍ଦ୍ଧା କଲେଜ ବା ପରବର୍ତ୍ତୀ ସମୟର ପ୍ରାଣନାଥ ସ୍ୱୟଂଶାସିତ କଲେଜର ଓଡ଼ିଆ ବିଭାଗକୁ ଦୀର୍ଘ ୩୫ ବର୍ଷ ଧରି ନେତୃତ୍ୱ ଦେଇ ଓ ମାର୍ଗଦର୍ଶନ କରାଇ

ଅବନୀ ବରାଳ ତାହାର ଭିତ୍ତିଭୂମିକୁ ଖୁବ୍ ସୁଦୃଢ଼ କରାଇ ପାରିଥିଲେ । ଓଡ଼ିଆ ବିଭାଗ ତାଙ୍କର ବଳିଷ୍ଠ ତତ୍ତ୍ୱାବଧାନରେ ସମଗ୍ର ରାଜ୍ୟରେ ସୁଖ୍ୟାତି ଅର୍ଜନ କରିଥିଲା । କଲେଜର ଜନ୍ମ ଜାତକ ଲେଖାଯିବାର ଅଳ୍ପ କିଛି ବର୍ଷ ମଧ୍ୟରେ ଓଡ଼ିଆ ବିଭାଗ ପକ୍ଷରୁ ଏକ ନିଜସ୍ୱ ପତ୍ରିକା 'ଧୂଳିମୁଠାଏ' ପ୍ରକାଶ କରାଇପାରିଥିଲେ । ସେତେବେଳେ କଲେଜର ଆର୍ଥିକ ଅବସ୍ଥା ସେତେଟା ସ୍ୱଚ୍ଛଳ ନଥିଲେ ମଧ୍ୟ 'ଧୂଳିମୁଠାଏ'କୁ ଅନେକ ବର୍ଷ ଧରି କେବଳ ବଞ୍ଚାଇ ରଖିନଥିଲେ ଅନେକ ତରୁଣ ଲେଖକ ଲେଖିକାଙ୍କୁ ଗଢ଼ିବାରେ ସହାୟତା କରିଥିଲେ । କଲେଜର ବାର୍ଷିକ ମୁଖପତ୍ର 'ପ୍ରତୀକ' ମଧ୍ୟ ତାଙ୍କରି ବଳିଷ୍ଠ ନିର୍ଦ୍ଦେଶନାରେ ଆତ୍ମପ୍ରକାଶ କରିଥିଲା । ଅମର ସହିଦ୍ ଜୟୀରାଜଗୁରୁଙ୍କ ନାମରେ ନାମିତ କଲେଜ ଲାଇବ୍ରେରୀ ମଧ୍ୟ ତାଙ୍କର ଏକନିଷ୍ଠ ସାଧନା ଓ ପରିଶ୍ରମ ଯୋଗୁଁ ଏକ ଉନ୍ନତ ମାନର ଗ୍ରନ୍ଥାଗାରରେ ପରିଣତ ହୋଇପାରିଥିଲା । ଓଡ଼ିଆ, ଇଂରାଜୀ ସମେତ ବିଭିନ୍ନ ଭାଷାର ପ୍ରତିଷ୍ଠିତ ଲେଖକ /ଲେଖିକାଙ୍କ ସଦ୍ୟ ପ୍ରକାଶିତ ପୁସ୍ତକାବଳୀକୁ ଏହି ଲାଇବ୍ରେରୀକୁ ଅଣାଇବାର ବ୍ୟବସ୍ଥା କରିଥିଲେ । ଓଡ଼ିଆ ବିଭାଗ ପକ୍ଷରୁ ନିୟମିତ ଭାବରେ କର୍ମଶାଳା, ଆଲୋଚନାଚକ୍ର ଓ କବିତା ପାଠୋତ୍ସବ ଆଦିର ଆୟୋଜନ କରାଯାଉଥିଲା, ଯେଉଁଠିକୁ ରାଜ୍ୟର ପ୍ରତିଷ୍ଠିତ ସାରସ୍ୱତ ସାଧକମାନଙ୍କୁ ନିମନ୍ତ୍ରଣ କରାଯାଉଥିଲା ।

ଅବନୀବାବୁ ପ୍ରାଣନାଥ କଲେଜର ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ଅନ୍ୟ ସରକାରୀ କଲେଜରୁ ଶିକ୍ଷାବିତ୍‌ମାନେ ଡେପୁଟେସନ୍‌ରେ ଯାଇ ଅଧ୍ୟକ୍ଷ ନିଯୁକ୍ତ ହେଉଥିଲେ । ଏହା ଫଳରେ ଯଥେଷ୍ଟ ବରିଷ୍ଠତା ଥାଇ ସୁଦ୍ଧା ପ୍ରାଣନାଥ କଲେଜ ହେଉ କିମ୍ବା ଅନ୍ୟ ବେସରକାରୀ କଲେଜର ପ୍ରାଧ୍ୟାପକମାନେ ସେହି କଲେଜର ଅଧ୍ୟକ୍ଷ ପଦବୀ ପାଇବାରୁ ବଞ୍ଚିତ ହେଉଥିଲେ । ମାତ୍ର ଅବନୀ ବରାଳ ସେହି ନିୟମର ପରିବର୍ତ୍ତନ କରାଇଥିଲେ ଏବଂ ପରବର୍ତ୍ତୀ କାଳରେ ନିଜେ ପ୍ରାଣନାଥ କଲେଜର ଅଧ୍ୟକ୍ଷ ହୋଇଥିଲେ । ଏହା ପରେ ପରେ ବେସରକାରୀ କଲେଜର ଅଧ୍ୟାପକମାନେ ଅଧ୍ୟକ୍ଷ ହୋଇପାରିଥିଲେ । ଅଧ୍ୟକ୍ଷ ହେବା ପରେ ସେ କଲେଜର ସର୍ବାଙ୍ଗୀନ ବିକାଶ କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କରିଥିଲେ ।

କଲେଜ ପ୍ରତିଷ୍ଠା କାର୍ଯ୍ୟରେ ମୂଳରୁ ନିଜକୁ ସଂଶ୍ଳିଷ୍ଟ କରି ରଖିଥିବା ଏହି ସମର୍ପିତ ଶିକ୍ଷାବିତ୍ ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିବା ଫଳରେ ବାହାରେ କଲେଜର ଗୌରବ ବୃଦ୍ଧି ପାଇଥିଲା । ସମସ୍ତଙ୍କୁ ଏକାଠି ନେଇ କାର୍ଯ୍ୟ କରିବାର କଳା ତାଙ୍କୁ ବେଶ ଭଲ ଭାବରେ ଜଣାଥିଲା । ସେ ଅଧ୍ୟକ୍ଷ ଥିବାବେଳେ ଛାତ୍ର ସଂସଦର ସଭାପତି ରୂପେ ନିର୍ବାଚିତ ହୋଇଥିବା ଅଶୋକ କୁମାର ଦାସଙ୍କ ବର୍ଣ୍ଣନାରୁ କଲେଜର ଉନ୍ନତି ପାଇଁ ଅବନୀଙ୍କ

ଐକାନ୍ତିକ ପ୍ରଚେଷ୍ଟାର ସ୍ପଷ୍ଟ ଚିତ୍ର ଦେଖିବାକୁ ମିଳେ । ଅଶୋକଙ୍କ ଭାଷାରେ - "ଖ୍ରୀଷ୍ଟ କଲେଜରୁ +୨ ପରୀକ୍ଷା ଦେଇ ଆସିଥାଏ । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ସ୍ନାତକ ପାଇଁ ଖୋର୍ଦ୍ଧାର ପ୍ରାଣନାଥ କଲେଜରେ ନାମ ଲେଖାଇଲି । ମୋ ପାଇଁ ସେତେବେଳେ ଖୋର୍ଦ୍ଧା ହିଁ ଅପରିଚିତ ଥିଲା । ଇଛା ଥିଲା ଏକ ପ୍ରତିଷ୍ଠିତ ଓ ମନୋରମ କଲେଜରେ ପଢ଼ିବି । କିନ୍ତୁ ପ୍ରାଣନାଥ କଲେଜର ସୌନ୍ଦର୍ଯ୍ୟ ମୋତେ ଆକୃଷ୍ଟ କଲାନି । କଲେଜର ନାମଫଳକ ନଥାଏ, ପାଚେରୀ ନଥାଏ କି ଯୋଗାଯୋଗ ପାଇଁ ଫୋନ୍‌ଟିଏ ମଧ୍ୟ ହଷ୍ଟେଲରେ ନଥାଏ । ପୂରା କଲେଜଟି ଯେମିତି ପତ୍ରଝଡ଼ା ଶାଖା ପ୍ରଶାଖାହୀନ କୃଷ୍ଣଚୂଡ଼ା ଗଛ ପରି ଲାଗୁଥାଏ । କଲେଜରେ ପାଠପଢ଼ା ଆରମ୍ଭ ହେବା ପରେ ମୁଁ ପୁଣିଥରେ ଭେଟିବାର ସୁଯୋଗ ପାଇଲି ଅବନୀ ସାରଙ୍କୁ । ପରିଚିତ ହେଲି ତାଙ୍କ ବ୍ୟକ୍ତିତ୍ୱ ସହ । ଏହା ପରଠାରୁ କଲେଜଟି ମୋତେ ଖୁବ୍ ଆକର୍ଷିତ କଲା, ଗୁରୁକୁଳର ଆଶ୍ରମଟିଏ ପରି ଲାଗିଲା ।

୧୯୯୨ ମସିହାରେ କଲେଜରେ ମୋର ଶେଷ ବର୍ଷ । ସେତେବେଳେ ମୁଁ ଛାତ୍ର ସଂସଦ ନିର୍ବାଚନରେ ସଭାପତି ପଦ ପାଇଁ ପ୍ରତିଦ୍ୱନ୍ଦିତା କରୁଥାଏ । ଠିକ୍ ସେହି ସମୟରେ ମଣ୍ଡଳ କମିଶନ ନିଆଁରେ ପୂରା ଦେଶ ଜଳୁଥାଏ । ସବୁ କଲେଜରେ ଛାତ୍ରମାନଙ୍କୁ ତାଗିଦ୍ / ଆମ କଲେଜକୁ ଲାଗି ଯାଇଥିବା ରାଜ୍ୟ ରାଜପଥରେ ଉତ୍ତେଜନା, ଖୋର୍ଦ୍ଧାରେ ୧୪୪ ଧାରା ଜାରି । ତେଣେ ନିକଟସ୍ଥ ନିରାକାରପୁର କଲେଜରେ ମଣ୍ଡଳ କମିଶନକୁ ବିରୋଧ କରି ଛାତ୍ର ଆନ୍ଦୋଳନ ତୀବ୍ରତର ରୂପ ଧାରଣ କରିଥାଏ । ସେଠାରେ ପୁଲିସ ଗୁଳିରେ ଜଣଙ୍କର ମୃତ୍ୟୁ ହୋଇସାରିଥାଏ । ଏପରି ଘଡ଼ସନ୍ଧି ମୁହୂର୍ତ୍ତରେ ଆମ କଲେଜର ନିର୍ବାଚନ ଥାଏ । ସାର୍ (ଅବନୀ ବାବୁ) ଆମ ସମସ୍ତଙ୍କୁ ନେଇ ଆଲୋଚନା କଲେ ଛାତ୍ର ସଂସଦ ନିର୍ବାଚନକୁ ବାତିଲ୍ କରିବା । ମୁଁ କିନ୍ତୁ ସାର୍‌ଙ୍କ ମତରେ ଏକମତ ହୋଇନଥିଲି । ମୋର ଯୁକ୍ତି ଥିଲା ନିର୍ବାଚନ ହେଲେ ଛାତ୍ର ନେତାମାନେ କଲେଜର ଅଭାବ ଅସୁବିଧାକୁ ଦୂର କରାଇବା ପାଇଁ ଚେଷ୍ଟା କରିବେ । ସେ ସମସ୍ତଙ୍କ କଥା ଖୁବ୍ ଧ୍ୟାନ ଦେଇ ଶୁଣିଲା ପରେ ମୋ କଥାରେ ଏକମତ ହୋଇଥିଲେ ।

ଛାତ୍ର ସଂସଦ ନିର୍ବାଚନରେ ମୁଁ ସଭାପତି ଭାବେ ନିର୍ବାଚିତ ହେଲା ପରେ ସାରଙ୍କ ସହ ସମ୍ପର୍କ ମୋର ନିବିଡ଼ ହୋଇଗଲା । ମୁଁ ସଭାପତି ଥିବା ସମୟରେ କଲେଜର ଗେଟ୍, ପାଚେରୀ, କଲେଜ ହଷ୍ଟେଲର ଫୋନ୍ ସଂଯୋଗ ଆଦି ସାର୍‌ଙ୍କ ସହ ବିଚାର ବିମର୍ଷ କରି କରାଇଥିଲି । କଲେଜ ପାଖ ଜେମାଦେଇପୁର ଓ ମୁକୁନ୍ଦ ପ୍ରସାଦ ଗାଁର କିଛି ଲୋକ କଲେଜ ଜମିକୁ ଜବର ଦଖଲ କରି ରଖିଥିଲେ । ସାରଙ୍କ ଆନ୍ତରିକତା ଯୋଗୁଁ

ତାକୁ ମଧ୍ୟ ଏଇ ସମୟରେ ମୁକୁଳାଗଲା । ବହୁ ଛାତ୍ରଛାତ୍ରୀ ଦୂରଦୂରାନ୍ତରରୁ ଆସି ମେସ୍‌ରେ ରହୁଥିଲେ । ସେମାନଙ୍କ ସୁବିଧା ପାଇଁ ସାର୍ ସେମାନଙ୍କୁ ରାସନ୍ କାର୍ଡ଼ ଦେବାରେ ସାହାଯ୍ୟ କରିଥିଲେ । ପ୍ରକୃତ ପକ୍ଷେ କହିବାକୁ ଗଲେ ପ୍ରାଣନାଥ କଲେଜ ଆରମ୍ଭ ଦିନରୁ ସାର୍ ଏହାର ବିକାଶ କାର୍ଯ୍ୟରେ ଜଡ଼ିତ ଥିଲେ । ଏଣୁ ଏକ ଆଦର୍ଶ କଲେଜ ଭାବେ ଗଢ଼ି ତୋଳିବା ପାଇଁ ସର୍ବଦା ପ୍ରୟାସ କରୁଥିଲେ । କଲେଜରେ ମୁଁ ସଭାପତି ଥିବା ସମୟରେ ଯେଉଁ ଉନ୍ନତି ଘଟିଥିଲା, ଯେତେ ବର୍ଣ୍ଣାଢ଼୍ୟ କାର୍ଯ୍ୟକ୍ରମଗୁଡ଼ିକ ହୋଇଥିଲା, ସେସବୁ ପଛରେ ସାର୍‌ଙ୍କ ଆନ୍ତରିକତା, ପ୍ରଚେଷ୍ଟା ଓ ଇଚ୍ଛାଶକ୍ତି ହିଁ ରହିଥିଲା ।

ସୁଦୀର୍ଘ କର୍ମମୟ ଜୀବନର ୩୫ ବର୍ଷ ଗୋଟିଏ ନିର୍ଦ୍ଦିଷ୍ଟ ଶିକ୍ଷାନୁଷ୍ଠାନରେ କାର୍ଯ୍ୟ କରି ତାକୁ ପ୍ରାଣଭରି ଭଲପାଇ ତାହାର ଉନ୍ନତିରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କରିଥିବା ଅବନୀ ବରାଳଙ୍କୁ ଚାକିରୀ କାଳ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅନେକ ତିକ୍ତ ମଧୁର ଅଭିଜ୍ଞତା ଅର୍ଜନ କରିବାକୁ ହୋଇଛି ।

ଉଦ୍‌ଘାଟନ ଦିବସରେ କଲେଜର ଏକ ଦାୟିତ୍ୱ ସମ୍ପାଦନ କରିବା ଯୋଗୁଁ ଅଳ୍ପ କେତେ ଘଣ୍ଟାର ବରିଷ୍ଠତା ହରାଇଥିବା ଅବନୀ ସେହିଦିନ ତାଙ୍କ ସହ କାର୍ଯ୍ୟରେ ଯୋଗ ଦେଇଥିବା ଅନ୍ୟ ଦୁଇ ଅଧ୍ୟାପକ ବନ୍ଧୁ ବିଜୟ କୁମାର ମହାପାତ୍ର ଓ ବିବେକାନନ୍ଦ ଦାସଙ୍କ ସହିତ ଗୋଟିଏ ଘରେ ସାଥୀ ହୋଇ ରହିଥିଲେ । ସେମାନଙ୍କ ମଧ୍ୟରେ ରହିଥିଲା ନିବିଡ଼ ସୌହାର୍ଦ୍ଦ୍ୟ । ସେହି ସମୟର ସ୍ମୃତିଚାରଣ କରି ସେଦିନର ତରୁଣ ଅର୍ଥନୀତି ଅଧ୍ୟାପକ ତଥା ପରବର୍ତ୍ତୀ ଜୀବନରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଅର୍ଥଶାସ୍ତ୍ର ବିଭାଗର ପ୍ରାକ୍ତନ ପ୍ରଫେସର ସ୍ୱର୍ଗତ ଡକ୍ଟର ବିବେକାନନ୍ଦ ଦାସ କହନ୍ତି – "୧୯୫୯ ମସିହାର କଥା । ଆମେ ସବୁ ସାଥିହୋଇ ଗୋଟିଏ କୋଠାରେ ଥାଉଁ । ତା'ପରେ ପାଖାପାଖି ରହିଲୁ । ବୁଶ୍ ରେଡ଼ିଓ ପ୍ରଥମକରି ବାହାରିଥାଏ ଓ ବନ୍ଧୁ ତାହା କିଣିଥାନ୍ତି । ମୁଁ ରେଡ଼ିଓ ସେଠି ଶୁଣେ । ଆମେ ଆଳାପ କରୁ । ସାଙ୍ଗହୋଇ କଲେଜ ଯାଉ ଆସୁ, ବଜାର ସଉଦା କରୁ, 'ନିଉଏଜ୍'ଠୁ ଆରମ୍ଭ କରି 'ଆସନ୍ତା କାଲି' ପର୍ଯ୍ୟନ୍ତ ପତ୍ରପତ୍ରିକା କିଣୁ । ପଢ଼ିବା ଲେଖିବାରେ ବନ୍ଧୁଙ୍କର ବଡ଼ ଝୁଙ୍କ୍ । ତାଙ୍କ କଟକ ବସାରେ ରହିଛି । ସେ ଜନତା ରଙ୍ଗମଞ୍ଚ ପରିଚାଳନା କରୁଥିଲା ବେଳେ ଥିଏଟର ଦେଖିଛି । ମନେଅଛି ବନ୍ଧୁତ୍ୱ ଆରମ୍ଭ ହୋଇଥିଲା କେସୁଦ୍ ତେଲରୁ । କଲେଜକୁ ଯୋଗ ଦେବାକୁ ଯାଇଥାଏ । ପରଦିନ ଗାଧୋଇବା ପାଇଁ ତେଲ କିଣିବାକୁ ବାହାରିଲା ବେଳକୁ ଅବନୀ ବାବୁ କହିଲେ, ଏ ତେଲ ଲଗାଯାଉ । ଏ ତେଲର ଉକ୍ତି ଅନେକ ବର୍ଷ ହେଲି । ଯେବେ ବନ୍ଧୁଙ୍କ କଥା ମନେପଡ଼େ, କେସୁଦ ମନରେ ମହକି ଉଠେ । ବନ୍ଧୁତ୍ୱର ବାସନାରେ ବୁଲି, ବନ୍ଧୁ ଓ ମୁଁ ଚକମାଟି ପକାଇ ଗୋଟିଏ ଥାଳିରେ

ଖାଉଥିବା କଥା ମନେପଡ଼େ । ଫୁଲ୍‌ କୁଲ୍‌ ସେମାନଙ୍କ ବଡ଼ପୁଅ, ଆମ ସହିତ ସବୁଥିରେ ଥାଏ । ଭଲଦିନ ଗୁଡ଼ିଏ ଆମେ ବିତାଇଛୁ । ବନ୍ଧୁଙ୍କର ଗୋଟିଏ ଗୁଣ ମତେ ମୁଗ୍‌ଧ କରିଛି । ସରସତା ଓ ଦୁଃଖ ଏକ ସଙ୍ଗେ ପ୍ରକାଶ କରିବାର ଶକ୍ତି । ଥରେ ଆମେ ଯାଉଥାଉ ବାଟରେ ସେ ଶକ୍ତ ଝୁଣ୍ଟିଲେ । ଗୋଡ଼ରେ ଆଘାତ ଲାଗିଲା । 'ଓଃ ହୋ' ହେଉଥାନ୍ତି, ହସୁ ବି ଥାଆନ୍ତି । ସମନ୍ୱୟ ଦେଖିବା କଥା । ରେଖାପାତ ଆଜି ପର୍ଯ୍ୟନ୍ତ ମୋଠି ଅଛି ।

ଖୋର୍ଦ୍ଧା କଲେଜରେ ଅବନୀଙ୍କ ଠାରୁ ମାତ୍ର ଅଳ୍ପ କେତେ ଘଣ୍ଟାର ବରିଷ୍ଠତା ଗଣ୍ୟ ହେଉଥିବା ଅଧ୍ୟାପକ ବିଜୟ କୁମାର ମହାପାତ୍ରଙ୍କ ସହ ତାଙ୍କର ରାଜନୈତିକ ଚିନ୍ତାଧାରା ଓ ଦର୍ଶନ କ୍ଷେତ୍ରରେ ମତପାର୍ଥକ୍ୟ ରହିଥିଲା । ଏହା ସତ୍ତ୍ୱେ ବିଜୟ ବାବୁଙ୍କୁ ତାଙ୍କର ନିଷ୍ଠା, ସାଧୁତା ଓ କର୍ତ୍ତବ୍ୟ ପରାୟଣତା କିପରି ଅଭିଭୂତ କରିଥିଲା, ତାହା ନିମ୍ନୋକ୍ତ ବର୍ଣ୍ଣନାରୁ ଜଣାପଡ଼େ ।

"ଅନେକ ସମୟରେ ମୋତେ ଅନ୍ୟମାନେ ପ୍ରଶ୍ନ କରିଥାନ୍ତି ଏବଂ ଏବେ ମଧ୍ୟ (ବିଶେଷତଃ ସରକାରୀ କର୍ମଚାରୀମାନେ) କରୁଛନ୍ତି ଯେ ଅବନୀ ବରାଳ ସର୍ବଦା ସଂଘକୁ ନେଇ ବ୍ୟସ୍ତ ଥାନ୍ତି । ଏଣୁ ସେ କଲେଜରେ କ୍ଲାସ ତଥା ଅନ୍ୟାନ୍ୟ କାର୍ଯ୍ୟ କେତେବେଳେ କରିଥାନ୍ତି ? ମୁଁ ତାଙ୍କୁ ଉତ୍ତର ଦେଇଥିଲି ଏବଂ ଏବେ ମଧ୍ୟ ଦିଏ ସେ ତାଙ୍କ କାର୍ଯ୍ୟରେ କେବେ ଖିଲାପ କରନ୍ତି ନାହିଁ । ଯଥା ସେ ପ୍ରତ୍ୟେକ ଦିନ ପ୍ରାୟ ୧୦ଟାରୁ ୨ଟା ପର୍ଯ୍ୟନ୍ତ କଲେଜରେ ତାଙ୍କର ନିୟମିତ କାର୍ଯ୍ୟକରି, ସଂଘ କାର୍ଯ୍ୟ ପାଇଁ ତା ପରେ ଭୁବନେଶ୍ୱର ଯାଆନ୍ତି ଏବଂ ରାତି ପ୍ରାୟ ୧୧ଟା ବା ୧୨ଟାରେ ନିଜ ବାସସ୍ଥାନ ଖୋର୍ଦ୍ଧାକୁ ଫେରି ଆସନ୍ତି । ଏହାଛଡ଼ା ଅଧ୍ୟକ୍ଷ ଯେତେବେଳେ ଅନ୍ୟାନ୍ୟ (Extra-curricular) କାର୍ଯ୍ୟ ସମ୍ପାଦନ ପାଇଁ ତାଙ୍କୁ ନିର୍ଦ୍ଦେଶ ଦିଅନ୍ତି, ସେତେବେଳେ ସେ କଲେଜରେ ସଦାସର୍ବଦା ଉପସ୍ଥିତ ରହି କାର୍ଯ୍ୟ ସମ୍ପାଦନ କରିଥାନ୍ତି । ମୁଁ ନିଜେ ମଧ୍ୟ ଅନେକ ଥର ଏହି କଲେଜର Officiling Principal ଭାବରେ ଏହା ଅନୁଧ୍ୟାନ କରିଛି ଏବଂ ଆବଶ୍ୟକ ସ୍ଥଳେ କଲେଜର ଶାସନଗତ ପରିଚାଳନା ପାଇଁ ସେ ମୋତେ ସାହାଯ୍ୟ କରୁଥାନ୍ତି ।

ଆଉ ଗୋଟିଏ କଥା ମୋର ମନେ ପଡୁଛି । ଅବନୀ ବରାଳଙ୍କର ଅଧ୍ୟକ୍ଷ ହେବା ପାଇଁ ଇଚ୍ଛା ନଥିଲା । ଏକଦା ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟକୁ ଖୋର୍ଦ୍ଧା କଲେଜରୁ ସଭ୍ୟ ନିର୍ବାଚନରେ ତୁମୁଳ ପ୍ରତିଦ୍ୱନ୍ଦିତା ହୋଇଥିଲା । ସେତେବେଳେ ଗ୍ରୀଷ୍ମ ଅବକାଶ ଛୁଟି ପଡ଼ିଥାଏ ଏବଂ ମୁଁ ମୋ ଗାଁରେ ଥାଏ । ଅବନୀ ବରାଳ ମୋ ନିକଟକୁ ଚିଠି ଖଣ୍ଡିଏ ଲେଖିଥିଲେ ଏବଂ ତାଙ୍କ ସପକ୍ଷରେ ମତଦାନ ପାଇଁ ମୋତେ ଅନୁରୋଧ

କରିବା ସଙ୍ଗେ ସଙ୍ଗେ ସେ ମଧ୍ୟ ଜଣାଇଥିଲେ ଯେ ତୁମେ କଲେଜର ଅଧ୍ୟକ୍ଷ ଭାବରେ ରୁହ ଏବଂ ସେଥିପ୍ରତି ତାଙ୍କର ଆଗ୍ରହ ନାହିଁ । ଏହା ବ୍ୟତୀତ ମୁଁ ଯେତେବେଳେ ଉପେନ୍ଦ୍ର ନାଥ ମହାବିଦ୍ୟାଳୟ ସୋରରେ ଅଧ୍ୟକ୍ଷ ଥିଲି, ସେତେବେଳେ ପ୍ରାଣନାଥ କଲେଜର ଅଧ୍ୟକ୍ଷ ମହମ୍ମଦ ଫକୀରୁଦ୍ଦିନ ଓଡ଼ିଶାର ଉଚ୍ଚମାଧ୍ୟମିକ ଶିକ୍ଷା ପରିଷଦକୁ Vice-chairman ଭାବେ ବଦଳି ହୋଇଥିଲେ । ଠିକ ସେତିକିବେଳେ ଅବନୀ ବାବୁ ମୋ ନିକଟକୁ ଚିଠି ଲେଖି ସେଠାକୁ ଅଧ୍ୟକ୍ଷ ହୋଇ ଯିବାପାଇଁ ପ୍ରବର୍ତ୍ତାଇ ଥିଲେ । କାରଣ ସେ ବୋଧହୁଏ ଚାହୁଁଥିଲେ ଯେ ସେ ଓ ମୁଁ ସାଥିରେ ରହି କଲେଜ ପାଇଁ ଆଉ କିଛି ଉନ୍ନତିମୂଳକ କାର୍ଯ୍ୟ କରିବା ପାଇଁ । କିନ୍ତୁ ମୁଁ ତାଙ୍କୁ ଲେଖିଥିଲି ଯେ ତୁମେ ସେଠାରେ ଅଧ୍ୟକ୍ଷ ହୁଅ ଏବଂ ତୁମେ ଅବସର ନେବା ପରେ ମୁଁ ସେଠାରେ ଯୋଗଦେଇ ଅବସର ନେବି । କାରଣ ମୁଁ ଯେତେବେଳେ ଖୋର୍ଦ୍ଧା ପ୍ରାଣନାଥ କଲେଜରୁ ବଦଳି ହୋଇ ଆସିଲି, ସେତେବେଳେ ମୋର ଚିନ୍ତାଧାରା ଥିଲା ଯେ ମୁଁ ଯେଉଁଆଡ଼େ ଥିଲେ ମଧ୍ୟ ଏହି କଲେଜରୁ ଶେଷରେ ଅବସର ନେବି । ଏକଥା ଉଣା ଅଧିକେ କେତେକ ଅଧ୍ୟାପକ ସେଠାରେ ମଧ୍ୟ ଜାଣନ୍ତି । ଏହାଛଡ଼ା ଅବନୀ ବରାଳଙ୍କୁ ସେଠି କଲେଜରେ ଅଧ୍ୟକ୍ଷ ଭାବରେ ଯୋଗ ଦେବା ଲାଗି ତାଙ୍କୁ ପ୍ରବର୍ତ୍ତାଇବା ପାଇଁ ଏବଂ ପ୍ରଶାସନ କ୍ଷେତ୍ରରେ ତାଙ୍କୁ ସାହାଯ୍ୟ କରିବା ପାଇଁ, ସେତେବେଳର ଅଧ୍ୟାପକ ଶ୍ରୀ ଗୟାଧର ରାଉତ ଓ ବର୍ତ୍ତମାନର ଅଧ୍ୟାପକ ଡଃ ଜୟନ୍ତ କୁମାର ପରିଡ଼ା, ଶ୍ରୀ କୀର୍ତ୍ତନ ବିହାରୀ ଦାସ ଇତ୍ୟାଦିଙ୍କ ନିକଟକୁ ମୁଁ ଚିଠି ଲେଖିଥିଲି । କାରଣ ମୋର ଦୃଢ଼ ଇଚ୍ଛା ଥିଲା ଯେ ପ୍ରାଣନାଥ କଲେଜ ଖୋର୍ଦ୍ଧାକୁ ଆଉ ସରକାରୀ ସ୍ତରରୁ Deputation ରେ କେହି ଅଧ୍ୟକ୍ଷ ହୋଇ ନଆସନ୍ତୁ ।

ଖୋର୍ଦ୍ଧା ପ୍ରାଣନାଥ କଲେଜର ଉନ୍ନତି ମୂଳରେ ଆମ ଦୁଇଜଣଙ୍କର ବହୁତ ଅବଦାନ ରହିଛି ଏବଂ ଏହା ସମ୍ଭବ ହୋଇପାରିଛି କେବଳ ସ୍ୱର୍ଗତ ପ୍ରାଣନାଥ ପଟ୍ଟନାୟକଙ୍କ ପ୍ରେରଣା ଓ ତାଙ୍କ ସହିତ ଆମ୍ଭମାନଙ୍କର କଲେଜ ପାଇଁ କାର୍ଯ୍ୟ କରିବାର ଉତ୍ସାହ ଏବଂ ନିଷ୍ଠା । ପ୍ରଥମରୁ ବହୁତ ଲୋକ (କଲେଜ ମଧ୍ୟରେ ଏବଂ ବାହାରେ) ଭାବୁଥିଲେ ଯେ ମୋର ଓ ଅବନୀବାବୁଙ୍କ ମଧ୍ୟରେ ବିଭେଦ ସବୁଥିରେ ରହିଛି ଏବଂ କଲେଜରେ ଦୁଇଟି ଦଳ ଅଛନ୍ତି । ଏ ପ୍ରକାର ଧାରଣା କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଙ୍କର ଏବଂ ପରେ ଏ ଧାରଣା ମଉଳି ଯାଇଥିଲା ।"-

ଖୋର୍ଦ୍ଧା କଲେଜର ଉଦ୍‌ଘାଟନ ଉତ୍ସବରେ ତତ୍‌କାଳୀନ ମିଳିତ ମନ୍ତ୍ରୀମଣ୍ଡଳର ତିନିଜଣଯାକ ମନ୍ତ୍ରୀଙ୍କ ଯୋଗଦାନ ଏବଂ ପ୍ରେରଣାଦାୟକ ବକ୍ତବ୍ୟ ପ୍ରଦାନ ସତ୍ତ୍ୱେ କଲେଜ ପ୍ରତି ସରକାରଙ୍କ ଅସହଯୋଗ ଅବ୍ୟାହତ ରହିଥିଲା । ୧୯୫୯ ମସିହା ଶେଷ ବେଳକୁ

କଲେଜର ଆର୍ଥିକ ଅବସ୍ଥା ସଙ୍କଟାପନ୍ନ ହୋଇପଡ଼ିଥିଲା । ତେଣୁ କଲେଜ ପାଇଁ ବାହାରୁ ପାଣ୍ଠି ସଂଗ୍ରହ ଉଦ୍ଦେଶ୍ୟରେ ବିଭିନ୍ନ ଉପାୟ ଚିନ୍ତା କରାଗଲା । ପ୍ରତିଷ୍ଠାତା ପ୍ରାଣନାଥ ଏଥିନେଇ ମୁଖ୍ୟତଃ ଅବନୀଙ୍କ ସହ ଆଲୋଚନା କରୁଥିଲେ ଏବଂ ତାଙ୍କର ପରାମର୍ଶ ନେଉଥିଲେ । ଦୁହେଁ ମିଶି ନିଷ୍ପତ୍ତି କଲେ ଯେ, ଖୋର୍ଦ୍ଧା କଲେଜ ପାଇଁ ଅର୍ଥ ସଂଗ୍ରହ କରିବାକୁ କଲିକତା ଠାରେ ଏକ ସାଂସ୍କୃତିକ ଉତ୍ସବ ଆୟୋଜନ କରାଯିବ ଏବଂ କଳା ବିକାଶ କେନ୍ଦ୍ରରୁ ବଛାବଛା କଳାକାରମାନଙ୍କୁ ଏଥିପାଇଁ କଲିକତା ନିଆଯିବ । ଏଥିପାଇଁ ଜୋରଦାର ପ୍ରସ୍ତୁତି ଆରମ୍ଭ ହୋଇଗଲା । ସଂସ୍କୃତି କ୍ଷେତ୍ର ସହ ଜଡ଼ିତ ଅବନୀ ବରାଳ କଳାବିକାଶ କେନ୍ଦ୍ରର କଳାକାରମାନଙ୍କ ସହିତ ଯୋଗାଯୋଗ ସ୍ଥାପନ କରି କାର୍ଯ୍ୟକ୍ରମର ଚୂଡ଼ାନ୍ତ ରୂପରେଖ ପ୍ରସ୍ତୁତ କରିଥିଲେ । ତଦନୁଯାୟୀ କଲିକତା ବିଶ୍ୱବିଦ୍ୟାଳୟ ହଲରେ ୧୯୬୦ ଫେବୃୟାରୀ ମାସରେ ଏକ ମନୋଜ୍ଞ ସାଂସ୍କୃତିକ ସନ୍ଧ୍ୟା ଆୟୋଜିତ ହୋଇଥିଲା । କଳାବିକାଶ କେନ୍ଦ୍ରର ସେ ସମୟର ଜଣାଶୁଣା କଳାକାରମାନେ ମାୟାଧର ମାନସିଂହଙ୍କ ଲିଖିତ 'କୋଣାର୍କ ଜାଗରଣ' ଉପରେ ନୃତ୍ୟ ନାଟିକା ପରିବେଷଣ କରିଥିଲେ । ଏଥିପାଇଁ ପ୍ରାଣନାଥ ଓ ଅବନୀ ଅନେକ ଦିନ ଧରି କଲିକତାରେ ଡେରା ପକାଇ ରହିଥିଲେ । ତେବେ ଯେଉଁ ଉଦ୍ଦେଶ୍ୟରେ ଏହି କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା ତାହା ବିଶେଷ ଫଳପ୍ରଦ ହୋଇପାରିଲା ନାହିଁ । ଉତ୍ସବର ଆୟ ଠାରୁ ବ୍ୟୟ ଅଧିକ ହେବାରୁ ଆଶାନୁରୂପ ଅର୍ଥ ମିଳିପାରିନଥିଲା । ଦୁହେଁ ବିଫଳ ମନୋରଥ ହୋଇ କଲିକତାରୁ ଫେରିଥିଲେ ।

ଖୋର୍ଦ୍ଧା କଲେଜରେ ଶିକ୍ଷାଦାନ ଆରମ୍ଭ ହେବା ପରବର୍ତ୍ତୀ ସମୟର ଏକ ଘଟଣା । କଲେଜ ପ୍ରତି ଅବନୀଙ୍କ ନିଷ୍ଠାପର ଅବଦାନ ଓ ଆନୁଗତ୍ୟରେ ଈର୍ଷାନ୍ୱିତ ହୋଇ କଲେଜକୁ ମୂଳରୁ ବିରୋଧ କରୁଥିବା ସହରର ଜଣେ ଦୁଇଜଣ ବ୍ୟକ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ତତ୍‌କାଳୀନ ସୁଯୋଗ୍ୟ କୁଳପତି ବିଶ୍ୱ ବିଖ୍ୟାତ ବୈଜ୍ଞାନିକ ତଥା ଶିକ୍ଷାବିତ୍ ଏବଂ ପ୍ରାଣନାଥ ପଟ୍ଟନାୟକଙ୍କର ଶିକ୍ଷା ଗୁରୁ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ଏକ ପତ୍ର ଲେଖି ଅଭିଯୋଗ କରିଥିଲେ ଯେ, ପ୍ରତିଷ୍ଠାତା ନିଜେ କମ୍ୟୁନିଷ୍ଟ ହୋଇଥିବାରୁ କମ୍ୟୁନିଷ୍ଟ ଅବନୀ ବରାଳଙ୍କୁ ଅଧ୍ୟାପକ ରୂପେ ନିଯୁକ୍ତ କରିଛନ୍ତି । ଅବନୀ ଛାତ୍ରଛାତ୍ରୀଙ୍କ ମଧ୍ୟରେ କମ୍ୟୁନିଷ୍ଟ ଭାବଧାରା ପ୍ରଚାର କାର୍ଯ୍ୟରେ ଲାଗିପଡ଼ିଛନ୍ତି । ପରିଜା ସାହେବ ଏହି ଅଭିଯୋଗପତ୍ର ପାଇବା ପରେ ଅନ୍ୟ କାହାକୁ ନପଠାଇ ନିଜେ ତଦନ୍ତ କରିବାକୁ ଖୋର୍ଦ୍ଧା ଆସିଲେ । କାରଣ ଉଭୟ ପ୍ରାଣନାଥ ବାବୁ ଓ ଅବନୀ ବରାଳଙ୍କ ସହ ତାଙ୍କର ସୁସମ୍ପର୍କ ରହିଥିଲା । ନିର୍ଦ୍ଧାରିତ ସମୟରେ ଅଭିଯୋଗର ଉତ୍ତର ଦେବାକୁ ଅବନୀ ଡକ୍ଟର ପରିଜାଙ୍କ ପାଖରେ ହାଜର

ହେଲେ । ପରିଜା ସାହେବ ତାଙ୍କୁ ପ୍ରଶ୍ନ କଲେ - ଅବନୀ, ତୁମ ନାମରେ ଅଭିଯୋଗ ଆସିଛି ତୁମେ ଏହି କଲେଜରେ କମ୍ୟୁନିଷ୍ଟ ମତବାଦ ପ୍ରଚାର କରୁଛ । ଏହା ଫଳରେ ପାଠପଢ଼ା ପ୍ରଭାବିତ ହେଉଛି । ତୁମର ଏ ସମ୍ପର୍କରେ କ'ଣ କହିବାର ଅଛି ?

ଅବନୀ ଖୁବ୍ ନମ୍ରତାର ସହ ପରିଜାଙ୍କୁ ଉତ୍ତର ଦେଇଥିଲେ - "ସାର୍, ମୁଁ ଅସ୍ୱୀକାର କରୁନାହିଁ ଯେ ମୁଁ ଜଣେ ମାର୍କ୍ସବାଦୀ । ମାର୍କ୍ସବାଦ ଆଦର୍ଶ ପ୍ରତି ମୋର ପ୍ରଗାଢ଼ ଆସ୍ଥା ଓ ବିଶ୍ୱାସ ରହିଛି । କିନ୍ତୁ କଲେଜରେ ପାଠ ପଢ଼ାଇବା ବେଳେ ମୋର ସେହି ଆଦର୍ଶ ପ୍ରଚାର କରୁଛି ବୋଲି ହୋଇଥିବା ଅଭିଯୋଗକୁ ମୁଁ ଦୃଢ଼ ଭାବରେ ଅସ୍ୱୀକାର କରୁଛି । ଜଣେ ଅଧ୍ୟାପକର ଦାୟିତ୍ୱ ନିର୍ବାହ କଲାବେଳେ ମୁଁ କୌଣସି ରାଜନୈତିକ ମତବାଦ ପୋଷଣ କରିନଥାଏ । ଆପଣ ଯେ କୌଣସି ବ୍ୟକ୍ତିଙ୍କ ଠାରୁ ଅନୁସନ୍ଧାନ କରି ଏହା ବୁଝିପାରନ୍ତି ।" ଅବନୀଙ୍କ ଏହି ସ୍ପଷ୍ଟୋକ୍ତି ପରିଜାଙ୍କୁ ଖୁବ୍ ପ୍ରଭାବିତ କରିଥିଲା । ସେ ତାଙ୍କୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଅଭିଯୋଗ ପତ୍ରଟିକୁ ସେଇଠାରେ ଚିରି ଡଷ୍ଟବିନ୍‌କୁ ପକାଇ ଦେଇଥିଲେ । ପ୍ରତିଷ୍ଠାତା ପ୍ରାଣନାଥ ଏକାଦଶ ସାମ୍ବତ୍ସରିକ ଉତ୍ସବରେ (ତାଙ୍କ ଜୀବନର ଶେଷ ଉତ୍ସବ) କଲେଜର ବିଭିନ୍ନ ପ୍ରକୋଷ୍ଠକୁ ଦେଶର ଶ୍ରେଷ୍ଠ ବରପୁତ୍ରମାନଙ୍କ ନାମରେ ନାମିତ କଲାବେଳେ ଗୋଟିଏ ପ୍ରକୋଷ୍ଠକୁ ଡକ୍ଟର ପରିଜାଙ୍କ ନାମରେ ମଧ୍ୟ ନାମିତ କରିଥିଲେ । ସମ୍ଭବତଃ ଏହା ଥିଲା ତାଙ୍କ ପ୍ରତି କୃତଜ୍ଞତାର ନିଦର୍ଶନ । ଯେଉଁମାନେ ଦିନେ କଲେଜ ବିରୋଧରେ ଓ ଅବନୀଙ୍କ ବିରୋଧରେ କୁଳପତିଙ୍କ ପାଖରେ ଅଭିଯୋଗ ଆଣିଥିଲେ, ପରବର୍ତ୍ତୀ ସମୟରେ ସେମାନେ କଲେଜ ପରିଚାଳନା କମିଟିର ସଦସ୍ୟ ହୋଇଥିଲେ ।

ପ୍ରାଣନାଥ କଲେଜର ଅଧ୍ୟକ୍ଷ ରୂପେ ଦୈନନ୍ଦିନ କାର୍ଯ୍ୟ ପରିଚାଳନା କଲାବେଳେ ଅବନୀ ବରାଳ ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ । ସେ କଲେଜର ଦୈନନ୍ଦିନ କାର୍ଯ୍ୟରେ ସ୍ଥାନୀୟ ରାଜନେତା ଓ ଅମଲାତନ୍ତ୍ରର ହସ୍ତକ୍ଷେପକୁ ସମ୍ପୂର୍ଣ୍ଣ ରୂପେ ବନ୍ଦ କରିଦେଇଥିଲେ, ଯଦିଓ ସମାଜବାଦୀ ଆଦର୍ଶରେ ବିଶ୍ୱାସ କରୁଥିବା ଜଣେ ବ୍ୟକ୍ତି ହିସାବରେ ତାଙ୍କର ସମସ୍ତଙ୍କ ପ୍ରତି ସ୍ନେହ ଓ ସହୃଦୟତା ରହିଥିଲା । ଦୃଢ଼ ବ୍ୟକ୍ତିତ୍ୱ ଓ ଶିକ୍ଷା ଆଇନ୍ ଉପରେ ଅଗାଧ ଜ୍ଞାନ ଥିବାରୁ ଶିକ୍ଷା ବିଭାଗର କର୍ମକର୍ତ୍ତା ଏପରିକି ମନ୍ତ୍ରୀମାନେ ମଧ୍ୟ ତାଙ୍କ ପରାମର୍ଶକୁ ଗୁରୁତ୍ୱ ଦେଉଥିଲେ । କଲେଜର ଦୈନନ୍ଦିନ କାର୍ଯ୍ୟକଳାପରେ ରାଜନେତାଙ୍କ ହସ୍ତକ୍ଷେପକୁ ସେ କିପରି ବରଦାସ୍ତ କରିପାରୁନଥିଲେ, ସେଥିନେଇ ଏକ ସୁନ୍ଦର ଉଦାହରଣ ରହିଛି ।

ସେ କଲେଜର ଅଧ୍ୟକ୍ଷ ଥିବା ସମୟର ଏକ ଘଟଣା । ଖୋର୍ଦ୍ଧା ନିକଟବର୍ତ୍ତୀ ହଳଦିଆ ଅଞ୍ଚଳର ଏକ ମତ୍ସ୍ୟଜୀବୀ ପରିବାରର ଗରିବ ଛାତ୍ରଟିଏ ଖୋର୍ଦ୍ଧା କଲେଜରେ

ନାମ ଲେଖାଇବା ପାଇଁ ମନୋନୀତ ହୋଇଥିଲା । ମାତ୍ର ନିର୍ଦ୍ଧାରିତ ସମୟରେ ଟଙ୍କା ଯୋଗାଡ଼ କରିବା ତା' ପକ୍ଷେ ସମ୍ଭବ ନଥିବାରୁ ସେ ତାରିଖ ଘୁଞ୍ଚାଇବାକୁ ଅଧ୍ୟକ୍ଷଙ୍କୁ ଅନୁରୋଧ କରି ଅନୁମତି ପାଇଥିଲା । କିନ୍ତୁ ଅତି ଆଗ୍ରହୀ ପିଲାଟି ପୁନଶ୍ଚ ସ୍ଥାନୀୟ ସାଂସଦଙ୍କୁ ଏ ବିଷୟରେ ଅନୁରୋଧ କରି ତାଙ୍କଠାରୁ ସୁପାରିଶ୍ ପତ୍ର ଅଧ୍ୟକ୍ଷଙ୍କୁ ଦେଲା, ସେତେବେଳେ କେତେକ ବରିଷ୍ଠ ଅଧ୍ୟାପକ ଅଧ୍ୟକ୍ଷଙ୍କ ପ୍ରକୋଷ୍ଠରେ ଉପସ୍ଥିତ ଥିଲେ ।

ପିଲାଟିର ଧୂର୍ତ୍ତତା ଓ ଶିକ୍ଷା ଶାସନ ପରିଚ୍ଛଳନାରେ, ଅଧ୍ୟକ୍ଷଙ୍କ ଅପେକ୍ଷା ଜଣେ ରାଜନେତାଙ୍କୁ ବଡ଼ ଭାବୁଥିବା ମାନସିକତାକୁ ସେ ସେଦିନ ଯେଉଁଭଳି ଭାବେ ପ୍ରତ୍ୟାଖ୍ୟାନ କଲେ ସେପରି ସତ୍‌ସାହସ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ସେହି ପିଲାଟିକୁ ଭୀଷଣ ରାଗିଲେ ଓ ସଙ୍ଗେ ସଙ୍ଗେ ତାର ଅନୁମତି ପତ୍ର ରଦ୍ଦ କରିଦେଲେ । ଏହା ଦେଖି ପିଲାଟି ବହୁତ ଡରିଗଲା ଓ କାନ୍ଦିବାରେ ଲାଗିଲା । ତାର ଅବସ୍ଥା ଦେଖି ଉପସ୍ଥିତ ଅଧ୍ୟାପକମାନେ ତାକୁ କ୍ଷମା ମାଗିବାକୁ କହିଲେ । ପିଲାଟି ଅନୁରୂପ ଭାବେ ନିଜ ଧୃଷ୍ଟତା ବୁଝିପାରି କ୍ଷମା ମାଗିଲା । ଜଣେ ଶିକ୍ଷକର ବିଶାଳ ହୃଦୟ ବହନ କରିଥିବା ଅବନୀ ସାର୍ ତାଙ୍କୁ କେବଳ କ୍ଷମା ଦେଲେ ନାହିଁ, ତା ସହ ନାମ ଲେଖାଇବା ପାଇଁ ନିଜ ପକେଟରୁ ଆବଶ୍ୟକ ହେଉଥିବା ଅର୍ଥର ଅର୍ଦ୍ଧେକ ଦେଲେ ଓ ତାଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ଅନ୍ୟମାନେ ଅର୍ଦ୍ଧେକ ଅର୍ଥଦାନ କଲେ । ସଙ୍ଗେ ସଙ୍ଗେ ପିଲାଟି ନାଁ ଲେଖାଇ ପାରିଲା । ଏପରି ପିତୃସୁଲଭ ଉଦାରତା ଓ ସ୍ୱାଭିମାନ ପାଇଁ ସେ ସବୁବେଳେ ନମସ୍ୟ ଓ ଉଦାହରଣ ହୋଇ ରହିବେ ।

ନିଜର ସୁଦୀର୍ଘ ଶିକ୍ଷକ ଜୀବନରେ ଅବନୀ ସବୁ ଶ୍ରେଣୀର ଛାତ୍ରଛାତ୍ରୀଙ୍କର କିପରି ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇଥିଲେ, ତାହା ସେହି ସମୟର ପ୍ରାକ୍-ବୈଷୟିକ ଶ୍ରେଣୀର ଜନୈକା ଛାତ୍ରୀ ତଥା ପରବର୍ତ୍ତୀ ସମୟର କମ୍ୟୁନିଷ୍ଟ ନେତ୍ରୀ ସନ୍ଧ୍ୟା ମହାପାତ୍ରଙ୍କ ବର୍ଣ୍ଣନାରୁ ସ୍ପଷ୍ଟ ହୁଏ । ସନ୍ଧ୍ୟା କହନ୍ତି - "ମୋ ବାପା ଆଠଗଡ଼ରୁ ଖୋର୍ଦ୍ଧା ବଦଳି ହୋଇ ଆସିଲେ । ମୁଁ ଆଠଗଡ ଗୋପବନ୍ଧୁ ବିଜ୍ଞାନ ମହାବିଦ୍ୟାଳୟରୁ ଆସି ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟରେ ପ୍ରି-ପ୍ରଫେସନାଲ ଶ୍ରେଣୀରେ ନାମ ଲେଖାଇଲି ଆଉ ସେହିଠାରେ ବି.ଏସ୍.ସି. ପଢ଼ିଲି । ମୋ ସାନଭଉଣୀ ଆର୍ଟସ୍ କ୍ଲାସରେ ନାମ ଲେଖାଇଲା, ପରେ ସେ ସେହି ମହାବିଦ୍ୟାଳୟରେ, 'ଓଡିଆ ଅନର୍ସ'ନେଇ ବି.ଏ. ପଢ଼ିଲା ଓ ସିଧାସଳଖ ସାର୍‌ଙ୍କର ଛାତ୍ରୀ ହେଲା । ପ୍ରାଣନାଥ ମହାବିଦ୍ୟାଳୟରେ ସାର୍‌ଙ୍କ ସହ ମୋର କୌଣସି ପ୍ରତ୍ୟକ୍ଷ ପରିଚୟ ନଥିଲା । କେବେ କେମିତି କଲେଜ ବାରଣ୍ଡାରେ ଦେଖା, ସେତେବେଳେ ଶିକ୍ଷକ, ଶିକ୍ଷୟତ୍ରୀମାନେ ଆମମାନଙ୍କ ପାଇଁ ଅପହଞ୍ଚ ଦୂରତାର ମଣିଷ । ପିଲାଏ ଦିନରୁ

ଗୁରୁଙ୍କ ପ୍ରତି ଗୋଟାଏ ସମ୍ମାନ ମିଶା ଭୟ ଥାଏ । ଏଣୁ କଦବାକ୍ୱଚିତ୍ କୌଣସି ଶିକ୍ଷକଙ୍କୁ ଦୂର୍‌ରୁ ଆସୁଥିବାର ଦେଖିଲେ ଆମେ ଝିଅମାନେ ତୁରନ୍ତ ବାଟକାଟି ଅନ୍ୟ ଦିଗରେ ଚାଲିଯାଉ ।

ମୁଁ ପ୍ରାଣନାଥ ମହାବିଦ୍ୟାଳୟରେ ପାଠ ପଢ଼ିବା ସମୟରେ ଶ୍ରୀଯୁକ୍ତ ପ୍ରାଣନାଥ ପଟ୍ଟନାୟକ ପ୍ରାୟ ପ୍ରତିଦିନ କଲେଜକୁ ଆସନ୍ତି, ଆଉ ଲେଡିଜ୍ କମନ୍‌ରୁମ୍‌କୁ ଆସି ଆମେ ଝିଅମାନଙ୍କର ଭଲମନ୍ଦ କଥା ପଚାରି ବୁଝନ୍ତି । ତାଙ୍କ ସହ କେବେ କେମିତି ଗୋଟିଏ ଦୁଇଟି ବାକ୍ୟ ବିନିମୟ ହେଲେ ମଧ୍ୟ ସାର୍‌ଙ୍କ ସହ କେବେହେଲେ ମୁଁ କଥାବାର୍ତ୍ତା କରିନାହିଁ । ସତକଥା କହିବା ପାଇଁ ଗଲେ ଏକେ ତ ମୋର ବିଜ୍ଞାନ ପାଠ୍ୟକ୍ରମ ; ଦ୍ୱିତୀୟ ତ ସାର୍‌ମାନଙ୍କ ପ୍ରତି ସଂଭ୍ରମ ଓ ଭୟ ଯୋଗୁଁ ଓ ମୋର ସ୍ୱଭାବ ଯୋଗୁଁ କେବେହେଲେ ଶିକ୍ଷକମାନଙ୍କ ସହ କଥାହେବା କଥା ଚିନ୍ତା କରିନାହିଁ । ଘରେ କିନ୍ତୁ ମୋର ସାନଭଉଣୀ ସାର୍‌ଙ୍କ ବିଷୟ କୁହେ । ମୋର ବି.ଏସ୍.ସି. ପାଠପଢ଼ାର ଶେଷବର୍ଷ ବିବାହ ସ୍ଥିର ହୋଇଗଲା । ବାହାଘର ପରେ ଶୁଣିଲି ମୋର ବିବାହ ସ୍ଥିର କରିବାରେ ସାର୍‌ଙ୍କ କିଛି ଭୂମିକା ଥିଲା ; କାରଣ ସାର୍ ମୋର ଦେଢ଼ଶୁର ବିଶିଷ୍ଟ ବାମପନ୍ଥୀ ନେତା ଶ୍ରୀ ଆଶିଷ ମହାପାତ୍ରଙ୍କର ବିଶେଷ ବନ୍ଧୁ ।”

କଲେଜର ୧୯୫୯-୬୦ ପ୍ରଥମ ବ୍ୟାଚର ପ୍ରାକ୍-ବିଶ୍ୱବିଦ୍ୟାଳୟ ଶ୍ରେଣୀର ଛାତ୍ର ବିଷ୍ଣୁଚରଣ ମହାପାତ୍ର (ଅଧୁନା ସ୍ୱର୍ଗତ) ରୋଗ ଶଯ୍ୟାରୁ ତାଙ୍କର ପ୍ରିୟ ଶିକ୍ଷକ ଅବନୀଙ୍କୁ ପତ୍ରଛଳରେ ଯାହା ଲେଖିଛନ୍ତି, ତାକୁ ପଢ଼ିଲେ ସମଗ୍ର ଛାତ୍ର ସମାଜର ତାଙ୍କ ପ୍ରତି ରହିଥିବା ଶ୍ରଦ୍ଧା, ଭକ୍ତି ଓ ମମତାର ଯଥାର୍ଥ ପରିଚୟ ମିଳେ । ମୃତ୍ୟୁ ପୂର୍ବରୁ ସାର୍‌ଙ୍କୁ ଖଣ୍ଡେ ଚିଠିରେ ସେ ଲେଖିଛନ୍ତି –

“ଆପଣଙ୍କୁ ମୋ ସମସାମୟିକ ସମସ୍ତ ଛାତ୍ର ହୃଦୟରୁ ସ୍ୱତଃସ୍ଫୂର୍ତ୍ତ ସମ୍ମାନ ନକରି ରହିପାରନ୍ତିନାହିଁ । ଆପଣ ଆମ୍ଭମାନଙ୍କ ମୁଖରେ ଭାଷା ଓ ସାହିତ୍ୟ ସୃଷ୍ଟି କରାଇଛନ୍ତି । ସେ ଯୁଗର ସେହି ପ୍ରିୟତମ ଓ ଛାତ୍ରବତ୍ସଳ ଅବନୀ ବାବୁଙ୍କୁ ସମସ୍ତେ ସ୍ମରଣ ରଖିବେ । ‘ନୂଆ ଦୁନିଆ’ର ଏଡିଟରଭାବେ ବା “ଅପରାହ୍ନର ଛାୟା”ର ସେହି ଘରୋଇ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ ଯେଉଁ ଅଙ୍ଗେ ଲିଭେଇଥିବା ଅନୁଭୂତି – ସେସବୁ ଆମେ ଯେଉଁମାନେ ଶିକ୍ଷକତାକୁ ମିଶନ୍ ଭାବେ ଗ୍ରହଣ କରିଥିଲୁ, ଚାକିରୀ ପାଇଁ ନୁହେଁ, ସେତେବେଳେ ସମାଜରେ ପ୍ରଗତିଶୀଳ ପରିବର୍ତ୍ତନ ଘଟାଇବା ପାଇଁ – ସେସବୁ ଆମର ସ୍ମୃତିପଟରୁ କେବେ ବି ବିସ୍ମୃତ ହେବନାହିଁ । ପ୍ରି-ୟୁନିଭରସିଟି ବେଳର ଅଭିଜ୍ଞତା – ତଥା ଆପଣଙ୍କୁ ‘ଅବରୋଧ’ର ବିରୋଧି ମୁଖ୍ୟମନ୍ତ୍ରୀତ୍ୱ ଆଜି ଶ୍ରୀ ମନୋରଞ୍ଜନ ଦାସଙ୍କ ସଫଳ ସ୍ୱପ୍ନ ତଥା

ସାକାର ରୂପ ଧାରଣ କରିଛି । ଆପଣ ଆମକୁ ଛାତ୍ର ସଂଘରେ ଭର୍ତ୍ତି କରିଥିଲେ । ସ୍ୱର୍ଗତଃ ପ୍ରାଣନାଥ ପଟ୍ଟନାୟକ ଆମର ଆଦର୍ଶ ଆଜି ଆମ ସମ୍ମୁଖରେ । ଏବେ ବି ତାଙ୍କ ବଦଳରେ ଆପଣ ବିଦ୍ୟମାନ ଓ ଜାଜ୍ୱଲ୍ୟ ଦୀପଶିଖା । ଜନତା ଥିଏଟରର ସେକ୍ରେଟାରୀ ଓ ଏହାକୁ କୋ-ଅପରେଟିଭ୍ ସଂସ୍ଥାରେ ପରିଣତ କରିଥିବା ସେତେବେଳର ଏକ ସର୍ବାଧୁନିକ ରଙ୍ଗମଞ୍ଚର ପୁନଃଜୀବନ ଦେବା, ବାଙ୍କାବଜାରରୁ ରାତି ଅଧରେ ଖୋର୍ଦ୍ଧାକୁ ଦଉଡୁଥିବା ସେହି କଳାକାର ଅଧ୍ୟାପକ ଜଣକ କେତେଜଣଙ୍କ ସ୍ମୃତିରେ ଥିବେ - ସେ କଥା ମୁଁ ଜାଣେନା, ମାତ୍ର ଭଗବାନ ବେହେରା (ଅଧୁନା ସ୍ୱର୍ଗତ) ଜାଣେ । ସେ ଥିଲା ଜଣେ ଛାତ୍ର ସଂଘର ଅଗ୍ରଣୀ ନେତା । ଆଜି ଷ୍ଟେଟ୍ ବ୍ୟାଙ୍କର ଜଣେ ପ୍ରଧାନ ଅଫିସର । ଆମେ ସେସବୁ କଥା ଜାଣୁ । କାହ୍ନୁ, ସଦାନନ୍ଦ ବାରିକ ଓ ଜୟୀ, କାଳିଆ ଏସବୁ ଉଣା ଅଧିକେ ଜାଣନ୍ତି । ଆପଣ ଆମ ଜୀବନର ଧ୍ରୁବତାରା ଥିଲେ । ମାତ୍ର ଆଜି ଆପଣ କାହିଁକି ଲୁଚିଗଲେ ?”

ଖୋର୍ଦ୍ଧା କଲେଜ ଛାତ୍ର ସଂସଦର ଆଉ ଜଣେ ପ୍ରାକ୍ତନ ସଭାପତି ତଥା ରାଜ୍ୟର ଜଣେ ପୂର୍ବତନ ବରିଷ୍ଠ ପୁଲିସ ଅଧିକାରୀ ଅରବିନ୍ଦ ନାଥ ମିତ୍ରଙ୍କ ନିମ୍ନୋକ୍ତ ବର୍ଣ୍ଣନାରୁ ମଧ ଅବନୀ ବରାଳ କିପରି ଆଦର୍ଶ ଗୁରୁ-ଶିଷ୍ୟ ପରମ୍ପରାର ପ୍ରତୀକ ରୂପେ ଛାତ୍ର ସମାଜ ଦ୍ୱାରା ଆଦୃତ ହେଉଥିଲେ, ତାହା ପ୍ରମାଣିତ ହୁଏ । ଅରବିନ୍ଦଙ୍କ ଭାଷାରେ - “ଗୋଟିଏ ଦିନର ଘଟଣା । ମୁଁ କଲେଜରେ ପଢ଼ିବା ବେଳେ ଆମଘରେ ଥିବା ଗୋଟିଏ ‘ଏରିୟାଲ’ ମଟର ସାଇକେଲ ବ୍ୟବହାର କରୁଥିଲି । ଭୁବନେଶ୍ୱରରେ ପଢ଼ିଲାବେଳେ ଥରେ ଖୋରଧା ଯାଇଥାଏ । ଖୋରଧା କଲେଜ ନିର୍ବାଚନ ସମୟ, ବାତାବରଣ ସରଗରମ । ସକାଳୁ ଚିତ୍ତଭାଇନା ଘରକୁ ବ୍ୟାୟମ କରି ଗଲାବେଳେ ଚିତ୍ତଭାଇନା କହିଲେ, ତୋ ମଟର ସାଇକେଲ ଆଣିବୁ କଲେଜ ଯିବା । ୧୦ଟା ପାଖାପାଖି ଆମେ ଯାଇ କଲେଜରେ ପହଞ୍ଚିଲୁ । ସେତେବେଳର ଖୋରଧା କଲେଜ କହିଲେ ପୂର୍ବ ଦିଗରେ କେତେ ବଖରା ଛାତଘର ଓ ପଶ୍ଚିମପାଖେ କିଛି ଆଜବେଷ୍ଟସ ଘର । ଆମେ କଲେଜ ସାମନାରେ ଥିବା ପୋର୍ଟିକୋରେ ମଟର ସାଇକେଲ ପାର୍କ କରି ଠିଆ ହେଲୁ । ଚିତ୍ତଭାଇନା ସପ୍ଲିମେଣ୍ଟାରୀ ପରୀକ୍ଷା ଦେଇଥିବାରୁ କଲେଜର ନିୟମିତ ଛାତ୍ର ତାଲିକାରେ ନଥିଲେ ଓ ମୁଁ ତ ସହଜେ ଭୁବନେଶ୍ୱରର ଛାତ୍ର । ଆମକୁ ଦେଖି ଆମ ଦଳର ପିଲାମାନେ ଆମ ପାଖରେ ଜମିବାକୁ ଲାଗିଲେ । ସେତେବେଳ ଛାତ୍ରମାନଙ୍କ ଦଳ କହିଲେ ଦୁଇଟି ଦଳ, ବୁଝା ଯାଉଥିଲା । ଛାତ୍ର ୟୁନିୟନ ଓ ଛାତ୍ର ଫେଡେରେସନ । ସାମ୍ୟବାଦୀ ଚିନ୍ତାଧାରାର ଛାତ୍ରମାନେ ଥିଲେ ଫେଡେରେସନ ଦଳଭୁକ୍ତ ଓ ଶାସକ ଦଳ ସହ ରହିଥିବା ଛାତ୍ରମାନେ ଥିଲେ ୟୁନିୟନରେ ।

ମୁଁ ଯେଉଁ ସମୟର କଥା କହୁଛି ସେତେବେଳେ ଛାତ୍ର ଫେଡେରେସନ AISF ଓ SFI ଦୁଇ ଭାବରେ ବିଭକ୍ତ ହୋଇଥିଲେ ମଧ୍ୟ ଛୋଟ ଛୋଟ କଲେଜରେ ଏହି ବିଭାଜନ ବିଶେଷ ପ୍ରଭାବ ପକାଇ ନଥାଏ । ସତକଥା କହିଲେ ସାମ୍ୟବାଦ ଉପରେ କୌଣସି ଧାରଣା ହେବା ଆଗରୁ , ଆମ ଘରପାଖରେ ରହୁଥିବା ସମସ୍ତେ ଫେଡେରେସନରେ ମିଶି ଥିବାରୁ ମୁଁ ମଧ୍ୟ ନିଜକୁ ଫେଡେରେସନ ଦଳଭୁକ୍ତ କରିଦେଇଥାଏ । ଆମ ଦଳ ତଥା ଫେଡେରେସନର ମୁଖ୍ୟ ପରାମର୍ଶଦାତା, ଅଥବା ସମୟ ଅସମୟରେ କୌଣସି ବିପଦରେ ପଡିଲେ ଆମେ ଯାହାଙ୍କ ପାଖକୁ ଦଉଡୁଥିଲୁ, ସେ ହେଲେ ଆମ ସାର, ଅର୍ଥାତ ଶ୍ରୀ ଅବନୀ କୁମାର ବରାଳ ।"-

-"ଆମ ଦଳର ଛାତ୍ରମାନଙ୍କର ଜମିବା ଦେଖି ବିରୋଧୀ ୟୁନିୟନ ଦଳୀୟ ଛାତ୍ରମାନେ ସେତେବେଳର କଲେଜର ତାଙ୍କ ଦଳୀୟ ନେତା ଦାସେଙ୍କ ପାଖକୁ ଦଉଡିଲେ । ଚତୁର ଦାସେ ଭୟଭୀତ ହେବାର ଅଭିନୟ କରି ତତ୍‌କାଳୀନ ଅଧକ୍ଷ ନିଗମ ସାହେବଙ୍କ ପାଖରେ ପହଞ୍ଚିଲେ । ଆଜି ବି ମୋର ଧାରଣା ନିଗମବାବୁ ହୁଏତ କୌଣସି ଭୁଲ ଧାରଣାର ବଶବର୍ତ୍ତୀ ହୋଇ ଆମଦଳୀୟ ଛାତ୍ରମାନଙ୍କୁ ଗୁଣ୍ଡା ଓ ବଦମାସ ବୋଲି ଧରି ନେଇଥିଲେ । ଦାସେ ତାର ସୁଯୋଗ ନେଇ ଆମେ ଦୁଇଜଣ ଅଣଛାତ୍ର ଯେ ୟୁନିୟନ ସମର୍ଥକ ସୁଧାରିଆ ନୀରିହ ଛାତ୍ରମାନଙ୍କୁ ମାଡମାରି ଲହୁଲୁହାଣ କରିଦେଇ ପାରୁ, ସେ ବିଷୟରେ ଆଗୁଆ ଗୁହାରି ହୋଇଗଲେ । ସେ ସମୟର ଅଧକ୍ଷଙ୍କ ଅଫିସ ଝରକାରୁ କଲେଜ ପୋର୍ଟିକୋ ଭଲ ଭାବରେ ଦେଖାଯାଉଥାଏ । ଦାସେଙ୍କ କଥାରେ ଅଧକ୍ଷ ତାଙ୍କ ପଛ ଝରକାଦେଇ ଆମକୁ ଓ ଆମ ଚାରିପଟେ ବେଢ଼ି ରହିଥିବା ଛାତ୍ରମାନଙ୍କୁ ଦେଖି, ଅଭିଯୋଗର ସମ୍ପୂର୍ଣ୍ଣ ସତ୍ୟତା ଉପରେ ସନ୍ଦିହାନ ହୋଇ ପିଅନ ହାତରେ ଆମ ସାରଙ୍କୁ ଡକାଇ ପଠାଇଲେ । ସାର ଆସିଲା ପରେ ଓଡିଆ ଭଲକରି କହିପାରୁନଥିବା ଅଧକ୍ଷ ନିଗମବାବୁ ତାଙ୍କୁ କହିଥିଲେ "ଦେଖିଏ କୋଇ ଚିଉ୍ ଆୟାହେ, କୋଇ ମିଉ୍ର ଆୟାହେ ଓ ଲୋଗ ମାର ସକତେ ହେଁ, ଉନ୍‌ହେ ଭଗାଇଯେ" । ଏହା ଭିତରେ ବେଶ କିଛି ସମୟ ବିତିଗଲା । ଆମ ଚାରି ପଟର ଆସର ବେଶ ଜମିଯାଇଥାଏ । ଏହି ସମୟରେ ହଠାତ ଆମ ସାରଙ୍କ ପାଟି ଶୁଣାଗଲା, "କାହିଁକି ଏଠି ଯାତ୍ରା ବସେଇଛ ? ଆମ ଭିତର କେହି ଜଣେ ସାରଙ୍କ ସ୍ୱର ସହ ପରିଚିତ । ଟିକିଏ ହତ୍‌ଚକିତ ହୋଇଗଲୁ, କାରଣ ସାରଙ୍କ କଥା ଉପରେ କଥା କହିବାର ଧୃଷ୍ଟତା ସାଧାରଣତଃ କେହି କରିବା କଥା ନୁହେଁ । ସଦା ହସହସ ଆମ ସାର ସ୍ମିତହସି ସେକାଳର ହଷ୍ଟେଲ ପଛରେ ଥିବା ବିରାଟକାୟ ଆମ୍ବଗଛ ଆଡକୁ ଆଙ୍ଗୁଳି ଦେଖାଇ କହିଲେ, ଯାଅ, ସେ ଗଛମୂଳକୁ । ସାରଙ୍କ କଥା

ଅମାନ୍ୟ କରିହେବନାହିଁ, ତେଣୁ ମୁଁ ମଟର ସାଇକେଲ ଷ୍ଟାର୍ଟ କରି ଯାଇ ସେ ଗଛମୂଳରେ ପହଞ୍ଚିଲି ଓ ପଛରେ ଚିତ୍ତଭାଇନା, ପତୁଦା, ନିର୍ଝରଭାଇ ଓ ଅନ୍ୟପିଲା ମାନେ ଯାଇ ସେ ଗଛମୂଳେ ପହଞ୍ଚିଲେ । ସେହିଦିନ ଠାରୁ ଆମମାନଙ୍କର ଆଡ୍ଡାମାରିବା ସ୍ଥାନ ହୋଇଗଲା ସେହି ଆମ୍ବଗଛ ମୂଳ । ପରବର୍ତ୍ତୀ ସମୟରେ ତାହା ଆମ୍ଭମାନଙ୍କର ଦରବାର ବୋଲି କୁହାଗଲା, ଓ ସେଠାରେ ବସି ଛାତ୍ରମାନଙ୍କର ସବୁ ସମସ୍ୟା ଆମେ ବୁଝାବୁଝି କଲୁ । ବର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ଏହି ଛାତ୍ର ଶିକ୍ଷକ ସମ୍ପର୍କ କେବଳ ଅବିଶ୍ୱାସନୀୟ ନୁହେଁ ଅସମ୍ଭବ ମଧ୍ୟ ।"

ଅରବିନ୍ଦ ତାଙ୍କ ଛାତ୍ର ଜୀବନର ଆଉ ଏକ କୌତୁହଳପ୍ରଦ ଘଟଣା ବର୍ଣ୍ଣନା କରି କହନ୍ତି, - "୧୯୬୫ ମସିହା, ମୁଁ ଭୁବନେଶ୍ୱରରୁ ଯାଇ ଖୋର୍ଦ୍ଧା କଲେଜରେ ପାଠପଢ଼ା ଆରମ୍ଭ କରିଥାଏ । କଲେଜ ନିର୍ବାଚନରେ ସେ ବର୍ଷ କିଛି ପଦବୀ ଛାତ୍ର ୟୁନିୟନ ଗୋଷ୍ଠୀ ଅକ୍ତିୟାର କରିଥିଲାବେଳେ, କିଛି ପଦବୀରେ ଜୟଲାଭ କରିଥାନ୍ତି ଆମ ଦଳର ଛାତ୍ରମାନେ । କଲେଜ ୟୁନିୟନର ସଭାପତି ଓ ଉପ-ସଭାପତି ପଦ ୟୁନିୟନକୁ ଯାଇଥିବାବେଳେ ସମ୍ପାଦକ ପଦ ଆମ ହାତରେ ଥାଏ । ସଭାପତି ଭାବେ ନିର୍ବାଚିତ ହୋଇଥାନ୍ତି ୰ ଇନ୍ଦ୍ରଜିତ ରାୟ ବା ବୁଲ୍‌ଟୁଭାଇ (ପରେ ଯିଏ ଆଡଭୋକେଟ୍ ଜେନେରାଲ ପଦରେ ଅଧିଷ୍ଠିତ ହୋଇଥିଲେ) । କିନ୍ତୁ ଆମ ଦଳର ଛାତ୍ରମାନେ ନାଟ୍ୟ ସଂସଦ ସମ୍ପାଦକ ପଦରେ । ବିଜୟୀ ନିର୍ବାଚନକୁ ଆଖିରେ ରଖି ସ୍ଥିର କରାଗଲା, ସେ ବର୍ଷ ନିଶ୍ଚିତ ଭାବରେ କଲେଜ ଡ୍ରାମା ମଞ୍ଚସ୍ଥ କରାଯିବ ଏବଂ ଏହା ଯେପରି ଅନ୍ତତଃ ଉଚ୍ଚକୋଟିର ହେବ ସେ ବିଷୟରେ ବିଶେଷ ଚେଷ୍ଟା କରାଯିବ । ରଙ୍ଗମଞ୍ଚରେ ଅଭିନୟରେ କୌଣସି ଅଭିଜ୍ଞତା ନଥିବା କାଳି ବେହେରା ସିନା ନିଜର ଲୋକପ୍ରିୟତା ଦୃଷ୍ଟିରୁ ନିର୍ବାଚନରେ ବିଜୟୀ ହୋଇଥାନ୍ତି କିନ୍ତୁ କଲେଜ ଡ୍ରାମା ମଞ୍ଚସ୍ଥ କରିବାର କ୍ଷମତା ତାଙ୍କ ପାଖେ ନଥାଏ । ତେଣୁ ଆମେ ସମସ୍ତେ ଅଣ୍ଟା ଭିଡି ଲାଗି ପଡିଲୁ ତାକୁ ସାହାଯ୍ୟ କରିବା ପାଇଁ ।

ସମସ୍ତେ ଚାଲିଲୁ ସାରଙ୍କ ପାଖକୁ । ସାର ଜଣେ ଉଚ୍ଚକୋଟୀର ରଙ୍ଗମଞ୍ଚ ନିର୍ଦ୍ଦେଶକ ଓ ଜନତା ରଙ୍ଗମଞ୍ଚ ଭଳି ଅନୁଷ୍ଠାନ ସହ ସଶ୍ଳିଷ୍ଟ । ସାର ଆମ କଥା ଶୁଣି କହିଲେ ଠିକ୍‌ଅଛି ମୁଁ ଦିନେ ଦୁଇଦିନ ଭିତରେ ଠିକ କରୁଛି । ଆମେ ସମସ୍ତେ ଖୁସି ହୋଇ ଆସିବା ଆଗରୁ ଚିତ୍ତଭାଇନା ଉଠେଇଲେ ମହିଳା ଅଭିନେତ୍ରୀ ଆଣିପାରିବେ । ସାର ରୋକଠୋକ ଜଣାଇଦେଲେ କେବଳ କଲେଜ ଛାତ୍ରୀ ହେଲେ ଯାଇ ଡ୍ରାମା ମଞ୍ଚସ୍ଥ କରାଯିବ । ସେ କଥା ଶୁଣି ଆମ୍ଭମାନଙ୍କ ମୁହଁ ଶୁଖିଗଲା । ତଥାପି ବାହାରକୁ ଆସିଲୁ ପୁଣି ବିଚାର ବସିଲା । କଲେଜ ଛାତ୍ରୀମାନଙ୍କୁ ଭିତରୁ ଅଭିନୟ କରିବା ପାଇଁ ରାଜି

କରାଇବା କାଠିକର ପାଠ । ଏକେ ତ କଲେଜରେ ଛାତ୍ରୀମାନଙ୍କ ସଂଖ୍ୟା କମ୍, ସେଥିରେ ଆମେମାନେ ସମସ୍ତେ ଯେ ବଦମାସ ଓ ଗୁଣ୍ଡା ଶ୍ରେଣୀର ଛାତ୍ର ଏ ଧାରଣା ଥାଏ ଛାତ୍ରୀମାନଙ୍କ ଭିତରେ । ଆମ ଦଳର ବୈଠକ ବସି ଏ ବିଷୟ ଆଲୋଚନା ହେବାର ଠିକ କରାଗଲା ।

ବୁଲଟୁ ଭାଇଙ୍କ ଠାରୁ ନିର୍ବାଚନରେ ହାରି ଯାଇଥିବା ବଙ୍କିମ ଭାଇନା (ଶ୍ରୀ ବଙ୍କିମ ମିଶ୍ର, ଜଟଣୀ) ଓ ଉପ-ସଭାପତି ପଦ ପାଇଁ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରି ୪ ଲକ୍ଷ୍ମୀଧର ଭୋଳଙ୍କ ଠାରୁ ହାରିଯାଇଥିବା ଶ୍ରୀ ଶ୍ୟାମ ସୁନ୍ଦର ତ୍ରିପାଠୀ ଉଭୟଙ୍କର ରଙ୍ଗମଞ୍ଚ ଅଭିନୟରେ ପୂର୍ବ ଅଭିଜ୍ଞତା ଥାଏ ଓ ଉତ୍ତମ ଛାତ୍ର ଭାବରେ ଛାତ୍ରୀମାନଙ୍କ ଶୁଭ ଦୃଷ୍ଟିରେ ଥାନ୍ତି, ତେଣୁ ସହଜରେ ସେମାନଙ୍କ ଉପରେ ଅଭିନୟ ପାଇଁ ଛାତ୍ରୀମାନଙ୍କୁ ମନାଇବାର କରିବାର ଗୁରୁଦାୟିତ୍ୱ ନ୍ୟସ୍ତକରି ଆମ୍ଭେମାନେ ଏକପ୍ରକାର ନିଶ୍ଚିନ୍ତ ହୋଇଗଲୁ । କିନ୍ତୁ ଆମ ଡ୍ରାମାଟିକ୍ ସେକ୍ରେଟାରୀ ବନ୍ଧୁ କାଳୀ ବେହେରା, ଯେ ସାରଙ୍କ ଓଡିଆ ବିଭାଗର ଛାତ୍ର । ସଦାବେଳେ ଆମ ପିଛା ଲାଗିଥାଏ, କହୁଥାଏ ସାର ପଚାରୁଛନ୍ତି, କ'ଣ କାଳି ତମ ଡ୍ରାମା କରିବା କଥା କ'ଣ ହେଲା ? ଅଭିନେତ୍ରୀ ଯୋଗାଡ ହେଲେ ? ତାର ସହକାରୀ କାର୍ତ୍ତିକ ମୋ ଭାଷାରେ ଥାଏ ଗୋଟିଏ ନିକମା ପିଲା, ମୁଁ କହୁଥାଏ ତା' ଦ୍ୱାରା ଖଡା ସିଝିବ ନାହିଁ । ସେ କ'ଣ ଅଭିନେତ୍ରୀ ଯୋଗାଡ କରିବ, ତଥାପି ତା ବିଭାଗର ଛାତ୍ରୀମାନଙ୍କୁ ଖୋସାମତ କରିବାରେ ଲାଗିଥାଏ । ଏହିପରି କିଛିଦିନ ଚାଲିଗଲା । ଉଭୟ ବଙ୍କିମ ଭାଇନା ଓ ଶ୍ୟାମ ତ୍ରିପାଠୀ ହାତ ଟେକି ଦେଲେ ଓ କହିଲେ ଆମେ ଅଭିନେତ୍ରୀ ଯୋଗାଡ କରିପାରିବୁ ନାହିଁ । ପ୍ରଶ୍ନହେଲା କାହିଁକି ? ବଙ୍କିମ ଭାଇନା ରାଗିଯାଇ କହିଲେ ଜାଣିନ, ତମ ସମସ୍ତଙ୍କର ଛତରା ଓ ବଜାରୀ ଭାବରେ ଏପରି ଖ୍ୟାତି ଯେ କେହି ଝିଅପିଲା ଭାଗନେବାକୁ ରାଜି ହେଉ ନାହାନ୍ତି । ମୁଁ କହିଲି ଆପଣ ଜଟଣୀର ଛାତ୍ରୀମାନଙ୍କୁ କହୁନାହାନ୍ତି । ବଙ୍କିମ ଭାଇନା ଉତ୍ତର ଦେଲେ କାଳି ବେହେରା ସାଙ୍ଗ ସନ୍ତୋଷ (କୁଦିଆରୀ) ବସରେ ଆସିଲାବେଳେ ଯେଉଁ ଭାଷା ପ୍ରୟୋଗ କରେ, ସେଥିରେ ତ ଜଟଣୀ ଝିଅ ଆଗ ବାହାରିବେ ଡ୍ରାମା କରିବାକୁ । ଆମେ ସମସ୍ତେ ହତାସ ହୋଇଗଲୁ । ତା'ପରେ ଠିକ କଲୁ ପୁଣି ଶରଣ ପଶିବୁ ସାରଙ୍କ ପାଖେ । ଆମ ଭିତରୁ କେହି ଜଣେ କହିଥିଲା ଚାଲ ବୁଲଟୁ ଭାଇକୁ କହିବା ଓ ତାକୁ ଡ୍ରାମାରେ ମିଶାଇଲେ ସେ ଝିଅପିଲାଙ୍କୁ ରାଜି କରାଇବ । କିନ୍ତୁ ତା ପ୍ରସ୍ତାବ ସାଙ୍ଗେ ସାଙ୍ଗେ ନାକଚ ହୋଇଗଲା ଓ ତା'ପାଇଁ ବୁଲ୍‌ଟୁ 'ଚାମଚା ଓ ଭେଜାଲ' ଭଳି ଗାଳି ଖାଇବା ହିଁ ସାର ହେଲା ।

ସମସ୍ତେ ପହଞ୍ଚିଲୁ ସାରଙ୍କ ପାଖେ, ସାର କହିଲେ ଆସ ସନ୍ଧ୍ୟାରେ ଘରକୁ, ସେଇଠି କଥାହେବା । ବଙ୍କିମ ଭାଇନା ଜଟଣୀ ନଫେରି ଚିତ୍ତଭାଇନା ଘରେ ରହିଗଲେ

ଓ ସନ୍ଧ୍ୟା ହେଉହେଉ ପହଞ୍ଚିଲୁ ବରୁଣେଇ ସାହିସ୍ଥିତ ସାରଙ୍କ ବସାଘରେ । ସାର କହିଲେ ଆମେ ଠିକ କରିବା କେଉଁ ଡ୍ରାମା କରିବା । ସମସ୍ତେ ସମସ୍ୱରରେ କହିଲେ ଆପଣ କୁହନ୍ତୁ । ସାର କହିଲେ ମୁଁ ଭାବୁଛି ରଜତ କରଙ୍କ ନୂଆଲେଖା 'ବୀର ସୁରେନ୍ଦ୍ର ସାହା' ଡ୍ରାମାଟି କରିବା, ସେ ବହି ଏବେ ଉନ୍ମୋଚନ ହୋଇଅଛି ଓ କେବଳ ସମ୍ବଲପୁରରେ ମଞ୍ଚସ୍ଥ ହୋଇଛି । ଶରତକୁ (ଶ୍ରୀ ଶରତ କର, ସେତେବେଳେ ଖୋରଧା କଲେଜର ରାଜନୀତି ବିଜ୍ଞାନର ଅଧ୍ୟାପକ ଓ ପରବର୍ତ୍ତୀ ସମୟରେ ମନ୍ତ୍ରୀ ଓ ବାଚସ୍ପତି) କହିବା, ସେ ତା' ଭାଇକୁ ରାଜି କରାଇବ । ସମସ୍ତେ ଖୁସି ହୋଇଗଲୁ । ସାର କହିଲେ ସେଥିରେ ଦୁଇଟି ନାରୀ ଚରିତ୍ର । କମ୍‌ରେ ଦୁଇଜଣ ଛାତ୍ରୀ ରାଜିହେବା ଦରକାର । ସମସ୍ତଙ୍କ ମୁହଁ ଏ କଥାରେ ଶୁଖିଯିବା ଦେଖି, କହିଲେ ଗୋଟିଏ କାମ କର, ଯାଅ ଇନ୍ଦ୍ରଜିତକୁ ଡାକିଆଣ ।

ସାରଙ୍କ ବସା ପାଖରେ ବୁଲଟୁଭାଇ ଘର, ମୋର ତାଙ୍କସହ ପାରିବାରିକ ସମ୍ପର୍କ, ବଙ୍କିମ ଭାଇନା କହିଲେ ମୁଁ ଯିବି । ଆମେ ଦୁଇ ତିନି ଜଣ ବାହାରିଲୁ । ବୁଲ୍‌ଟୁ ଭାଇ ଘରେ ଥିଲେ, ଆମକୁ ତାଙ୍କ ଘରକୁ ଆସିବା ଦେଖି ଓ ବିଶେଷକରି ତାଙ୍କ ନିର୍ବାଚନ ପ୍ରତିଦ୍ୱନ୍ଦି ବଙ୍କିମ ଭାଇନାଙ୍କୁ ଦେଖି, ସେ ବାହାରିଲେ ସାଙ୍ଗେ ସାଙ୍ଗେ । ସାର ତାଙ୍କୁ ବୁଝାଇଲେ କଲେଜ ଡ୍ରାମା ସଫଳ ହେବା ହେଲା, କଲେଜ ୟୁନିୟନ ସଭାପତିଙ୍କ ସଫଳତା । କିଛି ସମୟ ଭିତରେ ବୁଲ୍‌ଟୁଭାଇ ରାଜି ହୋଇଗଲେ ଓ ସେ ମଧ୍ୟ ଡ୍ରାମାରେ ଅଭିନୟ କରିବେ ସେ ପ୍ରତିଶ୍ରୁତି ଦେଲେ । ଅସଲ କଥା ଉଠିଲା ଡ୍ରାମାରେ ନାୟିକା (ସୁରେନ୍ଦ୍ର ସାଏଙ୍କ ଝିଅ) ଓ ରାଜମାତା (ସୁରେନ୍ଦ୍ର ସାଏଙ୍କ ପତ୍ନୀ) ଭୂମିକାରେ ଅଭିନୟ କରିବ କିଏ ? ବୁଲ୍‌ଟୁଭାଇ କହିଲେ ସୁରଜିତା ଆପଣଙ୍କ ବିଭାଗର ଛାତ୍ରୀ ଆପଣ ତାକୁ କୁହନ୍ତୁ, ରାଜି କରାଇବା ଦାୟୀତ୍ୱ ମୋର । ରାଜମାତା ପାଇଁ ସେ ତା ସାଙ୍ଗଙ୍କ ଭିତରୁ ଜଣକୁ ଠିକ କରିଦେଇପାରିବ ।

ବୁଲ୍‌ଟୁଭାଇର ଆଶ୍ୱାସନାରେ ସମସ୍ତେ କିଞ୍ଚିତ ମାତ୍ରାରେ ଆଶ୍ୱସ୍ତ ହୋଇ ସେଦିନ ପାଇଁ ଫେରିଲୁ ସାରଙ୍କ ପାଖକୁ । ବୁଲ୍‌ଟୁଭାଇ ବେଶି କିଛି ସମୟ ତା'ପରେ କଟାଇଥିଲେ ସାରଙ୍କ ସାଙ୍ଗେ । ଆମ ଭିତରୁ ବୁଲ୍‌ଟୁଭାଇ କିଛି ଚାଲ ଖେଳିବ, ତାହା ଜାଣିବା ପାଇଁ ସେ ପାଖାପାଖି ପଇଁତରା ମାରିଲେ । ଯାହାହେଉ ବେଶି କିଛିଦିନ ବିତିଗଲା । ସାରଙ୍କ ଉପରେ ଭାରଦେଇ ଆମେ ପ୍ରାୟ ନିଶ୍ଚିନ୍ତ । ଦୁଇ ସପ୍ତାହ ପରେ ସାର ଡକାଇ ପଠାଇଲେ ବଙ୍କିମ ଭାଇନାଙ୍କୁ, ମୋତେ ଓ ଆଉ କିଛି ପିଲାଙ୍କୁ । ଆଜିକାଲି ପରି ସେତେବେଳେ ସବୁ ବିଭାଗର ଅଲଗା ଅଲଗା ପ୍ରକୋଷ୍ଠ ନଥାଏ, ସବୁ ଅଧ୍ୟାପକମାନେ ବସୁଥିଲେ ଟିଚର୍ସ କମନ ରୁମରେ । ଆମେ ଡକାଡକି ହୋଇ ସେଠାରେ ପହଞ୍ଚିଲାବେଳକୁ ସେଠାରେ

ଥାନ୍ତି ବୁଲ୍‌ଟୁଭାଇ, ଲକ୍ଷ୍ମୀଧର ଭୋଳ, କାଳୀ ବେହେରା ତା ସହକାରୀ କାର୍ତ୍ତିକ ଓ ଓଡିଆ ବିଭାଗର ଅନ୍ୟତମ ଅଧ୍ୟାପକ ଶ୍ରୀ ସୁବୋଧ କୁମାର ଚାଟାର୍ଜି । ବୁଲ୍‌ଟୁଭାଇ କହିଲେ ମାମୀ ରାଜି ହୋଇଛି ଅଭିନୟ କରିବାକୁ, କିନ୍ତୁ ତାର ଗୋଟିଏ ସର୍ତ୍ତଅଛି । କଲେଜରେ ଏ କଥାନେଇ କୌଣସି ଆଲୋଚନା ହେବନାହିଁ ଓ ଝିଅମାନଙ୍କୁ କେହି କମେଣ୍ଟ ମାରିବେ ନାହିଁ । ଏତକ କହି ବୁଲ୍‌ଟୁଭାଇ ମୋ ଆଡେ ଅନାଇଲେ, ସେତେବେଳେ ସମସ୍ତେ ଭାବୁଥିଲେ ମୁଁ ହେଲି ବଜାରି ପିଲାଙ୍କର କଣ୍ଟ୍ରୋଲର । ମୁଁ ବାଧ୍ୟହୋଇ ଇତସ୍ତତଃ ହୋଇ କହିଲି, ଠିକ ଅଛି । କାରଣ ସବୁ ବଜାରି ପିଲା ଯେ ମୋ କଥା ମାନିବେ ତା'ର କିଛି ମାନେ ନାହିଁ । ସାର ଟିକେ ହସି କହିଲେ ଏଥର ଯାଅ, ସନ୍ଧ୍ୟାବେଳେ ଘରେ ଅନ୍ୟାନ୍ୟ ବିଷୟ ସ୍ଥିର ହେବ ।

ସନ୍ଧ୍ୟାବେଳେ ସମସ୍ତେ ପହଞ୍ଚିଲୁ ସାରଙ୍କ ବସାଘରେ, ସେଠାରେ ସ୍ଥିର ହେଲା, ଡ୍ରାମା ରିହଲସାଲ ହେବ ଧର୍ମଶାଳାରେ, ସେଥିପାଇଁ ଗୋଟିଏ ରୁମ ନିଆଯିବ । ପ୍ରିନ୍ସିପାଲଙ୍କ ଅନୁମତି ନେଇ ପ୍ରାୟ ଏକମାସରୁ ଦେଢ଼ମାସ ପରେ, ଡ୍ରାମାର ତାରିଖ ଠିକହେବ । ସାର କହିଲେ ଡ୍ରାମାକୁ ସଫଳ କରିବାକୁ ହେଲେ ଦର୍ଶକ ହେବା ଦରକାର, ଖାଲି କଲେଜ ପିଲା ଦେଖିଲେ ଚଳିବ ନାହିଁ । ତେଣୁ କୋଣାର୍କ ସିନେମା ପେଣ୍ଡାଲରେ (ଖୋର୍ଦ୍ଧା କ୍ଲବ ସାମନା ସ୍ଥାନରେ ଯେଉଁ ଖାଲି ଜାଗା ଅଛି) ଡ୍ରାମା ମଞ୍ଚସ୍ଥ ହେବାର ଠିକ କରାଗଲା । ସାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଦୀର୍ଘ ଦେଢ଼ମାସ କାଳ ରିହର୍ସଲ କଲାପରେ, ଆମେ ଅତ୍ୟନ୍ତ ଉଚ୍ଚକୋଟିର ନାଟକ ପରିବେଷିତ କରିଥିଲୁ ଦୁଇଦିନ ଧରି, ଯାହା ଖୋରଧାର ଜନସାଧାରଣଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା ।"

ପୂର୍ବବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ଯେ, ପ୍ରତିଷ୍ଠାତା ପ୍ରାଣନାଥଙ୍କର ସବୁଠାରୁ ଘନିଷ୍ଠ ଓ ବିଶ୍ୱସ୍ତ ପରାମର୍ଶଦାତା ରୂପେ ଅବନୀ ବରାଳ କିପରି କଲେଜର ସମସ୍ତ ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ ଏବଂ ନୀତିନିର୍ଦ୍ଧାରଣ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲେ । ବିଗତ ଶତାବ୍ଦୀର ଷଷ୍ଠ ଦଶକରେ ଖୋର୍ଦ୍ଧା କଲେଜକୁ ଏକ ବିଶ୍ୱବିଦ୍ୟାଳୟରେ ପରିଣତ କରି ତାହାକୁ ମୋତିଲାଲ ନେହେରୁ (ଜବାହାରଲାଲ ନେହେରୁଙ୍କ ପିତା ତଥା ସ୍ୱାଧୀନତା ସଂଗ୍ରାମୀ)ଙ୍କ ନାମରେ ନାମିତ କରିବାକୁ ପ୍ରତିଷ୍ଠାତା ଯେଉଁ ସ୍ୱପ୍ନ ଦେଖିଥିଲେ, ତାହାର ନକ୍‌ସା ତଥା ସମସ୍ତ ଯୋଜନାର ଚିଠା ପ୍ରସ୍ତୁତ କରିଥିଲେ ଅବନୀ । ଏହି ବିଶ୍ୱବିଦ୍ୟାଳୟ ପାଇଁ ଯେଉଁ ଟ୍ରଷ୍ଟ ବୋର୍ଡ଼ ଗଠନ କରାଯିବାକୁ ପ୍ରସ୍ତାବ ରହିଥିଲା, ସେଥିରେ ନିଜେ ପ୍ରାଣନାଥ ସମ୍ପାଦକ ଓ ଅବନୀଙ୍କୁ ଜଣେ ସଦସ୍ୟ ରଖାଯାଇଥିଲା । ଜବାହାରଲାଲ ନେହେରୁଙ୍କ ପରିବାରରୁ ତାଙ୍କର କନ୍ୟା ଇନ୍ଦିରାଗାନ୍ଧୀଙ୍କୁ ଏଥିରେ ସଦସ୍ୟା ରଖିବା ପାଇଁ

ମଧ୍ୟ ପ୍ରସ୍ତାବ ରହିଥିଲା । ପ୍ରସିଦ୍ଧ ଜାତୀୟ ଶିକ୍ଷାନୁଷ୍ଠାନ କାଶୀ ବିଦ୍ୟାପୀଠରେ ପ୍ରାଣନାଥ ଛାତ୍ର ଥିବା ସମୟରେ କିଛିଦିନ ପାଇଁ ତାଙ୍କର ଶିକ୍ଷକ ଥିଲେ ପଣ୍ଡିତ ନେହେରୁ । ତାଙ୍କ ପ୍ରତି ସାମ୍ୟବାଦୀ ପ୍ରାଣନାଥଙ୍କର ଯେଉଁ ଶ୍ରଦ୍ଧା ଓ ଭକ୍ତି ରହିଥିଲା, ତାହାର ପରିପ୍ରକାଶ ଘଟିଥିଲା ପ୍ରସ୍ତାବିତ ବିଶ୍ୱବିଦ୍ୟାଳୟକୁ ମୋତିଲାଲ ନେହେରୁଙ୍କ ନାମରେ ନାମିତ କରିବାରେ । ଅବନୀଙ୍କ ଦ୍ୱାରା ପ୍ରସ୍ତୁତ ମୋତିଲାଲ ନେହେରୁ ବିଶ୍ୱବିଦ୍ୟାଳୟର ଚିଠା ଓ ନକ୍‌ସା ଆଦି ଧରି ପ୍ରାଣନାଥ ଦିଲ୍ଲୀ ଯାଇଥିଲେ । ସେତେବେଳର ପ୍ରଧାନମନ୍ତ୍ରୀ ନେହେରୁ ଓ ପରବର୍ତ୍ତୀ ସମୟରେ ରାଷ୍ଟ୍ରପତି ହୋଇଥିବା ଭି.ଭି. ଗିରି ପ୍ରମୁଖଙ୍କୁ ସାକ୍ଷାତ କରି ଏ ଦିଗରେ କେତେକାଂଶରେ ଆଗେଇ ମଧ୍ୟ ଯାଇଥିବା ବେଳେ ନିଷ୍ଠୁର କାଳ ପ୍ରତିବନ୍ଧକ ସାଜିଥିଲା । କୃଷକ ସଭାର ପଦଯାତ୍ରା କରି ସେ ଗୁରୁତର ଅସୁସ୍ଥ ହୋଇପଡ଼ିଥିଲେ ଏବଂ ସେହି ଅସୁସ୍ଥତା ହିଁ ତାଙ୍କର ଜୀବନ ଦୀପକୁ ଲିଭାଇ ଦେଇଥିଲା । ମୋତିଲାଲ ନେହେରୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ପ୍ରାଣନାଥ-ଅବନୀଙ୍କ ସ୍ୱପ୍ନ ସେହି ସ୍ୱପ୍ନରେ ହିଁ ରହିଯାଇଥିଲା ।

ପ୍ରାଣନାଥଙ୍କ ସହ ଅବନୀଙ୍କ ନିବିଡ଼ ସମ୍ପର୍କର ଅନ୍ୟ ଏକ ନିଦର୍ଶନ ହେଉଛି କଲେଜ ପାର୍ଶ୍ୱବର୍ତ୍ତୀ ଜେମାଦେଇ ଗ୍ରାମରେ ପ୍ରତିଷ୍ଠିତ 'ଜୟୀ ରାଜଗୁରୁ ହାଇସ୍କୁଲ' । ଏହାର ପ୍ରତିଷ୍ଠା ପଛରେ ମଧ୍ୟ ରହିଛି ଏକ ଅକୁହା କାହାଣୀ । ଉତ୍କଳ ବିଶ୍ୱବିଦ୍ୟାଳୟର ଦ୍ୱିତୀୟ କୁଳପତି ଡକ୍ଟର ସଦାଶିବ ମିଶ୍ର ଥରେ ଖୋର୍ଦ୍ଧା କଲେଜରେ ଆୟୋଜିତ ଏକ ଉତ୍ସବରେ ଯୋଗ ଦେବାକୁ ଆସିଥାନ୍ତି । ପ୍ରତିଷ୍ଠାତା ପ୍ରାଣନାଥଙ୍କର କୁଳପତି ଡକ୍ଟର ମିଶ୍ର ସହପାଠୀ ଓ ଅନ୍ତରଙ୍ଗ ବନ୍ଧୁ । ସେହି ଉତ୍ସବରେ ବକ୍ତବ୍ୟ ରଖିବା ସମୟରେ ସଦାଶିବ ବାବୁ ପରାମର୍ଶ ଦେବା ଛଳରେ ଖୋର୍ଦ୍ଧା କଲେଜ ପକ୍ଷରୁ ଏକ କଲେଜିଏଟ୍ ସ୍କୁଲ ଅର୍ଥାତ୍ କଲେଜ ନିକଟରେ ହାଇସ୍କୁଲଟିଏ ପ୍ରତିଷ୍ଠା କରିବାକୁ ପ୍ରସ୍ତାବ ଦେଇଥିଲେ । ଅଭାବଗ୍ରସ୍ତ ଛାତ୍ରମାନେ ଏଥିରେ ଶିକ୍ଷକତା କରିବାକୁ ସୁଯୋଗ ପାଇପାରିବେ ବୋଲି ସେ କହିଥିଲେ । ସଦାଶିବ ମିଶ୍ରଙ୍କ ଏହି ପ୍ରସ୍ତାବ୍ ପ୍ରାଣନାଥଙ୍କ ମନକୁ ଖୁବ୍ ଛୁଇଁଥିଲା । ସେ ପରବର୍ତ୍ତୀ ସମୟରେ ଅବନୀ ବରାଳ, ଲକ୍ଷ୍ମୀ ନାରାୟଣ ରାୟସିଂହ ପ୍ରମୁଖଙ୍କ ସହ ପରାମର୍ଶ କରି ଏହାକୁ କାର୍ଯ୍ୟକାରୀ କରିବାକୁ ଉଦ୍ୟମ କରିଥିଲେ । ଏହାର ଫଳଶ୍ରୁତି ସ୍ୱରୂପ କଲେଜକୁ ଲାଗିଥିବା ଜେମାଦେଇଠାରେ ସ୍ଥାପନ କରାଯାଇଥିଲା 'ଜୟୀରାଜଗୁରୁ ହାଇସ୍କୁଲ' । ଖୋର୍ଦ୍ଧା କଲେଜରୁ ସ୍ନାତକ ଉପାଧି ଲାଭ କରିଥିବା କେତେକ ଛାତ୍ର ଏଠାରେ ଶିକ୍ଷକତା କରିଥିଲେ । ଏହି ହାଇସ୍କୁଲର ପ୍ରଥମ ପରିଚାଳନା କମିଟିରେ ପ୍ରାଣନାଥ ପଟ୍ଟନାୟକ ସଭାପତି ଓ ଅବନୀ ବରାଳ ସମ୍ପାଦକ ରହିଥିଲେ । ପ୍ରତିଷ୍ଠାତାଙ୍କ ବିୟୋଗ ପର୍ଯ୍ୟନ୍ତ ସେହି କମିଟି କାର୍ଯ୍ୟ କରୁଥିଲା । ଏ ସମ୍ପର୍କୀୟ ସମସ୍ତ ଫାଇଲ ଓ ଚିଠା ପ୍ରସ୍ତାବ ଆଦି

ଏବେ ମଧ୍ୟ ଗଚ୍ଛିତ ଅଛି, ଯଦିଓ ଇତିହାସକୁ ବିକୃତ କରିବାର ମାନସିକତା ନେଇ କିଛି ବ୍ୟକ୍ତି ସେହି ସତ୍ୟକୁ ଚପାଇ ଦେବା ପାଇଁ ଉଦ୍ୟମ କରୁଛନ୍ତି । ନିଜେ ଡକ୍ଟର ସଦାଶିବ ମିଶ୍ର ଜୟୀ ରାଜଗୁରୁ ହାଇସ୍କୁଲ ପ୍ରତିଷ୍ଠାର ପୃଷ୍ଠଭୂମି ବର୍ଣ୍ଣନା କରି 'ଜନତାର ସାଥୀ ପ୍ରାଣନାଥ' ପୁସ୍ତକରେ ଲେଖିଛନ୍ତି – "ଥରେ ଖୋର୍ଦ୍ଧା କଲେଜ ବିଷୟରେ ତାଙ୍କୁ ଗୋଟିଏ ପରାମର୍ଶ ଦେଇଥିଲି । ସମସ୍ତେ କହୁଛନ୍ତି, ଛାତ୍ରମାନେ କାମକରି ଶିଖନ୍ତୁ । ପାଠପଢ଼ା ସାଙ୍ଗରେ ରୋଜଗାର ଲାଗି କ୍ଷେତ୍ର ମିଳିବା ଆବଶ୍ୟକ । ପରାମର୍ଶ ଦେଇଥିଲି – କଲେଜ ପାଖରେ ଗୋଟିଏ ହାଇସ୍କୁଲ ରହୁ । ସେଠାରେ ମାତ୍ର ଜଣେ ପ୍ରଧାନ ଶିକ୍ଷକ ରହନ୍ତୁ । ଏ ଦେଶରେ ଅନେକ ଛାତ୍ର ଅଭାବଗ୍ରସ୍ତ । କେତେକ ଛାତ୍ର ଏ ସ୍କୁଲରେ ଶିକ୍ଷକତା କରନ୍ତୁ ଏବଂ ସେଥିଲାଗି ତାଙ୍କୁ ଉପଯୁକ୍ତ ପାରିଶ୍ରମିକ ଦିଆଯାଉ । ଏ ପରାମର୍ଶ ଅନେକ ସ୍ଥାନରେ ଦେଇଥିଲି । ପ୍ରାଣନାଥ ବାବୁଙ୍କ ମନକୁ ପାଇଲା । ସେ ଏହିପରି ଗୋଟିଏ ସ୍କୁଲ ପ୍ରତିଷ୍ଠା କଲେ । ତାଙ୍କର ଶିକ୍ଷାକ୍ଷେତ୍ରରେ ବିଶେଷ ଆଗ୍ରହ ଥିଲା । କୌଣସି ନୂଆ ପ୍ରଣାଳୀ ବା ପନ୍ଥା ଗ୍ରହଣ କରିବା ପାଇଁ ସେ ବରାବର ଉତ୍ସୁକ ଥିଲେ । ଉଦ୍ୟମ ଲାଗି ସେ ସର୍ବଦା ପ୍ରୟାସୀ ଥିଲେ ।"

ପ୍ରାଣନାଥଙ୍କ ତିରୋଧାନ ପରେ ଏହି ହାଇସ୍କୁଲ କିଛିବର୍ଷ ମୁମୂର୍ଷୁ ହୋଇପଡ଼ିଥିଲା । ମାତ୍ର ଏହାର ପ୍ରତିଷ୍ଠା ସହ ମୂଳରୁ ସଂଶ୍ଳିଷ୍ଟ ରହିଆସିଥିବା ଅବନୀ ବରାଳ ପରବର୍ତ୍ତୀ ସମୟରେ ଏହାକୁ ପୁଣି ଜୀବନ୍ୟାସ ଦେଇଥିଲେ । ଶିକ୍ଷାନୁଷ୍ଠାନକୁ ଅନୁଦାନ ଓ ଶିକ୍ଷକମାନଙ୍କୁ ଦରମା ଦେବା ଆଦିର ବ୍ୟବସ୍ଥା ସରକାରୀ ସ୍ତରରେ କରିବା ଯୋଗୁଁ ଏହା ପୁନର୍ବାର ଚଳଚଞ୍ଚଳ ହୋଇ ଏବେ ଯଥାରୀତି କାର୍ଯ୍ୟ କରୁଛି ।

୧୯୭୦ ମସିହା ଥିଲା ଖୋର୍ଦ୍ଧା କଲେଜ ଓ ଅବନୀଙ୍କ ପାଇଁ ଏକ ଦୁଃଖଦ ବର୍ଷ । ଏହି ବର୍ଷ ଜାନୁୟାରୀ ମାସ ୨୮ ତାରିଖରେ ଅନୁଷ୍ଠିତ ହେଲା କଲେଜର ଏକାଦଶ ସାମ୍ବତ୍ସରିକ ଉତ୍ସବ । କଲେଜର ପ୍ରକୋଷ୍ଠଗୁଡ଼ିକ ମହାପୁରୁଷ ଓ ବରପୁତ୍ରମାନଙ୍କ ନାମରେ ନାମିତ କରାଗଲା । ଏହି ଉପଲକ୍ଷେ କଲେଜର ଏକ ସ୍ମରଣିକା ପ୍ରକାଶ କରାଗଲା ଏବଂ ଅବନୀଙ୍କ ପରାମର୍ଶ କ୍ରମେ ପ୍ରାଣନାଥ ସେଥିରେ କଲେଜର ଜନ୍ମ ବୃତ୍ତାନ୍ତ ଲିପିବଦ୍ଧ କରାଇଥିଲେ । ତା' ପୂର୍ବରୁ କଳାହାଣ୍ଡି ଓ ଦଶପଲ୍ଲାର ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ ପଦଯାତ୍ରା କରୁଥିବାବେଳେ ସେ ବିଭିନ୍ନ ସ୍ଥାନରୁ ଅବନୀଙ୍କୁ ପତ୍ର ଲେଖି କଲେଜର ଉନ୍ନତି ଏବଂ ଉତ୍ସବ ଆୟୋଜନ ସମ୍ପର୍କରେ ବରାବର ପରାମର୍ଶ ଦେଉଥାନ୍ତି । କଲେଜ ସମ୍ମୁଖରେ ମାର୍ବଲ ଫଳକରେ ଲେଖାହେବାକୁ ଥିବା ଗୋଟିଏ କ୍ଷୁଦ୍ର କବିତା ମଧ୍ୟ ଅବନୀଙ୍କ ପାଖକୁ ଲେଖି ପଠାଇଥିଲେ (ଯାହାକି ଏବେ ମୁଖ୍ୟ ଦ୍ୱାର ନିକଟରେ ଲଗାଯାଇଛି) କେଉଁ ଏକ

ଦୂରସ୍ଥାନରୁ । ତେବେ ଏହି ଉତ୍ସବ ଶେଷ ହେବା ପରେ ପରେ ସେ ଅସୁସ୍ଥ ହୋଇପଡ଼ିଥିଲେ ଏବଂ ଚିକିତ୍ସା ପାଇଁ ତାଙ୍କୁ ଅନିଚ୍ଛା ସତ୍ତ୍ୱେ କଲିକତାକୁ ନିଆଯାଇଥିଲା । ସେଠାରେ ୬/୭ ମାସ ଧରି ଚିକିତ୍ସିତ ହେବା ସତ୍ତ୍ୱେ ତାଙ୍କ ସ୍ୱାସ୍ଥ୍ୟରେ କୌଣସି ଉନ୍ନତି ଘଟିନଥିଲା । ପ୍ରାଣନାଥ କଲିକତାରେ ତାଙ୍କ ବଡ଼ପୁଅଙ୍କ ଘରେ ରହି ଚିକିତ୍ସିତ ହେଉଥିବାବେଳେ ଅବନୀ ତାଙ୍କୁ ଦେଖିବା ପାଇଁ କଲିକତାକୁ ଯାଇଥିଲେ । ଉଭୟଙ୍କ ମଧ୍ୟରେ ଦୀର୍ଘ ସମୟ ଧରି ଆଲୋଚନା ଚାଲିଥିଲା । କଲେଜର ଉନ୍ନତି ଓ ଖୋର୍ଦ୍ଧା ମାଟିକୁ ପୁଣି ଫେରିବା ପାଇଁ ନିଜର ବ୍ୟାକୁଳତା ସେ ପ୍ରକାଶ କରିଥିଲେ ଅବନୀଙ୍କ ଆଗରେ । ଏହାପରେ କିଛି ଦିନ ବିତିଗଲା । ପ୍ରାଣନାଥଙ୍କ ସ୍ୱାସ୍ଥ୍ୟାବସ୍ଥାରେ ବିଶେଷ କୌଣସି ଉନ୍ନତି ନଘଟିଥିଲେ ମଧ୍ୟ ସେ ଖୋର୍ଦ୍ଧାକୁ ଫେରିବା ପାଇଁ ଅତ୍ୟଧିକ ଆଗ୍ରହ ପ୍ରକାଶ କରି ଅବନୀଙ୍କୁ ଚିଠି ଲେଖିଲେ । ଶେଷରେ ନିଷ୍ପତ୍ତି ହୋଇଥିଲା ଯେ ୧୯୭୦ ଅକ୍ଟୋବର ୧୫ ତାରିଖ ଦିନ ପ୍ରାଣନାଥ ପଟ୍ଟନାୟକ ଖୋର୍ଦ୍ଧାକୁ ଫେରିବେ ଏବଂ କଲେଜର ଗୋଟିଏ ପ୍ରକୋଷ୍ଠରେ ହିଁ ରହିବେ । ତଦନୁଯାୟୀ କଲେଜରେ ଗୋଟିଏ ପ୍ରକୋଷ୍ଠକୁ ପରିଷ୍କାର ପରିଚ୍ଛନ୍ନ କରାଯାଇ ତାଙ୍କ ରହିବା ପାଇଁ ପ୍ରସ୍ତୁତ କରାଗଲା । ସମସ୍ତେ ତାଙ୍କର ଆଗମନକୁ ଉତ୍ସୁକତାର ସହ ଅପେକ୍ଷା କରି ରହିଲେ । ଏହି ସମସ୍ତ ପ୍ରସ୍ତୁତି କାର୍ଯ୍ୟକୁ ତତ୍ତ୍ୱାବଧାନ କରିଥିଲେ ନିଜେ ଅବନୀ ।

ଠିକ୍ ଏହି ସମୟରେ ଅକ୍ଟୋବର ୫ ତାରିଖ ରାତିରେ କଲିକତା ଠାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ପ୍ରାଣନାଥ ପଟ୍ଟନାୟକ । ଅକ୍ଟୋବର ୬ ତାରିଖ ପ୍ରତ୍ୟୁଷରେ ଏହି ଦାରୁଣ ଦୁଃସମ୍ବାଦ ଖୋର୍ଦ୍ଧା ସମେତ ସାରା ରାଜ୍ୟରେ ବିଦ୍ୟୁତ୍ ବେଗରେ ପ୍ରଚାରିତ ହେବା ମାତ୍ରେ ଦୁଃଖରେ ଭାଙ୍ଗି ପଡ଼ିଥିଲେ ଅବନୀ । ସେ ସଙ୍ଗେ ସଙ୍ଗେ ଖୋର୍ଦ୍ଧା ସହରରେ ଏକ ବିରାଟ ଶୋକ ପଟୁଆର ଆୟୋଜନ କରି ଏହାର ନେତୃତ୍ୱ ନେଇଥିଲେ । ଦଳମତ ନିର୍ବିଶେଷରେ ସହରର ସବୁ ଶ୍ରେଣୀର ନାଗରିକ ଏଥିରେ ଯୋଗ ଦେଇଥିଲେ । ଖୋର୍ଦ୍ଧାର ସମସ୍ତ ଦୋକାନ ବଜାର ବନ୍ଦ ରଖାଯାଇ ହରତାଳ ପାଳନ କରାଯାଇଥିଲା । ସେହିଦିନ ସନ୍ଧ୍ୟାରେ ଖୋର୍ଦ୍ଧାର ନାଗରିକମାନଙ୍କ ପକ୍ଷରୁ ଏକ ସର୍ବଦଳୀୟ ଶୋକସଭା ପ୍ରବୀଣ ପ୍ରଧାନ ଶିକ୍ଷକ ଦିବ୍ୟସିଂହ ପଟ୍ଟନାୟକଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ଏଥିରେ ଅବନୀ ବରାଳଙ୍କ ଉଦ୍ୟମ କ୍ରମେ ଏକ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା, ଯେଉଁଥିରେ ଖୋର୍ଦ୍ଧା କଲେଜକୁ ଏହାର ପ୍ରତିଷ୍ଠାତା ତଥା ଓଡ଼ିଶାର ମହାନ୍ ସ୍ୱାଧୀନତା ସଂଗ୍ରାମୀ ପ୍ରାଣନାଥ ପଟ୍ଟନାୟକଙ୍କ ନାମରେ ନାମିତ କରିବାକୁ ସୁପାରିଶ କରାଗଲା । ଏହି ପ୍ରସ୍ତାବ ଗୃହୀତ ହେବାର ଅନେକ ଦିନ ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ନହେବାରୁ ଅବନୀ କ୍ରୋଧ ପ୍ରକାଶ

କରି କଲେଜର ଛାତ୍ର ସମାଜକୁ ଏଥିପାଇଁ ଆନ୍ଦୋଳନ କରିବାକୁ ପ୍ରବର୍ତ୍ତାଇଥିଲେ । ପରିଶେଷରେ ଖୋର୍ଦ୍ଧାର ଜନସାଧାରଣଙ୍କ ମତକୁ ସମ୍ମାନ ଜଣାଇ ଏବଂ ଛାତ୍ରଛାତ୍ରୀଙ୍କ ଚାପ ଆଗରେ ମୁଣ୍ଡ ନୁଆଁଇ କଲେଜ କର୍ତ୍ତୃପକ୍ଷ ଏବଂ ରାଜ୍ୟ ସରକାର ଖୋର୍ଦ୍ଧା କଲେଜର ନୂତନ ନାମକରଣ କରିଥିଲେ - "ପ୍ରାଣନାଥ ମହାବିଦ୍ୟାଳୟ" । ଏହା ମୁଖ୍ୟତଃ ସମ୍ଭବପର ହୋଇଥିଲା ଅବନୀ ବରାଳଙ୍କ ନିଷ୍ଠାପର ଅବିଶ୍ରାନ୍ତ ଉଦ୍ୟମ ଯୋଗୁଁ ।

୧୯୫୯ରୁ ୧୯୯୪ ମସିହା ପର୍ଯ୍ୟନ୍ତ ଦୀର୍ଘ ୩୫ ବର୍ଷ କାଳ କଲେଜର ଧୂଳିମାଟି, ପାଣି ଓ ପବନ ସହ ସମ୍ପୂର୍ଣ୍ଣ ମିଶି ଯାଇଥିବା ଏବଂ ଏହାର ବିକାଶରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ଅବନୀ ବରାଳ ୧୯୯୪ ମଇ ୧୨ ତାରିଖ ଦିନ କଲେଜରୁ ଅବସର ନେଇଥିଲେ । ଜଣେ ବରିଷ୍ଠତମ ଅଧ୍ୟାପକ ଓ ଅଧ୍ୟକ୍ଷ ରୂପେ ଅବନୀ ଏହି କଲେଜ ପ୍ରତି ଯେଉଁ ଅବଦାନ ଦେଇଛନ୍ତି, ତାହା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଖୋର୍ଦ୍ଧା କଲେଜରେ ପାଠପଢ଼ାର ବାତାବରଣ ଫେରାଇ ଆଣିବା ଓ ଶାନ୍ତି ଶୃଙ୍ଖଳା ପ୍ରତିଷ୍ଠା କରିବାରେ ତାଙ୍କର ମହତ୍ତ୍ୱପୂର୍ଣ୍ଣ ଅବଦାନକୁ ଦୃଷ୍ଟିରେ ରଖି ଅନେକ ତାଙ୍କର କାର୍ଯ୍ୟକାଳକୁ ଖୋର୍ଦ୍ଧା କଲେଜର 'ସୁବର୍ଣ୍ଣ ଯୁଗ' ରୂପେ ବର୍ଣ୍ଣନା କରିଥାନ୍ତି । ଏହା ସତ୍ତ୍ୱେ କଲେଜ କର୍ତ୍ତୃପକ୍ଷ ବିଦାୟ ପରେ କଲେଜ ପ୍ରତି ତାଙ୍କର ରହିଥିବା ବିପୁଳ ଅବଦାନକୁ ଏ ଯାଏଁ ଯଥାର୍ଥ ସ୍ୱୀକୃତି ଦେଇନାହାନ୍ତି କିମ୍ବା କଲେଜର କୌଣସି ସମ୍ମାନରେ ସେ ଆଜି ପର୍ଯ୍ୟନ୍ତ ସମ୍ମାନିତ ହୋଇନାହାନ୍ତି । ଏହା ହିଁ ତ ଆମର ଦୁର୍ଭାଗ୍ୟ !



# ରାଜ୍ୟରେ ସଂଗଠିତ ଶିକ୍ଷକ ଆନ୍ଦୋଳନର ଦୁର୍ବାର ଯୋଦ୍ଧା; ମହାସଂଗ୍ରାମର ସଫଳ ନାୟକ



ବିଗତ ଶତାବ୍ଦୀର ସପ୍ତମ ଦଶକ ପୂର୍ବରୁ ଓଡ଼ିଶାରେ ବେସରକାରୀ ଶିକ୍ଷାନୁଷ୍ଠାନ ଗୁଡିକର ଶିକ୍ଷକ, ଶିକ୍ଷୟତ୍ରୀ ଏବଂ ଶିକ୍ଷାକର୍ମୀମାନଙ୍କର ଆର୍ଥିକ ସ୍ଥିତି ଥିଲା ଖୁବ୍ ଦୟନୀୟ । ଅଧିକାଂଶ ଘରୋଇ ସ୍କୁଲ ଓ କଲେଜରେ ମାସିକ ଦରମା ଆକାରରେ ସେମାନଙ୍କୁ ଯେଉଁ ଅର୍ଥ ମିଳୁଥିଲା, ତାହା ଥିଲା ଅତ୍ୟନ୍ତ ନଗଣ୍ୟ । ତାହା ପୁଣି ନିୟମିତ ମିଳୁନଥିଲା । ଅବସରକାଳୀନ ସୁବିଧା ସୁଯୋଗ ତ ଥିଲା ସେମାନଙ୍କ ପାଇଁ ସ୍ୱପ୍ନ । ଘରୋଇସ୍କୁଲ କଲେଜର ଶିକ୍ଷକ ଓ ଶିକ୍ଷାକର୍ମୀମାନେ ସଂପୃକ୍ତ ଅନୁଷ୍ଠାନର ମାଲିକ ବା ପରିଚାଳନା ସମିତି ପାଖରେ ଗୋଟି ଶ୍ରମିକ ଭଳି ବନ୍ଧା ହୋଇଥିଲେ । ସବୁ ପ୍ରକାର ଅନ୍ୟାୟ, ଅନୀତି ଓ ଆକ୍ରୋଶମୂଳକ କାର୍ଯ୍ୟାନୁଷ୍ଠାନକୁ ମୁଣ୍ଡ ପୋତି ସହିନେବା ବ୍ୟତୀତ ସେମାନଙ୍କ ପାଖରେ ଅନ୍ୟ କୌଣସି ପନ୍ଥା ନଥିଲା । ଅନ୍ୟାୟ ବିରୋଧରେ ପାଟି ଫିଟାଇଲେ ଚାକିରୀ ଚାଲିଯିବାର ଭୟ ରହିଥିଲା । ପରିଚାଳନା ସମିତିର ଅନ୍ୟାୟ ଅବିଚାର ବିରୋଧରେ ମୁହଁ ଖୋଲି ପ୍ରତିବାଦ କରିବାକୁ କିମ୍ବା ଆପତ୍ତି ଅଭିଯୋଗ ଉପସ୍ଥାପନା କରିବାକୁ କୌଣସି ପ୍ରକାର ସ୍ୱତନ୍ତ୍ର ସଂସ୍ଥା ବା ଅଦାଲତ ମଧ୍ୟ ସ୍ଥାପନ କରାଯାଇନଥିଲା । କାଳକ୍ରମେ ଘରୋଇ ସ୍କୁଲ ଓ କଲେଜର ଶିକ୍ଷକମାନଙ୍କର କେତୋଟି ସଂଗଠନ ଅବଶ୍ୟ

ମୁଣ୍ଡ ଟେକିବାକୁ ଆରମ୍ଭ କରିଥିଲା । ମାତ୍ର ସେମାନଙ୍କ ମଧ୍ୟରେ ସହଯୋଗ, ସମନ୍ୱୟ ଓ ଏକତା ନଥିବାରୁ ଏହିସବୁ ସଂଗଠନ ଦ୍ୱାରା ସରକାରଙ୍କ ପାଖରେ ଉପସ୍ଥାପନ କରାଯାଉଥିବା ସମସ୍ୟାଗୁଡ଼ିକ ପ୍ରଶାସନର ନାଲିଫିତା ଭିତରେ ଚାପି ହୋଇ ରହୁଥିଲା କିମ୍ବା ଶୀତଳ ଭଣ୍ଡାରକୁ ଚାଲି ଯାଉଥିଲା । କୌଣସି ଦାବି ନେଇ ସରକାରଙ୍କୁ କେବଳ ବିନୟର ସହ ଆବେଦନ ଓ ନିବେଦନ କରିବା ଭିତରେ ସୀମିତ ରହୁଥିଲା ଶିକ୍ଷକ ସଂଗଠନ ଗୁଡ଼ିକର କାର୍ଯ୍ୟକଳାପ । ରାଜରାସ୍ତାକୁ ଓହ୍ଲାଇ ନିଜର ହକ୍ ଦାବି ହାସଲ ନିମନ୍ତେ ପଟୁଆର ବାହାର କରିବା କିମ୍ବା ଧ୍ୱନି ଦେବା ସତେ ଯେପରି ଶିକ୍ଷକ ସମାଜ ପାଇଁ ଥିଲା ମହାପାପ । ଆନ୍ଦୋଳନ କରିବା ଥିଲା ଏକ ପ୍ରକାର ସ୍ୱପ୍ନ ।

ପରାଧୀନତା ଯୁଗର ଅନ୍ଧାର ରାତିରେ ୧୯୪୫-୪୬ ମସିହାରେ ରାଜ୍ୟର ବେସରକାରୀ ହାଇସ୍କୁଲ ଶିକ୍ଷକ-ଶିକ୍ଷୟିତ୍ରୀଙ୍କୁ ଏକାଠୀ କରାଯାଇ ସ୍ଥାପିତ ହୋଇଥିଲା ଓଡ଼ିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘ ( ଓଷ୍ଟା) । ଏହାର ପ୍ରାୟ ୧୦/୧୨ ବର୍ଷ ପରେ ୧୯୫୭ ରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଜନ୍ମ ନେଇଥିବା ବେଳେ ୧୯୬୧ ରେ ମୁଣ୍ଡ ଟେକିଥିଲା ନିଖିଳ ଉତ୍କଳ ବେସରକାରୀ କଲେଜ ଶିକ୍ଷକ ସଂଘ । ପୂର୍ବରୁ ରାଜ୍ୟରେ ପ୍ରାଥମିକ ଶିକ୍ଷକ ମାନଙ୍କର ଏକ ବଡ ସଂଗଠନ ମଧ୍ୟ ରହିଥିଲା । ଏହି ସଂଗଠନ ଗୁଡ଼ିକର ମୁଖ୍ୟ କାର୍ଯ୍ୟ ଥିଲା ଖବର କାଗଜରେ ବିବୃତ୍ତି ଛାପିବା ସହ ବାର୍ଷିକ ଅଧିବେଶନର ଆୟୋଜନ କରି ମନ୍ତ୍ରୀ ଓ ନେତାମାନଙ୍କର ବକ୍ତୃତା ଶୁଣିବା । କୌଣସି ସଂଗଠନର ଅନ୍ୟ ସଂଗଠନ ସହ ସଂପର୍କ ନଥିଲା, କେହି କାହାରିକୁ ଜାଣିନଥିଲେ, ପ୍ରତ୍ୟେକ ନିଜ ନିଜର କକ୍ଷରେ ଘୂରି ବୁଲୁଥିଲେ । ମାତ୍ର ଠିକ୍ ଏହି ସମୟରେ ଦେବଦୂତ ଭଳି ବେସରକାରୀ ସ୍କୁଲ କଲେଜ ଶିକ୍ଷକମାନଙ୍କର ତ୍ରାଣକର୍ତ୍ତା ସାଜି ଉଭା ହୋଇଥିଲେ ଖୋର୍ଦ୍ଧା ପ୍ରାଣନାଥ କଲେଜର ସୁଯୋଗ୍ୟ ଓ ସୁଦକ୍ଷ ଅଧ୍ୟାପକ ଅବନୀ ବରାଳ । ଘରୋଇ କଲେଜ ଓ ସ୍କୁଲର ଶିକ୍ଷକମାନଙ୍କର ଆଖିର ଲୁହ ଓ ହୃଦୟର କୋହକୁ ସେ ବେଶ୍ ଭଲ ଭାବରେ ବୁଝିପାରିଥିଲେ । ଅବିଭକ୍ତ କଟକ ଜିଲ୍ଲାର ତେଲଦିଆ ସ୍କୁଲର ପ୍ରଧାନ ଶିକ୍ଷକ ଥିବାବେଳେ ପରିଚାଳନା ସମିତିର ଅନ୍ୟାୟ ଓ ସ୍ୱେଚ୍ଛାଚାର ବିରୋଧରେ ସ୍ୱର ଉତ୍ତୋଳନ କରି ଚାକିରୀ ଛାଡିଥିବା ଅବନୀ ଜାଣିଥିଲେ ଘରୋଇ ଶିକ୍ଷାନୁଷ୍ଠାନର ଶିକ୍ଷକ, ଶିକ୍ଷୟତ୍ରୀ ଓ କର୍ମଚାରୀମାନେ ମାଲିକଙ୍କ ଦ୍ୱାରା କିପରି ଶୋଷିତ, ଲାଞ୍ଛିତ ଓ ଅବହେଳିତ ଅବସ୍ଥାରେ ରହିଛନ୍ତି । ତେଣୁ ସେ ସଂକଳ୍ପ ନେଇଥିଲେ ସେମାନଙ୍କ ଆଖିର ଲୁହକୁ ସବୁଦିନ ପାଇଁ ପୋଛିଦେଇ ସେମାନଙ୍କ ମୁହଁରେ ହସ ଫୁଟାଇବେ ।

ଏହି ଲକ୍ଷ୍ୟରେ ଅବନୀଙ୍କ ପ୍ରଥମ କାର୍ଯ୍ୟଥିଲା ରାଜ୍ୟର ସବୁଶ୍ରେଣୀର ବେସରକାରୀ ଶିକ୍ଷକଙ୍କୁ ମତଭେଦ ଭୁଲି ଗୋଟିଏ ମଞ୍ଚରେ ଏକାଠୀ କରାଇବା । "ଯୋଡାକୁ ଘୋଡା ସରିନୁହେ" ନୀତିରେ ବିଶ୍ୱାସ ପୋଷଣ କରୁଥିବା ଅବନୀ ବରାଳ ନିଜ ନିଜ କକ୍ଷରେ ଘୁରୁଥିବା ଶିକ୍ଷକ ସଂଗଠନଗୁଡିକୁ ନେଇ ଗୋଟିଏ ମିଳିତ କ୍ରିୟାନୁଷ୍ଠାନ କମିଟି ଗଠନ କରିବାକୁ ଆପ୍ରାଣ ଉଦ୍ୟମ ଚଳାଇଲେ । ତାଙ୍କର ଏହି ଅଭିଯାନରେ ସହଯୋଦ୍ଧା ଥିଲେ ଅନ୍ୟ ସଂଗଠନଗୁଡିକର କର୍ମକର୍ତ୍ତା ରୂପେ କାର୍ଯ୍ୟକରୁଥିବା ସର୍ବଶ୍ରୀ ବନମାଳୀ ବ୍ରହ୍ମଚାରୀ, କୈଳାସ ଚନ୍ଦ୍ର ମହାପାତ୍ର, ବିବେକାନନ୍ଦ ଦାଶ, ଦାଶରଥୀ ନାୟକ, ରାଜ କିଶୋର ପଟ୍ଟନାୟକ, ଅନନ୍ତ କର, ପୀତବାସ ବେଉରିଆଙ୍କ ଭଳି ଅନେକ ଶିକ୍ଷକ ନେତୃମଣ୍ଡଳୀ । ଘଟଣାକ୍ରମରେ ନିଜେ ଅବନୀ ୧୯୬୬-୬୭ ମସିହା ବେଳକୁ ନିଖିଳ ଉତ୍କଳ ବେସରକାରୀ କଲେଜ ଶିକ୍ଷକ ସଂଘର ସାଧାରଣ ସଂପାଦକ ହୋଇସାରିଥିଲେ । ସେହି କ୍ଷମତା ବଳରେ ସେ ଅନ୍ୟ ଶିକ୍ଷକ ସଂଗଠନଗୁଡିକର କର୍ମକର୍ତ୍ତାମାନଙ୍କ ସହ ବାରମ୍ବାର ଆଲୋଚନା କରି ବେସରକାରୀ ଶିକ୍ଷକଙ୍କ ଏକ ବୃହତ୍ତର ସଂଗଠନ ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଚାଲିଲେ । ତାଙ୍କର ପ୍ରାଣମୂର୍ଚ୍ଛା ଉଦ୍ୟମ ଆଂଶିକ ସଫଳ ହୋଇଥିଲା ୧୯୬୯ ଜୁନ୍ - ଜୁଲାଇ ମାସରେ, ଯେତେବେଳେ ବିଭିନ୍ନ ବେସରକାରୀ ଶିକ୍ଷକ ସଂଗଠନର ପ୍ରତିନିଧିଙ୍କୁ ଏକାଠି କରାଇ ଜନ୍ମଲାଭ କଲା 'ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ସମିତି' । ଏହି ସମିତିରେ ପ୍ରତ୍ୟେକ ସଂଘରୁ ସାତଜଣ ଲେଖାଏଁ ପ୍ରତିନିଧି ସଭ୍ୟ ରହିଲେ । ନିଜେ ଅବନୀ ବରାଳ ସ୍ୱର୍ଗତ ବନମାଳୀ ବ୍ରହ୍ମଚାରୀ ଓ ସ୍ୱର୍ଗତ କୈଳାସ ମହାପାତ୍ର ଯୁଗ୍ମ ଆବାହକ ଥିଲେ ଏବଂ ଅବନୀ ବରାଳ ଏହି ଆବାହକ ମଣ୍ଡଳୀର ମୁଖ୍ୟ ଆବାହକ ରହିଲେ । ଭବିଷ୍ୟତରେ ସବୁ ଶ୍ରେଣୀର ବେସରକାରୀ ଶିକ୍ଷକ ଗୋଟିଏ ମଞ୍ଚରେ ଏକାଠୀ ହୋଇ ଦାବି ହାସଲ ପାଇଁ ସଂଗଠିତ ଆନ୍ଦୋଳନ ଆରମ୍ଭ କରିବାକୁ ଏହାଥିଲା ପ୍ରଥମ ଭିତ୍ତିଭୂମି । ତେବେ ରାଜ୍ୟର ପ୍ରାଥମିକ ଶିକ୍ଷକ ସଂଗଠନ ସେତେବେଳେ ମିଳିତ କ୍ରିୟାନୁଷ୍ଠାନ ସମିତି ଠାରୁ ଦୂରେଇ ରହିଥିଲା ।

ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ସମିତି ଗଠନ କରାଯିବା ପରେ ବିଭିନ୍ନ ଶିକ୍ଷକ ସଂଗଠନର ଦାବିଗୁଡିକୁ ନେଇ ପ୍ରସ୍ତୁତ ହୋଇଥିଲା ଦାବିପତ୍ର ଏବଂ ପ୍ରଥମ ଥର ପାଇଁ ଶିକ୍ଷକ ସମାଜ ଦାବି ହାସଲ ପାଇଁ ଓହ୍ଲାଇଥିଲେ ରାଜରାସ୍ତାକୁ । ଏହି କ୍ରିୟାନୁଷ୍ଠାନ ସମିତିରୁ ପରବର୍ତ୍ତୀ ସମୟରେ ଜନ୍ମଲାଭ କରିଥିଲା ଓଡ଼ିଶାରେ ବେସରକାରୀ ଶିକ୍ଷକ ମାନଙ୍କର ସର୍ବପ୍ରଧାନ ସଂଗଠିତ ଅନୁଷ୍ଠାନ 'ନିଖିଳ ଉତ୍କଳ ଶିକ୍ଷକ ମହାସଂଘ' । ବିଭିନ୍ନ ସମୟରେ ବହୁ ସରକାରକୁ ଥରହର କରିଥିବା ଏବଂ ବେସରକାରୀ ଶିକ୍ଷକଙ୍କର ସମସ୍ତ ମୁଖ୍ୟଦାବି

ହାସଲ କରିବାରେ ସକ୍ଷମ ହୋଇଥିବା ଶିକ୍ଷକ ମହାସଂଘର ଜନ୍ମବୃତ୍ତାନ୍ତ ଉଲ୍ଲେଖ କରି ଏହାର ସ୍ରଷ୍ଟା ଅବନୀ ନିଜେ କହନ୍ତି - "ଆଗକୁ ଆଗକୁ ଚାଲିଆସିଲା ପରେ, ପଛରେ ଛାଡ଼ି ଆସିବା ରାସ୍ତାକୁ ଆଖି ପକାଇଲେ ଯେପରି ଛାଡ଼ିଆସିଥିବା ପଥ ଦିଶେ ନାହିଁ, ସେମିତି କେବେଠାରୁ ଓଷ୍ଟା ବା ଅଲୋଷ୍ଟା ଓଡ଼ିଶା ମାଧ୍ୟମିକ, ନିମ୍ନ-ମାଧମିକ ସ୍କୁଲ ଶିକ୍ଷକ ସଂଘ ସହିତ ମୋର ସଂପର୍କ ସେ କଥା ମନେପକାଇବା କଷ୍ଟସାଧ୍ୟ । କାରଣ ସୁଦୀର୍ଘ ତିନି ଚାରି ଦଶନ୍ଧି ଭିତରେ ସେମାନଙ୍କ ସହିତ ଏପରି ଏକାକାର ହୋଇଯାଇଛି ଯେ, ବନ୍ଧନର ଗଣ୍ଠିର ଦିନ, କାଳ ତାରିଖ ହଠାତ୍ ମନେ କରିବା କଷ୍ଟକର ହେଉଛି ।

୧୯୬୬ ମସିହାରେ କୋଠାରୀ କମିଶନରଙ୍କର ଅନୁମୋଦନ ପ୍ରକାଶ ପାଇଲା ପରେ, ପୁରା ରିପୋର୍ଟକୁ ପଢ଼ିବା ପୂର୍ବରୁ ପ୍ରକ୍ଷିପ୍ତ ଭାବରେ ସେଥିରେ ଥିବା ଶିକ୍ଷକଙ୍କର ସ୍ଥିତି ବା Status of Teachers ଅଧ୍ୟାୟ ଆକୁମାରୀ ହିମାଚଳ ଭାରତବର୍ଷର ଶିକ୍ଷକ ସମାଜର ମାନସରେ ସେମାନଙ୍କର ଅଧିକାର, ସେମାନଙ୍କର ଚାକିରି ସର୍ତ୍ତ, ଅବସରକାଳୀନ ସୁଯୋଗ, ସେମାନଙ୍କର ନାଗରିକ ଅଧିକାର, ଦରମାହାର ନିର୍ଦ୍ଧାରଣ ସଂପର୍କରେ ନୂତନ ଅବବୋଧ ସୃଷ୍ଟି ହେଲା । ସେହି ଏକା ସମୟରେ ୟୁନେସ୍କୋଙ୍କର "Teachers status" ବା ଶିକ୍ଷକଙ୍କର ସ୍ଥିତି ଉପରେ ଆନ୍ତର୍ଜାତିକ ସନନ୍ଦ ମଧ୍ୟ ପ୍ରକାଶ ପାଏ - ଭାରତ ସରକାର ସେହି ସନନ୍ଦକୁ ସ୍ୱୀକୃତି ଦେଇ ଆନ୍ତଃସରକାରୀ ସମ୍ମିଳନୀ (Intergovernmental Conference) ରେ ଦସ୍ତଖତ ଦେଇଥାନ୍ତି ।

ଭାରତବର୍ଷର ଶିକ୍ଷକ ସଂଗଠନମାନଙ୍କ ପରି ଓଡ଼ିଶାର ଶିକ୍ଷକ ସଂଗଠନମାନଙ୍କ ମଧ୍ୟରେ ବି ଏହା ଆଲୋକ ଆଣିଦିଏ । ୧୯୬୬ ମସିହାରେ, ହରିପୁରରୋଡ଼ର ପ୍ରାଥମିକ ଶିକ୍ଷକ ଫେଡେରେସନ୍ କାର୍ଯ୍ୟାଳୟରେ (ଅବଶ୍ୟ ତତ୍‌ପୂର୍ବରୁ ସେତେବେଳେ ଓଷ୍ଟାର ଯୁଗ୍ମ ସଂପାଦକ ଥିବା ସ୍ୱର୍ଗତଃ କୈଳାଶଚନ୍ଦ୍ର ମହାପାତ୍ର ଏବଂ ସଂଗଠନ ସଂପାଦକ ଥିବା ଶ୍ରୀ ବିବେକାନନ୍ଦ ଦାଶ, ସରକାରୀ କଲେଜ ଶିକ୍ଷକ ସଂଘର ତତ୍‌କାଳୀନ ସଂପାଦକ ଦିବଂଗତ କ୍ଷେତ୍ରମୋହନ ଶତପଥୀ ଏବଂ ପ୍ରାଥମିକ ଶିକ୍ଷକ ଫେଡେରେସନ୍‌ର ବନ୍ଧୁମାନଙ୍କ ସହିତ ଆଲୋଚନା କରାଯାଇଥାଏ) ସବୁ ଶିକ୍ଷକ ସଂଗଠନମାନଙ୍କର ଏକ ବୈଠକ ଡାକିଲି ଏବଂ ସେ ବୈଠକରେ ଓଷ୍ଟାର ତତ୍‌କାଳୀନ ସଭାପତି ସ୍ୱର୍ଗତଃ ଦିବ୍ୟସିଂହ ପଟ୍ଟନାୟକ, ସ୍ୱର୍ଗତଃ ବନମାଳୀ ବ୍ରହ୍ମଚାରୀ, ସ୍ୱର୍ଗତଃ ଲୋକନାଥ ନନ୍ଦ, ସ୍ୱର୍ଗତଃ ବଳରାମ ସାହୁ ଆଦିଙ୍କୁ ମିଶାଇ ପ୍ରାୟ ଚାଳିଶ ଜଣ ଶିକ୍ଷକ ସଂଗଠକ ଯୋଗ ଦିଅନ୍ତି । ସମସ୍ତେ ଏକାଠିହୋଇ ଏକ ମିଳିତ ସଂଗଠନ ଗଢ଼ିବା ସ୍ଥିର ହେଲା । ନାଁ ରହିଲା "ନିଖିଳ ଉତ୍କଳ ଶିକ୍ଷକ ଫ୍ରଣ୍ଟ" । ଶିକ୍ଷକ ଫେଡେରେସନ୍ ବୋଲି ନାଁ ଦିଆଯିବା ସ୍ଥିର ହୋଇଥିଲେ

ମଧ୍ୟ, 'ଫେଡେରେସନ୍' ଶବ୍ଦ ବ୍ୟବହାର ନକରିବା ପାଇଁ କେତେକ ତାକୁ 'ଫ୍ରଣ୍ଟ' ବୋଲି ଡାକିଲେ । ୰ କ୍ଷେତ୍ରମୋହନ ଶତପଥୀ ତାହାର ସଂପାଦକ ହେଲେ ଏବଂ ମୋତେ ତା'ର ସଂଗଠନ ସଂପାଦକ ଦାୟିତ୍ୱ ଦିଆଗଲା । ପ୍ରତ୍ୟେକ ସଂଗଠନ ମାତ୍ର ୪୫ ଟଙ୍କା ଚାନ୍ଦା ଦେବା ସ୍ଥିର ହେଲା । ସବୁ ଚାନ୍ଦା ସଂଗ୍ରହ ହେଲା ।

ସେତେବେଳେ ଶିକ୍ଷାମନ୍ତ୍ରୀ ଥାଆନ୍ତି ସ୍ୱର୍ଗତ ପବିତ୍ରମୋହନ ପ୍ରଧାନ । ଅକସ୍ମାତ ରାଜ୍ୟ ସରକାରଙ୍କ ପକ୍ଷରୁ "ଶିକ୍ଷକମାନଙ୍କ ପାଇଁ କଣ୍ଡକ୍ଟ ରୁଲ୍" ନାମରେ ଏକ ପ୍ରଶାସନିକ ନିର୍ଦ୍ଦେଶ ଜାରୀ ହେଲା । ସେଥିରେ ଶିକ୍ଷକମାନଙ୍କର ଅଧିକାର ସଂପର୍କରେ କିଛି ନଥିଲା - ମାତ୍ର ଶିକ୍ଷକମାନେ ବିନା ଅନୁମତିରେ ପତ୍ର ପତ୍ରିକାରେ ଲେଖି ପାରିବେ ନାହିଁ, ରେଡ଼ିଓ / ଟିଭିରେ ଭାଷଣ ଦେଇପାରିବେ ନାହିଁ, ସଭା-ସମିତିରେ ଭାଷଣ ଦେବା ଦୂରକଥା, ଯୋଗ ମଧ୍ୟ ଦେଇପାରିବେନାହିଁ ବୋଲି ଫତୁଆ ଜାରି ହେଲା । ତା' ସାଙ୍ଗକୁ, ଧାରଣା, ଧର୍ମଘଟ, ର୍‍ୟାଲି, ଶୋଭାଯାତ୍ରା ଆଦି କରିପାରିବେ ନାହିଁ ବୋଲି ମଧ୍ୟ ନିର୍ଦ୍ଦେଶ ଜାରି ହେଲା । ବ୍ରିଟିଶ ଶାସନ ଅମଳରେ ମଧ୍ୟ ଏପରି ଫାସିଷ୍ଟ କଣ୍ଡକ୍ଟ ରୁଲ ଶିକ୍ଷକମାନଙ୍କ ପାଇଁ ନଥିଲା ।

ଓଷ୍ଟାର ନେତୃତ୍ୱ, ବେସରକାରୀ କଲେଜ ଶିକ୍ଷକ ସଂଘର ନେତୃତ୍ୱ, ସରକାରୀ କଲେଜ ଶିକ୍ଷକ ସଂଘର ନେତୃତ୍ୱ, ନିମ୍ନମାଧ୍ୟମିକ, ପ୍ରାଥମିକ ଶିକ୍ଷକ ସଂଘର ନେତୃତ୍ୱ ଆଦି ଯେଉଁମାନେ 'ଶିକ୍ଷକ ଫ୍ରଣ୍ଟ'ରେ ଏକାଠି ହୋଇଥିଲୁ ସମସ୍ତେ ଏକାଠି ବସିଲୁ ଏବଂ ସେତେବେଳର ସମସ୍ତ ବିଧାୟକମାନଙ୍କ ଘରକୁ ଘର ବୁଲି ଏ ଫାସିଷ୍ଟ ନିୟମ ଉଠାଇ ଦେବାକୁ ବିଧାନସଭାରେ ଆଲୋଚନା କରାଇବାକୁ କହିଲୁ । ସ୍ୱର୍ଗତଃ ବିନାୟକ ଆଚାର୍ଯ୍ୟ ସେତେବେଳର ବିରୋଧୀଦଳର ଦଳପତି ଥାଆନ୍ତି - କମ୍ୟୁନିଷ୍ଟ ପାର୍ଟିର ସ୍ୱର୍ଗତଃ ଗଙ୍ଗାଧର ପାଇକରାୟଙ୍କ ବାସଭବନରେ ଖବରକାଗଜ ସାଂବାଦିକମାନଙ୍କୁ ଡକାଇ, ପ୍ରେସରେ ମଧ୍ୟ ଏ ଖବର ଦେଲୁ । ସେହି ବିଧାୟକମାନଙ୍କର ସହଯୋଗିତାରେ, ବିଧାନସଭାର କ୍ୟାଣ୍ଟିନ୍‌ରେ ୭୫ ଜଣ ବିଧାୟକଙ୍କର ଏକ ବୈଠକ ବସିଲା - ଯେଉଁଥିରେ ସ୍ୱର୍ଗତଃ ବାଙ୍କବିହାରୀ ଦାସ, ସ୍ୱର୍ଗତଃ ପ୍ରସନ୍ନ ଦାସ, ସ୍ୱର୍ଗତଃ ପ୍ରସନ୍ନ ପାଳ, ସ୍ୱର୍ଗତଃ ହରିହର ଦାସ (ଆସିକା), ସ୍ୱର୍ଗତଃ ଲୋକନାଥ ଚୌଧୁରୀ, ସ୍ୱର୍ଗତଃ ବ୍ରଜମୋହନ ମହାନ୍ତି ବିଧାନସଭା ଭିତରେ ବିଭିନ୍ନ ଦଳରେ ଥିବା, ପୂର୍ବତନ ଶିକ୍ଷକମାନେ (ଯାହାଙ୍କର ସଂଖ୍ୟା ପ୍ରାୟ ୩୬ଥିଲା) ସମସ୍ତେ ବସିଲେ । ଶିକ୍ଷକ ଫ୍ରଣ୍ଟ ପକ୍ଷରୁ, ଓଷ୍ଟା ଅଫିସରୁ ସାଇକ୍ଲୋ ଷ୍ଟାଇଲ ହୋଇ, କଣ୍ଡକ୍ଟରୁଲର ଭୟାବହତା ଉପରେ ଆମ ମନ୍ତବ୍ୟ କଥା ଛପା ହୋଇ ସେ ଭୟାବହ କଣ୍ଡକ୍ଟରୁଲଟିର ନକଲ ସମସ୍ତଙ୍କୁ ବଣ୍ଟାଗଲା । ଆମେମାନେ ସ୍ୱର୍ଗତଃ ଡକ୍ଟର

ହରେକୃଷ୍ଣ ମହତାବ, ସ୍ୱର୍ଗତଃ ପଦ୍ମଭୂଷଣ ରାଧାନାଥ ରଥ ଆଦିଙ୍କୁ ଭେଟିଲୁ । ଓଷ୍ଟାର ତତ୍କାଳର ନେତୃତ୍ୱ ସ୍ୱର୍ଗତଃ ରଘୁନାଥ ପାଢ଼ୀ (ସାଧାରଣ ସଂପାଦକ) ବିନାୟକ ଆଚାର୍ଯ୍ୟଙ୍କ ଅନ୍ତରଙ୍ଗ ବନ୍ଧୁଥିଲେ । ବିନାୟକ ଆଚାର୍ଯ୍ୟ ମଧ୍ୟ ଅତୀତରେ ଓଷ୍ଟାର ସାଧାରଣ ସମ୍ପାଦକ ଥିଲେ । ସ୍ୱର୍ଗତଃ କୈଳାସଚନ୍ଦ୍ର ମହାପାତ୍ର, ବିବେକାନନ୍ଦ ଦାଶ ଆଦି, ସ୍ୱର୍ଗତଃ କ୍ଷେତ୍ରମୋହନ ଶତପଥୀ, ବନମାଳୀ ବ୍ରହ୍ମଚାରୀ ଏବଂ ଲେଖକ, ବସ୍ତୁତଃ ଓଷ୍ଟାର ଆର୍ଥିକ ଏବଂ ଅନ୍ୟାନ୍ୟ ସହଯୋଗରେ ଏହା କରିଥିଲୁ । ସେତେବେଳେ, ଏହା ବିରୁଦ୍ଧରେ ରାଲି କରିବା, ସମାବେଶ କରିବା ବା ଧାରଣା ଦେବା ସଂଭବ ନଥିଲା ବା ଆମେ ସାଂଗଠନିକ ଦୃଷ୍ଟିରୁ ସକ୍ଷମ ନଥିଲୁ । ।

କିନ୍ତୁ ଆମର ଏହି ଉଦ୍ୟମ ଆଶ୍ଚର୍ଯ୍ୟ ଜନକ ଭାବରେ ଫଳବତୀ ହେଲା । ବିଧାନସଭାର ଡକ୍ଟର ମହତାବଙ୍କଠାରୁ ବିନାୟକ ଆଚାର୍ଯ୍ୟଙ୍କ ପର୍ଯ୍ୟନ୍ତ, ପ୍ରାୟ ୫୦ ଜଣରୁ ଊର୍ଦ୍ଧ୍ୱ ସଦସ୍ୟ ସମସ୍ୱରରେ ଏହାର ତୀବ୍ର ବିରୋଧ କଲେ । ବିରୋଧ ସମଗ୍ର ବିଧାନସଭାକୁ ହୁଲସ୍ଥୁଲ କରିଦେଲା । ଶିକ୍ଷାମନ୍ତ୍ରୀ ପବିତ୍ରମୋହନ ପ୍ରଧାନ, ବିଧାନସଭାରର ଅପରାହ୍ନ ଅଧିବେଶନରେ, ବାଚସ୍ପତିଙ୍କ ଅନୁମତିକ୍ରମେ ଯୋଡ଼ହସ୍ତରେ ଠିଆହୋଇ ଏ କଣ୍ଠକ୍ରୁଲର ପ୍ରତ୍ୟାହାର ଘୋଷଣା କଲେ । ସ୍ୱର୍ଗତଃ ଗଂଗାଧର ପାଇକରାୟ ଆମମାନଙ୍କୁ ନେଇ, ପ୍ରମୁଖ ଭିଜିଟର ଗ୍ୟାଲେରିର ପାସ୍ ଦେଇ ବସାଇ ଦେଇଥାନ୍ତି ।

'ଶିକ୍ଷକ ଫ୍ରଣ୍ଟ' ତା' ପରେ ଆଉ କୌଣସି କାର୍ଯ୍ୟ କରି ନଥିଲା ।

୧୯୬୯ ମସିହାରେ ମୁଁ ଅଖିଳ ଭାରତୀୟ ବିଶ୍ୱବିଦ୍ୟାଳୟ କଲେଜ ଶିକ୍ଷକ ସଂଘର ସର୍ବଭାରତୀୟ ସଂପାଦକ ରୂପେ ନିର୍ବାଚିତ ହେଲି, ବାରବାଟୀ ଷ୍ଟାଡିୟମରେ ଅନୁଷ୍ଠିତ ସର୍ବଭାରତୀୟ ସମ୍ମିଳନୀରେ । ସେହି ସମ୍ମିଳନୀ ସଂଗଠନ କରିବା ପାଇଁ ଗଠିତ ଅଭ୍ୟର୍ଥନା କମିଟିର ପ୍ରଧାନ କାରପଟଦାରଙ୍କ ମଧ୍ୟରେ ଥାଆନ୍ତି ସ୍ୱର୍ଗତଃ କୈଳାସ ମହାପାତ୍ର ଏବଂ ବିବେକାନନ୍ଦ ଦାଶ, ସ୍ୱର୍ଗତଃ ରବି ଜେନା । ଆମର ସଂପର୍କ ଆହୁରି ଘନୀଭୂତ ହେଲା । ସ୍ୱର୍ଗତଃ ବିରେନ୍ ଦାସ ତତ୍କାଳର ଅମଲା ମହାସଂଘର ସାଧାରଣ ସଂପାଦକ ଥିଲେ ଏବଂ କୈଳାସ ବାବୁଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା ।

ଓଷ୍ଟା ଅଫିସ୍‌ରେ ଏକଦା ସାନ୍ଧ୍ୟ ଆଡ୍‌ଡା ମାରିବା ବୈଠକରେ, ଶିକ୍ଷକମାନଙ୍କର ଦରମା ହାର ସମୀକରଣ କରିବା, ଏକ ଚାକିରି ସର୍ତ୍ତ ପ୍ରସ୍ତୁତ କରିବା, ଅବସର କାଳୀନ ସୁବିଧା ସୁଯୋଗ ପ୍ରଦାନ ପାଇଁ ଦାବି କରିବାକୁ ବୀରେନ୍‌ବାବୁ, କୈଳାସ ବାବୁ, ବିବେକାନନ୍ଦ ବାବୁ, ରବି ଜେନା ଓଷ୍ଟାର ତତ୍କାଳୀନ ନେତୃବୃନ୍ଦଙ୍କ ସହ ଗପ ଛଳରେ

ସ୍ଥିର ହେଲା ଯେ, ୧୯୬୯ ମସିହା ଜୁଲାଇ ୨୭ ତାରିଖରେ କଟକ ଖ୍ରୀଷ୍ଟ କଲେଜଠାରେ ଓଷ୍ଟା, ଅଲୋଷ୍ଟା ଓ ବେସରକାରୀ କଲେଜ ଶିକ୍ଷକ ସଂଘ, ପ୍ରାଥମିକ ଶିକ୍ଷକ ଫେଡେରେସନ୍‌ମାନଙ୍କର ସମସ୍ତ କାର୍ଯ୍ୟନିର୍ବାହିକା ସମିତି ସଦସ୍ୟମାନଙ୍କର ମିଳିତ ବୈଠକ ବସିବ ।

ଜୁଲାଇ ୨୭ ତାରିଖରେ ଖ୍ରୀଷ୍ଟ କଲେଜରେ ସେ ବୈଠକ ବସିଲା ଏବଂ ପ୍ରାଥମିକ ଶିକ୍ଷକ ଫେଡେରେସନ୍‌ର ସଭାପତି ସ୍ୱର୍ଗତଃ ଲୋକନାଥ ନନ୍ଦ ଏଥିରେ ସଭାପତିତ୍ୱ କରିଥିଲେ । ସୁଦୀର୍ଘ ଆଲୋଚନାରେ ସ୍ଥିର ହେଲା ଯେ, (୧) ସରକାରୀ-ବେସରକାରୀ ଶିକ୍ଷକମାନଙ୍କର ଦରମା ହାର ସମୀକରଣ (୨) ଏକ କୋଡିଫାଏଡ୍ ଚାକିରି ସର୍ତ୍ତ (୩) ଅବସର କାଳୀନ ସୁଯୋଗ ଏବଂ (୪) ଓଡ଼ିଶାର ଶିକ୍ଷାର ନବନ୍ୟାସ ସଂଯୋଜନା ପାଇଁ କୋଠାରୀ କମିଶନଙ୍କ ଅନୁମୋଦନକୁ ଓଡ଼ିଶାରେ କାର୍ଯ୍ୟକାରୀ କରିବା ଏହି ଚାରୋଟି ଦାବି ଉପରେ ଦାବିପତ୍ର ଲେଖାଯାଇ, ଶିକ୍ଷା ମନ୍ତ୍ରୀ ଓ ସରକାରଙ୍କୁ ଦିଆଯିବ । ଦାବି ପୂରଣ ପାଇଁ ଅଗଷ୍ଟ ୧୬ ତାରିଖ ଦିନ ଏକ ରାଲିରେ ଯାଇ ଶିକ୍ଷାମନ୍ତ୍ରୀଙ୍କ ବାସଭବନ ସମ୍ମୁଖରେ ସେହି ଦିନଠାରୁ ଦାବି ପୂରଣ ନହେଲା ପର୍ଯ୍ୟନ୍ତ ଧାରଣା ଦିଆଯିବ । ପ୍ରାଥମିକ ଶିକ୍ଷକ ଫେଡେରେସନ୍‌ର କେତେକ ସାଥି, ଏହି ଆନ୍ଦୋଳନରେ ଭାଗ ନେବେ କି ନାହିଁ ପରେ ଜଣାଇବେ ବୋଲି କହି ଅବ୍ୟାହତି ନେଲେ ।

ଏଥିପାଇଁ, ଏକ 'ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ସମିତି' ବା "Joint Council of action of teachers" ଗଠନ କରାଗଲା ଓଷ୍ଟା, ଅଲୋଷ୍ଟା; ଅଙ୍ଗୋଟା ଶିକ୍ଷକସଂଘମାନଙ୍କୁ ନେଇ । କାରଣ ପ୍ରାଥମିକ ଶିକ୍ଷକ ଫେଡ଼େରେସନ୍ ପରେ ଜଣାଇବେ ବୋଲି କହି ଫେରିଯାଇ ଆଉ କିଛି କହିଲେ ନାହିଁ ; ଯଦିଓ ମୂଳ ବୈଠକରେ ତାଙ୍କର ସମସ୍ତ କାର୍ଯ୍ୟନିର୍ବାହୀ ସମିତି ସଦସ୍ୟ ଥିଲେ ଏବଂ ସ୍ୱର୍ଗତଃ ଲୋକନାଥ ନନ୍ଦ ସଭାପତିତ୍ୱ କରୁଥିଲେ । ବନମାଳୀ ବ୍ରହ୍ମଚାରୀ, କୈଳାସଚନ୍ଦ୍ର ମହାପାତ୍ର ଏବଂ ଅବନୀ ବରାଳ ତାହାର ମିଳିତ ଆବାହକ ମଣ୍ଡଳୀ ରହିଲେ ଏବଂ ଅବନୀ ବରାଳ ଆବାହକ ମଣ୍ଡଳୀର ଆବାହକ ମନୋନୀତ ହେଲେ ।

ଏହି ମିଳିତ କ୍ରିୟାନୁଷ୍ଠାନ କମିଟିର ଠିକଣା ରହିଲା ଓଷ୍ଟା ଅଫିସ । ଦାବିପତ୍ର ଓଷ୍ଟା ପ୍ରେସରେ ହଜାର ହଜାର ସଂଖ୍ୟାରେ ଛପା ହେଲା - ଇଂରାଜୀ ଓ ଓଡ଼ିଆରେ । ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ସ୍ୱର୍ଗୀୟ ବନମାଳୀ ପଟ୍ଟନାୟକଙ୍କୁ ପ୍ରଦାନ କରାଗଲା ଏବଂ ମୁଖ୍ୟମନ୍ତ୍ରୀଙ୍କୁ ମଧ୍ୟ ପ୍ରଦାନ କରାଗଲା ।

ସେତେବେଳେ "ଓଷ୍ଟା" କାର୍ଯ୍ୟାଳୟ କହିଲେ, ବର୍ତ୍ତମାନ ଓଷ୍ଟାର ପ୍ରକାଣ୍ଡ ପ୍ରାସାଦ ନଥିଲା । ସାଥି କୈଳାସ ମହାପାତ୍ର, ଯେଉଁ ଦୁଇ ବଖରାର ଘରଟିରେ ରୋଗ ଶଯ୍ୟାରେ ପଡ଼ି ପଡ଼ି ଦିବଙ୍ଗତ ହେଲେ ଏବେ ଯେଉଁଠାରେ ପାଠାଗାର ହୋଇଛି, ତାହା ହିଁ ଓଷ୍ଟା କାର୍ଯ୍ୟାଳୟ ଥିଲା । ତାହାହିଁ, ଶିକ୍ଷକ ମହାସଂଘ ତଥା ଓଡ଼ିଶାର ଶିକ୍ଷକ ଆନ୍ଦୋଳନ /ସଂଗ୍ରାମମାନଙ୍କର ଏନ୍ତୁଡ଼ିଶାଳ । ପ୍ରେସଟି ମସ୍‌ଜିଦ୍ ଗଳିରେ ଥିଲା । ଆନ୍ଦୋଳନର ପ୍ରସ୍ତୁତି ପାଇଁ ପୁଣି ପରବର୍ତ୍ତୀ କାଳରେ ଆନ୍ଦୋଳନର ଘନଘଟା ସମୟରେ, କେତେ ଯେ ରାତି ମୋଟା ମୋଟା ଦୁଇଟା ଗୋଲ ତକିଆ କଡ଼ରେ ଦେଇ ଆଲୋଚନା କରୁ କରୁ ରାତି ପାହି ଯାଇଛି ତା'ର ଇୟତ୍ତା ନାହିଁ ।

ଅଗଷ୍ଟ ୧୬ ତାରିଖରେ, ରବୀନ୍ଦ୍ରମଣ୍ଡପ ଛକରୁ ଅତିବେଶୀରେ ଦୁଇ ଅଢ଼େଇ ହଜାର ସରିକି ଶିକ୍ଷକ, ଶିକ୍ଷାକର୍ମୀ, ଅଧ୍ୟାପକଙ୍କର ରାଲି ବାହାରିଲା । କଲିକତାରୁ ବିଶ୍ୱବିଦ୍ୟାଳୟ, କଲେଜ ଶିକ୍ଷକ ସଂଘର ମୋର ଯୁଗ୍ମ ସଂପାଦକ ଅଧ୍ୟାପକ ଅନୀଲ ବଶାକ୍ (ପରବର୍ତ୍ତୀ କାଳରେ ପଶ୍ଚିମବଙ୍ଗ ଉଚ୍ଚ ଶିକ୍ଷା ପରିଷଦର ସଭାପତି) ଆସିଥାନ୍ତି । ଆଉ କେଇଜଣ ବନ୍ଧୁ ଆସିଥାନ୍ତି । ରାଲି ଆରମ୍ଭରେ ସ୍ଲୋଗାନ ଦେବା ଆରମ୍ଭ ହେଲା । ସେ ଯେପରି "ଇନ୍ କିଲାବ" କହିଛନ୍ତି -କେହି ଶିକ୍ଷକ "ଜିନ୍ଦାବାଦ" କହିଲେ ନାହିଁ । ପଚାରିବାରୁ ମୁଁ କହିଲି 'ଶିକ୍ଷକ ଏକତା ଜିନ୍ଦାବାଦ' କୁହନ୍ତୁ । ଏମାନେ "ଇନ୍ କିଲାବ ଜିନ୍ଦାବାଦ"ରେ ଅଭ୍ୟସ୍ତ ନୁହଁନ୍ତି ।

ଏ କଥା ଲେଖୁଛି ଏଇଥିପାଇଁ ଯେ, ସେ ସମୟର ସାଥିମାନଙ୍କର ମାନସିକ ସ୍ଥିତି ନ ଜାଣିଲେ ଆମେ କେଉଁଠି ପହଞ୍ଚିଛେ ଏବଂ କ'ଣ ହରାଇଛେ ତାହା ଜାଣିବା ସମ୍ଭବ ହେବ ନାହିଁ! ମି.ଇ. ସ୍କୁଲ /ହାଇସ୍କୁଲ/କଲେଜ ଶିକ୍ଷକଙ୍କର ଦରମାହାର ତ କମ୍ ଥିଲା ! ମାତ୍ର ଯଥାକ୍ରମେ ୫, ୧୦ ଓ ୧୫ ଟଙ୍କା ସରକାରୀ ଶିକ୍ଷକ ଅଧ୍ୟାପକଙ୍କ ଠାରୁ କମ୍ ଥିଲା । ଚାକିରି ସର୍ତ୍ତ ନଥିବାରୁ, ମିଳୁଥିବା ଅନୁଦାନରୁ ଜଣେ ଜଣେ ମି.ଇ. ସ୍କୁଲ ଶିକ୍ଷକ ୬୦ ଟଙ୍କା, ହାଇସ୍କୁଲ ଶିକ୍ଷକ ୧୦୦/୧୨୦ ଟଙ୍କା, କଲେଜଶିକ୍ଷକ ୧୫୦/ ୧୮୦ ଟଙ୍କା ଦରମା ପାଉଥିଲେ । ତାହା ପୁଣି ଷାଣ୍ମାସିକ, ତ୍ରୈମାସିକ ମିଳୁଥିଲା । ପ୍ରତିବାଦ କଲେ ରାତି ପାହିଲା ବେଳକୁ ଶିକ୍ଷକ/ ଅଧ୍ୟାପକ/କର୍ମଚାରୀ ମାନଙ୍କର ଚାକିରି ବିନା ନୋଟିସ୍‌ରେ ଚାଲିଯାଉଥିଲା । ମ୍ୟାନେଜିଙ୍ଗ କମିଟି, ଗଭର୍ଣ୍ଣିଙ୍ଗ ବଡି ଦରମା ଦେଇ ପାରୁ ନଥିଲେ - ଅନେକ ଚଳୁ କରି ଦେଉଥିଲେ ।

ରାଲି /ଶୋଭାଯାତ୍ରା କିନ୍ତୁ ସିଧା ସଚିବାଳୟ ଆଗରେ, ସିଧା ରାସ୍ତାରେଏଜିଛକ ଦେଇ ରାଜଭବନ ଆଡ଼କୁ ଯିବାବେଳେ ଏଜି ଛକରୁ ତୃତୀୟ

କ୍ୱାର୍ଟରଟିରେ ସହଜ ପହଞ୍ଚିଗଲା । ଏବେ ପରି ସବୁଆଡ଼ ନିବୁଜ କରି ଧଡ଼ାପକା ଗଣତନ୍ତ୍ର ନଥିଲା । ସଚିବାଳୟ ଆଗରେ ସିଧା ଗେଟଦ୍ୱାର ମୁହଁରେ ପିକେଟିଙ୍ଗ କରିପାରୁଥିଲୁ । ବିଧାନସଭା ଗେଟ୍ ପାଖରେ ପିକେଟିଙ୍ଗ କରିପାରୁଥିଲୁ । ମାଷ୍ଟରକ୍ୟାଣ୍ଟିନ୍ ଛକରେ ରହି "ବିଧାନସଭା ସମ୍ମୁଖରେ ଧାରଣା" କରିବାକୁ ପଡୁ ନଥିଲା । ଧାରଣା ଚାଲିଲା - କେତେକ ସାଥି ଧାରଣା ସ୍ଥଳରେ ଆମରଣ ଅନଶନ କଲେ- ସେପ୍ଟେମ୍ବର ୬ ତାରିଖ ରାତିରେ, ଧାରଣାରତ ଶିକ୍ଷକମାନଙ୍କୁ ଗୁଣ୍ଡା ଲଗାଇ ରକ୍ତାକ୍ତ କରି ଧାରଣା କେନ୍ଦ୍ରରେ ମାଡ଼ ମରାଗଲା । ଶିକ୍ଷକମାନଙ୍କର ଯାହାର ଯାହା ଲୁଗାପଟା/ ବହିପତ୍ର ଥିଲା, ଧାରଣାରେ ଟେଣ୍ଟ ପାଇଁ ବ୍ୟବହୃତ ହୋଇଥିବା ଟାର୍‌ପୁଲିନ୍, ପେଟ୍ରୋମାକ୍ସ ଲାଇଟ୍ ଇତ୍ୟାଦି ରିକ୍ସାରେ ଲଦି ନିୟୋଜିତ ଗୁଣ୍ଡାମାନେ ଏ.ଜି. ଛକ ବାଟଦେଇ ନେଇଗଲେ । ପୋଲିସ ଆସିଲା ନାହିଁ । ତା' ପରଦିନ ସାଧାରଣ ସଭାରେ, ବିଜୁ ପଟ୍ଟନାୟକ (ତତ୍‌କାଳର କଂଗ୍ରେସ ସଭାପତି), ଚିନ୍ତାମଣି ପାଣିଗ୍ରାହୀ ଓ ରବି ରାୟ ଆଦି 'କାର୍ଯ୍ୟବନ୍ଦ' ବା ଧର୍ମଘଟ ଆନ୍ଦୋଳନ କରିବାକୁ ଡାକରାଦେଲେ) ଓଡ଼ିଶା ସାରା ପାନିଆରେ କୁଣ୍ଡାଇବା ପରି ବୁଲିବାକୁ ପଡ଼ିଲା । ପଶ୍ଚିମ ଓଡ଼ିଶାରେ ବରଗଡ଼ କଲେଜ, ଦକ୍ଷିଣରେ ଖଲ୍ଲିକୋଟ କଲେଜ, ଉତ୍ତରରେ ଭଦ୍ରକ କଲେଜ ଓ ଖୋର୍ଦ୍ଧା କଲେଜମାନେ ଘାଟି ମୁଣ୍ଡିଆଳ ହୋଇ ଅଞ୍ଚଳ ଜଗିଲେ । ଓଷ୍ଟା ନିଜର ସାଧ୍ୟମତେ ଗାଡ଼ି, ତେଲ ଦେଲେ, ବନମାଳୀ ବ୍ରହ୍ମଚାରୀ ମଧ୍ୟ ଅକୁଣ୍ଠ ଚିତ୍ତରେ ପଇସା ଦେଲେ । ଘରିଆଡୁ ଘନ୍ଦାଭେଦା ଆସିଲା ।

ଓଷ୍ଟା ଅଫିସରୁ ଅସ୍ଥାୟୀ କାର୍ଯ୍ୟାଳୟ ବିନାୟକ ଆଚାର୍ଯ୍ୟଙ୍କ ସରକାରୀ ବାସଭବନକୁ (ଏଜି ଛକର ପ୍ରଥମ କ୍ୱାର୍ଟରକୁ) ଉଠି ଆସିଲା । ସେହିଠାରୁ ନିୟନ୍ତ୍ରଣ ଚାଲିଲା । ପରେପରେ ଶିକ୍ଷକଙ୍କ ପିକେଟିଙ୍ଗ୍ ଚାଲିଲା । ବହୁ ସାଥି ଜେଲ ଗଲେ । ଲେଖକ ମଧ୍ୟ ୧୫ ଦିନ ଜେଲ ଗଲେ । ଅଗଷ୍ଟ ୧୬, ଅକ୍ଟୋବର ୧୫ ତାରିଖ ୧୯୬୯ ମସିହା ଦିନ, ରାଜ୍ୟ ସରକାର "ଓଡିଶା ଶିକ୍ଷା ଆଇନ" ଗୃହୀତ କରାଇ ଚାକିରୀସର୍ତ୍ତ ପାଇଁ ଡ. ପରିଜାଙ୍କ ଅଧ୍ୟକ୍ଷତାରେ ପରିଜା କମିଟି ବସାଇ ଆମ୍ଭମାନଙ୍କୁ ଜେଲରୁ ମୁକୁଳାଇବା ପରେ ଆନ୍ଦୋଳନର ସମାପ୍ତି ଘଟିଲା ।

ଆନ୍ଦୋଳନ ଭିତରୁ ହାତଖଣ୍ଡିଆ ଜଗନ୍ନାଥ ପରି ଶିକ୍ଷା ଆଇନ ତ' ମିଳିଲା, ଯାହାର କୌଣସି ନିୟମ ପ୍ରଣୀତ ହୋଇ ନଥିଲା, ମାତ୍ର ସମୁଦ୍ର ମନ୍ଥନରୁ ଲକ୍ଷ୍ମୀଠାରୁ ଆରମ୍ଭ କରି ଐରାବତ ମିଳିଲା ପରି ଶିକ୍ଷକ ସମାଜ ପାଇଲେ ଅଖଣ୍ଡ ଐକ୍ୟ, ଭାଇଚାରା, ସୌଭ୍ରାତୃତ୍ୱ ! ଅଧ୍ୟାପକ, ଶିକ୍ଷକ ଭେଦଭାବ ରହିଲା ନାହିଁ । ଏହି ଏକତାକୁ ବଞ୍ଚାଇବା

ପାଇଁ ଷ୍ଟୁଆର୍ଟ ସ୍କୁଲଠାରେ ଏକ ମିଳିତ କ୍ରିୟାନୁଷ୍ଠାନ କମିଟି ଗଢ଼ାହେଲା ଏବଂ ତାହାର ନାମ ଶିକ୍ଷକ ସମନ୍ୱୟ ସମିତି ରହିଲା ଏବଂ ୧୯୭୧ରେ ତାହା ୮ଟି ଛୋଟବଡ଼ ଶିକ୍ଷକ ସଂଗଠନକୁ ନେଇ ନିଖିଳ ଉତ୍କଳ ଶିକ୍ଷକ ମହାସଂଘରେ ରୂପାୟିତ ହେଲା, ଭୁବନେଶ୍ୱର ଭଂଜକଳାମଣ୍ଡପଠାରେ ଅନୁଷ୍ଠିତ ଏକ ସମ୍ମିଳନୀରେ ।

୧୯୭୨ରେ ଦରମାହାର ସମୀକରଣ ବ୍ୟାପକ ଆନ୍ଦୋଳନ ଫଳରେ ଘୋଷିତ ହେଲା- ମାତ୍ର ଚାକିରୀ ସର୍ତ୍ତରେ ପ୍ରତାରଣା କରାଗଲା । ୧୯୭୪ର ବ୍ୟାପକ ରକ୍ତକ୍ଷୟୀ ଆନ୍ଦୋଳନ, ଲାଠିଚାର୍ଜ, ଲୁହବୁହା ବାଷ୍ପ ମାଡ଼ଖାଇ ଖାଇ ବିଧାନସଭାରେ ଚାକିରୀ ସର୍ତ୍ତ ହେଲା । ଦରମା ସମୀକରଣ କାର୍ଯ୍ୟକାରୀ ହେଲା ଏବଂ ସେହି ବର୍ଷ ପ୍ରତ୍ୟକ୍ଷ ଦରମା ଦାନ ପ୍ରଥା ଚାଲୁହେଲା ।

ଏବେ ବି ପୁଲକ ଜାଗୁଛି, ଯେଉଁ ଦିନ ଭୁବନେଶ୍ୱର ରାଜରାସ୍ତାରେ ଏକ ବିଶାଳ ପଟୁଆରରେ ପ୍ରଥମେ ସାଥି ଅନନ୍ତ କର ସ୍ଲୋଗାନ ଦେଲେ, "ଲଢ଼େଇ ଲଢ଼େଇ ଲଢ଼େଇ ଚାହୁଁ - ଲଢ଼େଇ କରି ବଞ୍ଚିବା ଚାହୁଁ", "ସ୍କୁଲ କଲେଜରେ ନିଆଁ ଜଳିବ ଗାଁରେ ଗାଁରେ ନିଆଁ ଜଳିବ" ।

ସେଦିନ 'ସମାଜ'ରେ ହେଡିଙ୍ଗ୍ ହୋଇ ବାହାରିଲା, 'ଶିକ୍ଷକମାନେ ତୀବ୍ର ବାମପନ୍ଥୀ ସ୍ଲୋଗାନ ଦେଲେଣି'-

ଆମେ ଗର୍ବରେ କହୁ, ଓଡ଼ିଶାର ସମସ୍ତ ରାଜନୈତିକ ଦଳଙ୍କୁ ଏକାଠି କଲେ, ଶିକ୍ଷକ ମହାସଂଘର ସାଥିମାନଙ୍କର ବକ୍ତୃତା ଆଗରେ ସମସ୍ତେ ହାର ମାନିବେ ।

ଶିକ୍ଷକମାନଙ୍କର ଉତ୍ତର ଦାୟିତ୍ୱ, ରାଜ୍ୟବ୍ୟାପୀ ୧୦+୨+୩ ଶିକ୍ଷାନୀତି ଉପରେ ବ୍ୟାପକ ଆନ୍ଦୋଳନାତ୍ମକ କର୍ମଶାଳା, ସାମ୍ପ୍ରଦାୟିକତା ବିରୁଦ୍ଧରେ ଶିକ୍ଷକ କର୍ମଶାଳା, ଶିକ୍ଷା ଆଇନରେ ତ୍ରୁଟି ଉପରେ ଆଇନ୍‌ଜୀବିମାନଙ୍କର କର୍ମଶାଳା ଏବଂ ସୁପ୍ରସିଦ୍ଧ ଆଇନ୍‌ଜୀବି ସ୍ୱର୍ଗତଃ ବାରିଷ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ, ସ୍ୱର୍ଗତଃ ପ୍ରବୀର ପାଲିତ, ସ୍ୱର୍ଗତଃ ରମାକାନ୍ତ ମହାପାତ୍ର, ନ୍ୟାୟମୂର୍ତ୍ତି ଶରତ ଚନ୍ଦ୍ର ମହାପାତ୍ର ଆଦି ଅନେକ ପ୍ରବୀଣ ଏବଂ ତରୁଣଙ୍କୁ ଶିକ୍ଷା /ଶିକ୍ଷା ଆଇନ୍ ସଂପର୍କରେ ସଚେତନ କରିବା ପାଇଁ ଉଦ୍ୟମ ଓ ଶିକ୍ଷକ ମହାସଂଘ ହିଁ କରାଇଛି ।

ସ୍ୱର୍ଗତଃ ସାଥି ରାଜକିଶୋର ପଟ୍ଟନାୟକଙ୍କ ପରି ସାଥିଙ୍କର ନେତୃତ୍ୱରେ ଶିକ୍ଷକ ଆନ୍ଦୋଳନ ଓଡ଼ିଶାର ଶିକ୍ଷା ଆନ୍ଦୋଳନ, ଗଣ ଆନ୍ଦୋଳନରେ ରୂପାନ୍ତରିତ ହୋଇଛି ।

ଶିକ୍ଷକ ସାଥିମାନଙ୍କ ଭିତରେ କେବଳ ନେତା ନୁହଁନ୍ତି, ଅଭିନେତା, ସାହିତ୍ୟକ, କବି, ବିଶିଷ୍ଟ ଶିକ୍ଷାବିତ୍ ଉଣା ନାହାଁନ୍ତି କି ନଥିଲେ । ସାଥି ଶୈଳେଶ ପଟ୍ଟନାୟକଙ୍କ ପରି ନାଟ୍ୟକାର, ସାଥି ମଙ୍ଗୁଲୁ ଚରଣ ବିଶ୍ୱାଳଙ୍କ ପରି ସାହିତ୍ୟିକ, ସାଥି ଲକ୍ଷ୍ମୀଧରଙ୍କ ପରି ଅଭିନେତା, ସାଥୀ ଶୋଭା ଷଡଙ୍ଗୀଙ୍କ ପରି ବହୁ ଗାୟକ ଗାୟିକାଙ୍କୁ ଓଷ୍ଟା ତଥା ମହାସଂଘ ନିଜ ଗର୍ଭରେ ଧରିଛି । ସବୁ ତାଲିକା ଦେଲେ ହୁଏତ ସବୁ ସାହିତ୍ୟିକମାନେ ଶିକ୍ଷିକ ଅଧ୍ୟାପକମାନଙ୍କ ତାଲିକା ଦେବାକୁ ହେବ ।

ଭାରତବର୍ଷର ବିଭିନ୍ନ ପ୍ରଦେଶର ମାଧ୍ୟମିକ ଶିକ୍ଷକ ସଂଗଠନମାନଙ୍କ ସହିତ, ବିଶ୍ୱ ଶିକ୍ଷକ ମହାସଂଘ 'ଫିଜେ' ସହିତ ଏ.ଆଇ.ଏଫ୍.ଇ.ଏ ସହିତ ଶିକ୍ଷକ ସଂଘ ନିଜକୁ ସହବନ୍ଧିତ କରିଛି । ଓଡ଼ିଶାରେ ସଂଗଠିତ ହୋଇଥିବା A.I.F.E.A. ସମ୍ମିଳନୀ ଏ ପର୍ଯ୍ୟନ୍ତ ଭାରତବର୍ଷର ବହୁ ପ୍ରବୀଣ ନେତା ଭୁଲିନାହାଁନ୍ତି । ସାଥି ବିବେକାନନ୍ଦ ଦାସ, A.I.F.E.A. ବା ଅଖିଳ ଭାରତୀୟ ମାଧ୍ୟମିକ ଶିକ୍ଷକ ମହାସଂଘର ସାଧାରଣ ସଂପାଦକ ହୋଇଛନ୍ତି - ଏବେ A.I.F.E.A. ର ସଂପାଦକ ରହିଛନ୍ତି ।

ଓଷ୍ଟାର ତଥା ଶିକ୍ଷକ ମହାସଂଘର ଏବେର ବୈଭବ, ଗୌରବ ପ୍ରତିପତ୍ତି ଯେ ସମସ୍ତ ଶିକ୍ଷକ ସଂଗଠନମାନଙ୍କର ସଂହତି, ସୌଭ୍ରାତୃତ୍ୱ, ଏକତା ଏବଂ ସଂଗ୍ରାମ ଭିତରୁ, ସାଗର ମନ୍ଥନରୁ ଅମୃତ ବାହାରିଲା ଭଳି ମିଳିଛି, ତାହା ଏହି ପିଢ଼ିର ଶିକ୍ଷକ ସାଥିମାନେ ଭୁଲିଗଲେ, ତାହାକୁ ଆଗକୁ ଆଗକୁ ନ ନେଲେ କେବଳ ବିଭ୍ରାନ୍ତିରେ ପଡ଼ିବେ ନାହିଁ - ସବୁ ହରାଇବାର ପଥ ଖୋଲିଯିବ, ଏକଥା ପୁରୁଣା ସାଥିମାନେ ନୂଆ ସାଥିମାନଙ୍କୁ ବୁଝାଇବାର ବେଳ ଆସିଛି ।

ଏବେର ସାଥିମାନଙ୍କୁ, ଆବଶ୍ୟକ ପଡ଼ିଲେ ବ୍ଲକରୁ ବ୍ଲକ, ଶିକ୍ଷାଜିଲ୍ଲା ବା ଜିଲ୍ଲାରୁ ଜିଲ୍ଲା ବୁଲି ବୁଲି ଏକାଠି କରି ବୁଝାଇବାକୁ ପଡ଼ିବ, ଏ ଉଦାରୀକରଣ ଅର୍ଥନୀତି କ'ଣ ଏବଂ କାହିଁକି ଏଥିରେ ଶିକ୍ଷା / ଶିକ୍ଷକ ପ୍ରତି ଏପରି ଅବିଚାର କରାଯାଉଛି ଏବଂ ପ୍ରତ୍ୟକ୍ଷ ଦରମା, ଚାକିରି ସର୍ତ୍ତ, ପେନ୍‌ସନ୍ ଆଦି ଯାହା ସଂଗ୍ରାମ ଭିତରୁ ମିଳିଥିଲା ତାହା ଚାଲି ଯାଉଛି କାହିଁକି ? ଯେତେ କହିଲେ ମଧ୍ୟ ଆମେ ଜନଗଣଙ୍କ ପାଖରେ ପହଞ୍ଚିପାରୁନାହୁଁ କାହିଁକି ? ଜନଗଣଙ୍କୁ ଶିକ୍ଷାର, ଶିକ୍ଷାନୁଷ୍ଠାନର ସମସ୍ୟା ବୁଝାଇ ପାରୁନୁ କାହିଁକି ? ଜନସାଧାରଣଙ୍କୁ କ'ଣ ଆମେ ସାମ୍ନା କରିବାକୁ ଡରୁଛୁ ?

ଅତୀତରେ ହଜାର ହଜାର ଗାଁରେ ସଞ୍ଜବେଳେ, ଅପରାହ୍ନରେ ସଭା କରାଯାଇଛି ଏବଂ ଲୋକେ ସେସବୁ ସଭା ଆୟୋଜନ କରିଛନ୍ତି । ପେଟ୍ରୋମାକ୍ସ ଲାଇଟ୍, ବିଜୁଳି,

ଚୌକି, ଟେବୁଲ, ଦରି, ମାଇକ୍ ସବୁ ଯୋଗାଡ଼ିଛନ୍ତି । ଆଗ୍ରହରେ ଶିକ୍ଷାର ସମସ୍ୟା କିପରି କେବଳ ଶିକ୍ଷକର ଜୀବନ ଜୀବିକା ସହିତ ସଂପୃକ୍ତ ନୁହେଁ ଏବଂ ଶିକ୍ଷାନୁଷ୍ଠାନ ସହିତ ସଂପୃକ୍ତ ସର୍ବୋପରି ତାଙ୍କ ଭବିଷ୍ୟତ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ତାହା ଲୋକେ ଶୁଣୁଥିଲେ - ପରାମର୍ଶ ଦେଉଥିଲେ । ଆନ୍ଦୋଳନବେଳେ ସେହି ଜନଗଣହିଁ ହେଉଥିଲେ ଶିକ୍ଷକମାନଙ୍କର ପ୍ରତିରକ୍ଷାର କବଚ । ସମସ୍ତ ରାଜନୈତିକ ହଟଚମଟ ସତ୍ତ୍ୱେ ରାଜନୈତିକ ଦଳମାନେ ଜନଗଣଙ୍କୁ ଶିକ୍ଷକମାନଙ୍କ ବିରୁଦ୍ଧରେ, ଆନ୍ଦୋଳନ ବିରୁଦ୍ଧରେ ଶିକ୍ଷକ ମହାସଂଘ ବିରୁଦ୍ଧରେ ନିୟୋଜିତ କରିପାରୁନଥିଲେ । ବିପରୀତ ପକ୍ଷରେ ଭାଙ୍ଗୁଣିଆମାନଙ୍କର ସମସ୍ତ ଅପଉଦ୍ୟମ ଶତଚେଷ୍ଟା ସତ୍ତ୍ୱେ ବ୍ୟର୍ଥ ହେଉଥିଲା ।”

ଅବନୀ ବରାଳ ଓ ତାଙ୍କର ସହଯୋଦ୍ଧାମାନଙ୍କର ସମ୍ମିଳିତ ପ୍ରଚେଷ୍ଟା ଦ୍ୱାରା ଜନ୍ମଲାଭ କରିଥିବା ଘରୋଇ ସ୍କୁଲ ଓ କଲେଜ ଶିକ୍ଷକ ମାନଙ୍କର ପ୍ରଥମ ଐକ୍ୟବଦ୍ଧ ଗଣସଂଗଠନ ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ଓଡିଶାର ଶିକ୍ଷା ଜଗତରେ ସୃଷ୍ଟି କରିଥିଲା ଏକ କଂପନ । ଦୀର୍ଘ ବର୍ଷଧରି ସୁପ୍ତ ଓ ନିଷ୍କ୍ରୀୟ ଅବସ୍ଥାରେ ଭାଗ୍ୟକୁ ଆଦରି ପଡିରହିଥିବା ଶିକ୍ଷକ ସମାଜ ହଠାତ୍ ଯେପରି ଜାଗ୍ରତ ହୋଇଉଠିଲେ । ମହାସଂଘର କର୍ମକର୍ତ୍ତାମାନେ ରାଜ୍ୟବ୍ୟାପୀ ସଭା ଓ ସମାବେଶ କରି ଏକତାର ମନ୍ତ୍ର ପ୍ରଚାର କରିବାକୁ ଲାଗିଲେ । କେବଳ ହାରିଗୁହାରୀ କରି ଆବେଦନ ନିବେଦନ ପତ୍ର ଦେଲେ ଦାବି ହାସଲ ହୁଏନାହିଁ, ଏଥିପାଇଁ ରାସ୍ତା ଉପରକୁ ଆସି ଲଢ଼େଇ କରିବାକୁ ପଡିବ - ଏହି ଦୁର୍ବାର ଆବାଜ୍ ତୋଳି ହଜାର ହଜାର ଶିକ୍ଷକ, ଶିକ୍ଷିକା ଓ ଶିକ୍ଷାକର୍ମୀ ବର୍ଷ ବର୍ଷ ଧରି ଚଳାଇରଖିଲେ ବିକ୍ଷୋଭ, ଆନ୍ଦୋଳନ ଓ ସତ୍ୟାଗ୍ରହ । ବିଧାନ ସଭା ଆଗରେ ପୁଲିସ କର୍ଡନକୁ ଭାଙ୍ଗି ଅଗଣିତ ସତ୍ୟାଗ୍ରହୀ ବାରମ୍ବାର କାରାବରଣ କଲେ, ଅନେକ ଆହତ ହୋଇ ଡାକ୍ତରଖାନାରେ ଭର୍ତ୍ତି ହେଲେ, ଦମନ ମୂଳକ କାର୍ଯ୍ୟାନୁଷ୍ଠାନର ଶିକାର ହୋଇଥିଲେ, ତଥାପି ଭାଙ୍ଗି ପଡିଲେ ନାହିଁ । କାଉଁରିଆ କାଠି ଭାଙ୍ଗିଯିବ ପଛେ ନଇଁବ ନାହିଁ । ସଂଗ୍ରାମୀ ଅବନୀ ଓ ତାଙ୍କର ସହଯୋଦ୍ଧାମାନେ ପଛଘୁଞ୍ଚା ଦେବାର ପ୍ରଶ୍ନ ନାହିଁ । ସେମାନଙ୍କର ଲଢ଼େଇ ଥିଲା ହଜାର ହଜାର ବେସରକାରୀ ଶିକ୍ଷକଙ୍କ ପାଇଁ ମର୍ଯ୍ୟାଦାର ପ୍ରଶ୍ନ । ମଣିଷ ଭଳି ବଞ୍ଚି ରହିବା ଅଧିକାର ସାବ୍ୟସ୍ତ କରିବାକୁ ଚାଲିଲା ମହାସଂଗ୍ରାମ ।

୧୯୬୯ ମସିହା ଜୁଲାଇ ୨୭ତାରିଖ । କଟକର ଖ୍ରୀଷ୍ଟ କଲେଜଠାରେ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ସମିତି ବିଧିବଦ୍ଧ ଭାବରେ ଜନ୍ମନେବା ପରେ ସବୁ ଶ୍ରେଣୀର ଘରୋଇ ଶିକ୍ଷକ, ଶିକ୍ଷିକାଙ୍କ ସ୍ୱାର୍ଥକୁ ଦୃଷ୍ଟିରେ ରଖି ପ୍ରସ୍ତୁତ ହୋଇଥିଲା ସର୍ବନିମ୍ନ ଚାରିଦଫା ସମ୍ବଳିତ ଏକ ଦାବି ପତ୍ର । ଏହି ଦାବି ଗୁଡିକ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା- ଚାକିରୀ

ସର୍ତ୍ତାବଳୀ ପ୍ରଣୟନ, ସମାନ କାମକୁ ସମାନ ଦରମା, ଅବସରକାଳୀନ ସୁବିଧା ସୁଯୋଗ ଏବଂ କୋଠାରୀ କମିଶନ ସୁପାରିଶକୁ କାର୍ଯ୍ୟକାରୀ କରାଯିବା । ସେହି ବର୍ଷ ଅଗଷ୍ଟ ୧୬ତାରିଖ ଦିନ ରାଜଧାନୀ ଭୁବନେଶ୍ୱରର ରାଜରାସ୍ତା ଉପରେ ପ୍ରଥମ କରି ଶିକ୍ଷକ ଓ ଶିକ୍ଷାକର୍ମୀମାନଙ୍କର ଏକ ବିଶାଳ ସମାବେଶ ଆୟୋଜନ କରାଯିବାକୁ ବୈଠକରେ ସ୍ଥିର ହୋଇଥିଲା । ସେହି ଅଗଷ୍ଟ ୧୬ରୁ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ସରକାରୀ ବାସଭବନ ସମ୍ମୁଖରେ ଦିନରାତି ଧାରଣା ଦିଆଯିବ ଏବଂ ସେଥିପାଇଁ ତମ୍ବୁ ଟଣାଯିବ ବୋଲି ନିଷ୍ପତ୍ତି ହେଲା । ସେତେବେଳକୁ ବର୍ଷା ଦିନ, ତେଣୁ ଖଟ ଯୋଗାଡ କରିବାକୁ ହେବ । ସେତେବେଳେ ଭୁବନେଶ୍ୱରରେ କୌଣସି ଶିକ୍ଷକ ସଂଗଠନର ଘର ବା କାର୍ଯ୍ୟାଳୟ ନଥାଏ । ବିଧାନସଭାରେ ବିରୋଧି ଦଳର ନେତା ଥାଆନ୍ତି ବ୍ରହ୍ମପୁରର ପୁରାତନ ପ୍ରଧାନ ଶିକ୍ଷକ ବିନାୟକ ଆଚାର୍ଯ୍ୟ । ଭୁବନେଶ୍ୱର ଏଜି ଛକକୁ ଲାଗି ତାଙ୍କର ସରକାରୀ ବାସଭବନ । ନିଜେ ଜଣେ ଅଭିଜ୍ଞ ଓ ଅନୁଭବୀ ଶିକ୍ଷକ ଥିବାରୁ ଶିକ୍ଷକ ସମାଜର ନ୍ୟାଯ୍ୟ ଦାବି ସଂପର୍କରେ ସେ ବେଶ୍ ଅବଗତ ଥିଲେ । ଧାରଣା ଓ ଆନ୍ଦୋଳନକୁ ପରିଚାଳନା କରିବା ପାଇଁ ତାଙ୍କରି ବାସଭବନରେ ଅସ୍ଥାୟୀ ଭାବରେ ଖୋଲିଲା ମିଳିତ କ୍ରିୟାନୁଷ୍ଠାନ ସମିତିର କାର୍ଯ୍ୟାଳୟ । ସମିତିର ଗଠନ ସମୟରୁ ଏହାର କାର୍ଯ୍ୟକଳାପ ସହ ଅଙ୍ଗାଙ୍ଗୀ ଭାବରେ ଜଡିତ ରହିଆସିଥିବା ଅଧ୍ୟାପକ ଗୟାଧର ରାଉତ ସେଦିନର ସ୍ମୃତି ଚାରଣ କରି କହନ୍ତି "ତତ୍କାଳୀନ ବିରୋଧି ଦଳର ନେତା ୰ ବିନାୟକ ଆଚାର୍ଯ୍ୟଙ୍କ ସରକାରୀ ବାସଭବନର ଏକ ବଖରା ଘର (ଏ.ଜି. ଛକରେ) ନିଆଗଲା । ସେ (ବିନାୟକ ବାବୁ) ଅତୀତରେ ଓଷ୍ଟା ସଂଘର ସାଧାରଣ ସମ୍ପାଦକ ଥିଲେ । ତେବେ ଯାହା ହେଉ ଖଟ କେଉଁଠୁଁ ଆସିବ ? ୧୦/୧୨ଟା ଖଟ ଦରକାର । ମୁଁ ସେତେବେଳେ ଖୋର୍ଦ୍ଧା କଲେଜ (ଆଜିର ପ୍ରାଣନାଥ କଲେଜ)ର ଅଧ୍ୟାପକ ଥାଏ ଏବଂ କଲେଜ ହଷ୍ଟେଲର ସୁପରିଟେଣ୍ଡେଣ୍ଟ ଥାଏ । ଅନ୍ତେବାସି ଛାତ୍ରଙ୍କ ଅପେକ୍ଷା ପ୍ରାୟ ୧୨୦ଟା ଖଟ ଅଧିକା ଥାଏ । ଡେପୁଟି ସୁରିଟେଣ୍ଡେଣ୍ଟ ଥାଆନ୍ତି ଅଧ୍ୟାପକ ରବି ସାହୁ, ଅବନୀ ବାବୁ ମୋତେ କହିଲେ ସେ ଖଟ ଆଣିବାକୁ । ପ୍ରାଣନାଥ ବାବୁଙ୍କ ବିନାନୁମତିରେ କିପରି ନେବୁ ? ଅବନୀ ବାବୁ କହିଲେ ଖଟ ଆଣିସାରିବା ପରେ କହିବୁ । ଆମର ଅନୁଗତ ଛାତ୍ର ମାନଙ୍କ ସାହାଯ୍ୟରେ ୧୦ଟି ଖଟ, ଟ୍ରକ୍ ସାହାଯ୍ୟରେ ଭୁବନେଶ୍ୱର ଧାରଣା ଜାଗାକୁ ଆଣିଲି । ସେ ଖଟସବୁ ଆଉ ଫେରିନାହିଁ । ସର୍ବନିମ୍ନ ୪ଦଫା ସମ୍ବଳିତ ଦାବିନେଇ ଆନ୍ଦୋଳନ ଆରମ୍ଭ । ୧- ଋକିରୀ ସର୍ତ୍ତ (Security of Service) (୨) ସମାନ କାମକୁ ସମାନ ଦରମା (Equalisation of pay scale) (୩) ଅବସରକାଳୀନ ସୁଯୋଗ (୪) କୋଠାରୀ କମିଶନ ଅନୁମୋଦନକୁ କାର୍ଯ୍ୟକାରୀ ଅଗଷ୍ଟ ମାସ ୧୬ ତାରିଖଠାରୁ ବିରାଟ ରାଲି ପରେ ଶିକ୍ଷାମନ୍ତ୍ରୀ ୰ ବନମାଳି

ପଟ୍ଟନାୟକଙ୍କ ସରକାରୀ ବାସଭବନ ଆଗରେ ଧାରଣା ଆରମ୍ଭ ହେଲା । ପୂର୍ବ ବର୍ଣ୍ଣିତ ମତେ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ବାସଭବନ ସମ୍ମୁଖରେ ଧାରଣାରତ ଶିକ୍ଷକମାନଙ୍କ ଉପରେ ନିୟୋଜିତ ଗୁଣ୍ଡାମାନଙ୍କର ବର୍ବର ଆକ୍ରମଣର ପ୍ରତିବାଦ ସ୍ୱରୂପ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ସମିତିର ଜରୁରୀକାଳୀନ ସଭା ହୋଇ ୭ ତାରିଖରେ ଏକ ବିରାଟ ସଭାରେ କାର୍ଯ୍ୟ ବନ୍ଦ ଆନ୍ଦୋଳନ କରିବାକୁ ଆହ୍ୱାନ ଦିଆଗଲା । ଏ ସଭାରେ ବିଜୁ ପଟ୍ଟନାୟକ ଏବଂ ବିରୋଧି ଦଳର ନେତା ଚିନ୍ତାମଣି ପାଣିଗ୍ରାହୀ ଏବଂ ରାମକୃଷ୍ଣ ପତି ପ୍ରଭୃତି ଭାଷଣ ଦେଇ କାର୍ଯ୍ୟବନ୍ଦ ଆନ୍ଦୋଳନକୁ ସମ୍ପାଦନ କଲେ । ବିଶେଷ ଭାବରେ ଚିନ୍ତାମଣି ପାଣିଗ୍ରାହୀ, ବିରୋଧି ଦଳର ଦଳପତି ଭାବରେ ସଭାରେ ଘୋଷଣା କଲେ ଯେ ପର୍ଯ୍ୟନ୍ତ ସରକାର ଶିକ୍ଷକମାନଙ୍କର ଦାବି ଗ୍ରହଣ ନକରିଛନ୍ତି ସେ ପର୍ଯ୍ୟନ୍ତ ବିଧାନସଭାକୁ କରାଇଦେବେ ନାହିଁ କେବଳ ବିଧାନସଭାରେ ହୋ-ହୋ, ହୋ, ହୋ ଶବ୍ଦ ସୃଷ୍ଟିକରି ବିଧାନସଭାକୁ କରାଇଦେବୁ ନାହିଁ । ପ୍ରକୃତରେ ବିରୋଧି ଦଳର ସଭ୍ୟମାନେ ତାହା ହିଁ କରିଥିଲେ ଏବଂ ବିଧାନସଭାର ସମ୍ମୁଖରେ ଚଳିବାକୁ ଦେଇନଥିଲେ । ଏହା ଏକ ଐତିହାସିକ ଘଟଣା ଥିଲା ।

ଅବନୀ ବାବୁ ଓ ଅନ୍ୟ ଶିକ୍ଷକ ନେତାମାନଙ୍କର କାର୍ଯ୍ୟବନ୍ଦ ଆନ୍ଦୋଳନର ନିଷ୍ପତ୍ତି ଏକ ଐତିହାସିକ ଘଟଣା । ସ୍ୱାଧୀନତା ପରେ ଶିକ୍ଷକ କର୍ମଚାରୀମାନଙ୍କ ପକ୍ଷେ ଏହା ପ୍ରଥମ । କେବଳ ପୁରୁଣା କାଳିଆ ଶିକ୍ଷକମାନେ ସାମାନ୍ୟ କୁଣ୍ଠିତ ଥିଲେ ମଧ୍ୟ ଅନ୍ୟମାନଙ୍କ ସହିତ ମିଶି କାର୍ଯ୍ୟ କଲେ । ଆବାହକ ଅବନୀ ବରାଳ, ଯୁଗ୍ମ ଆବାହକ ୰ ବନମାଳି ବ୍ରହ୍ମଚାରୀ ଓ କୈଳାସ ମହାପାତ୍ରଙ୍କ ଏହି ସମୟୋଚିତ କାର୍ଯ୍ୟବନ୍ଦ ଡାକରାକୁ ଶିକ୍ଷକ କର୍ମଚାରୀ ଚାତକପରି ଗ୍ରହଣ କରିଥିଲେ ଓ କାର୍ଯ୍ୟ ପାଇଁ ଆଗେଇ ଆସିଥିଲେ । କାର୍ଯ୍ୟବଳ ସଫଳ ହୋଇଥିଲା । କିନ୍ତୁ ମିଳିତ ରାଜାରାଜୁଡ଼ା ସରକାରଙ୍କର ନିଦ୍ରାଭଙ୍ଗ ହେଲା ନାହିଁ ।

ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ସମିତି ବହୁ ପରାମର୍ଶ କରି ସଚିବାଳୟ ଫାଟକ ଆଗରେ ପିକେଟିଂ କରି ଜେଲଭରେ ଆନ୍ଦୋଳନ କରିବାକୁ ଅବନୀ ବାବୁଙ୍କର ଏ ଐତିହାସିକ ପ୍ରସ୍ତାବକୁ ସମସ୍ତେ ଗ୍ରହଣ କଲେ । ଏହା ଏକ କଷ୍ଟକର ପନ୍ଥା ଥିଲା । ଏଠାରେ କହିରଖେ ଭୋଳାନାଥ ରାଉତ ଏବଂ ଅନାମ ଚରଣ ଦାସଙ୍କ ନେତୃତ୍ୱରେ ସଅଁରା ବାଳିକା ବିଦ୍ୟାଳୟର ଶିକ୍ଷିକାମାନଙ୍କୁ ଆଣି ସଚିବାଳୟ ଫାଟକ ବନ୍ଦ କରିବାରେ ସଫଳ ହୋଇଥିଲୁ ପ୍ରଥମେ । ଶିକ୍ଷକମାନଙ୍କ ପାଇଁ ଏହା ପ୍ରଥମ ଥିଲା । ଆନ୍ଦୋଳନର ତରିକା - ଜେଲ୍ ଭରୋ ଆନ୍ଦୋଳନ । କିଏ ଏହାର ପ୍ରଥମ ନେତୃତ୍ୱ ନେବ ସେଥିପାଇଁ

ଚିନ୍ତା କରାଗଲା । ବହୁ ଆଲୋଚନା ପରେ ସ୍ଥିର ହେଲା ୧୯୬୪ ଛାତ୍ର ଆନ୍ଦୋଳନରେ ରେଭେନ୍ସା କଲେଜରେ ପଢ଼ିଲାବେଳେ କଲେକ୍ଟରଙ୍କ ଅଫିସ ଆଗରେ ପିକେଟିଂ କରି ମୁଁ ଅନ୍ୟମାନଙ୍କ ସହିତ ୧୦ଦିନ ଯାଏଁ ଜେଲ୍ ଯାଇଥିବାର ଅଭିଜ୍ଞତା ଥିବାରୁ ମୋର ନାଁ ପ୍ରଥମେ ରହିଲା ଓ ମୋ ସହିତ ଅନ୍ୟାନ୍ୟ ଶିକ୍ଷକ ନେତା ଯଥା ବାରିଜ ଦାସ ଇତ୍ୟାଦି । ମୋ ସହିତ ସମସ୍ତେ ଗିରଫ ହୋଇ ଅନ୍ୟମାନଙ୍କ ସହିତ ଝାରପଡ଼ା ଜେଲ୍‌କୁ ଗଲୁ । ପରେ ପରେ ଅବନୀ ବାବୁଙ୍କୁ ସଚୀବାଳୟ ଗେଟ୍ ଆଗରୁ ପୋଲିସ ଧରିନେଇ ଜେଲ୍‌କୁ ପଠାଇଦେଲେ । ଆମ୍ଭେମାନେ ଏକାଠି ରହିଲୁ । ପ୍ରୋଗ୍ରାମ୍ ଅନୁସାରେ ପ୍ରତିଦିନ ଶିକ୍ଷକ କର୍ମଚାରୀ ବହୁ ସଂଖ୍ୟାରେ ଜେଲ୍‌ଭରୋ ପାଇଁ ଆଗେଇ ଆସିଲେ । ଜେଲ୍‌ରେ ଜାଗା ମିଳିଲା ନାହିଁ ସବୁ ଶିକ୍ଷକମାନଙ୍କୁ ରଖିବା ପାଇଁ । ଏଣୁ ପୋଲିସ ବାଧହୋଇ ଆରେଷ୍ଟ କରି ଚନ୍ଦକା ଜଙ୍ଗଲ ଏବଂ ଦୂର ସ୍ଥାନରେ ଶିକ୍ଷକମାନଙ୍କୁ ଛାଡ଼ି ଦିଅନ୍ତି । ଶିକ୍ଷକ କର୍ମଚାରୀ ଚାଲି ଚାଲି ଆସି ତହିଁ ପରଦିନ ପୁଣି ପିକେଟିଂ କରି ଆରେଷ୍ଟ ହୁଅନ୍ତି । ଏହିପରି ଧାରଣା, ଅନଶନ ଧାରଣା, କାର୍ଯ୍ୟବନ୍ଦ ଆନ୍ଦୋଳନ ଓ ଜେଲଭରୋ ଆନ୍ଦୋଳନ ବିଭିନ୍ନ ପର୍ଯ୍ୟାୟରେ ୨ମାସ କାଳ ଚାଲିବା ପରେ ସରକାର ବାଧହୋଇ ବିଶିଷ୍ଟ ଶିକ୍ଷାବିତ୍ ଓ ବୈଜ୍ଞାନିକ ৺ ଡକ୍ଟର ପ୍ରାଣକୃଷ୍ଣ ପରିଜା ଅଧକ୍ଷତାରେ ଏକ କମିଟି ବସାଇବାର ଘୋଷଣା କଲେ ଏବଂ ୧୫ ଦିନ ମଧ୍ୟରେ ତାଙ୍କର ରିପୋର୍ଟ ଦେବେ ବୋଲି ମଧ୍ୟ କୁହାଗଲା । ଡକ୍ଟର ପରିଜା ଓ କର୍ମଚାରୀଙ୍କ ସପକ୍ଷରେ ତାଙ୍କର ବହୁମୂଲ୍ୟ ମତାମତ ପ୍ରଦାନ କରିବାରୁ ତଥା ୧୫/୧୦/୧୯୬୯ ତାରିଖରେ ଓଡ଼ିଶା ଶିକ୍ଷା ଆଇନ୍ ଗେଜେଟ୍‌ରେ ନୋଟିଫାଏଡ୍ ହୋଇ ପ୍ରେସ୍ ନୋଟ୍ ଆମକୁ ଦେବାରୁ ଅକ୍ଟୋବର ମାସ ୧୫ ତାରିଖରେ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ତରଫରୁ ଆବାହକ ଶ୍ରୀ ଅବନୀ କୁମାର ବରାଳ ଶିକ୍ଷକ ଆନ୍ଦୋଳନ ସମାପ୍ତ ହେଲାବୋଲି ଘୋଷଣା କଲେ । ଏହିପରି ଓଡ଼ିଶା ଶିକ୍ଷକ କର୍ମଚାରୀମାନଙ୍କର ପ୍ରଥମ ଏବଂ ସଫଳ ଆନ୍ଦୋଳନ ।

ସଫଳ ଆନ୍ଦୋଳନ ପରେ ୧୯୬୯ ମସିହା ଜୁଲାଇ ୨୭ ତାରିଖରେ ଗଠିତ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ସମିତି ତା. ୨୨.୧୨.୧୯୬୯ରେ ମିଳିତ ଶିକ୍ଷକ ସମନ୍ୱୟ ସମିତିରେ ପରିଣତ ହେଲା ଏବଂ ପରେ ୧୯୭୧ ମସିହା ସେପ୍ଟେମ୍ବର ମାସ ୫ତାରିଖ ଗୁରୁଦିବସ ଦିନ ଭଞ୍ଜକଳା ମଣ୍ଡପ ହଲ୍‌ରେ ଶିକ୍ଷକ କର୍ମଚାରୀମାନଙ୍କର ଏକ ସଭାହୋଇ ଐତିହାସିକ "ଶିକ୍ଷକ ମହାସଂଘ" ଜନ୍ମ ନେଲା । ଏହି ଶିକ୍ଷକ ମହାସଂଘର ଦୀର୍ଘ ବର୍ଷର ଧାରାବାହିକ ଭାବରେ ଆନ୍ଦୋଳନକରି ଶିକ୍ଷକ କର୍ମଚାରୀ ବହୁ ଦାବି ହାସଲ କରିଛନ୍ତି । ପ୍ରଥମେ ୧୯୬୯ର ଶିକ୍ଷା ଆଇନ୍ ଚାକିରୀ ନିରାପତ୍ତା ଆଇନ, ଦରମା ସମୀକରଣ ଆଇନ ଅବସରକାଳୀନ ସୁଯୋଗ, ୟୁ.ଜି.ସି ଦରମା ପ୍ରଭୃତି ଲାଭ କରିଛନ୍ତି । ଶେଷରେ

ଗୋଟି ଶ୍ରମିକ ସ୍ଥିତିରୁ ମୁକ୍ତି ପାଇଛନ୍ତି । ପାଟି ଫିଟିଛି । ସ୍ୱାଧୀନ ଭାବରେ ସରକାରଙ୍କ ଅନ୍ୟାୟ ବିରୁଦ୍ଧରେ ମତାମତ ଦେଇପାରୁଛନ୍ତି । ଅନ୍ୟାୟ ବିରୁଦ୍ଧରେ କୋର୍ଟର ଆଶ୍ରୟ ନେଇପାରୁଛନ୍ତି । ସାମାଜିକ ସ୍ୱୀକୃତି ପାଇଛନ୍ତି ।

ମୋର ଏଠାରେ କହିବାର କଥା । ସ୍ୱାଧୀନତା ପୂର୍ବରୁ ଏବଂ ସ୍ୱାଧୀନତା ପରେ ୧୯୬୯ ମସିହା ପର୍ଯ୍ୟନ୍ତ ଶିକ୍ଷକ ସଂଗଠନ ଥିଲା । ଶିକ୍ଷକ ନେତା ଥିଲେ କିନ୍ତୁ ଶିକ୍ଷକ କର୍ମଚାରୀମାନେ ଗୋଟିଶ୍ରମିକ ପରି ଶିକ୍ଷାନୁଷ୍ଠାନରେ କର୍ତ୍ତବ୍ୟ କରୁଥିଲେ । ଯଦି ଶ୍ରୀ ଅବନୀ କୁମାର ବରାଳ ଓଷ୍ଟା, ଓଲଷ୍ଟା ଓ ଅଙ୍ଗୋଟାର ନେତୃମଣ୍ଡଳୀଙ୍କ ନେତୃତ୍ୱ ନେଇ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ମିଳିତ ଶିକ୍ଷକ ସମନ୍ୱୟ କମିଟି ଗଠନ ଓ ଶିକ୍ଷକ ମହାସଂଘର ଗଠନ ଏବଂ ତାର ନେତୃତ୍ୱ ନେଇନଥାନ୍ତେ । ତେବେ ବେସରକାରୀ ଶିକ୍ଷକ କର୍ମକର୍ତ୍ତାମାନେ ଉପରୋକ୍ତ ସୁବିଧା ସୁଯୋଗ ପାଇନଥାନ୍ତେ କି ନିମ୍ନମାଧମିକ ଓ ମାଧମିକ ଶିକ୍ଷକମାନେ ସରକାରୀ ହୋଇନଥାନ୍ତେ ଏବଂ ସରକାରୀ ଓ ବେସରକାରୀ ଅଧ୍ୟାପକମାନେ ୟୁ.ଜି.ସି ଦରମା ପାଇନଥାନ୍ତେ । ଆନ୍ଦୋଳନ ସମୟରେ ଅନ୍ୟମାନଙ୍କ ଠିକଣା ସମୟରେ ସଠିକ୍ ତରିକା ନେବା ଏବଂ ଆନ୍ଦୋଳନକୁ ସଫଳ କରିବାରେ ଅବନୀ ବରାଳଙ୍କର ଥିଲା ବିଚକ୍ଷଣ ନେତୃତ୍ୱ । ଏହା ଓଡ଼ିଶା ତଥା ଭାରତ ବର୍ଷ ତଥା ବିଶ୍ୱରେ ଏକ ଦିଗ୍‌ଦର୍ଶକ । ତାହା ନହୋଇଥିଲେ ଭାରତ ସରକାର ଅନ୍ୟ ଦୁଇ ଜଣ Vice-chancellor ଙ୍କ ସହିତ ଓଡ଼ିଶାର ଜଣେ ବେସରକାରୀ ଅଧ୍ୟାପକଙ୍କୁ ଭାରତର ପ୍ରତିନିଧିରୂପେ ରୁଷ ପ୍ରଭୃତି ଦେଶକୁ ୟୁନେସ୍କୋର ଏକ ପ୍ରତିନିଧି ଦଳ ପଠାଇ ନଥାନ୍ତେ । ଓଡ଼ିଶାର ସୌଭାଗ୍ୟ ଓ ଗର୍ବ ଏପରି ଜଣେ ଶିକ୍ଷକ ନେତା ଓ ଶିକ୍ଷାବିତ୍‌ଙ୍କୁ ପାଇଛୁ ।"

୧୯୬୯ରେ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ସମିତି ଏବଂ ୧୯୭୧ ମସିହା ଗୁରୁଦିବସରେ ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ଗଠନରେ ଅବନୀ ବରାଳଙ୍କ ସହ କାନ୍ଧକୁ କାନ୍ଧ ମିଶାଇ ଗୁଣ୍ଡୁଚି ମୂଷା ଭଳି ଅବଦାନ ଯୋଗାଇ ଆସିଥିବା ଅନ୍ୟତମ ଶିକ୍ଷକ ନେତା ଦାଶରଥୀ ନାୟକଙ୍କ ବର୍ଣ୍ଣନା ଅନୁଯାୟୀ ଶିକ୍ଷକ ମହାସଂଘର ନିରବଚ୍ଛିନ୍ନ ଆନ୍ଦୋଳନ ଓ ଅବିଶ୍ରାନ୍ତ ଉଦ୍ୟମ ଫଳରେ ଶିକ୍ଷକମାନଙ୍କର ଦୀର୍ଘଦିନର ଅନେକ ଦାବି ପୂରଣ ହୋଇପାରିଥିଲା । ମୁଖ୍ୟତଃ ବିଧାନସଭା ଭବନ ନିକଟରେ ହିଁ ଅଧିକାଂଶ ବିକ୍ଷୋଭ ଓ ଆନ୍ଦୋଳନ ସଂଘଟିତ ହୋଇଥିବା ବେଳେ ୧୯୭୪ ଡିସେମ୍ବର ମାସରେ ଆନ୍ଦୋଳନ ହିଂସ୍ରରୂପ ଧାରଣ କରିଥିଲା । ସେତେବେଳେ ଆନ୍ଦୋଳନକାରୀ ଶିକ୍ଷକ/ ଶିକ୍ଷିକାଙ୍କ ଉପରେ ସଶସ୍ତ୍ର ପୁଲିସ୍ ଆଖିବୁଜା ଲାଠିଚାଳନା ଓ ଲୁହବୁହା ବାଷ୍ପ ପ୍ରୟୋଗ କରିବା ଫଳରେ ବହୁ ଶିକ୍ଷକ-ଶିକ୍ଷିକା ଆହତ ହୋଇଥିଲେ । ବିଧାନସଭା ଭବନ ନିକଟରେ

ହୋଇଥିବା ଏହି ଖଣ୍ଡଯୁଦ୍ଧ ନନ୍ଦିନୀ ଶତପଥୀ ସରକାରର ଆଖି ଖୋଲି ଦେଇଥିଲା । ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ ସମିତି ଓ ଶିକ୍ଷକ ମହାସଂଘ ଗଠନର ଆଦ୍ୟ ଘଟଣାବଳୀ ସହ ନିରବଚ୍ଛିନ୍ନ ଶିକ୍ଷକ ଆନ୍ଦୋଳନର କ୍ରମିକ ଇତିହାସ ବର୍ଣ୍ଣନା କରି ଦାଶରଥୀ ନାୟକ କହନ୍ତି

-"ଏହି ବୃହତ୍ତର ସଂଗଠନ ଗଠନ କରିବାକୁ ଯେଉଁମାନେ ଆବାହକ ଅଧ୍ୟାପକ ଅବନୀ କୁମାର ବରାଳଙ୍କ ଆହ୍ୱାନରେ ଏକତ୍ରିତ ହୋଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ନି:ଉ ପ୍ରାଥମିକ ଶିକ୍ଷକ ସଂଘର ସଭାପତି ସ୍ୱର୍ଗତ ଲୋକନାଥ ନନ୍ଦ, ନି.ଉ ନିମ୍ନମାଧ୍ୟମିକ ଶିକ୍ଷକ ସଂଘର ପ୍ରାଣ ପ୍ରତିଷ୍ଠାତା ସଂଗଠନ ସଂପାଦକ ସ୍ୱର୍ଗତ ବନମାଳୀ ବ୍ରହ୍ମଚାରୀ ଏବଂ ଓଷ୍ଟାର ପୂର୍ବତନ ଯୁଗ୍ମ ସଂପାଦକ ସ୍ୱର୍ଗତ କୈଳାସ ଚନ୍ଦ୍ର ମହାପାତ୍ର, କଲେଜ ଏବଂ ବିଶ୍ୱବିଦ୍ୟାଳୟ ସଂଘର ସାଧାରଣ ସଂପାଦକ ଶ୍ରୀ ଅବନୀ କୁମାର ବରାଳ ପ୍ରମୁଖ ବିଭିନ୍ନ ସଂଘର କର୍ମକର୍ତ୍ତାଗଣ ଅନ୍ୟମାନଙ୍କ ମଧ୍ୟରେ ଥିଲେ ନିଖିଳ ଉତ୍କଳ ନିମ୍ନମାଧ୍ୟମିକ ଶିକ୍ଷକ ସଂଘର କର୍ମକର୍ତ୍ତା ସ୍ୱର୍ଗତ ବନମାଳୀ ବ୍ରହ୍ମଚାରୀ, ହରିଶ୍ ଚନ୍ଦ୍ର ଦେ,୰ କେଶବ ଚରଣ ସେନାପତି, ୰ ଦେବେନ୍ଦ୍ର ମୋହନ ପଣ୍ଡା, ୰ଭଗବାନ ମିଶ୍ର, ୰ ମନମୋହନ ଦାଶ, ୰ ମାଗୁଣି ଚରଣ ଦୁବେ ପ୍ରମୁଖ ।

ମାଧ୍ୟମିକ ଶିକ୍ଷକ ସଂଘରୁ ଥିଲେ : ୰ ଭଗବାନ ରଥ, ୰ ଅନନ୍ତ କୁମାର କର, ଶ୍ରୀ ପ୍ରଫୁଲ୍ଲ କୁମାର ଗାନ୍ଧୀ, ଶ୍ରୀ ମହେଶ୍ୱର ସାମନ୍ତରାୟ, ୰ କୈଳାସ ଚନ୍ଦ୍ର ମହାପାତ୍ର, ୰ ବଂଶୀଧର ଆଚାର୍ଯ୍ୟ, ଶ୍ରୀ ବିବେକାନନ୍ଦ ଦାଶ, ୰ ରବୀନ୍ଦ୍ର କୁମାର ଜେନା, ହାଡିବନ୍ଧୁ ହାଲି, ଶ୍ରୀ ପିତବାସ ବେହୁରିଆ, ୰ ରାଜକିଶୋର ପଟ୍ଟନାୟକ, ୰ ରତ୍ନାକର କର ପ୍ରମୁଖ । କଲେଜ ଶିକ୍ଷକ ସଂଘରୁ ଥିଲେ ୰ ସନାତନ ମହାନ୍ତି ଭଦ୍ରକ କଲେଜ, ଡଃ. ଭି.ବି.ରାଓ ଖ୍ରୀଷ୍ଟ କଲେଜ, ଶ୍ରୀ ଅବନୀ କୁମାର ବରାଳ, ପି.ଏନ୍ କଲେଜ, ଶ୍ରୀ ଭୋଳାନାଥ ରାଉତ, ଏସ୍.ଭି.ଏମ୍ କଲେଜ, ଡଃ. ବିବେକାନନ୍ଦ ଦାଶ ଭଦ୍ରକ କଲେଜ ଏହି ଉପସ୍ଥିତ ସଭ୍ୟମାନଙ୍କ ମତ ବିନିମୟ ପରେ ପ୍ରତି ସଂଗଠନରୁ ୭ଜଣ ଲେଖାଏଁ ୨୧ଜଣଙ୍କୁ ନେଇ ମିଳିତ କ୍ରୀୟାନୁଷ୍ଠାନ କମିଟି ଗଠନ କରାଯାଇଥିଲା ।

ଏହି କ୍ରୀୟାନୁଷ୍ଠାନ କମିଟିରେ ଯେଉଁମାନେ ପ୍ରଥମ ସଦସ୍ୟରୂପେ ମନୋନୀତ ହୋଇଥିଲେ ସେମାନେ ହେଲେ ଅଧ୍ୟାପକ ସନାତନ ମହାନ୍ତି,ଭଦ୍ରକ କଲେଜ, ଅଧ୍ୟାପକ ବି.ଭି. ରାଓ, ଖ୍ରୀଷ୍ଟ କଲେଜ, କେ.ପି.ପି ପଟ୍ଟନାୟକ କୁଚିଣ୍ଡା କଲେଜ, ଅବନୀ କୁମାର ବରାଳ, ଖୋର୍ଦ୍ଧା କଲେଜ, ଡଃ.ବିବେକାନନ୍ଦ ଦାଶ, ଭଦ୍ରକ କଲେଜ, ଅଧ୍ୟାପକ ଭୋଳାନାଥ ରାଉତ ଏସ.ଭି.ଏମ୍ କଲେଜ, ଦୟାନିଧି ସାମନ୍ତରାୟ, ଖ୍ରୀଷ୍ଟ କଲେଜ, ବନମାଳୀ ବ୍ରହ୍ମଚାରୀ ସଂଗଠନ ସଂପାଦକ ଅଲୋଷ୍ଟା, ରାଜା ବଗିଚା, କେଶବ ଚରଣ

ସେନାପତି, ଷେଣ୍ଡତିରା ମି.ଇ ସ୍କୁଲ, ହରିଶ ଚନ୍ଦ୍ର ଦେ, ଜଳେଶ୍ୱର ମି.ଇ ସ୍କୁଲ, ହାଇଦର ଅହମ୍ମଦ ପିପିଲି ମି.ଇ ସ୍କୁଲ, ମାଗୁଣୀ ଚରଣ ଦୁବେ, ଆଶ୍ରମପାଟଣା ମି.ଇ କଟକ, ଦେବେନ୍ଦ୍ର ମୋହନ ପଣ୍ଡା ସହସଂପାଦକ ଅଲୋଷ୍ଟା, କଟକ, ଭଗବାନ ମିଶ୍ର ଶଙ୍କର୍ଶଣ ମି.ଇ ସ୍କୁଲ, କଟକ । ଓଷ୍ଟାର : ରାଜକିଶୋର ପଟ୍ଟନାୟକ, ମାଣିକାଗୋଡା ହାଇସ୍କଲ, କୈଳାସ ଚନ୍ଦ୍ର ମହାପାତ୍ର, ମାରଓ୍ୱାଡି ହାଇସ୍କୁଲ (କଟକ), ହାଡିବନ୍ଧୁ ହାଲି (ଭୁବନେଶ୍ୱର), ବିବେକାନନ୍ଦ ଦାଶ, ରତ୍ନାକର କର, ଅନନ୍ତ କର, ପିତବାସ ବେହୁରିଆ ।

ଏହି ମିଳିତ କ୍ରୀୟାନୁଷ୍ଠାନ କମିଟିର ଆବାହକ ଶ୍ରୀ ଅବନୀ କୁମାର ବରାଳ ଏବଂ ଯୁଗ୍ମ ଆବାହକ ରୂପେ ଶ୍ରୀ କୈଳାଶ ଚନ୍ଦ୍ର ମହାପାତ୍ର ଏବଂ ଶ୍ରୀ ବନମାଳୀ ବ୍ରହ୍ମଚାରୀ ରହିଲେ ।

୧. ସମାନ କାମ ପାଇଁ ସମାନ ବେତନ ବା (Equalisation of pay) ୨. ଋକିରୀ ସର୍ତ୍ତାବଳୀ (Status of service rule) ୩. ଅବସରକାଳୀନ ସୁଯୋଗ (Retirement Benefits) ୪. କୋଠାରୀ କମିଶନଙ୍କ ଅନୁମୋଦନ କାର୍ଯ୍ୟକାରୀ କରିବା ଏବଂ ଏହାକୁ ନେଇ ଦାବୀପତ୍ର ପ୍ରଦାନ କରିବା ସଙ୍ଗେ ସଙ୍ଗେ ଅଗଷ୍ଟ ୧୬ତାରିଖରେ ଶିକ୍ଷକ, ଶିକ୍ଷିକା ଓ ଶିକ୍ଷାକର୍ମଚାରୀମାନଙ୍କର ସଚିବାଳୟ ସମ୍ମୁଖରେ ଏକ ବିଶାଳ ରାଲି ଅନୁଷ୍ଠିତ ହେବ । ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ସରକାରୀ ବାସଭବନ ସମ୍ମୁଖରେ ଧାରଣା ଦିଆଯିବ । ଏହି ଧାରଣା ଦାବି ପୁରଣ ପର୍ଯ୍ୟନ୍ତ ଚାଲୁରହିବ । ପରେ ପରେ ଧାରଣା ଦିଆଗଲା ଏବଂ ପ୍ରତିଦିନ ସଚିବାଳୟ ସମ୍ମୁଖରେ ବିକ୍ଷୋଭ ହେଲା, କ୍ରମେ ଏହା ଏପରି ବିଶାଳ ଜନଆନ୍ଦୋଳନରେ ପରିଣତ ହେଲା ଯେ ତାହାକୁ ସରକାର ସାମନା କରିବା ସହଜ ହେଲାନାହିଁ ।

ଓଡ଼ିଶାର ଶିକ୍ଷକମାନଙ୍କର ସମ୍ମିଳିତ ସଂଗ୍ରାମ ଏକ ବିରଳ ଘଟଣାଭାବେ ସାରା ରାଜ୍ୟରେ ଶିକ୍ଷା ବିଭାଗ ସହ ସରକାରୀ ସ୍ତରରେ ଏକ ଆଲୋଡନ ସୃଷ୍ଟି କଲା । ଏହି ଆନ୍ଦୋଳନକୁ ଭଣ୍ଡୁର କରିବାପାଇଁ ଏବଂ ଶିକ୍ଷକ ସଂଘର ନେତାମାନଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ଶିକ୍ଷାମନ୍ତ୍ରୀଙ୍କ ବାସଭବନ ସମ୍ମୁଖରେ ଚାଲିଥିବା ଶିକ୍ଷକମାନଙ୍କ ଶାନ୍ତିପୂର୍ଣ୍ଣ ଧାରଣା ସ୍ଥଳକୁ ୦୬.୦୯.୧୯୬୯ ଗୁରୁଦିବସ ପରଦିନ ରାତି ଅଧରେ ସରକାରୀ ଗୁଣ୍ଡାମାନେ ଆକ୍ରମଣ କଲେ । ରକ୍ତାକ୍ତ ଶିକ୍ଷକମାନେ ସୁରକ୍ଷାପାଇଁ ଆକୁଳ ନିବେଦନ କଲେ ମଧ୍ୟ ସରକାରଙ୍କ ପୋଲିସ ବାହିନୀ ସେତେବେଳେ ନୀରବଦ୍ରଷ୍ଟା ହୋଇଥିଲେ । ଓଡ଼ିଶାର ପ୍ରବୀଣ ରାଜନେତା ଏବଂ ତଦାନିନ୍ତନ ସରକାରରେ ମୁଖ୍ୟଭୂମିକା ତୁଲାଉଥିବା ଡଃ.ହରେକୃଷ୍ଣ ମହତାବଙ୍କ ଅଲିଖିତ ନିର୍ଦ୍ଦେଶନାମା ବଳରେ ନିରୀହ ଶିକ୍ଷକ ଶିକ୍ଷିକା ମାନଙ୍କୁ

ରକ୍ତାକ୍ତ ଅବସ୍ଥାକୁ ନିଆଯାଇଥିଲା ବୋଲି ସେତେବେଳେ ବିଭିନ୍ନ କୋଣରେ ପ୍ରଚାର ହୋଇଥିଲା । ଶିକ୍ଷକମାନଙ୍କ ଉପରେ ମାଡର ପ୍ରତିବାଦରେ ବିଧାନସଭାରେ ଏବଂ ବିଧାନସଭା ବାହାରେ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ ସରକାର ।

ମିଳିତ ଶିକ୍ଷକ କ୍ରୀୟାନୁଷ୍ଠାନ କମିଟିର କାର୍ଯ୍ୟକ୍ରମ ତଥା ବ୍ୟାପକ ପ୍ରସ୍ତୁତି ଫଳରେ ସ୍ୱତଃ ପ୍ରବୃତ୍ତ ଭାବରେ ସମଗ୍ର ରାଜ୍ୟର ସବୁ ସ୍ତରର ଶିକ୍ଷକଙ୍କୁ ଗୋଟିଏ ପତାକା ତଳକୁ ଆକର୍ଷିତ କରିବାର ଅଭିନବ ଉଦ୍‌ବେଳନ ସୃଷ୍ଟି କରିଥିଲା । ଆନ୍ଦୋଳନର ରୂପରେଖ ଏବଂ ସାଂଗଠନିକ ଶକ୍ତିର ବ୍ୟାପକତା ଫଳରେ ସରକାର ବାଧ ହେଲେ ଶିକ୍ଷା ଆଇନ ପାଶ୍ କରିବାକୁ । ଯାହାକୁ ଆମେ କହୁଛେ ୧୯୬୯ "ଏଡୁକେଶନ ଆକ୍ଟ" । "ଏଡୁକେଶନ ଆକ୍ଟ"ର ରୂପରେଖ ନେବା ଏବଂ ଆଇନ ଅନ୍ତର୍ଭୁକ୍ତ ନିୟମାବଳୀ ତିଆରି ହେବା ବେସରକାରୀ ଶିକ୍ଷକ - ଅଧ୍ୟାପକ ଓ କର୍ମଚାରୀମାନଙ୍କ ଚାକିରୀର ନିରାପତ୍ତା ଏବଂ ସରକାରୀ ବେସରକାରୀ ଶିକ୍ଷକ ଅଧ୍ୟାପକ ମାନଙ୍କ ବେତନ ହାରରେ ଥିବା ତାରତମ୍ୟ ସମୀକରଣ ପାଇଁ ପୂର୍ଣ୍ଣ ଏବଂ ପ୍ରତ୍ୟକ୍ଷ ବେତନ ଦାନକୁ ଆଖି ଆଗରେ ରଖି ଶିକ୍ଷକ ଓ ଅଧ୍ୟାପକ ମାନଙ୍କୁ ସଂଗ୍ରାମ ପାଇଁ ସଜାଗ ହେବାକୁ ଆହ୍ୱାନ ଦିଆଯାଇଥିଲା । ସର୍ବୋପରି ଶିକ୍ଷକମାନଙ୍କର ଚାକିରୀ ସର୍ତ୍ତାବଳୀ ନଥିବା ହେତୁ ନିଯୁକ୍ତି ଦାତା ପରିଚାଳନା ସମିତିମାନେ ନାନା ଭାବରେ ଶିକ୍ଷକଙ୍କୁ ହଇରାଣ ହରକତ କରିବା ସଂଗେ ସଂଗେ ବିନା ନୋଟିସ୍‌ରେ ଚାକିରୀରୁ ବହିଷ୍କାର କରିଦେଉଥିଲେ । ପରିଚାଳନା ସମିତିର ଏତାଦୃଶ କାର୍ଯ୍ୟକଳାପକୁ ପ୍ରତିହତ କରିବାପାଇଁ ଶିକ୍ଷକମାନଙ୍କ ସପକ୍ଷରେ ଶିକ୍ଷା ଆଇନ ଏବଂ ଋକିରୀ ନିରାପତ୍ତା ପାଇଁ ଋକିରୀ ସର୍ତ୍ତାବଳୀ ନଥିଲା ବୋଲି ଆଗରୁ କୁହାଯାଇଛି । ଚାକିରୀର ନିରାପତ୍ତା ପାଇଁ ୧୯୬୯ ମସିହାରୁ କ୍ରମାଗତ ଭାବେ ୨ବର୍ଷ ଧରି ଚାଲିଥିବା ଆନ୍ଦୋଳନ ମଧ୍ୟରୁ ଜନ୍ମନେଲା "ନିଖିଳ ଉତ୍କଳ ଶିକ୍ଷକ ମହାସଂଘ" ଯାହା ଶିକ୍ଷକସଂଘ ମାନଙ୍କର ଏକ ଫେଡେରାଲ ବଡ଼ି ବା ଷ୍ଟ୍ରକ୍‌ଚର । ୧୯୭୧ ମସିହା ଅଗଷ୍ଟମାସ ୫ତାରିଖ ଦିନ ଭୁବନେଶ୍ୱରର ଭଞ୍ଜକଳାମଣ୍ଡପରେ କ୍ରୀୟାନୁଷ୍ଠାନ କମିଟି ପକ୍ଷରୁ ଆହୂତ ବିଶାଳ ସାଧାରଣ ସମ୍ମିଳନୀରେ ଜନ୍ମନେଲା ଶିକ୍ଷକ ମହାସଂଘ । ଅନୁଷ୍ଠିତ ଏହି ସମ୍ମିଳନୀରେ ଶିକ୍ଷକ ମହାସଂଘ ପରିଚାଳିତ ହେବା ନିମନ୍ତେ ପ୍ରଣୀତ ସମ୍ବିଧାନ ଗୃହୀତ ହେଲା । ସଂବିଧାନ ପ୍ରଣେତା ତିନିଜଣିଆ କମିଟି ଯଥା ବନମାଳୀ ବ୍ରହ୍ମଚାରୀ, କୈଳାସ ଚନ୍ଦ୍ର ମହାପାତ୍ର ଏବଂ ଅଧ୍ୟାପକ ଦୟାନିଧି ସାମନ୍ତରାୟଙ୍କ ପକ୍ଷରୁ ଶ୍ରୀ ସାମନ୍ତରାୟ ସମ୍ବିଧାନ ପାଠ କରିବା ତର୍ଜମା କରି ସର୍ବସମ୍ମତିରେ ଗ୍ରହଣ କରାଇଥିଲେ ।

ଏହି ସମ୍ମିଳନୀରେ ଯୋଗଦେଇଥିବା ସଂଘ ଗୁଡିକ ହେଲା ମୁଖ୍ୟତଃ ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ, ଓଡିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘ ଏବଂ ନିଖିଳ ଉତ୍କଳ ବେସରକାରୀ କଲେଜ ଶିକ୍ଷକ ସଂଘ । ଏମାନଙ୍କ ସହିତ ଆଦିବାସୀ ଓ ଗ୍ରାମମଙ୍ଗଳ ଶିକ୍ଷକ ସଂଘ, ଡି.ଏମ୍.ସ୍କୁଲ ଶିକ୍ଷକ ସଂଘ, ଅନ୍ଧ-ମୁକ-ବଧିର ସ୍କୁଲ ଶିକ୍ଷକ ସଂଘ, ଟ୍ରେଣ୍ଡ ମାଟ୍ରିକ୍ ପ୍ରାଥମିକ ଶିକ୍ଷକ ସଂଘ, ହିନ୍ଦୀ ଶିକ୍ଷକ ସଂଘ, ମାଦ୍ରାସା ଶିକ୍ଷକ ସଂଘ, ଡେମନ୍ଷ୍ଟ୍ରେଟର ଆସୋସିଏସନ୍, ଶାରୀରିକ ଶିକ୍ଷା ଶିକ୍ଷକ ସଂଘ ପ୍ରତିନିଧିମାନେ ମଧ୍ୟ ଯୋଗ ଦେଇ ଏହାକୁ ବିଶାଳ ମହାଦ୍ରୁମରେ ପରିଣତ କରିଥିଲେ । ଏହି ସଂଘମାନେ ଶିକ୍ଷକ ମହାସଂଘର ପ୍ରାଣ ସଂଚାର କରିବାସହିତ ଏହାକୁ ଏକ ବିରାଟ ଜନପ୍ରିୟ ଗଣସଂଗଠନରେ ପରିଣତ କରିବା ଦିଗରେ ସମସ୍ତ ସହାୟତା କରିଥିଲେ ମାତ୍ର ପ୍ରଧାନତଃ ଏହି ମହାସଂଘକୁ ପ୍ରାଣପ୍ରତିଷ୍ଠା କରି ଆସିଥିଲେ । ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନ୍ ଶିକ୍ଷକ ମହାସଂଘରେ ସାମିଲ ହେଲେ ନାହିଁ । ପରବର୍ତ୍ତୀ ସମୟରେ ଶିକ୍ଷକ ମହାସଂଘର କ୍ରମାଗତ ସଂଗ୍ରାମ ଏବଂ ଦାବୀ ହାସଲର ତରିକା ସବୁକୁ ଉପଲବ୍ଧି କଲାପରେ ଶିକ୍ଷକମାନଙ୍କ ଦ୍ୱାରା ସୃଷ୍ଟ ତଥା ଟ୍ରେଣ୍ଡମାଟ୍ରିକ ଶିକ୍ଷକ ସଂଘର ନୂତନ ରୂପ ଏଲିମେଣ୍ଟାରୀ ଶିକ୍ଷକ ସଂଘ ଆଦି ବହୁ ସଂଘ ସାମିଲ ହେଲେ, ଶିକ୍ଷକ ମହାସଂଘର କାୟାବିସ୍ତାର ଦେଖି ସରକାରୀ କଳ ତଥା କ୍ଷମତାସୀନ ରାଜନେତାଗଣ ଆତଙ୍କିତ ହେଉଥିଲେ ।

ଯେଉଁ ତିନୋଟି ସଂଗଠନ ପ୍ରଥମେ ଶିକ୍ଷକ ମହାସଂଘ ସୃଷ୍ଟି କରିଥିଲେ ସେହି ସଂଗଠନର ନେତୃତ୍ୱ ମାନଙ୍କ ମଧ୍ୟରୁ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ପ୍ରାଣପ୍ରତିଷ୍ଠାତା ଶିକ୍ଷକ ଗୌରବ ସ୍ୱର୍ଗତ ବନମାଳୀ ବ୍ରହ୍ମଚାରୀ ଶିକ୍ଷକମହସଂଘର ସଭାପତି ଭାବେ ନିର୍ବାଚିତ ହେବା ସଂଗେ ସଂଗେ ଅଧ୍ୟାପକ ଅବନୀ କୁମାର ବରାଳ ସାଧାରଣ ସଂପାଦକ ଭାବେ ସର୍ବସମ୍ମତି କ୍ରମେ ନିର୍ବାଚିତ ହୋଇଥିଲେ ।

ମିଳିତ ଶିକ୍ଷକ କ୍ରୀୟାନୁଷ୍ଠାନ କମିଟିର କାର୍ଯ୍ୟକାଳ ସମାପ୍ତ ହୋଇ ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ବା ଏ.ଓ.ଏଫ.ଟି.ଓ ଏହି ତାରିଖରୁ ତାର ସାଂଗଠନିକ କାୟା ଏପରି ବିସ୍ତାର କଲା ଯେ ଓଡିଶାର ବହୁ ସରକାରୀ – ବେସରକାରୀ ସଂଗଠନ ସ୍ୱତଃ ଆକର୍ଷିତ ହୋଇ ଶିକ୍ଷକ ମହାସଂଘରେ ଆଫିଲିଏସନ୍ ପାଇଁ ଆବେଦନ କଲେ ଏବଂ ସାମିଲ ହେଲେ । ଚାହୁଁ ଚାହୁଁ ଶିକ୍ଷକ ମହାସଂଘ ଏକ ଦୃଢ଼ ଲଢୁଆ ସଂଗଠନରେ ପରିଣତ ହେଲା ।

ଶିକ୍ଷକମହାସଂଘର ନେତୃତ୍ୱ ସମ୍ମୁଖରେ ଥିଲା ଅସୁମାରୀ ସମସ୍ୟା । ଶିକ୍ଷକର ସମସ୍ୟା, ଶିକ୍ଷାର ସମସ୍ୟା ଓ ଶିକ୍ଷାନୁଷ୍ଠାନର ସମସ୍ୟା । ଶିକ୍ଷକ ସଂଘ ଶିକ୍ଷକମାନଙ୍କ

ପେଟପାଟଣା ସମସ୍ୟା ନେଇ ସଂଗ୍ରାମ କରିବା ସ୍ୱଭାବିକ । ମାତ୍ର ଶିକ୍ଷକ ମହାସଂଘର କିଛି ନେତା ରାଜ୍ୟର ଶିକ୍ଷା ସମସ୍ୟାର ସମାଧାନ ପାଇଁ ସମତାଳରେ ସଂଗ୍ରାମ କରିବାପାଇଁ ନିଷ୍ପତ୍ତି ନେଲେ । ଶିକ୍ଷା ସମସ୍ୟା ଅତ୍ୟନ୍ତ ଉତ୍କଟ ଥିବାବେଳେ ଶିକ୍ଷା ଓ ଶିକ୍ଷାୟତନର ବିକାଶ ସହ ସମସ୍ତଙ୍କ ପାଇଁ ସମାନ ଶିକ୍ଷା ବ୍ୟବସ୍ଥା ଏବଂ ଶିକ୍ଷା ବ୍ୟବସ୍ଥାର ଷ୍ଟ୍ରକଚରାଲ ସୋପ୍ ବା ଢ଼ାଞ୍ଚାଗତ ପରିବର୍ତ୍ତନ ଥିଲା ଏକାନ୍ତ ଜରୁରୀ । ୧୯୭୦-୭୧ ବେଳେ ଶିକ୍ଷାର ପରିବର୍ତ୍ତନ କଥା ଶିକ୍ଷାବିଭାଗର ହାକିମ ବା ଶିକ୍ଷାମନ୍ତ୍ରୀମାନଙ୍କର ଚିନ୍ତା ବାହାରର କଥା ଥିଲା । ଶିକ୍ଷକ ମହାସଂଘ ରାଜ୍ୟର ବେସରକାରୀ ସ୍କୁଲ/ କଲେଜ ଶିକ୍ଷକ ଶିକ୍ଷିକାମାନଙ୍କର ସମସ୍ୟାର ସମାଧାନ ପାଇଁ ସରକାରଙ୍କ ଠାରେ ବିଧିବଦ୍ଧ ଦାବି ଉପସ୍ଥାପନ କରିବା ସହ ଦାବି ପୁରଣ ନହେଲେ ଦୁର୍ବାର ଆନ୍ଦୋଳନ ପାଇଁ ଆହ୍ୱାନ ଦେଇଥିଲା । ଅନୁରୂପ ଭାବରେ ରାଜ୍ୟର ଶିକ୍ଷାର ବିକାଶ ନିମନ୍ତେ ଶିକ୍ଷକ-ଅଭିଭାବକ, ଶିକ୍ଷକ-ଛାତ୍ରମାନଙ୍କର ମିଳିତ ବୈଠକ , ଆଲୋଚନା ଚକ୍ର ମାଧ୍ୟମରେ ଜନଗଣଙ୍କ ନିକଟରେ ଶିକ୍ଷାବାର୍ତ୍ତା ସଂଚରିତ କରି ସରକାରଙ୍କ ଠାରେ ଜନଗଣଙ୍କ ଦାବିକୁ ଶିକ୍ଷକ ମହାସଂଘ ପକ୍ଷରୁ ଉପସ୍ଥାପନ କରାଯାଇଥିଲା । ଶିକ୍ଷକ ମହାସଂଘର ଏହି ସାଧୁ ଉଦ୍ୟମକୁ ଏବଂ ସଂଗ୍ରାମକୁ ଓଡିଶାର ଶିକ୍ଷାପ୍ରେମୀ ଜନଗଣ ବହୁଭାବରେ ସମର୍ଥନ ଜଣାଇବା ସଂଗେ ସଂଗେ ଏଥିନିମନ୍ତେ ସ୍ୱତନ୍ତ୍ର ଆନ୍ଦୋଳନ ଗଢ଼ି ତୋଳିବାକୁ ଶିକ୍ଷକ ମହାସଂଘକୁ ଆହ୍ୱାନ ଜଣାଇଥିଲେ । ସାରା ରାଜ୍ୟରେ ୧୯ ଟି ଶିକ୍ଷା ସର୍କଲରେ ମାଧ୍ୟମିକ ଶିକ୍ଷକମାନଙ୍କର ସଂଗଠନ ୪୦ ଟି ଶିକ୍ଷାଜିଲ୍ଲା ଏବଂ ପରବର୍ତ୍ତୀ ସମୟରେ ୭୫ଟି ଶିକ୍ଷାଜିଲ୍ଲାରେ ନିମ୍ନମାଧ୍ୟମିକ ଏବଂ ପ୍ରାଥମିକ ଶିକ୍ଷକମାନଙ୍କର ସଂଗଠନ ଏବଂ କଲେଜ ଶିକ୍ଷକମାନଙ୍କର ରାଜସ୍ୱ ଜିଲ୍ଲାର ସଂଗଠନ ରହିଥିଲା । ମାତ୍ର କୌଣସି ଜିଲ୍ଲା, ସର୍କଲ, ଶିକ୍ଷାଜିଲ୍ଲା ସଂଗଠନ ସକ୍ରୀୟ ନଥିଲେ । ଶିକ୍ଷକ ମହାସଂଘର ଆହ୍ୱାନ କ୍ରମେ ସାରା ରାଜ୍ୟରେ ନିମ୍ନମାଧ୍ୟମିକ, ମାଧ୍ୟମିକ ଓ କଲେଜ ଶିକ୍ଷକ ସଂଘ (ଅଲୋଷ୍ଟ, ଓଷ୍ଟା, ଅଙ୍ଗଟା) ର ସମନ୍ୱୟ ସଂପାଦନ କରାଯାଇ ଶିକ୍ଷା, ଶିକ୍ଷକ ସମସ୍ୟା ସଂପର୍କରେ ଅବହିତ କରାଇ ସଂଗ୍ରାମ ପାଇଁ ସ୍କୁଲ କଲେଜ ଶିକ୍ଷକ, ଶିକ୍ଷାକର୍ମଚାରୀମାନଙ୍କୁ ସଜାଗ ରଖିବାକୁ ଉଦ୍ୟମ ଅବ୍ୟାହତ ଚାଲିଲା ।

ଆମ ରାଜ୍ୟର ସରକାରୀ ପରିଚାଳନାଧିନ ସ୍କୁଲ ଓ କଲେଜ ଶିକ୍ଷକମାନେ ବେସରକାରୀ ସ୍କୁଲ କଲେଜ ଶିକ୍ଷକଙ୍କ ଠାରୁ ଅଧିକ ବେତନ ପାଉଥିଲେ ଏବଂ ସରକାରଙ୍କ ଗେହ୍ଲା ପୁଅ ଭାବରେ ସମସ୍ତ ସୁବିଧା ସୁଯୋଗ ଉପଭୋଗ କରୁଥିଲେ । ଶିକ୍ଷକ ମହାସଂଘ ପକ୍ଷରୁ ୧୯୭୨ ମସିହାରେ ମାର୍ଚ୍ଚ ମାସରେ ସରକାରୀ-ବେସରକାରୀ ଦରମା ହାର ସମୀକରଣ ଦାବୀ କରି କାର୍ଯ୍ୟବନ୍ଦ ଆନ୍ଦୋଳନ ଚଳାଇଲେ । ସେତେବେଳ ଅଧ୍ୟାପକ

ଶରତ କର ଥିଲେ ଶିକ୍ଷାମନ୍ତ୍ରୀ । ସରକାରୀ ଦଳ ଓ ସରକାରୀ କଳ ସହ ଶିକ୍ଷକ ମହାସଂଘର ଯୁଦ୍ଧଂଦେହୀ ଡାକରା । ଭୁବନେଶ୍ୱରରେ ସୂଚନା ଭବନ ପାଖ ପୁରୁଣା ବସ୍‌ଷ୍ଟାଣ୍ଡ । ଏହି ବସଷ୍ଟାଣ୍ଡରେ ହୋଟେଲ ହନେଷ୍ଟି ଥିଲା ଶିକ୍ଷକ ମହାସଂଘ କାର୍ଯ୍ୟାଳୟ ଏବଂ ଆନ୍ଦୋଳନର ତରିକା ସେହିଠାରୁ ହିଁ ସ୍ଥିର ହେଉଥାଏ । ଶାସନରେ ଥାଏ ସ୍ୱତନ୍ତ୍ର ଉତ୍କଳ କଂଗ୍ରେସ ସରକାର । ନବଗଠିତ ଦୁଇବର୍ଷର ଶିଶୁ ଅନୁଷ୍ଠାନ ଶିକ୍ଷକ ମହାସଂଘ । ଉତ୍କଳ କଂଗ୍ରେସ ନେତା ସ୍ୱର୍ଗତ ବିଜୁ ପଟ୍ଟନାୟକ ଥିଲେ ଏ ସରକାରଙ୍କ ରକ୍ଷାକବଚ । ବିଜୁ ବାବୁଙ୍କ ଉଦ୍ୟମରେ ଶିକ୍ଷକ ମହାସଂଘ ଓ ସରକାରଙ୍କ ସହ ଆଲୋଚନା ହୋଇ ଦରମାହାର ସମୀକରଣ ହୋଇଥିଲା । ୧୯୭୨ ମସିହା ମାର୍ଚ୍ଚ ମାସ ୩୧ ତାରିଖରେ ସରକାରଙ୍କ ନିଷ୍ପତ୍ତି ଏପ୍ରିଲ୍ ପହିଲାରେ ପ୍ରେସ୍‌ନୋଟ ଏବଂ ପରେ ପରେ ବିଜ୍ଞପ୍ତି ପ୍ରକାଶ ପାଇଥିଲା ।

୧୯୭୨ ମସିହା ଦରମା ସମୀକରଣ ଆନ୍ଦୋଳନରେ ଶିକ୍ଷକ ମହାସଂଘର ସହଯୋଗୀ ଥିଲେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ନେତା ସ୍ୱର୍ଗତ ଲୋକନାଥ ଚୌଧୁରୀ, ଶ୍ରମିକ ନେତା ସ୍ୱର୍ଗତ ଦୁର୍ଗାଚରଣ ମହାନ୍ତି, ଶ୍ରୀ ଗୋବିନ୍ଦ ମହାନ୍ତି, ଶ୍ରୀ ହରିହର ଦାସ, ଶ୍ରୀ ଦ୍ୱୀତିକୃଷ୍ଣ ପଣ୍ଡା, ଶ୍ରୀ ଶିବାଜୀ ପଟ୍ଟନାୟକ । ଅନେକ ଗଣସଂଗଠନ ଓ ଛାତ୍ର ସଂଗଠନର ନେତାଗଣ ଶିକ୍ଷକ ମହାସଂଘର ଏ ଆନ୍ଦୋଳନକୁ ସମର୍ଥନ ଜଣାଉଥିଲେ । ପ୍ରତି ପଦକ୍ଷେପରେ ବାମପନ୍ଥୀ ନେତୃମଣ୍ଡଳୀ ଏବଂ କଂଗ୍ରେସ ଦଳରୁ ବିନାୟକ ଆଚାର୍ଯ୍ୟଙ୍କ ସମସାମୟୀକ ନେତୃମଣ୍ଡଳୀ ମଧ୍ୟ ସହାୟତା କରୁଥିଲେ । ସ୍ୱର୍ଗତ ଗଂଗାଧର ପାଇକରାୟ, ଦୁର୍ଗାଚରଣ ମହାନ୍ତି, ଶିକ୍ଷକ ମହାସଂଘର ଦୈନନ୍ଦିନ କାର୍ଯ୍ୟାବଳୀ ସହିତ ସଂପୃକ୍ତ ଥିଲେ ଏବଂ ସହାୟତା କରୁଥିଲେ ଏବଂ ପରାମର୍ଶ ଦେଉଥିଲେ ।

୧୯୬୯ ଶିକ୍ଷା ଆଇନ ପାସ୍ ହେଲାପରେ ଆଇନ ଅନ୍ତର୍ଗତ ନିୟମାବଳୀ ପ୍ରସ୍ତୁତ ସରକାରୀ ଅନୁମୋଦନ ହେଲେ ତାହା କାର୍ଯ୍ୟକାରୀ ହେବ । ତାହା ହେବାପାଇଁ ଅନେକ ଦିନ ଲାଗିଗଲା । ୧୯୬୯ ରୁ ୧୯୭୨ ପର୍ଯ୍ୟନ୍ତ କ୍ରମାଗତ ଭାବେ ପୂର୍ଣ୍ଣ ଏବଂ ପ୍ରତ୍ୟକ୍ଷ ବେତନ ଦାନ ପାଇଁ ଶିକ୍ଷକ ମହାସଂଘ ବାରମ୍ବାର ଦାବି ଜଣାଇଆସିଛି ।

ଚାକିରୀ ସର୍ତ୍ତାବଳୀ, ପୂର୍ଣ୍ଣ ପ୍ରତ୍ୟକ୍ଷ ବେତନ ଦାନ ଦାବି ନେଇ ବିଧାନ ସଭା ଅଧିବେଶନ ଚାଲିଥିବା ସମୟରେ ଆଇନ ଅମାନ୍ୟ ଆନ୍ଦୋଳନ ପାଇଁ ଶିକ୍ଷକ ମହାସଂଘର କାର୍ଯ୍ୟକାରୀ କମିଟି ଆହ୍ୱାନ ଦେଇଥିଲେ ଏବଂ ତଦାନିନ୍ତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥିଙ୍କୁ ଚରମ ପତ୍ର ପ୍ରଦାନ କରାଯାଇଥିଲା । ଶିକ୍ଷକ ମହାସଂଘର ପ୍ରାୟୋଜିତ ମହାସଂଗ୍ରାମର ମୁକାବିଲା କରିବାପାଇଁ ବିଧାନ ସଭା ମୁଖ୍ୟ ଫାଟକ ସାମନା ସମସ୍ତ ରାସ୍ତାକୁ ପୋଲିସ ବାହିନୀ ଦ୍ୱାରା ସିଲ କରାଯାଇଥାଏ । କେବଳ ୪ନମ୍ବର ଏମଏଲ୍‌ଏ

କଲୋନୀ ଓ ରବୀନ୍ଦ୍ର ମଣ୍ଡପ ମଝିରେ ଥିବା ରାସ୍ତା ବିଧାନ ସଭା ସାମ୍ନା ଗେଟ ପର୍ଯ୍ୟନ୍ତ ଶିକ୍ଷକ ପଟୁଆର ଯିବାପାଇଁ ଛାଡିଦିଆଯାଇଥିଲା । ୧୯୭୪ ଡିସେମ୍ବର ୧୧ତାରିଖ ଶିକ୍ଷକ ମହାସଂଘର ବିକ୍ଷୋଭ ପଟୁଆର ମଧୁସୂଦନ ନଗର ଅଫିସ ପାଖରୁ ବିଧାନସଭା ପର୍ଯ୍ୟନ୍ତ ଲାଗି ଯାଇଥାଏ । ପ୍ରଥମ ଦିନ ବାଲେଶ୍ୱର ଜିଲ୍ଲାର ପାଳି । ଜେଲ୍‌ଭରୋ ଆନ୍ଦୋଳନ । ରବୀନ୍ଦ୍ର ମଣ୍ଡପ କଡରେ ବିଧାନସଭା ଆଡକୁ ପୋଲିସ କର୍ଡନ ଭାଙ୍ଗିବାକୁ ଯାଇ ପ୍ରାୟ ୨୦୦୦ ଶିକ୍ଷକ ଗିରଫ ହୋଇ ଚନ୍ଦକା ଜଙ୍ଗଲକୁ ବୁହା ହୋଇଗଲେ । ୧୨ ତାରିଖ ଥିଲା ଅବିଭକ୍ତ କଟକ ଜିଲ୍ଲାର ପାଳି । ଅବିଭକ୍ତ କଟକ କହିଲେ ଜଗତସିଂହପୁର, କେନ୍ଦ୍ରାପଡା ଓ ଯାଜପୁର ଜିଲ୍ଲା । ଏହି ଜିଲ୍ଲାରେ ଶିକ୍ଷକ ସଂଘ ଅଲୋଷ୍ଟା, ଓଷ୍ଟା ଏବଂ ଅଙ୍ଗୋଟାର ସଂଗଠନ ସୁଦୃଢ଼ ଥିଲା । ୨୦ହଜାର ଶିକ୍ଷକ ଶିକ୍ଷିକା ରବୀନ୍ଦ୍ର ମଣ୍ଡପ ନିକଟରେ କଡ଼ନ୍ ଭାଙ୍ଗି ବିଧାନସଭା ମୁଖ୍ୟ ଗେଟ୍ ପାଖକୁ ହଜାର ହଜାର ଶିକ୍ଷକ-ଶିକ୍ଷିକା ଗଲାବେଳେ ଆରମ୍ଭ ହେଲା ପୋଲିସ ବାହିନୀର ନିର୍ମମ ଲାଠିଚାଳନା ଏକ ଟିଅରଗ୍ୟାସ ଅପରେସନ । ଶିକ୍ଷକମାନେ ଟିଅର ଗ୍ୟାସ ଧୂଆଁରେ ଦେଖିପାରୁନଥିବାବେଳେ ଲାଠିଚାର୍ଜ ଏପରି ଭାବରେ କରାଗଲା ଯେ ଶିକ୍ଷକ ଶିକ୍ଷିକାମାନେ ବିଧାନସଭା ସାମନା ରାସ୍ତାରେ ରକ୍ତାକ୍ତ ଅବସ୍ଥାରେ ଥିବା ମହିଳା ଶିକ୍ଷୟିତ୍ରୀମାନଙ୍କୁ ବିଧାୟକ ଅଶୋକ ଦାସ , ଭାଗବତ ବେହେରା ଏବଂ ସି.ପି.ଆର ବିଧାୟକମାନେ ନେଇ ମୁଖ୍ୟମନ୍ତ୍ରୀଙ୍କ ବିଧାନସଭା ଅଫିସ ଚାମ୍ବରକୁ ନେଇ ସରକାରଙ୍କ ଦମନ ଲୀଳାର ନଗ୍ନରୂପ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ଦେଖାଇଥିଲେ । ଏହି ଲୋମହର୍ଷଣକାରୀ ଘଟଣା ରାଜଧାନୀର ସଚେତନ ନାଗରୀକ, ଏବଂ ରାଜନେତାମାନଙ୍କୁ ସ୍ତବ୍ଧ କରିଦେଇଥିଲା ।

ସେଦିନ ବିଧାନ ସଭା ପଡିଲା ଉଠିଲା । ମାନ୍ୟବର ବିଜୁ ପଟ୍ଟନାୟକ (ବିରୋଧି ଦଳ ନେତା)ଙ୍କ ନେତୃତ୍ୱରେ ବିରୋଧିଦଳ ଶିକ୍ଷକମାନଙ୍କ ଦାବି ପୂରଣ କରିବାକୁ ଦାବି କଲାବେଳେ ସେତେବେଳେ ସରକାର ଗଠନ କରିବାରେ ସହାୟତା ଯୋଗାଇଥିବା ବାମଦଳର ୭ଜଣ ସଦସ୍ୟ ସ୍ୱର୍ଗତ ଲୋକନାଥ ଚୌଧୁରୀଙ୍କ ନେତୃତ୍ୱରେ ଶ୍ରୀମତୀ ନନ୍ଦିନୀ ଶତପଥିଙ୍କୁ ଚରମ ବାଣୀ ଶୁଣାଇଲେ । ଶିକ୍ଷକମାନଙ୍କ ଯଥାର୍ଥ ଦାବି ପୂରଣ କର ନହେଲେ ସରକାର ଭାଂଗିବ ।ସରକାର ଏପରି ସ୍ଥିତିରେ ଥିଲେ ଯେ, ସିପିଆଇ ବାଲା ସମର୍ଥନ ପ୍ରତ୍ୟାହାର କଲେ ସରକାର ଭାଂଗିବା ସୁନିଶ୍ଚିତ ଥିଲା ।

ଶିକ୍ଷକମାନଙ୍କ ଦାବି ପୂରଣ ପାଇଁ ବିଧାନ ସଭାରେ ଏକ କମିଟି ଗଠନ ହେବାର ଘୋଷଣା ହେଲା । ଏହି କମିଟିରେ ମାନ୍ୟବର ବିଧାୟକ ବିଜୁ ପଟ୍ଟନାୟକ , ଲୋକନାଥ ଚୌଧୁରୀ, ବନମାଳୀ ଦାସ, ଭାଗବତ ବେହେରାଙ୍କ ସହ ସରକାରୀ ଦଳରୁ ତଦାନୀନ୍ତନ

ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାସମହାପାତ୍ର ଥିଲେ । ଶିକ୍ଷକ ମହାସଂଘ ପକ୍ଷରୁ ବନମାଳୀ ବ୍ରହ୍ମଚାରୀ, ଅବନୀ କୁମାର ବରାଳ, କୈଳାସ ଚନ୍ଦ୍ର ମହାପାତ୍ର, ଗୟାଧର ରାଉତ, ଦାଶରଥି ନାୟକ ଏବଂ ବିବେକାନନ୍ଦ ଦାଶ ଏହି କମିଟିରେ ସାକ୍ଷ୍ୟ ଦେଇଥିଲେ । ଏହି କମିଟି ନିଷ୍ପତ୍ତି ନେଲେ ପୂର୍ଣ୍ଣ ଏବଂ ପ୍ରତ୍ୟକ୍ଷ ବେତନ ଶିକ୍ଷକମାନଙ୍କୁ ୧.୪.୭୫ରୁ ଲାଗୁ ହେବ । ଶିକ୍ଷା ନିୟମାବଳୀ ଶିକ୍ଷା ଆଇନ୍‌ର ପ୍ରୋଭିଜନ ଅନୁସାରେ ପ୍ରଣୟନ କରାଯିବ ।

ଡିସେମ୍ବର ୧୩ ତାରିଖରେ ପୁରୀଜିଲ୍ଲା ଶିକ୍ଷକମାନଙ୍କ ଆନ୍ଦୋଳନକୁ ସାମାନ୍ୟ ସ୍ଲୋ ଡାଉନ କରାଯାଇଥିଲା । ୧୨ ତାରିଖରେ ସରକାରଙ୍କ ଦ୍ୱାରା ଶିକ୍ଷକମାନଙ୍କ ଉପରେ ହୋଇଥିବା ନାରକୀୟ ଆନ୍ଦୋଳନର ପ୍ରତିବାଦରେ ଶିକ୍ଷକମାନେ ପ୍ରଚଣ୍ଡ ଆକ୍ରମଣ ପାଇଁ ପ୍ରସ୍ତୁତ ହୋଇ ଆସିଥିବା ବେଳେ ଅଧିକ ଉଗ୍ର ନହେବାକୁ ଶିକ୍ଷକ ମହାସଂଘ କାର୍ଯ୍ୟକାରୀ କମିଟି ବୈଠକରେ ପୂର୍ବଦିନ ବିଳମ୍ବିତ ରାତିରେ ହୋଇଥିବା ନିଷ୍ପତ୍ତି ଅନୁସାରେ ଶିକ୍ଷକମାନଙ୍କୁ କହିଲେ ମଧ୍ୟ ପ୍ରତିଶୋଧ ପରାୟଣ ଶିକ୍ଷକମାନେ ସଂଘର ନେତାମାନଙ୍କୁ ତୀବ୍ର ସମାଲୋଚନା କରିବାକୁ ପଛାଇଲେ ନାହିଁ ।

ବିଧାୟକମାନଙ୍କ ଦ୍ୱାରା ଗଠିତ କମିଟି ୧୩ ତାରିଖରେ ସରକାରଙ୍କୁ ରିପୋର୍ଟ ଦେବେ । ୧୩ ତାରିଖରେ କୌଣସି ଅପ୍ରୀତିକର ପରିସ୍ଥିତି ଯେପରି ନଘଟେ ସେ ପ୍ରତିଶ୍ରୁତି ଶିକ୍ଷକ ମହାସଂଘ ପକ୍ଷରୁ ମୁଖ୍ୟମନ୍ତ୍ରୀଙ୍କୁ ଦିଆଯାଇଥିଲା । ପ୍ରତିଶୃତି ଭଂଗ ନହେଉ, ଶିକ୍ଷକମାନେ ବାସ୍ତବ ଅବସ୍ଥା ବୁଝନ୍ତୁ । କମିଟି ବୈଠକ ବସିଥିବା ବେଳେ ଆନ୍ଦୋଳନ ତୀବ୍ର ନହେବା ପାଇଁ କମ୍ୟୁନିଷ୍ଟ ନେତା ତଥା ଶିକ୍ଷକ ମହାସଂଘ ସେ ସମୟର ମୁଖ୍ୟ ପରାମର୍ଶଦାତା ସ୍ୱର୍ଗତ ଲୋକନାଥ ଚୌଧୁରୀ ନିଜେ ଶିକ୍ଷକମାନଙ୍କ ପାଖକୁ ଯାଇ ବାସ୍ତବ ଅବସ୍ଥା ଜଣାଇ ଆନ୍ଦୋଳନକୁ ସ୍ଲୋ ଡାଉନ କରିଥିଲେ ।

୧୯୭୪ ଡିସେମ୍ବର ଠାରୁ ୧୯୭୫ ମାର୍ଚ୍ଚ ୩୧ ତାରିଖ ପର୍ଯ୍ୟନ୍ତ ଆନ୍ଦୋନଳ ଚାଲୁ ରହିଲା । ପ୍ରତ୍ୟକ୍ଷ ଏବଂ ପୂର୍ଣ୍ଣ ବେତନ ପାଇବା ବେସରକାରୀ ସ୍କୁଲ/କଲେଜ ଶିକ୍ଷକମାନଙ୍କ ପାଇଁ ଥିଲା ଐତିହାସିକ ବିଜୟ । ଏଥିସହିତ ଚାକିରୀ ନିରାପତ୍ତା ନିମନ୍ତେ ଆବଶ୍ୟକ ନିୟମାବଳୀ ପ୍ରଣୟନ ଓ ବିଧାନସଭାରେ ପ୍ରତ୍ୟକ୍ଷ ଦରମା ପ୍ରଦାନ ଅନୁମୋଦନ ଅନୁଦାନ ଲାଭ କଲାପରେ ଚାଲିଥିବା ଆନ୍ଦୋଳନକୁ ସ୍ଥଗିତ ରଖାଯାଇଥିଲା ।

୧୯୭୩ ଏପ୍ରିଲ ପହିଲାରୁ ପ୍ରତ୍ୟକ୍ଷ ବେତନ ପୁରୀ ସର୍କଲରେ ପରୀକ୍ଷାମୂଳକ ଭାବେ ପ୍ରଥମ ପ୍ରଚଳନ କରାଯାଇଥିଲା । ଏଥିରେ ଶିକ୍ଷକଙ୍କ ପ୍ରାପ୍ୟ ଯେତେ ସେତିକି ଶିକ୍ଷକ ସିଧାସଳଖ ପାଇଲେ ।

ସାମଗ୍ରୀକ ଭାବେ ନନ୍ଦିନୀ ଶତପଥୀଙ୍କ ସରକାରଙ୍କ ସମୟରେ ଶିକ୍ଷାବିଭାଗଟି ବିଶେଷ ଚଳଚଞ୍ଚଳ ଥିବାରୁ ଏବଂ ଅନେକ ସମସ୍ୟାର ସମାଧାନ ହୋଇପାରିଥିଲା ।

ପ୍ରତ୍ୟକ୍ଷ ବେତନ ପ୍ରଦାନକୁ ବିରୋଧ କରି ସରକାରୀ ଦଳକୁ ସମର୍ଥନ କରିବା ଉଦ୍ଦେଶ୍ୟରେ ବେସରକାରୀ ସ୍କୁଲ କଲେଜ ପରିଚାଳନା ସମିତିମାନଙ୍କ ପକ୍ଷରୁ କେତେକ ସରକାରଙ୍କୁ ଦାବିପତ୍ର ପ୍ରଦାନ କଲେ । ଏହି ଉଦ୍ୟମକୁ ପ୍ରତିହତ କରିବାପାଇଁ ଶିକ୍ଷକ ମହାସଂଘର ନେତୃତ୍ୱ ଖୁବ୍ ଏକ ଟାଣୁଆ ପରିଚାଳନା ପରିଷଦ ଗଠନ କରି ସରକାରଙ୍କୁ ଦାବିପତ୍ର ଦେଇଥିଲେ । ଏହି ସଂଗଠନ ପକ୍ଷରୁ ରାଜଧାନୀରେ ଏକ ସମାବେଶ ମଧ୍ୟ କରାଯାଇଥିଲା । ଏହି ସଂଗଠନରେ ବରିଷ୍ଠ କମ୍ୟୁନିଷ୍ଟ ନେତା ସ୍ୱର୍ଗତ ପର୍ଶୁରାମ ପଦାତିକରାୟ, ସଭାପତି ଏବଂ ସ୍ୱର୍ଗତ ନବଘନ ଯେନା ସଂପାଦକ ଥିଲେ । ଶିକ୍ଷକ ମହାସଂଘର ସଂପାଦନ ମଣ୍ଡଳି ସଦସ୍ୟ ଶ୍ରୀ ଦାଶରଥି ନାୟକ ସେତେବେଳେ ମଙ୍ଗଳପୁର ବାଳିକା ହାଇସ୍କୁଲରେ ସଂପାଦକ ଥିବାରୁ ସେ ଏହି ସଂଘରେ ରହି ସଂଚାଳନ କରୁଥିଲେ । ଏହି ପରିଚାଳନା ପରିଷଦର ଐତିହାସିକ ପଦକ୍ଷେପ ଶିକ୍ଷକ ମହାସଂଘର ଆନ୍ଦୋଳନ ଧାରାକୁ ପ୍ରୋତ୍ସାହନ ଯୋଗାଇବା ସଂଗେ ସଂଗେ ଦାବୀ ହାସଲରେ ସହାୟକ ହୋଇଥିଲା ।

୧୯୭୭ ରେ Non teaching staff ଙ୍କୁ Direct payment ଦାବି କରି ସରକାରଙ୍କୁ ଦାବିପତ୍ର ଦିଆଯାଇ କ୍ରମାଗତ ଲଢ଼େଇ ଆରମ୍ଭ ହେଲା । ବିଧାନସଭା ସମ୍ମୁଖରେ ୩ୟ ଓ ୪ର୍ଥ ଶ୍ରେଣୀ କର୍ମଚାରୀମାନେ ବିକ୍ଷୋଭ ପ୍ରଦର୍ଶନ କରୁଥାନ୍ତି ଏବଂ ଧାରଣା ମଧ୍ୟ ଦେଇଥାନ୍ତି । ସେହି ସମୟରେ ଆମ ରାଜ୍ୟର ଶିକ୍ଷାମନ୍ତ୍ରୀ ସ୍ୱର୍ଗତ ପ୍ରଦୀପ୍ତ କିଶୋର ଦାସ ଶିକ୍ଷକ ମହାସଂଘର ପ୍ରତିନିଧି ମାନଙ୍କ ସହ ଆଲୋଚନା କରି ତା ୧.୪.୭୭ରୁ ଶିକ୍ଷାକର୍ମଚାରୀମାନଙ୍କୁ ପ୍ରତ୍ୟକ୍ଷ ବେତନ ପ୍ରଦାନ ସ୍କିମରେ ମିଶାଇ ଦେବାପାଇଁ ନିର୍ଦ୍ଦେଶନାମା ବିଧାନ ସଭାର ମୁଖ୍ୟ ଫାଟକ ନିକଟରେ ସମସ୍ତ ଶିକ୍ଷାକର୍ମୀମାନଙ୍କୁ ଉଦ୍‌ବୋଧନ ଦେବା ସଂଗେ ସଂଗେ ଶିକ୍ଷକ ମହାସଂଘର ସଭାପତି ସ୍ୱର୍ଗତ ବନମାଳୀ ବ୍ରହ୍ମଚାରୀ ଏବଂ ସାଧାରଣ ସଂପାଦକ ଅଧ୍ୟାପକ ଅବନୀ କୁମାର ବରାଳଙ୍କୁ ପ୍ରେସ୍‌ନୋଟ ଧରାଇଥିଲେ । ଏହା ମଧ୍ୟ ଶିକ୍ଷକ ମହାସଂଘର ଏକ ଗୁରୁତ୍ୱପୂର୍ଣ୍ଣ ବିଜୟ ।

୧୯୭୬ ଠାରୁ ୧୯୮୮ ପର୍ଯ୍ୟନ୍ତ ଶିକ୍ଷକ ମହାସଂଘ ପକ୍ଷରୁ Teaching & Non-teaching staff ଙ୍କ ପାଇଁ ଛୁଟି ନିୟମ ପ୍ରଣୟନ ଦାବି, ଛାତ୍ରଛାତ୍ରୀଙ୍କ ଦରମା ଛାଡ, ୧୯୮୦ରେ ଗ୍ରାଚୁଇଟି ଏବଂ ପେନସନ ଆଦି ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଉପରେ ଲଢ଼େଇ ଚାଲିଥିବା ବେଳେ ସରକାରୀ ଦଳ ଏବଂ ସରକାରୀ କଳରେ ଚରମ ଉଦାସୀନତା ବିରୁଦ୍ଧରେ ୧୯୮୪ରେ ପି.ଏମ୍.ଜି ଛକରେ ୮୦ ହଜାର ଶିକ୍ଷକ ଶିକ୍ଷିକାଙ୍କ ରାଲି

ସମଗ୍ର ଓଡ଼ିଶାକୁ ତଥା ରାଜଧାନୀ ବାସୀଙ୍କୁ ଏବଂ ପ୍ରଶାସନକୁ ଦୋହଲାଇ ଦେଇଥିଲା । ସମସ୍ତ ଶକ୍ତି ନେଇ ସରକାରୀ ମାଜିଷ୍ଟ୍ରେଟ୍, ପୋଲିସର ଯୁଦ୍ଧଂଦେହି ଡାକରା ସି.ଆର.ପି.ଏଫ.ର କମାଣ୍ଡୋ ବାହିନୀ, ବନ୍ଧୁକ ଗୁଳିଗୋଳା, ଟିଅର ଗ୍ୟାସ ଛାଡିବାପାଇଁ ଏବଂ ପାଣିମାଡ କରିବା ପାଇଁ ସମସ୍ତ ଯୋଦ୍ଧା ଶିକ୍ଷକମାନଙ୍କ ସମ୍ମୁଖରେ ଦଣ୍ଡାୟମାନ । ସରକାରୀ କଳ ଏବଂ ମାନ୍ୟବର ଗୃହସଚୀବ ଓ ମୁଖ୍ୟମନ୍ତ୍ରୀଙ୍କ ସହ ଫୋନ ଚାଲିଛି । ଶିକ୍ଷକମାନଙ୍କ ଧାଡିରେ ଆଗରେ ଅଛନ୍ତି ଓଡିଶାର ତୁଙ୍ଗ ନେତୃମଣ୍ଡଳୀ ବିଜୁ ପଟ୍ଟନାୟକ, ନନ୍ଦିନୀ ଶତପଥୀ, ଲୋକନାଥ ଚୌଧୁରୀ, ଶିବାଜୀ ପଟ୍ଟନାୟକଙ୍କ ସହ ବହୁ ଶିକ୍ଷକ ମହାସଂଘର ନେତୃମଣ୍ଡଳୀ । ଶିକ୍ଷକମାନେ କର୍ଡନ ଭାଂଗିଲେ ଲାଠି ଚାର୍ଜ ସହ ଗୁଳି ଚାଲିବ ଏ ଆଶଙ୍କା ଜମାଟ୍ ବାନ୍ଧିଥାଏ । ପୋଲିସ ମଧ୍ୟ ଆତଙ୍କିତ । ତାଙ୍କ ସଂଖ୍ୟା ଓ ଶିକ୍ଷକମାନଙ୍କ ସଂଖ୍ୟା ତୁଳନାରେ ନଗଣ୍ୟ ଏବଂ ଅପ୍ରୀତିକର ରକ୍ତାକ୍ତ ଲଢ଼େଇରୁ ବିରତ ହେବା ନିମନ୍ତେ ଆଗ ଧାଡିରେ ନେତାମାନେ ଶିକ୍ଷକମାନଙ୍କ ପଟୁଆରକୁ ବିଧାନସଭା ଆଡକୁ ନନେଇ ଶିକ୍ଷକ ମହାସଂଘ କାର୍ଯ୍ୟାଳୟ ଭୌମନଗର ଆଡେ ମୁହାଁଇଦେଲେ । ଏହାଥିଲା ଓଡ଼ିଶାର ପ୍ରାକ୍ ପୁରୁଷମାନଙ୍କର ଏକ ମହନୀୟ ଭୂମିକା । ପୋଲିସ ମହାନିର୍ଦ୍ଦେଶକ, ଏସ.ପି ସମସ୍ତେ ମହାସଂଘ ଅଫିସକୁ ଆସି ଆମନେତା ମାନଙ୍କର ଉଚ୍ଚାଭିଳାଷୀ ନେତୃତ୍ୱକୁ ସଲାମ ଜଣାଇଥିଲେ ।

ମହାସଂଘ କାର୍ଯ୍ୟାଳୟ ସାମନାରେ ହୋଇଥିବା ବିଶାଳ ସମାବେଶରେ ସରକାର ଘୋଷଣା କଲେ ପିଲାମାନଙ୍କୁ ମାଗଣାରେ ଶିକ୍ଷା ଦିଆଯିବ ସବୁଦିନ ପାଇଁ ସ୍କୁଲ ପିଲାମାନଙ୍କର ଦରମା ଛାଡ ହୋଇଗଲା । ଲିଭ ରୁଲ, ଆଡହକ ରେଗୁଲାରାଇଜେସନ, ଛାତ୍ରଛାତ୍ରୀଙ୍କ ଦରମା ଛାଡ, ୧୯୮୦ରେ ପେନସନ ରୁଲରେ ଗ୍ରାଚୁଇଟି ପ୍ରଦାନ ଏବଂ ୮୯ରେ ଶିକ୍ଷକ/ଶିକ୍ଷାକର୍ମୀଙ୍କୁ କେନ୍ଦ୍ରୀୟ ବେତନ ସହ କଲେଜ ଶିକ୍ଷକମାନଙ୍କୁ ୟୁଜିସି ସ୍କେଲ ଦେବାକୁ ନିଷ୍ପତ୍ତି ହେଲା

୧୯୮୪ ରୁ ୧୯୯୪ ଅନୁଦାନ ନୀୟମ ଉପରେ ସରକାରକୁ ଆସିଥିବା ରାଜନୈତିକ ଦଳ, ଏବଂ ଶିକ୍ଷକମାନଙ୍କ ଦାବି ପୂରଣ କରିଦେବା ପ୍ରତିଶ୍ରୁତିରେ ରାଜନେତାମାନେ ଶିକ୍ଷକ ମହାସଂଘକୁ ଭାଗଭାଗ କରିବା ଦିଗରେ ଯତ୍ନଶୀଳ ହେବାର ବିଡମ୍ବନା ଦେଖାଦେଲା । ଶିକ୍ଷକମାନେ ମହାସଂଘ ଆଡୁ ମୁହଁ ଲେଉଟାଇ ହଠାତ୍ ଭର୍ଯ୍ୟାଲାଭ ଅପେକ୍ଷାରେ ଅନୁଦାନ ପାଇବାକୁ ଯୋଗ୍ୟ ଶିକ୍ଷକମାନେ ସ୍ବ ସ୍ବ ସଂଗଠନ ଗଢ଼ି ରାଜନେତାମାନଙ୍କ ହାତବାରିଶି ହୋଇ ବିଜୟୀ ହେବାକୁ ଉଦ୍ୟମ କଲେ । ଯେଉଁ ସଂଗଠନର ହାତ ଲେଉଟିଲେ ପୃଥିବୀ ଲେଉଟୁଥିବା ଏବଂ ଗାଣ୍ଡିବ ଧାରୀ ମାନେ ହାତରେ

ଗାଣ୍ଡିବ ଧାରଣ କରିବା ସମସ୍ତ ଶକ୍ତି ସଂଚୟ କରିଥିଲେ ସେହି ସଂଗଠନର କେତେକ ସୁବିଧାବାଦୀ ଶିକ୍ଷକ ମହାସଂଘର ଗାଣ୍ଡିବକୁ ମଥାରେ ଧରି ବୋହିନେବା କଷ୍ଟକର ହେଲା । ଖୁବ୍ ସହଜରେ ସ୍ୱଳ୍ପ ସମୟରେ ଯେଉଁ ଦାବିହାସଲ ହୋଇପାରିଥାନ୍ତା ସେମାନେ ଚିରାଚରିତ ଆନ୍ଦୋଳନ ପନ୍ଥା ହରାଇ ବ୍ଳକ ଗ୍ରାଣ୍ଟ ନେବାପାଇଁ ବିକଳ ହେଲେ । ଓଡ଼ିଶାର ୧୦୦ ବାଳିକା ହାଇସ୍କୁଲ ସଂଘ ଶିକ୍ଷକ ମହାସଂଘର ନିର୍ଦ୍ଦେଶରେ ପରିଚାଳିତ ହୋଇ କ୍ରମାଗତ ଲଢ଼େଇ ଜାରିରଖିବା ଯୋଗୁଁ ୧୦୦% ଅନୁଦାନ ପାଇବାକୁ ହକ୍‌ଦାର ହୋଇଛନ୍ତି ।"

ମଧ୍ୟରାତ୍ରୀର ବର୍ବରତା : ରାଜ୍ୟର ଅଧିକାଂଶ ଶିକ୍ଷକନେତାଙ୍କ ବର୍ଣ୍ଣନାରୁ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ବାସଭବନ ଆଗରେ ଧାରଣାରତ ଶିକ୍ଷକଙ୍କ ଉପରେ ପେଶାଦାର ଗୁଣ୍ଡାମାନଙ୍କର ବର୍ବରୋଚିତ ଆକ୍ରମଣର ନାରକୀୟ ଚିତ୍ର ପ୍ରତିଫଳିତ ହୋଇଛି । ଏହି ଲେଖକର 'ଓଡିଶା ରାଜନୈତିକ ଇତିହାସର କେତୋଟି ଅଭୁଲା ଅଧ୍ୟାୟ' ପୁସ୍ତକରେ ମଧ୍ୟ ସେଦିନ ମଧ୍ୟରାତ୍ରୀର କଳାକାରନାମା ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଛି । ତେବେ ଏହି ନାରକୀୟ କାଣ୍ଡ ସେପ୍ଟେମ୍ବର ୪ତାରିଖ ରାତ୍ରୀରେ ସଂଗଠିତ ହୋଇଥିଲା ବୋଲି ଅଧିକାଂଶ ଶିକ୍ଷକନେତା ଯାହା ଉଲ୍ଲେଖ କରିଛନ୍ତି ତାହା ଠିକ୍ ନୁହେଁ । ୧୯୬୯ ସେପ୍ଟେମ୍ବର ୬ ତାରିଖ ବିଳମ୍ବିତ ରାତ୍ରିରେ ଘଟିଥିବା ଏହି ଘଟଣାର ବିସ୍ତୃତ ବିବରଣୀ ୮ ତାରିଖର ସମସ୍ତ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା । ଲେଖକର ପୁସ୍ତକରେ ସ୍ଥାନ ପାଇଥିବା ବିବରଣୀ ନିମ୍ନରେ ଉଦ୍ଧାର କରାଗଲା ।

୧୯୬୯ ମସିହାର ଘଟଣା । ଓଡିଶାରେ ବେସରକାରୀ ସ୍କୁଲ ଓ କଲେଜ ଶିକ୍ଷକମାନଙ୍କର ସଂଗଠିତ ଓ ଐକ୍ୟବଦ୍ଧ ଆନ୍ଦୋଳନର ତାହା ଥାଏ ଉଷାକାଳ । ଶିକ୍ଷକ ମହାସଂଘ ସେତେବେଳକୁ ଜନ୍ମ ନେଇନଥାଏ । ବେସରକାରୀ କଲେଜ ଶିକ୍ଷକ ସଂଘ, ଓଡିଶା ମାଧ୍ୟମିକ ବିଦ୍ୟାଳୟ ଶିକ୍ଷକ ସଂଘ ଏବଂ ନିମ୍ନ ମାଧ୍ୟମିକ ବିଦ୍ୟାଳୟ ଶିକ୍ଷକ ସଂଘର କିଛି ପ୍ରମୁଖ କର୍ମକର୍ତ୍ତାଙ୍କ ଉଦ୍ୟମରେ ଶିକ୍ଷକ ସମାଜର ବିଭିନ୍ନ ମୌଳିକ ଦାବି ହାସଲ ପାଇଁ ସମ୍ମିଳିତ ସଂଗ୍ରାମ ଚଳାଇବାକୁ ନିଷ୍ପତ୍ତି ନିଆଯାଇ ଗଠନ କରାଯାଇଥିଲା ଏକ କ୍ରିୟାନୁଷ୍ଠାନ କମିଟି । ପ୍ରତ୍ୟେକ ସଂଘର କର୍ମକର୍ତ୍ତା କ୍ରିୟାନୁଷ୍ଠାନ କମିଟିରେ ସାମିଲ ହୋଇଥିଲେ । ଓଡ଼ିଶାରେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ସରକାର କ୍ଷମତାସୀନ । ଶିକ୍ଷାମନ୍ତ୍ରୀ ଥାଆନ୍ତି ଜନକଂଗ୍ରେସର ଅନ୍ୟତମ ବରିଷ୍ଠ ନେତା ବନମାଳୀ ପଟ୍ଟନାୟକ । ଆଜିକାଲି ଭଳି ଶିକ୍ଷା ବିଭାଗ, ଉଚ୍ଚଶିକ୍ଷା ଓ ଗଣଶିକ୍ଷା ଏପରି ଦୁଇଭାଗରେ ବିଭକ୍ତ ହୋଇନଥାଏ । ଗୋଟିଏ ବିଭାଗ ଅଧୀନରେ ପ୍ରାଥମିକ ସ୍ତରରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ କାର୍ଯ୍ୟ କରିଚାଳିତ ହେଉଥାଏ ।

ବେସରକାରୀ ଶିକ୍ଷାନୁଷ୍ଠାନ ଶିକ୍ଷକମାନଙ୍କର ମିଳିତ କ୍ରିୟାନୁଷ୍ଠାନ କମିଟି ଗଠିତ ହେବାପରେ ସବୁ ଶ୍ରେଣୀର ଶିକ୍ଷକଙ୍କ କେତେକ ସର୍ବନିମ୍ନ ସାଧାରଣ ଦାବିକୁ ନେଇ ଶିକ୍ଷାମନ୍ତ୍ରୀଙ୍କୁ ଏକ ଦାବିପତ୍ର ପ୍ରଦାନ କରାଯାଇଥିଲା । ସମାନ କାର୍ଯ୍ୟ ପାଇଁ ସମାନ ବେତନ ଧାର୍ଯ୍ୟ, ବେସରକାରୀ କଲେଜ ଓ ସ୍କୁଲ ଶିକ୍ଷକମାନଙ୍କ ଦରମା ଓ ଭତ୍ତା ସରକାରୀ ଶିକ୍ଷାନୁଷ୍ଠାନର ଶିକ୍ଷକଙ୍କ ସହିତ ସମାନ କରିବା, ନିଯୁକ୍ତି ପଦୋନ୍ନତି ଏବଂ ଅନ୍ୟାନ୍ୟ ଚାକିରୀ ସର୍ତ୍ତରେ ପରିବର୍ତ୍ତନ ଆଣିବା ଆଦି ଥିଲା ମିଳିତ କ୍ରିୟାନୁଷ୍ଠାନ କମିଟିର ମୁଖ୍ୟ ଦାବି ଏହାକୁ ନେଇ ଶିକ୍ଷାମନ୍ତ୍ରୀଙ୍କୁ ପ୍ରଦାନ କରାଯାଇଥିବା ଦାବି ପତ୍ରରେ ଏକ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଏହା ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ କୁହାଯାଇଥିଲା ତେବେ ସରକାରୀ କଳ ଦାବି ପତ୍ର ଉପରେ ଉଦାସୀନ ମନୋଭାବ ପୋଷଣ କରିବାରୁ କ୍ରିୟାନୁଷ୍ଠାନ ପକ୍ଷରୁ ରାଜଧାନୀରେ ଶିକ୍ଷକମାନଙ୍କର ଏକ ବିରାଟ ଶୋଭାଯାତ୍ରା ବାହାର କରାଯିବା ସଂଗେ ସଂଗେ ଶିକ୍ଷାମନ୍ତ୍ରୀଙ୍କ ବାସଭବନ ସମ୍ମୁଖରେ ଧାରଣା ଓ ଅନଶନ ଆନ୍ଦୋଳନ ଆରମ୍ଭ ହୋଇଥିଲା । ପ୍ରତିଦିନ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଶିକ୍ଷକମାନେ ଦଳ ଦଳ ହୋଇ ଆସି ଧାରଣା ଓ ଅନଶନରେ ଯୋଗ ଦେଉଥାଆନ୍ତି । ଧାରଣା ଦେବା ସମୟରେ ଶିକ୍ଷକମାନେ ସରକାର ବିରୋଧୀ ଧ୍ୱନି ମଧ୍ୟ ଦେଉଥିଲେ । ବାସ୍ତବ କ୍ଷେତ୍ରରେ ଏହା ହିଁ ଥିଲା ଓଡିଶାରେ ଏକ ସୁସଂଗଠିତ ଏବଂ ସମ୍ମିଳିତ ଶିକ୍ଷକ ଆନ୍ଦୋଳନର ଆଦ୍ୟପର୍ବ ।

ଶିକ୍ଷକମାନେ ଶାନ୍ତିପୂର୍ଣ୍ଣ ଉପାୟରେ ସେମାନଙ୍କର ଧାରଣା ଓ ପ୍ରତୀକ ଅନଶନ ଚଳାଇ ରଖିଥିବା ବେଳେ ସେପ୍‌ଟେମ୍ବର ୫ତାରିଖ ଦିନ ପଡ଼ିଥିଲା ଗୁରୁଦିବସ । ଏହି ଅବସରରେ ଶିକ୍ଷକମାନଙ୍କର ଏ ପ୍ରକାର ଆନ୍ଦୋଳନକୁ ଶିକ୍ଷାମନ୍ତ୍ରୀ ନିନ୍ଦା କରିବା ସଂଗେ ସଂଗେ ଏହାକୁ ପ୍ରତ୍ୟାହାର କରିନେବାକୁ ପରାମର୍ଶ ଦେଇଥିଲେ । ଆନ୍ଦୋଳନ ପ୍ରତ୍ୟାହୃତ ନହେଲେ ତା'ର ଶେଷ ପରିଣତି ଯାହା ହେବ, ସେଥିପାଇଁ ଶିକ୍ଷକମାନେ ହିଁ ଦାୟୀ ରହିବେ ବୋଲି ସେ ପ୍ରଚ୍ଛନ୍ନ ଧମକ ମଧ୍ୟ ଦେଇଥିଲେ । ସେହି ସମୟରେ ଜନକଂଗ୍ରେସର ତୁଙ୍ଗନେତା ଡକ୍ଟର ହରେକୃଷ୍ଣ ମହତାବ ବହୁ ସନ୍ଧ୍ୟାରେ ତାଙ୍କ ଦଳର ଶିକ୍ଷାମନ୍ତ୍ରୀଙ୍କ ବାସଭବନକୁ ଆଲୋଚନା ପାଇଁ ଆସୁଥିଲେ । ସ୍ୱତନ୍ତ୍ର-ଜନକଂଗ୍ରେସ ସରକାରର ଜଣେ ପ୍ରଭାବଶାଳୀ ମଙ୍ଗଧର ହୋଇଥିବାରୁ ମହତାବଙ୍କୁ ଦେଖିବା କ୍ଷଣି ଧାରଣାରତ ଶିକ୍ଷକମାନେ ତାଙ୍କର ସହାନୁଭୂତି ପାଇବା ଆଶାରେ ଅଧିକ ଉଚ୍ଚସ୍ୱରରେ ଧ୍ୱନି ଦେଉଥିଲେ । ଶିକ୍ଷକମାନଙ୍କର ଏ ପ୍ରକାର ଆଚରଣ ତାଙ୍କୁ କ୍ରୋଧାନ୍ୱିତ କଲାଭଳି ଜଣାପଡୁଥିଲା । ଶିକ୍ଷକ ଆନ୍ଦୋଳନକୁ ନେଇ ରାଜ୍ୟର ରାଜନୀତି ବେଶ୍ ଉଷ୍ମ ରହିଥିବା ବେଳେ ୧୯୬୯

ସେପ୍ଟେମ୍ବର ୬ ତାରିଖ ମଧ୍ୟରାତ୍ରରେ ଶିକ୍ଷାମନ୍ତ୍ରୀଙ୍କ ବାସଭବନ ସମ୍ମୁଖସ୍ଥ ଧାରଣା ସ୍ଥଳୀରେ ଘଟିଗଲା ଏଭଳି ଏକ ବର୍ବରକାଣ୍ଡ ଯାହା କେବଳ ଓଡ଼ିଶା ନୁହେଁ, ସାରା ଦେଶରେ ଓଡ଼ିଶାର ସୁନାମରେ କଳଙ୍କ ଲେପିଦେଇଥିଲା । ରାଜଭବନ ଛକରୁ ଏଜି ଛକ ପର୍ଯ୍ୟନ୍ତ ଲମ୍ବି ଯାଇଥିବା ପ୍ରଶସ୍ତ ରାଜପଥ ପାର୍ଶ୍ୱରେ ଶିକ୍ଷାମନ୍ତ୍ରୀଙ୍କ ବାସଭବନ । ସେପ୍ଟେମ୍ବର ୬ତାରିଖ ଗଭୀର ରାତ୍ରିରେ ସାରା ରାଜଧାନୀ ନିରବ ନିଶ୍ଚଳ ହେବା ପରେ ଧାରଣାରତ ଶିକ୍ଷକଙ୍କ ଶିବିର ଉପରେ ଆରମ୍ଭ ହୋଇଯାଇଥିଲା ଭଡାଟିଆ ଗୁଣ୍ଡାମାନଙ୍କର ଅମାନୁଷିକ ଆକ୍ରମଣ । ପ୍ରାୟ ୨୫/୩୦ଜଣ ଗୁଣ୍ଡା ହାତରେ ଲାଠି, ଭୁଜାଲି ଓ ଖଣ୍ଡାଧରି ହଠାତ୍ ଧାରଣାରତ ୧୨ଜଣ ଶିକ୍ଷକଙ୍କ ଉପରେ ଆରମ୍ଭ କରିଦେଇଥିଲେ ନୃଶଂସ ଆକ୍ରମଣ । ଅନଶନ ଚାଲାଇ ଦୁର୍ବଳ ହୋଇପଡିଥିବା ଶିକ୍ଷକମାନେ ସେତେବେଳେ ଶୋଇବା ଅବସ୍ଥାରେ ଥିଲେ । ମରଣାନ୍ତକ ଆକ୍ରମଣ ହୋଇଯିବାରୁ ସେମାନେ ପ୍ରାଣବିକଳରେ ଚିତ୍କାର କରି ଦୌଡି ପଳାଇବାକୁ ଉଦ୍ୟମ କରିଥିଲେ ମଧ୍ୟ ଭଡାଟିଆ ସଶସ୍ତ୍ର ଗୁଣ୍ଡାମାନେ ସେମାନଙ୍କୁ ଗୋଡାଇ ଗୋଡାଇ ନିସ୍ତୁକ ପିଟିଥିଲେ । ନିର୍ମମ ଲାଠି ମାଡରେ ଦୁଇଜଣ ଶିକ୍ଷକଙ୍କ ମୁଣ୍ଡ ଫାଟିଯାଇଥିବା ବେଳେ ତିନିଜଣଙ୍କ ଗୋଡ଼ ଭାଙ୍ଗି ଯାଇଥିଲା । ଅନ୍ୟମାନେ ଉଣାଅଧିକେ ଆଘାତ ପାଇଥିଲେ । ଶିକ୍ଷକମାନେ ବସୁଥିବା ତମ୍ବୁକୁ ଗୁଣ୍ଡାମାନେ ଭାଙ୍ଗିଦେଇ ତମ୍ବୁ, ଜରି, ପେଟ୍ରୋମାକ୍ସ ଲାଇଟ୍ ସମେତ ବିଭିନ୍ନ ସାମଗ୍ରୀ ଏବଂ ଶିକ୍ଷକଙ୍କ ଟଙ୍କା ପଇସା ଲୁଟି ନେଇ ରାତ୍ରିର ଘନ ଅନ୍ଧକାର ମଧ୍ୟରେ ଲୁଚି ପଳାଇଯାଇଥିଲେ । ଯିବା ପୂର୍ବରୁ ସେହି ସ୍ଥାନରେ କେତୋଟି ଖାଲି ମଦ ବୋତଲ ପକାଇ ଦେଇଥିଲେ । ଏହାର ଉଦ୍ଦେଶ୍ୟ ଥିଲା ଶିକ୍ଷକମାନେ ରାତିରେ ମଦ ପିଇ ନିଜ ନିଜ ଭିତରେ ପିଟାପିଟି ହୋଇ ଏଭଳି କାଣ୍ଡ ଭିଆଇଛନ୍ତି ବୋଲି ଦର୍ଶାଇ ସେମାନଙ୍କୁ ବଦନାମ କରିବା । ଗୁଣ୍ଡାଙ୍କ ବର୍ବରୋଚିତ ଆକ୍ରମଣରେ ଆହତ ଓ ରକ୍ତାକ୍ତ ଶିକ୍ଷକମାନେ ନିଜକୁ ବଞ୍ଚାଇବାପାଇଁ ଦୌଡିଥିଲେ ସେହି ସ୍ଥାନର ଅନତି ଦୂରରେ ଏଜି ଛକ ପାର୍ଶ୍ୱରେ ରହୁଥିବା ବିରୋଧି ଦଳର ନେତା ବିନାୟକ ଆଚାର୍ଯ୍ୟଙ୍କ ବାସଭବକୁ । ଆଉ ପଛରେ ପଡିରହିଥିଲା ବର୍ବରତାର ସ୍ୱାକ୍ଷର ବହନ କରୁଥିବା ଧାରଣା ଶିବିରର ଧ୍ୱଂସ ସ୍ତୁପ ।

ପରଦିନ ସକାଳେ ବିଜୁଳି ବେଗରେ ପ୍ରଚାରିତ ହୋଇଯାଇଥିଲା ଗଭୀର ନିଶିଥର ଏହି କଳଙ୍କ କାହାଣୀ । ଗଣମାଧ୍ୟମର ପ୍ରତିନିଧିଙ୍କ ସମେତ ବିଭିନ୍ନ ରାଜନୈତିକ ଦଳର ବହୁ ନେତା, ଶିକ୍ଷାବିତ୍ ଓ ବୁଦ୍ଧିବାଦୀ ଘଟଣାସ୍ଥଳ ପରିଦର୍ଶନ କରି ନାରକୀୟ କାଣ୍ଡର ଶେଷ ଚିହ୍ନକୁ ଲକ୍ଷ୍ୟକରି ବ୍ୟଥିତ ହୋଇଥିଲେ । ଦେଶ ବିଦେଶର ସମ୍ବାଦପତ୍ର

ଗୁଡିକ ମଧ୍ୟ ଶାନ୍ତିପୂର୍ଣ୍ଣ ନିରସ୍ତ୍ର ଆନ୍ଦୋଳନକାରୀ ଶିକ୍ଷକଙ୍କ ଉପରେ ଏଭଳି ଜଘନ୍ୟ ଆକ୍ରମଣକୁ ନିନ୍ଦା କରିଥିଲେ । ଏହି ଦୁର୍ଭାଗ୍ୟଜନକ ଘଟଣାର ରହସ୍ୟମୟ ଦିଗଟି ଥିଲା – ଶିକ୍ଷାମନ୍ତ୍ରୀଙ୍କ ସରକାରୀ ବାସଭବନର ମୁଖ୍ୟଫାଟକ ଉପରେ ଜଳୁଥିବା ଉଜ୍ଜ୍ୱଳ ଆଲୋକ ସେଦିନ ସଂଧ୍ୟାରୁ ଲିଭାଇଦିଆଯାଇଥିଲା । ଶିକ୍ଷକମାନଙ୍କୁ ଆକ୍ରମଣ କରିଥିବା ଭଟାଟିଆ ଗୁଣ୍ଡାମାନେ କଳାକନା ବାନ୍ଧିଥିଲେ ଓ କଳା ଜାମା ପିନ୍ଧିଥିଲେ । ଶିକ୍ଷାମନ୍ତ୍ରୀଙ୍କ ବାସଭବନର ପୋର୍ଟିକୋ ଓ ତାଙ୍କର ଶୟନ କକ୍ଷଠାରୁ ଆକ୍ରମଣ ସ୍ଥଳି ମାତ୍ର ୪୦ଗଜ ଦୂରରେ ଥିଲେ ମଧ୍ୟ ଆହତ ଓ ରକ୍ତାକ୍ତ ଶିକ୍ଷକଙ୍କ ବୁକୁଫଟା ଚିତ୍କାର ସତେ ଯେପରି କାହାରିକୁ ଶୁଣାଯାଉନଥିଲା । ଭିତର ଘରର ଆଲୋକ ଗୁଡିକ ମଧ୍ୟ ସେତେବେଳେ ଲିଭାଇ ଦିଆଗଲା । ପୁଲିସ ରିପୋର୍ଟ ଅନୁଯାୟୀ ଶିକ୍ଷାମନ୍ତ୍ରୀଙ୍କ ବାସଭବନରେ ସେଦିନ ପନ୍ଦର ଜଣ ସଶସ୍ତ୍ର ସିପାହୀ ଡିଉଟିରେ ରହିଥିଲେ । ଏତେ ବଡ ବୀଭତ୍ସ କାଣ୍ଡ ଘଟିଚାଲିଥିବା ବେଳେ ସେମାନେ କ'ଣ କରୁଥିଲେ , ତାହା ମଧ୍ୟ ଏକ ପ୍ରଶ୍ନବାଚୀ ହୋଇ ରହିଗଲା । ସେତେବେଳେ ରାଜଧାନୀରେ ରହିଥିଲା ଗୋଟିଏ ମାତ୍ର ପୋଲିସ ଥାନା- 'ରାଜଧାନୀ ଥାନା' ତାହା ଶିକ୍ଷାମନ୍ତ୍ରୀଙ୍କ ବାସଭବନର ମାତ୍ର ଅଧ କିଲୋମିଟର ଦୂରତ୍ୱ ମଧ୍ୟରେ ଅବସ୍ଥିତ । ଅଥଚ ଦୁର୍ବୃତ୍ତମାନେ ଖସି ପଳାଇଯିବା ପରେ ଥାନାରେ ଖବର ଦେବାର ଏକ ଘଣ୍ଟା ପରେ ଯାଇ ପୋଲିସ ଘଟଣାସ୍ଥଳକୁ ଆସିଥିଲେ ଏବଂ ଘଟଣାକୁ ଆଦୌ ଗୁରୁତ୍ୱ ଦେଇନଥିଲେ । ତେଣୁ ଏକ ବିରାଟ ସୁପରିକଳ୍ପିତ ତଥା ଯୋଜନାବଦ୍ଧ ରାଜନୈତିକ ଷଡଯନ୍ତ୍ରର ପର୍ଦ୍ଦାଫାସ କରିବାରେ ପୋଲିସ ଆଦୌ ଆନ୍ତରିକତା ପ୍ରଦର୍ଶନ କରିନଥିଲେ ।

ସମୟ ଗଡ଼ିଚାଲିଲା । ଏହି ଘଟଣାର ଏଗାର ବର୍ଷ ପରେ ୧୯୮୦ ଅକ୍ଟୋବର ୫ତାରିଖ ସଂଧ୍ୟାରେ ଭଗବତୀ ଭବନଠାରେ ଅନୁଷ୍ଠିତ ହେଉଥାଏ ସ୍ୱର୍ଗତ ପ୍ରାଣନାଥ ପଟ୍ଟନାୟକଙ୍କ ସ୍ମୃତିସଭା । ରାଜନୈତିକ କ୍ଷେତ୍ରରେ ସେତେବେଳେ ସନ୍ନ୍ୟାସ ନେଇସାରିଥାନ୍ତି ଉକ୍ତ ନାରକୀୟ ଘଟଣା ସମୟର ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକ । ପ୍ରାଣନାଥଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜଣାଇବାକୁ ଆସିଥିବା ବନମାଳୀ ପଟ୍ଟନାୟକଙ୍କର ସେହିଠାରେ ଭେଟହେଲା ଶିକ୍ଷକ ଆନ୍ଦୋଳନର ପ୍ରମୁଖ କାଣ୍ଡାରୀ ଅବନୀ ବରାଳଙ୍କ ସହ । ଦୀର୍ଘ ୧୧ବର୍ଷର ବ୍ୟବଧାନ ପରେ ଦୁଇଜଣଙ୍କର ଏହାଥିଲା ପ୍ରଥମ ସାକ୍ଷାତକାର । ସେତେବେଳେ ବନମାଳୀ ବାବୁ ହୃଦୟଖୋଲି ସେହି କଳଙ୍କମୟ କାହାଣୀର ବାସ୍ତବ ତଥ୍ୟ ତାଙ୍କ ଆଗରେ ପ୍ରକାଶ କରିଥିଲେ । ଏହି ଘଟଣା ପାଇଁ ସେ ଦାୟୀ ନୁହନ୍ତି,

ମହତାବ ହିଁ ଥିଲେ ଏହି ଷଡଯନ୍ତ୍ରର ରଚୟିତା ଓ ମୁଖ୍ୟ ନାୟକ ତାହା ପ୍ରକାଶ କଲାବେଳେ ସେ ବାଷ୍ପ ଗଦ୍‌ଗଦ୍ ହୋଇଉଠିଥିଲେ । ଓଡ଼ିଶାର ଶିକ୍ଷକ ସମାଜ ଏହି ଅପକର୍ମ ପାଇଁ ତାଙ୍କୁ କ୍ଷମା ଦେବାକୁ ଅବନୀ ବାବୁଙ୍କ ହାତ ଧରି ସେ ଅନୁରୋଧ କରିଥିଲେ । ଦୁହିଁଙ୍କ ସାକ୍ଷାତକାରର ଠିକ୍ ପରଦିନ ଅର୍ଥାତ୍ ଅକ୍ଟୋବର ୬ତାରିଖ ମଧ୍ୟରାତ୍ରିରେ ବନମାଳୀ ପଟ୍ଟନାୟକଙ୍କର ଆକସ୍ମିକ ତିରୋଧାନ ଘଟିଲା ହୃଦଘାତରେ, ଆଉ ସବୁଦିନ ପାଇଁ ଅକୁହା ଓ ଅଜଣା ହୋଇରହିଗଲା ୧୯୬୯ ସେପ୍ଟେମ୍ବର ମଧ୍ୟରାତ୍ରିର କଳାକାରନାମାର କଳଙ୍କିତ ନାୟକଙ୍କ ପରିଚୟ ।

ଶିକ୍ଷକ ମହାସଂଘ ନେତୃତ୍ୱରେ ଗୋଟିଏ ପରେ ଗୋଟିଏ ଆନ୍ଦୋଳନ କ୍ରମଶଃ ତୀବ୍ରତର ହେବାକୁ ଲାଗିଲା । ସମୟକ୍ରମେ ରାଜଧାନୀର କେନ୍ଦ୍ରସ୍ଥଳରେ ଭୌମନଗର ଅଞ୍ଚଳରେ ଏକ ଦୋମହଲା କୋଠାରେ ଖୋଲିଲା ମହାସଂଘର ମୁଖ୍ୟକାର୍ଯ୍ୟାଳୟ । ସେହିଠାରେ ବସି ସମସ୍ତ ଆନ୍ଦୋଳନର ରୂପରେଖ ପ୍ରସ୍ତୁତ କରୁଥାନ୍ତି ମହାନ ନେତା ଅବନୀ ବରାଳ । ସେହି କୋଠା, ସେହି କାର୍ଯ୍ୟାଳୟ ଥିଲା ସମଗ୍ର ଓଡ଼ିଶାର ବେସରକାରୀ ଶିକ୍ଷକ ଓ ଶିକ୍ଷାକର୍ମୀମାନଙ୍କର ତୀର୍ଥଭୂମି । ସେଠି ଭିଡ଼ ଜମେ ଦଳମତ ନିର୍ବିଶେଷରେ ରାଜନେତା, ବିଧାୟକ ଓ ସାଂସଦମାନଙ୍କର । ସମୟେ ସମୟେ ମନ୍ତ୍ରୀମାନେ ବି ଆସିଛନ୍ତି ଆପୋଷ ସମାଧାନର ସୂତ୍ର ବାହାର କରିବା ପାଇଁ । ସେଇଠୁ ପରିଚାଳିତ ହୁଏ ସମସ୍ତ ଆନ୍ଦୋଳନ । ଆନ୍ଦୋଳନରତ ଶିକ୍ଷକମାନଙ୍କର ପଟୁଆର ମଧ୍ୟ ସେଠାରୁ ବାହାରି ଆଗେଇ ଯାଏ ରବୀନ୍ଦ୍ର ମଣ୍ଡପ ଛକରେ ପୋଲିସ କର୍ଡନ ଭାଙ୍ଗିବାକୁ । ଅବନୀଙ୍କ କାର୍ଯ୍ୟ କରିବାର ଶୈଳୀ ଯେପରି ନିଆରା, ସାଂଗଠନିକ ଦକ୍ଷତା ମଧ୍ୟ ସେହିପରି ଅତୁଳନୀୟ । ଚାରିଦଶନ୍ଧିରୁ ଉର୍ଦ୍ଧ୍ୱ ସମୟ ଶିକ୍ଷକ ମହାସଂଘର ନେତୃତ୍ୱ ନେବାଭିତରେ କେବଳ ଓଡ଼ିଶା ନୁହେଁ, ସମଗ୍ର ଦେଶର ଶିକ୍ଷା ସଂପର୍କିୟ ବିଭିନ୍ନ ଆଇନ, ଧାରା ଓ ନିୟମାବଳୀ ତାଙ୍କର ମୁଖସ୍ଥ ହୋଇଯାଇଛି । ମନ୍ତ୍ରୀ, ପ୍ରଶାସକ ଓ ପଦସ୍ଥ ଅଧିକାରୀମାନେ ତାଙ୍କ ସହିତ ଆଲୋଚନା କଲାବେଳେ ଅପ୍ରସ୍ତୁତ ହୋଇପଡନ୍ତି । କାରଣ ନିଜର ଅକାଟ୍ୟ ଯୁକ୍ତି ଏବଂ ବିଦ୍‌ବତ୍ତା ବଳରେ ଶିକ୍ଷକ ସମାଜର ଦାବି ଗୁଡିକୁ ସେ ଏପରି ବଳିଷ୍ଠ ଢ଼ଙ୍ଗରେ ଉପସ୍ଥାପନ କରିଥାନ୍ତି ଯେ ସରକାରୀ କର୍ତ୍ତୃପକ୍ଷ ତା ଆଗରେ ମୁଣ୍ଡ ନୁଆଁଇବାକୁ ବାଧ୍ୟ ହୁଅନ୍ତି । ଚାକିରୀ ସର୍ତ୍ତାବଳୀ, ଅବସରକାଳୀନ ସୁବିଧା ସୁଯୋଗ, ୟୁଜିସି ଦରମା ଆଦି ଯାହାକିଛି ଆଜି ସମ୍ଭବ ହୋଇଛି, ତାହା କେବଳ ଅବନୀଙ୍କ ଅଦମନୀୟ ନେତୃତ୍ୱ ଓ ଦୃଢ଼ ଇଚ୍ଛାଶକ୍ତି ଯୋଗୁଁ ହୋଇପାରିଛି ।

ଅବନୀ ବରାଳଙ୍କ କାର୍ଯ୍ୟଶୈଳୀର ବିଶେଷତ୍ୱ ସଂପର୍କରେ ସୂଚନା ଦେଇ ଅଧ୍ୟାପକ ଭଗବାନ ଜେନା କହନ୍ତି - " ଦୀର୍ଘ ୩୦/୩୫ବର୍ଷର ଶିକ୍ଷକ ଆନ୍ଦୋଳନକୁ ତର୍ଜମା କଲେ ଦେଖାଯାଏ ଅବନୀ ବାବୁ ସାଥୀମାନଙ୍କର ପରାମର୍ଶ ନିଅନ୍ତି, କିନ୍ତୁ ମନରେ ତାଙ୍କର ଏହି ପ୍ରକ୍ରିୟାରେ ଗୋଟିଏ ସିଦ୍ଧାନ୍ତ ଥାଏ । ତାହା ସିଧାସଳଖ ବା ଅନ୍ୟସାଥୀମାନଙ୍କ ସହ ଆଲୋଚନା ଦେଇ ପଦାକୁ ଆସେ , ତାହାହିଁ ସମସ୍ତଙ୍କ ଗ୍ରହଣୀୟ ହୋଇଥାଏ । ସେ ନାନା ପ୍ରକାରର ଆନ୍ଦୋଳନର ପନ୍ଥା ମନରେ ରଖିଥାନ୍ତି । ନିଜର ଅତୀତ ଗଣସଂଗଠନ ସହ କାମ କରିବା ଭିତରେ ଶିଖିଥାନ୍ତି । ପୋଷ୍ଟର ଲେଖିବା, ଅଠା ତିଆରି କରି କାନ୍ଥରେ ପୋଷ୍ଟର ମାରିବା - ଏସବୁ ସେ ନେତୃତ୍ୱର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ଦେଖାଇଦିଅନ୍ତି । ନେତା ହେବ ତ ସବୁ କଥା ଜାଣିବାକୁ ହେବ, କେବଳ ଭାଷଣ ଦ୍ୱାରା ନେତୃତ୍ୱ ପ୍ରକଟିତ ହୁଏନାହିଁ । ସମ୍ମିଳନୀ ସଭାମାନଙ୍କରେ ଅବନୀ ବାବୁଙ୍କ ବକ୍ତବ୍ୟ ଯେତେବେଳେ ସମଗ୍ର ଶ୍ରୋତାମଣ୍ଡଳୀକୁ ସଂପୂର୍ଣ୍ଣ ଗ୍ରାସ କରେ, ସେତେବେଳେ ସେ କୌଣସି ସରକାରୀ ମୁଖପାତ୍ରଙ୍କ ଅଯୌକ୍ତିକ ବକ୍ତବ୍ୟ ବା ଆକ୍ଷେପର ସମ୍ମୁଖୀନ ହୁଅନ୍ତି ।" ଅନ୍ୟତମ ଶିକ୍ଷକନେତା ରାଜକିଶୋର ଖଟୁଆଙ୍କ ବର୍ଣ୍ଣନାରୁ ଅବନୀଙ୍କ ତେଜସ୍ୱୀ ନେତୃତ୍ୱର କିଛିଟା ଝଲକ ଦେଖିବାକୁ ମିଳେ । କେବଳ ଉପେକ୍ଷିତ ଓ ଅବହେଳିତ ଶିକ୍ଷକ ସମାଜର ଦାବି ହାସଲ ପାଇଁ ଯେ ଅବନୀ ବାବୁ ଆଜୀବନ ସଂଗ୍ରାମ କରିଛନ୍ତି ତା ନୁହେଁ, ରାଜ୍ୟ ତଥା ଦେଶରେ ଗୁଣାତ୍ମକ ଶିକ୍ଷାର ବିକାଶ ନିମନ୍ତେ ସେ ନିରନ୍ତର ପ୍ରୟାସ ଜାରି ରଖିଛନ୍ତି । ତାଙ୍କ ଭାଷାରେ - "ଶିକ୍ଷକମାନଙ୍କୁ ସଙ୍ଗଠିତ କରି ବୀରଦର୍ପରେ ସଜାଇ, ଲଢ଼ାଇ ପାଇଁ ତିଆରିକରି ଦୁର୍ବାର ଆନ୍ଦୋଳନ ପାଇଁ ଡାକରା ଦେଇନଥିଲେ ବିବେକହୀନ ସରକାର ଓ ସାମନ୍ତବାଦୀ ଶାସକମାନଙ୍କର କୁଚକ୍ରାନ୍ତକୁ ପରାହତ କରି ଶିକ୍ଷକମାନଙ୍କ ପାଇଁ, ଚାକିରୀ ନିରାପତ୍ତା, ଦରମା ସମୀକରଣ, ଛୁଟି ନିୟମ, ଚାକିରୀ ସର୍ତ୍ତ, ପ୍ରତ୍ୟକ୍ଷବେତନ ପ୍ରଦାନ, ୟୁ.ଜି.ସି. ବେତନ ପ୍ରଦାନ, ପେନ୍‌ସନ୍ ଓ ପେନ୍‌ସନ୍‌ର ମହଙ୍ଗା ଭତ୍ତା ପ୍ରଦାନ ସହିତ ବିଦ୍ୟାଳୟଗୁଡ଼ିକରେ ସରକାରୀକରଣ ସ୍ୱପ୍ନରେ ରହିଯାଇଥାନ୍ତା ।

ଶିକ୍ଷାର ଗୁଣାତ୍ମକ ବିକାଶ ପାଇଁ ଚିନ୍ତା କରୁଥିବା ଏହି ଶିକ୍ଷକ ନେତା ସଭିଙ୍କ ପାଇଁ ଦିଗଦର୍ଶନ ଦେଉଛନ୍ତି, ଯେତେ ପୁସ୍ତକ ଲେଖି ପ୍ରକାଶ କରିଛନ୍ତି, ପ୍ରବନ୍ଧ ମାଧ୍ୟମରେ ଯେତେ ଚେତାବନୀ ସରକାରଙ୍କୁ ଓ ଏ ସମାଜକୁ ଦେଇଛନ୍ତି ତା'ର ତୁଳନା ନାହିଁ । ଯଦି ଓଡ଼ିଶାରେ ପ୍ରକୃତ ଶିକ୍ଷାର ପ୍ରସାର କରିବା ପାଇଁ ସରକାରଙ୍କର ଇଚ୍ଛା ଶକ୍ତି ଥା'ନ୍ତା, ତେବେ ଅବନୀ କୁମାର ବରାଳ ସରକାରଙ୍କର "ଶିକ୍ଷା ପରାମର୍ଶ ଦାତା" ପଦବୀ ମଣ୍ଡନ କରିଥାନ୍ତେ ଏବଂ ଓଡ଼ିଶା ଭାରତ ବର୍ଷରେ ଶିକ୍ଷାରେ ଅଗ୍ରଣୀ ହୋଇଥାନ୍ତା ।

ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ଏହି ମହାନ୍ ନେତାଙ୍କର ସଙ୍ଗଠନ ଦକ୍ଷତାର ପଟାନ୍ତର ନାହିଁ । ତାଙ୍କ କଥାରେ କି କାଉଁରୀ ସ୍ପର୍ଶ ଥାଏ କେଜାଣି ସାଥୀ ସହକର୍ମୀମାନେ ଏକମତ ହୋଇଯାନ୍ତି । ଜଣେ ଦୂର ଦ୍ରଷ୍ଟା ନେତାଭାବେ ତାଙ୍କର ଚିନ୍ତା ଓ ଚେତନା ଶିକ୍ଷକ ଜାତିକୁ ଗୌରବ ପ୍ରଦାନ କରିଛି ।

୧୯୭୧ ଗୁରୁଦିବସ ଦିନ ଗଠନ କରାଯାଇଥିବା ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ସବୁ ସମୟରେ ବିଭିନ୍ନ ଦଳର ସରକାରଙ୍କର ଚକ୍ଷୁଶୂଳ ହୋଇଛି "ପେଷାଦାର ଆନ୍ଦୋଳନକାରୀ" ରୂପେ ସରକାରୀ ବଡ଼ପଣ୍ଡାଙ୍କ ଦ୍ୱାରା ଅଭିହିତ ହୋଇଛି, ମାତ୍ର ଦୃଢ଼ ଓ ସଂକଳ୍ପବଦ୍ଧ ନେତୃତ୍ୱ ସେ ସବୁକୁ ଖାତିର ନକରି ପଦକ୍ଷେପରେ ଆଗେଇଯାଇ ଗୋଟିକ ପରେ ଗୋଟିଏ ନାଯ୍ୟ ଦାବୀ ହାସଲ ଚାଲିଛି । ୧୯୮୪ର କାର୍ଯ୍ୟବନ୍ଦ ଆନ୍ଦୋଳନ ବିଧାନସଭା ସେକ୍ରେଟାରୀଏଟ୍ ଘେରାଓ ଆନ୍ଦୋଳନ ଓ ରାଲି, ୬୦/୭୦ ହଜାର ଶିକ୍ଷକଙ୍କର ସମାବେଶ ତତ୍କାଳୀନ ସରକାରଙ୍କ ନିଦ ହଜାଇ ଦେଇଥିଲା ଏବଂ ଏହା ସମ୍ଭବ ହୋଇଥିଲା ଏହି ଦୃଢ଼ ଚେତା ମଣିଷଟିର କଠୋର ଏବଂ ଦୃଢ଼ ସଂକଳ୍ପ ଯୋଗୁଁ । ସେଇ ସମୟରେ ସାରା ଓଡ଼ିଶାରେ ଶିକ୍ଷକମାନଙ୍କର ପଦଯାତ୍ରା ଓ ଜନସମ୍ପର୍କ ରକ୍ଷା କାର୍ଯ୍ୟକ୍ରମ ଶିକ୍ଷକ ମହାସଂଘକୁ ଏକ ରାଜନୈତିକ ଶକ୍ତିରେ ପରିଣତ କରିଥିଲା । ଏବଂ ବର୍ତ୍ତମାନର ରାଜନୈତିକ ଦଳ ଏଥିରୁ ଜନସମ୍ପର୍କ ଶିକ୍ଷା କରିଥିବା ମନେହୁଏ । ଏହା ଅବନୀ ଭାଇଙ୍କ ସେଇ ଅଦ୍ଭୁତ ମସ୍ତିଷ୍କରୁ ଉଦ୍‌ଭବ ହୋଇଥିଲା ।

ଅବନୀ ଭାଇ କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତବର୍ଷରେ ଏକ ପ୍ରକାର ଶିକ୍ଷାନୀତି ପ୍ରଣୟନର ପ୍ରବକ୍ତା । ଭାରତବର୍ଷର ବିଭିନ୍ନ ଶିକ୍ଷକ, କଲେଜ ଶିକ୍ଷକ ସଂଘ ଓ ସର୍ବୋପରି ଭାରତ ବାହାରେ ସମଗ୍ର ବିଶ୍ୱର ଶିକ୍ଷକମାନଙ୍କର ମହାନ ସଙ୍ଗଠନର ଜଣେ ସ୍ରଷ୍ଟା ଏବଂ ବିଶ୍ୱ ଶିକ୍ଷକ ସଙ୍ଗଠନର ଉପାଧ୍ୟକ୍ଷଭାବେ ଦୀର୍ଘଦିନ ଥିଲେ ।

ଶିକ୍ଷା ଓ ଶାନ୍ତି ପାଇଁ ତାଙ୍କର ପ୍ରୟାସ ଅବର୍ଣ୍ଣନୀୟ । ଏଥିପାଇଁ ଶାନ୍ତି ମିଶନରେ ସେ ଜାପାନର ହିରୋସୀମା, ନାଗାସାକି ସମେତ ଋଷ, ପାକିସ୍ଥାନ, ଆଫଗାନିସ୍ଥାନ ପ୍ରଭୃତି ବହୁ ରାଷ୍ଟ୍ର ପରିଦର୍ଶନ କରି ବିଶ୍ୱ ଭ୍ରାତୃତ୍ୱ ପ୍ରଚାର କରିଛନ୍ତି ।

ଶିକ୍ଷକମାନଙ୍କର ଅପରାଜେୟ ଶକ୍ତିକୁ ସେ ଆକଳନ କରିଥିଲେ । ତାଙ୍କରି ଭାଷାରେ, "ନିରୀହ ଶିକ୍ଷକ ଗୋଷ୍ଠୀର ଶକ୍ତି ହିଁ ସର୍ବୋଚ୍ଚ ଓ ସର୍ବଶ୍ରେଷ୍ଠ ଶକ୍ତି ଯାହାକି ଅଦମ୍ୟ ଓ ଅପ୍ରତିହତ ଏବଂ ଥରେ ସେ ଶାନ୍ତ ଶିକ୍ଷକ ବାଧ୍ୟ ହୋଇ ଆନ୍ଦୋଳନର ପନ୍ଥା

ଗ୍ରହଣ କଲେ ତା'ର ପ୍ରଜ୍ଜ୍ୱଳିତ ବହ୍ନି ଲେଲିହାନ ଶିଖା ମେଲି ଯେ କୌଣସି କ୍ଷମତାକୁ ଜାଳି ପୋଡ଼ି ଛାରଖାର କରିଦେଇପାରେ । ଏକତା ହିଁ ଆମର ଶକ୍ତି । ଆମ୍ଭମାନଙ୍କର ଦୃଢ଼ତା, ନିଷ୍ଠା ଓ ଏକତା ହିଁ ଆମକୁ ଏ ସଂଗ୍ରାମରେ ଜୟଯୁକ୍ତ କରିବ ।"

ଶିକ୍ଷା, ଶିକ୍ଷକ, ଶିକ୍ଷାୟତନର ଉନ୍ନତି କଳ୍ପେ ସମଗ୍ର ଜୀବନର ଚରିଦଶନ୍ଧି କାଳ ନୀରବଚ୍ଛିନ୍ନ ଭାବେ ଶାରୀରିକ, ମାନସିକ ସ୍ତରରେ ଖଟି ଖଟି ସମଗ୍ର ଶିକ୍ଷକ ଜାତିକୁ ଏକତା ସୂତ୍ରରେ ବାନ୍ଧି ଏକ ବିରାଟ ଶକ୍ତିରେ ପରିଣତ କରିବା ପାଇଁ ଅବନୀ ବାବୁଙ୍କର ପ୍ରୟାସ ସଫଳ ହୋଇପାରିଲାନାହିଁ କେତେକ ଅର୍ଥ ଲିପସୁ ପଦ, ପଦବୀ, ଲୋଭି, ଅନଭିଜ୍ଞ ଅପରିଣାମଦର୍ଶୀ ଶିକ୍ଷକମାନଙ୍କର ନିଜର ସ୍ୱାର୍ଥପାଇଁ । ସରକାରୀ କଳର ବିଭେଦକାରୀ ଷଡ଼ଯନ୍ତ୍ରର ଶିକାର ହୋଇ ଶିକ୍ଷକ ଗୋଷ୍ଠୀର ଏକତାକୁ ଭାଙ୍ଗି ସଖି କଣ୍ଢେଇ ସଙ୍ଗଠନରେ ସାମିଲ ହୋଇ ବହୁଧା ବିଭକ୍ତ ହେବା ଫଳରେ ଶିକ୍ଷକଏକତାର ବଳ ଦୁର୍ବଳ ହୋଇଗଲା । ସୁବିଧା ସୁଯୋଗ ମିଳିଗଲା ପରେ ବିଦ୍ୟାଳୟ ସ୍ତରରେ ନୂଆ ହୋଇ ସୃଷ୍ଟି ହୋଇଥିବା ଶିକ୍ଷକ ଗୋଷ୍ଠୀ ସଙ୍ଗଠନ ପ୍ରତି ଆଗ୍ରହ ପ୍ରଦର୍ଶନ କଲେନାହିଁ । ଏପରି ଏକ ସମୟ ଆସିଲା ଶିକ୍ଷକ ମହାସଂଘ ପ୍ରଭାହୀନ ହୋଇପଡ଼ିଲା ।

ମାତ୍ର ଅବନୀ ଭାଇଙ୍କର ଦୃଢ଼ ମନୋବଳ ନଇଁ ପଡ଼ିନଥିଲା । ସମର୍ପିତ ପ୍ରାଣ ଶିକ୍ଷକମାନଙ୍କର ସହଯୋଗ, ସମର୍ଥନ ବଳରେ ସେ ସଙ୍ଗଠନରେ ଦୁର୍ବଳତାକୁ ଦୂର କରିବାକୁ ଚେଷ୍ଟିତ । ଶିକ୍ଷକ ଜାତିର ପ୍ରାତଃସ୍ମରଣୀୟ ବନମାଳୀ ବ୍ରହ୍ମଚାରୀଙ୍କ ବିୟୋଗ ପରେ ସଙ୍ଗଠନରେ ବ୍ୟକ୍ତିବାଦର ପ୍ରଭାବ ଫଳରେ ଏବଂ ରାଜନୈତିକ କାରଣରୁ ଗଣ ଚରିତ୍ରର ହ୍ରାସ ଓ ସରକାରୀକରଣ ଫଳରେ ବେତନ ପ୍ରାପ୍ତିରେ ସ୍ଥିରତା ସଂଗ୍ରାମୀ ଚେତନାକୁ ଗ୍ରାସ କରିବା ହେତୁ ସଙ୍ଗଠନ ଦୁର୍ବଳ ହୋଇଛି । ତଳସ୍ତରରୁ ପୁଣି ଏହାକୁ ସଜାଗ କରିବାକୁ ପଡ଼ିବ । ଉତିଷ୍ଠିତ୍, ଜାଗ୍ରତ, ପ୍ରାପ୍ତ୍ୟ ବରାନ୍ନିବୋଧତ୍ ।"-

ଅବନୀ ବରାଳଙ୍କ ନେତୃତ୍ୱାଧୀନ ଶିକ୍ଷକ ମହାସଂଘ ଗୋଟିଏ ଗୋଟିଏ ସରକାରର କାନମୋଡି କିପରି ରାଜ୍ୟର ହଜାର ହଜାର ବେସରକାରୀ ଶିକ୍ଷକ ଓ ଶିକ୍ଷାକର୍ମୀଙ୍କ ଦାବି ହାସଲ କରିପାରିଥିଲା, ସେହି ସଫଳତାର କାହାଣୀ ବର୍ଣ୍ଣନା କରି ନିଜେ ଅବନୀ ସାପ୍ତାହିକ 'ସ୍ୱଦେଶ' ପତ୍ରିକାକୁ ଏକ ସାକ୍ଷାତକାରରେ କହନ୍ତି -

"ଗତ ଷାଠିଏ ଦଶକ ପର୍ଯ୍ୟନ୍ତ ବିଧିବଦ୍ଧ ଶିକ୍ଷା ନିୟମାବଳୀ ନଥିଲା । ଶିକ୍ଷକମାନଙ୍କର ଚାକିରୀ ସର୍ତ୍ତାବଳୀ ନଥିଲା । ସିଏଲ୍, ଇଏଲ୍, ମହିଳା ଶିକ୍ଷକଙ୍କ ପାଇଁ

ମ୍ୟାଟରନିଟି ଲିଭ୍ ଆଦି କିଛି ନଥିଲା । ମ୍ୟାନେଜମେଣ୍ଟର ଇଚ୍ଛା ଅନିଚ୍ଛା ଉପରେ ସବୁ କିଛି ନିର୍ଭର କରୁଥିଲା । ସମାନ କାମକୁ ସମାନ ଦରମା ନଥିଲା । ସରକାରୀ ସ୍କୁଲ କଲେଜ୍ ଶିକ୍ଷକମାନେ ଯାହା ବେତନ ପାଉଥିଲେ ବେସରକାରୀ ସ୍କୁଲ କଲେଜରେ ସେହି ସମାନ ପାଠ ପଢ଼ାଉଥିବା ଏବଂ ସମାନ ଯୋଗ୍ୟତା ଧାରୀ ଶିକ୍ଷକମାନେ ସେମାନଙ୍କଠାରୁ କମ୍ ବେତନ ପାଉଥିଲେ । ସରକାରୀ ଶିକ୍ଷକମାନଙ୍କ ଠାରୁ ବେସରକାରୀ ସ୍କୁଲ ଶିକ୍ଷକମାନେ ୧୦ ଟଙ୍କା ଓ କଲେଜ ଶିକ୍ଷକମାନେ ୧୫ ଟଙ୍କା କମ୍ ବେତନ ପାଉଥିଲେ । ବେସରକାରୀ କଲେଜ୍ ସରକାରୀ ସ୍ୱୀକୃତି ପାଇବା ପାଇଁ କୌଣସି ନିର୍ଦ୍ଦିଷ୍ଟ ଆଇନ ନଥିଲା । ଶିକ୍ଷା ବିଭାଗୀୟ ଉଚ୍ଚକର୍ତ୍ତାମାନେ ବିଭିନ୍ନ ସମୟରେ ଦେଇଥିବା ସର୍କୁଲାର ଗୁଡ଼ିକୁ ହିଁ 'ଏଜୁକେସନ୍ କୋଡ୍' କୁହାଯାଉଥିଲା । ଡିଏ (ମହଙ୍ଗାଭତା) ମିଳିବାରେ ମଧ୍ୟ ସେମିତି ପାତର ଅନ୍ତର ରହିଥିଲା । ଆମେ ଥରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କୁ ଭେଟି ମହଙ୍ଗାଭତ୍ତା କଥା କହିଥିଲୁ । ସେ ଆଠ ଅଣା ବଢ଼ାଇ ଦେଇଥିଲେ । ଆମ ଅସନ୍ତୋଷକୁ ଲକ୍ଷ୍ୟ କରି ସେ କହିଲେ – "କାନ୍ଦୁଥା ..... ଯାହାପାଉଛ ବାନ୍ଧୁଥା" । ସରକାରୀ ଶିକ୍ଷକଙ୍କ ସାଙ୍ଗରେ ବେସରକାରୀ ଶିକ୍ଷକ ସମାନ କେମିତି ହେବେ ? ସେତେବେଳେ ସମସ୍ତେ ଧରି ନେଇଥିଲେ ଯେ ସରକାରୀ କଲେଜ ଶିକ୍ଷକମାନେ ଅଧିକ ବିଜ୍ଞ, ମେଧାବୀ । ଆମେ ସବୁ କୋଉଠି କିଛି ଚାକିରୀ ନପାଇ ବେସରକାରୀ ସ୍କୁଲ କଲେଜରେ ମାଷ୍ଟର ହୋଇଛୁ । ହଁ, ଏକଥା ସତ ଯେ କିଛି ସମୟ ପାଇଁ ବିଜ୍ଞାନ ଫିଜିକ୍ସ, କେମିଷ୍ଟ୍ରି ଆଦି ବିଷୟରେ ଶିକ୍ଷକ ମିଳୁନଥିବାରୁ ଥାର୍ଡ଼ ଡିଭିଜନରେ ପାସ କରିଥିବା ବ୍ୟକ୍ତିମାନେ ଶିକ୍ଷକ ଚାକିରି କରିଥିଲେ । ସେମିତି ସରକାରୀ ଅନୁଷ୍ଠାନରେ ମଧ୍ୟ ଥିଲେ । ଥରେ ଆମେ ଏକ ହିସାବ ଦେଖାଇଥିଲୁ ଯେ ସରକାରୀ କଲେଜରେ ୩୧୫ ଜଣ ଥାର୍ଡ ଡିଭିଜନବାଲା ଥିବାବେଳେ ବେସରକାରୀ କଲେଜରେ ସେପରି ଶିକ୍ଷକଙ୍କ ସଂଖ୍ୟା ଥିଲା ମାତ୍ର ୭୫ । ଓଡ଼ିଶାରେ ବେସରକାରୀ କଲେଜ ସଂଖ୍ୟା ସରକାରୀ କଲେଜ ସଂଖ୍ୟାଠାରୁ ବହୁ ଅଧିକ । ଆମ ହିସାବ ଦେଖି ଶିକ୍ଷାମନ୍ତ୍ରୀ ଓ ବିଭାଗୀୟ ଉଚ୍ଚ ଅଧିକାରୀମାନେ ତଟସ୍ଥ ହୋଇଯାଇଥିଲେ । ୰ ପ୍ରଫେସର ଗୌରୀ କୁମାର ବ୍ରହ୍ମା ଯେକି ଜଣେ ବାଗ୍ମୀ ଏବଂ ସ୍ୱନାମଧନ୍ୟ ଅଧ୍ୟାପକ ଭାବେ ଖ୍ୟାତି ଅର୍ଜନ କରିଥିଲେ ସେ ମଧ୍ୟ ଥାର୍ଡ଼ ଡିଭିଜନରେ ପାସ କରି କ୍ରାଏଷ୍ଟ କଲେଜରେ ଚାକିରୀ କରୁଥିଲେ । ତାଙ୍କ ବିଦ୍ୱତ୍ତାରେ ପ୍ରୀତ ହୋଇ ସରକାର ତାଙ୍କ କ୍ୱାଲିଫିକେଶନ୍ କଣ୍ଡୋନ୍ କରି (ଥାର୍ଡ଼ ଡିଭିଜନ ପାସ ଜନିତ ଅଯୋଗ୍ୟ ପଣିଆକୁ ମାଫ କରି) ସରକାରୀ କଲେଜ ଅଧ୍ୟାପକ ଭାବେ ଗ୍ରହଣ କରିନେଇଥିଲେ । ଏମ୍ଇ ସ୍କୁଲ, ହାଇସ୍କୁଲ ଓ କଲେଜ ଶିକ୍ଷକଙ୍କର ଅଲଗା ସଙ୍ଗଠନ ଥିଲା । ଶିକ୍ଷକ ନେତାମାନଙ୍କର ମଧ୍ୟ ସେମାନଙ୍କ ସମସ୍ୟା ଓ

ତା'ର ସମାଧାନର ପନ୍ଥା ସମ୍ପର୍କରେ ବିଶେଷଧାରଣା ନଥିଲା । ଏମ୍.ଇ ଓ ହାଇସ୍କୁଲ ଏବଂ କଲେଜ ଶିକ୍ଷକନେତାମାନେ ଏକାଠି ବସି ଆଲୋଚନା କଲୁ । ଆମ ସମସ୍ୟା କ'ଣ ସେଗୁଡ଼ିକ ଚିହ୍ନଟ କରାଗଲା ଏବଂ ତଦନୁଯାୟୀ ୪ଟି ମୁଖ୍ୟ ସମସ୍ୟା ରହିଛି ବୋଲି ଆକଳନ କରାଗଲା ।

୧. ସମାନ କାମକୁ ସମାନ ଦରମା

୨. ଭଲ ହେଉ ବା ମନ୍ଦ, ଲିଖିତ ଚାକିରୀ ସର୍ତ୍ତାବଳୀ

୩. ଅବସରକାଳୀନ ସୁବିଧା

୪. କୋଠାରୀ କମିଶନଙ୍କ ଅନୁମୋଦନ ଆମ ରାଜ୍ୟରେ କାର୍ଯ୍ୟକାରୀ ହେବା

ଏହି ମୁଖ୍ୟ ୪ଟି ସମସ୍ୟାକୁ ଆଧାର କରି ଏକ ବିଧିବଦ୍ଧ ଦାବୀପତ୍ର ପ୍ରସ୍ତୁତ କରାଗଲା ଓ ତତ୍‌କାଳୀନ ରାଜ୍ୟପାଳ ଆନସରୀଙ୍କୁ ଭେଟିବା ପାଇଁ ପ୍ରସ୍ତୁତ ହେଲୁ । ସାରା ଓଡ଼ିଶାରୁ ପ୍ରାୟ ୭ ଶହ ଯାଏ ଶିକ୍ଷକ ଶିକ୍ଷୟତ୍ରୀ ରାଜଭବନ ସାମନାରେ ପହଞ୍ଚିଲେ । ଆମେ ସବୁ ରାଜଭବନ ମୁଖ୍ୟ ଫାଟକ ଟିକଟରେ ଜମା ହୋଇଥାଉ । ମାଇନର ସ୍କୁଲର ହାଇସ୍କୁଲ ଓ କଲେଜ ଶିକ୍ଷକଙ୍କର ୩/୪ ଜଣ ପ୍ରତିନିଧି ଭିତରକୁ ଯାଇ ରାଜ୍ୟପାଳ ଆନସରୀଙ୍କୁ ସାକ୍ଷାତ କଲୁ । ଆମ ସମସ୍ୟା ସମ୍ପର୍କରେ ଶୁଣି ସେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଆମଠାରୁ ସେ ଯେତେବେଳେ ଜାଣିବାକୁ ପାଇଲେ ହଜାରେ ଶିକ୍ଷକ ଫାଟକ ପାଖରେ ଠିଆ ହୋଇରହିଛନ୍ତି, ସେ ସାଙ୍ଗେ ସାଙ୍ଗେ ଠିଆହୋଇ ପଡ଼ିଲେ । କହିଲେ - ମୋ ରାଜ୍ୟରୁ ହଜାର ଶିକ୍ଷକ ବାହାରେ ଠିଆ ହୋଇଛନ୍ତି ମୁଁ ଏଠି ବସି ଆଲୋଚନା କରିବି ? ଚାଲ ସେଇଠିକୁ ଯିବା । ରାଜ୍ୟପାଳ ଯେତେବେଳେ ଫାଟକ ପାଖରେ ପହଞ୍ଚିଗଲେ ଶିକ୍ଷକମାନେ ଅଭିଭୂତ ହୋଇ ପଡ଼ିଲେ । ସମସ୍ତେ ଜାଣନ୍ତି ରାଜ୍ୟପାଳଙ୍କ ହାତରେ କିଛି ନାହିଁ । ସେ ଚାହିଲେ ମଧ୍ୟ ଦାବୀ ପୂରଣ କରିପାରିବେ ନି । କିନ୍ତୁ ତାଙ୍କ ଆଚରଣ, ମନୋଭାବ (ସହୃଦୟତାରେ)ରେ ସମସ୍ତେ ଅଭିଭୂତ ହୋଇଗଲେ ।

ମୁଁ ଦେଖିଛି... ମୋର ଅଭିଜ୍ଞତାରୁ କହୁଛି - ନେତାମାନଙ୍କର ଏ ରକମର ଆଚରଣ, ବହୁ ବଡ଼ ସମସ୍ୟାର ସହଜ ସମାଧାନ ପାଇଁ ବାଟ ଫିଟାଇଦେଇ ଥାଏ ।

ରାଜ୍ୟପାଳ ମହୋଦୟ ଆମ ଦାବୀପତ୍ର ଉପରେ ଷ୍ଟ୍ରଙ୍ଗ ନୋଟ ଦେଇ ସରକାରଙ୍କୁ ପଠାଇ ଦେଇଥିଲେ । ଏମ୍.ଇ ସ୍କୁଲ ନେତା ବନମାଳୀ ବ୍ରହ୍ମଚାରୀ ଓ ହାଇସ୍କୁଲ

ଶିକ୍ଷକନେତା କୈଳାସ ମହାପାତ୍ର ଓ କଲେଜ ଶିକ୍ଷକଙ୍କ ପକ୍ଷରୁ ମୁଁ (ଅବନୀ ବରାଳ)ଙ୍କୁ ନେଇ ଆବାହକ ମଣ୍ଡଳୀ ଗଢ଼ା ହେଲା ଓ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ କମିଟି ବିଧିବଦ୍ଧ ଭାବେ ଗଠିତ ହେଲା । ମୁଁ ଏହି ତିନିଜଣିଆ ଆବାହକ ମଣ୍ଡଳୀର ଆବାହକ ରହିଲି । ପରବର୍ତ୍ତୀ ସମୟରେ ଏହା ଶିକ୍ଷକ ମହାସଂଘର ରୂପ ନେଲା । ଭୁବନେଶ୍ୱରର ଆମର କୌଣସି ଅଫିସ ଗୃହ ନଥିଲା । ସେତେବେଳେ ରାଜେନ୍ଦ୍ର ନାରାୟଣ ସିଂଦେଓ ମୁଖ୍ୟମନ୍ତ୍ରୀ, ଜନକଂଗ୍ରେସର ବନମାଳୀ ପଟ୍ଟନାୟକ ଶିକ୍ଷାମନ୍ତ୍ରୀ ଓ ବିନାୟକ ଆଚାର୍ଯ୍ୟ ବିରୋଧୀ ଦଳ ନେତା ଥାଆନ୍ତି । ବିନାୟକ ବାବୁ ପୂର୍ବରୁ ହାଇସ୍କୁଲ ଶିକ୍ଷକ ସଂଘ, ଓଷ୍ଟାର ସାଧାରଣ ସମ୍ପାଦକ ଥିଲେ । ତାଙ୍କୁ ଅନୁରୋଧ କରି ତାଙ୍କ କ୍ୱାଟରରୁ ୨ଟି କୋଠରୀକୁ ଆମେ ଶିକ୍ଷକ ମହାସଂଘ ଅଫିସ ଭାବେ ବ୍ୟବହାର କଲୁ । ଏମିତିକି ତାଙ୍କ ଅଫିସ ଷ୍ଟାଫ୍ ଷ୍ଟେନୋ ପ୍ରମୁଖ ଆମ କାର୍ଯ୍ୟରେ ବହୁ ସହାୟତା କରିଛନ୍ତି ।

୧୯୬୯ ମସିହାର ଅଗଷ୍ଟରେ ପ୍ରାୟ ଏକ ହଜାର ଶିକ୍ଷକ ଏକ ଶୋଭାଯାତ୍ରାରେ ଆସି ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କୁ ୪ ଦଫା ସମ୍ବଳିତ ଦାବୀପତ୍ର ଦେଲୁ ଏବଂ ସେହିଦିନରୁ ତାଙ୍କ ବାସଭବନ ସାମନାରେ ଧାରଣାରେ ବସିଲୁ । ପ୍ରତିଦିନ ଗୋଟିଏ ଗୋଟିଏ ଜିଲ୍ଲାର ଶିକ୍ଷକମାନେ ଆସି ଧାରଣାରେ ବସୁଥିବା ବେଳେ ସାରା ରାଜ୍ୟ ବୁଲି ଶିକ୍ଷକମାନେ ସଭା କରୁଥାନ୍ତି । ସ୍କୁଲ କଲେଜରେ ତଥା ସନ୍ଧ୍ୟାବେଳେ କୌଣସି କୌଣସି ଗାଁ ମଝିରେ କ୍ଲାସ ବନ୍ଦ ନକରି ଏହି କାର୍ଯ୍ୟକ୍ରମ ଚାଲୁଥିଲା । ସମଗ୍ର ରାଜ୍ୟରେ ଶିକ୍ଷକଙ୍କ ଦାବୀ ପ୍ରତି ସମର୍ଥନ ଓ ସହାନୁଭୂତିର ଜୁଆର ସୃଷ୍ଟି ହେଲା । ଏବେ ତ ଶିକ୍ଷକମାନେ ସାଧାରଣ ଲୋକଙ୍କ ପାଖକୁ ଯିବାକୁ ଡରୁଛନ୍ତି । କିନ୍ତୁ ଆମେ ବ୍ଲକ୍ ଏମିତି କି ପଞ୍ଚାୟତ ସ୍ତରରେ ସଭାକରି ଜନସମର୍ଥନ ହାସଲ କରୁଥିଲୁ । ସରକାରଙ୍କ ଉପରେ ସବୁଆଡୁ ଚାପ ପଡୁଥାଏ ।

୧୯୬୯ ସେପ୍ଟେମ୍ବର ୫ ତାରିଖ । ସେଦିନ ଶିକ୍ଷାମନ୍ତ୍ରୀଙ୍କ ବାସଭବନ ସାମନାରେ ଧାରଣା ଦେବାର ପାଳି ଗଞ୍ଜାମ ଜିଲ୍ଲା ଶିକ୍ଷକଙ୍କର ଥାଏ । ଜିଲ୍ଲା ଶିକ୍ଷକନେତା ତଥା ତତ୍କାଳର ଓଷ୍ଟାର ସାଧାରଣ ସମ୍ପାଦକ ବିନାୟକ ଆଚାର୍ଯ୍ୟଙ୍କ ପରମ ମିତ୍ର ରଘୁନାଥ ପାଢ଼ିଙ୍କ ନେତୃତ୍ୱରେ ଶିକ୍ଷକମାନେ ଧାରଣାରେ ବସିଥାନ୍ତି । ସେହିଦିନ ରାତି ଅଧରେ କେତେ ଜଣ ଗୁଣ୍ଡା ଶ୍ରେଣୀୟ ଲୋକ ହଠାତ୍ ଶିକ୍ଷକଙ୍କ ଉପରେ ଆକ୍ରମଣ କଲେ । ଶିକ୍ଷକମାନେ ମାଡ଼ଖାଇ ରକ୍ତଜୁଡୁବୁଡୁ ହୋଇ ଏଣେତେଣେ ଧାଇଁବାରେ ଲାଗିଲେ । ବର୍ତ୍ତମାନ ଯେଉଁଠି ମୁଖ୍ୟମନ୍ତ୍ରୀଙ୍କ ଅଭିଯୋଗ ଶୁଣାଣୀ ପ୍ରକୋଷ୍ଠ ରହିଛି ସେଠାରେ ସର୍କିଟ

ହାଉସ୍ ଥିଲା ଏବଂ ରାଜ୍ୟର ୨ଜଣ ବରିଷ୍ଠ ଅଫିସର ବସି ଗପସପ କରୁଥିଲେ । କିଛି ଶିକ୍ଷକ ରକ୍ତଜୁଡୁବୁଡୁ ହୋଇ ରକ୍ଷାକର ରକ୍ଷାକର ବୋଲି ଚିତ୍କାର କରି ସେଠି ପହଞ୍ଚିଗଲେ । ସେମାନେ ଭିତରୁ ଜଣେ ପୋଲିସ ଅଫିସର ଯିଏ କୋରାପୁଟ ଏସ୍.ପି. ଥିଲେ, କ୍ୟାପିଟାଲ ଥାନାକୁ ଫୋନ୍ କରିଦେଲେ । ଥାନାବାଲା ଆସିଲେ । ମାତ୍ର କୌଣସି କାର୍ଯ୍ୟାନୁଷ୍ଠାନ ହେଲାନି । ୬ ତାରିଖ ସକାଳେ ଏହି ଖବର ପାଇବା ପରେ ମୁଁ ସମାଜ ସମ୍ପାଦକ ସ୍ୱର୍ଗୀୟ ରାଧାନାଥ ରଥ କଳିଙ୍ଗ ସମ୍ପାଦକ ସ୍ୱର୍ଗୀୟ ସୁରେନ୍ଦ୍ର ମହାନ୍ତିଙ୍କୁ ଫୋନ୍ କରି ସମସ୍ତ ବିଷୟ କହିଲି । ସେମାନେ ଘଟଣା ସ୍ଥଳକୁ ଆସି ଅବସ୍ଥା ଅନୁଧ୍ୟାନ କରିଥିଲେ । କେବଳ 'ପ୍ରଜାତନ୍ତ୍ର'କୁ ଛାଡ଼ି ରାଜ୍ୟ ଓ ରାଜ୍ୟ ବାହାରର ଅନ୍ୟ ସବୁ ସମ୍ବାଦ ପତ୍ର ଶିକ୍ଷକଙ୍କ ଉପରେ ଆକ୍ରମଣକୁ ଘୋର ନିନ୍ଦା କରିଥିଲେ । ପ୍ରଜାତନ୍ତ୍ର ସାମ୍ବାଦିକ ସ୍ୱର୍ଗୀୟ ବାଳକୃଷ୍ଣ କାନୁନ୍‌ଗୋ ଲେଖିଥିଲେ - ଶିକ୍ଷକମାନେ ରାତିରେ ମଦ ପିଇ ସେଠାକୁ କିଛି ମହିଳାଙ୍କୁ ଆଣି ସମ୍ଭୋଗ କରିଥିଲେ । ସେଠାରେ କିଛି ଭଙ୍ଗା ମଦ ବୋତଲ ଓ ମଲ୍ଲି ମାଳ ପଡ଼ିଥିଲା ବୋଲି ପ୍ରମାଣ ସ୍ୱରୂପ ଦର୍ଶାଯାଇଥିଲା । ତତ୍କାଳର ୟୁ.ଏନ୍.ଆଇର ଓଡ଼ିଶା ପ୍ରତିନିଧି ସାମ୍ବାଦିକ ନିଖିଳ ଚକ୍ରବର୍ତ୍ତୀ ଶିକ୍ଷାମନ୍ତ୍ରୀ ବନମାଳି ପଟ୍ଟନାୟକଙ୍କୁ ପଚାରିଲେ ୫ତାରିଖ ରାତିରେ ଆପଣଙ୍କ ଘର ବାହାର ଲାଇଟ୍ କାହିଁକି ବନ୍ଦ ଥିଲା । ଆପଣଙ୍କ ବାସଭବନର ସିକ୍ୟୁରିଟି ଦାୟିତ୍ୱରେ ଥିବା କର୍ମଚାରୀ କେଉଁଠିଥିଲେ ? ଏ ସମସ୍ତ ପ୍ରଶ୍ନର କୌଣସି ସନ୍ତୋଷଜନକ ଉତ୍ତରମନ୍ତ୍ରୀ ଦେଇପାରିନଥିଲେ । ସେପ୍ଟେମ୍ବର ୬ ବା ୭ ତାରିଖ ଦିନ କଂଗ୍ରେସର ଏକ ରାଲିଥାଏ । ସଭାରେ କଂଗ୍ରେସ ନେତା ବିଜୁ ପଟ୍ଟନାୟକ, ଚିନ୍ତାମଣି ପାଣିଗ୍ରାହୀ ପ୍ରମୁଖ ସ୍ୱତନ୍ତ୍ର ଜନ କଂଗ୍ରେସ ସରକାରର ଶିକ୍ଷା ଶିକ୍ଷକ ଓ ଶିକ୍ଷାୟତନର ପ୍ରତି ଅବହେଳା ଓ ମୁଖ୍ୟତଃ ଶିକ୍ଷକମାନଙ୍କୁ ଗୁଣ୍ଡା ଲଗାଇ ମାଡ଼ ଦେବା ଆଦି ଘଟଣାକୁ ଆଧାର କରି ଭାଷଣ ଦେଇଥିଲେ । ପ୍ରତିବାଦରେ ସେମାନେ ସେପ୍ଟେମ୍ବର ୮ ତାରିଖ ଠାରୁ ବନ୍ଦ ଡାକରା ଦେଲେ । ସେତେବେଳେ ସଂଯୁକ୍ତ ସୋସିଆଲିଷ୍ଟ ଦଳନେତା ରବି ରାୟ ପରେ ଲୋକସଭା ବାଚସ୍ପତି ହେଲେ ମଧ୍ୟ ସେଠାରେ ପହଞ୍ଚି ଆମ ଦାବୀ ପ୍ରତି ସମର୍ଥନ ଜଣାଥିଲେ ।

ସତ କଥା କହିବାକୁ ଗଲେ ଆମ ସଙ୍ଗଠନ ସେତେ ମଜଭୁତ ନଥିଲା । ବନ୍ଦ ପାଳନ କେମିତି ହୁଏ, ଏ ସମ୍ପର୍କରେ ବି ଆମର କୌଣସି ଧାରଣା ନଥିଲା । କିନ୍ତୁ ଆମେ ଦେଖିଲୁ ୭ ତାରିଖରୁ ସ୍କୁଲ କଲେଜ ଗୁଡ଼ିକ ଆପେ ଆପେ ବନ୍ଦ ହୋଇଗଲା । ଓଡ଼ିଶାବାସୀଙ୍କ ସ୍ୱତଃ ସ୍ଫୁର୍ତ୍ତ ସମର୍ଥନ ଶିକ୍ଷକମାନଙ୍କ ପ୍ରତି ଅଜାଡି ହୋଇପଡ଼ିଲା । ଆମ ପାଖରେ ପାଣ୍ଠି ନଥାଏ । ଏହି ଆନ୍ଦୋଳନ ଚାଲିଥିବା ବେଳେ କଟକ ମିଶନ ସ୍କୁଲର ଜଣେ ଶିକ୍ଷକ ମୋ ପାଖକୁ ଆସି କିଛି ଭୋଗ ଖାଇବାକୁ ଦେଲେ । ମୁଁ ଖାଇ ସାରିବା ପରେ ଗୋଟାଏ ଟଙ୍କିକିଆ ନୋଟ୍ ମୋ ହାତକୁ ବଢ଼ାଇ ଦେଇ କହିଲେ ଆନ୍ଦୋଳନକୁ ମୁଁ ଏତିକି ଦେଉଛି । ପ୍ରକୃତରେ ସେଇ ଟଙ୍କାଟି ଶିକ୍ଷକ ମହାସଂଘର ପ୍ରଥମ ପାଣ୍ଠି ସଂଗ୍ରହ । ସେ ନୋଟ୍‌ଟି ଏବେ ମଧ୍ୟ ମହାସଂଘ ଅଫିସରେ ସାଇତା ହୋଇ ରଖାଯାଇଛି । ବିଜୁବାବୁଙ୍କ ପାଖକୁ ଯାଇ ଆନ୍ଦୋଳନ ପାଣ୍ଠି କଥା କହିବାରୁ ସେ ଏକ ହଜାର ଟଙ୍କା ଦେଲେ । ସେମିତି ନନ୍ଦିନୀ ଦେବୀ ମଧ୍ୟ ୫ଶହ ଟଙ୍କା ଦେଇଥିଲେ । ପୁରୁଣା ଭୁବନେଶ୍ୱରର ବସ୍‌ଷ୍ଟାଣ୍ଡରେ ସାଧାରଣ ସଭାରେ ଭାଷଣ ଦେବା ବେଳେ ରବିରାୟ (ପୂର୍ବତନ ବାଚସ୍ପତି ଭାରତ) ଶ୍ରୋତାମାନଙ୍କୁ କହିଲେ ଆପଣମାନଙ୍କ ପାଖରେ ଯାହା ପାଖରେ ଯାହା ଅଛି ଶିକ୍ଷକ ଆନ୍ଦୋଳନ ପାଣ୍ଠିକୁ ସାହାଯ୍ୟ ଦିଅନ୍ତୁ । ସେଇ ସଭାସ୍ଥଳରେ ୬ଶହ ଟଙ୍କା ଆଦାୟ ହୋଇଗଲା । ଆମ ଆନ୍ଦୋଳନକୁ ସମର୍ଥନ ଜଣାଇବାକୁ ଆସିଥିବା ପଶ୍ଚିମବଙ୍ଗ ଶିକ୍ଷକନେତା ୫ହଜାର ଟଙ୍କା ଦେଲେ ଏବଂ କହିଲେ ୪ ସାଥୀ ପ୍ରତୁଲ ଲାହିଡ଼ୀ ୫ ହଜାର ଟଙ୍କା ଏବେ ଦେଉଛି ଏବଂ ଦରକାର ପଡ଼ିଲେ ପଶ୍ଚିମବଙ୍ଗରୁ ୫ହଜାର ଶିକ୍ଷକ ଓଡ଼ିଶା ଶିକ୍ଷକ ଆନ୍ଦୋଳନକୁ ସମର୍ଥନ କରିବାକୁ ଭୁବନେଶ୍ୱର ଆସିବେ ।

ଆନ୍ଦୋଳନ ବେଳେ ଶିକ୍ଷକଙ୍କ ଖାଇବା ପାଇଁ ବର୍ତ୍ତମାନ କେଶରୀ ସିନେମା ହଲ ପାଖରେ ଥିବା ପ୍ରିୟା ସେତେବେଳେ ବାପୁଜୀନଗରରେ ଥିବା ସାଉଥ ଇଣ୍ଡିଆନ୍ ହୋଟେଲ ମାଲିକ ୪ ରାଘବନ୍ ଟଙ୍କାକିଆ ମିଲ ପ୍ୟାକେଟକରି ପଠାଇ ଦେଉଥିଲେ । ଦୈନିକ ୧୫୦୦ ରୁ ୨୦୦୦ ପ୍ୟାକେଟ୍ ସେ ଦିଅନ୍ତି ।

ଆନ୍ଦୋଳନ ଚାଲିଥିବା ବେଳେ ଡଃ ହରେକୃଷ୍ଣ ମହତାବ ଆଲୋଚନା ପାଇଁ ଆମକୁ ଡାକିଲେ ସେ ତାଙ୍କ ଆଡୁ ଏକ ଶିକ୍ଷା କୋର୍ଡ ଓ ଚାକିରୀ ସର୍ତ୍ତାବଳି ଡ୍ରାଫ୍ଟ କରି ଆମକୁ ଦେଖାଇଲେ । କିନ୍ତୁ ଆଲୋଚନା ଫଳପ୍ରଦ ହୋଇନଥିଲା । ଶେଷରେ ସରକାର ତାଙ୍କ ଆଡୁ ଡଃ ପ୍ରାଣକୃଷ୍ଣ ପରିଜାଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କଲେ । ସେହି କମିଟିରେ ଆମକୁ କୋ-ଅପ୍‌ଟ୍ ସଭ୍ୟ ଭାବେ ଗ୍ରହଣ କରିଥିଲେ । କୋ-ଅପ୍‌ଟ୍ ମେମ୍ବର କ'ଣ ଆମର ସେତେବେଳେ କୌଣସି ଧାରଣା ନଥିଲା । ଆମେ ଭାବିଲୁ ବୋଧହୁଏ ଆମକୁ ଅପମାନିତ କରିବାକୁ ଏପରି ହୋଇଛି । ଆମେ ପ୍ରତିବାଦ କଲୁ । ଡଃ ପରିଜା

କମିଶନ ତାଙ୍କ ରିପୋର୍ଟ ଓ ସୁପାରିଶ ଦେଇଥିଲେ ବି ତାହା ଗ୍ରହଣ କରାଯାଇନଥିଲା । ଯଦିଓ ଡଃ ପରିଜାଙ୍କ ସୁପାରିଶ ଅତ୍ୟନ୍ତ ପ୍ରଗତିଶୀଳ ଥିଲା ତଥାପି ସରକାର ତାହା ଗ୍ରହଣ କଲେନି । ଏବେ ବି ତାହା କୌଣସି କାଗଜ ଗୋଦାମରେ ପଡ଼ିଥିବ ।

ଅକ୍ଟୋବର ୧୫, ୧୯୬୯ରେ ରାଜ୍ୟ ବିଧାନ ସଭାରେ ଓଡ଼ିଶା ଏଜୁକେସନ ବିଲ ଗୃହୀତ ହୋଇ ଆଇନରେ ପରିଣତ ହେଲା । ଏଇଟା ଆମ ପାଇଁ ବହୁତ ବଡ଼ ସଫଳତା ଥିଲା । କିନ୍ତୁ ତଥାପି ଏହାର ନିୟମାବଳୀ ଲାଗୁ ହେଲାନି । ରୁଲ୍‌ସ (ନିୟମାବଳୀ) ପ୍ରସ୍ତୁତ ହେବାକୁ ଆହୁରି ୬ବର୍ଷ ଲାଗିଗଲା ।

୧୯୭୦ରେ ଶ୍ରୀ ଶରତ କର ଶିକ୍ଷାମନ୍ତ୍ରୀ ହେଲେ । ସେ ପୂର୍ବରୁ ମୋର ସହକର୍ମୀ ଥିଲେ ଏବଂ ଶିକ୍ଷକ ଆନ୍ଦୋଳନରେ ମଧ୍ୟ ସକ୍ରୀୟ ଥିଲେ । ଆମେ ଭାବିଲୁ ଶିକ୍ଷକମାନଙ୍କ ଦୁଃଖ ଅଙ୍ଗେ ନିଭାଇଛନ୍ତି । ତେଣୁ ସେ ନିଷ୍ପାପର ଭାବେ ଶିକ୍ଷକମାନଙ୍କ ଦୁଃଖ ଦୂର କରିବା ଭଳି କିଛି ପଦକ୍ଷେପ ନେବେ । ସେ ଯାହା ହେଉ ସେ ୧୯୭୦ ଏପ୍ରିଲ ପହିଲାରେ ଏପରି ଏକ ସର୍ଭିସ ରୁଲ କଲେ ଯାହାକୁ ଶିକ୍ଷକମାନେ ଗ୍ରହଣ କଲେନାହିଁ । ଆମେ ସେତେବେଳେ କହିଥିଲୁ - ଆମ ଶିକ୍ଷକନେତା ମନ୍ତ୍ରୀ ହୋଇ ଶିକ୍ଷକମାନଙ୍କୁ ଏପ୍ରିଲଫୁଲ କଲେ । ଶିକ୍ଷକମାନେ ଏହି ନିୟମାବଳୀକୁ ପ୍ରତ୍ୟାଖ୍ୟାନ କଲେ ଓ ଆନ୍ଦୋଳନ ଚାଲୁରହିଲା । ୧୯୭୨ରେ ଶିକ୍ଷାସଚିବ ଥିଲେ ହେରମ୍ବ ନାରାୟଣ ଦାଶ ମହାପାତ୍ର । ପ୍ୟାରୀମୋହନ ମହାପାତ୍ର ଡେପୁଟି ସେକ୍ରେଟାରୀ ଥିଲେ । ସେମାନଙ୍କ ସହାୟତାରେ ଇକ୍ୱାଲାଇଜେନ ଅଫ ପେ ହେଲା । ସର୍ତ୍ତ ଥିଲା ବେସରକାରୀ ଶିକ୍ଷକ ସରକରୀ ଶିକ୍ଷକଙ୍କ ସହ ସମାନ ହାରରେ ବେତନ ପାଇବେ ଏବଂ ଏହା ସର୍ବାଧିକ ୨୦ ଲକ୍ଷ ଟଙ୍କା ମଧ୍ୟରେ ସୀମିତ ରହିବ । ଆଲୋଚନା ବେଳେ ସରକାରଙ୍କ ପକ୍ଷରୁ କୁହାଯାଇଥିଲା ବେସରକାରୀ ଶିକ୍ଷାନୁଷ୍ଠାନକୁ ସରକାରୀ ହାରରେ ବେତନ ଦେଲେ ୨୦ କୋଟି ଟଙ୍କା ଅଧିକ ଖର୍ଚ୍ଚ ହେବ । ଆମେ କହିଲୁ ଏହି ପ୍ରକ୍ରିୟାରେ ରାଜକୋଷ ଉପରେ ମାତ୍ର ୧୨ ଲକ୍ଷ ଟଙ୍କା ଆର୍ଥିକ ବୋଝ ପଡ଼ିବ । ତେଣୁ ଆମ ହିସାବକୁ ସର୍ତ୍ତ କରି ଇକ୍ୱାଲାଇଜେସନ ଅଫ୍ ପେ" ଲାଗୁ ହୋଇଗଲା ଏବଂ ସେଥିରେ ଲେଖା ରହିଲା within a ceiling of 20 lakhs of rupees.

୧୯୭୪ ବେଳକୁ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥା'ନ୍ତି । ଶ୍ରୀ ବଲ୍ଲଭ ପାଣିଗ୍ରାହୀ ଅଳ୍ପଦିନ ପାଇଁ ଶିକ୍ଷାମନ୍ତ୍ରୀ ହୁଅନ୍ତି । ଶ୍ରୀ ବଲ୍ଲଭ ବାବୁ ମୋତେ ଆଲୋଚନା ପାଇଁ ଡାକିଲେ । ମୁଁ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲି । ସର୍ଭିସ ରୁଲ ପରିବର୍ତ୍ତନ ଓ ଦରମା ହାର ସମାନ ଦେବା ଲାଗୁ କରିବା ସମ୍ପର୍କିତ ଦାବୀ ସମ୍ପର୍କରେ ସେ ସବୁକଥା ବୁଝିବା ପରେ ଶ୍ରୀବଲ୍ଲଭ ବାବୁ ମୋତେ କହିଲେ ଆଜି କ୍ୟାବିନେଟ୍ ବୈଠକ ଅଛି ଆପଣ ମାଡ଼ାମ୍‌ଙ୍କୁ କହି ଏଇ

ଇକ୍ୱାଲାଇଜେସନ୍ ଅର୍ଡ଼ରଟିକୁ ଏଜେଣ୍ଡାରେ ପୁରେଇ ଦିଅନ୍ତୁ । ମୁଁ ସେଇଠୁ ନନ୍ଦିନୀ ଦେବୀଙ୍କୁ ଫୋନ କଲି । ସିଏ ପଚାରିଲେ - ତମେ କୋଉଠି ଅଛ ? ମୁଁ କହିଲି ସତ କଥା କହିବି ? ନା ମିଛ କହିବି ? ସିଏମ୍ କହିଲେ କାହିଁକି........ ସତ କହିବାକୁ କିଛି ଆପତ୍ତି ଅଛି ? ମୁଁ କହିଲି ମୁଁ ଏବେ ଶିକ୍ଷାମନ୍ତ୍ରୀଙ୍କ ପାଖରୁ କହୁଛି । ସେ ହସି ହସି କହିଲେ ତମେ ତା' ହେଲେ ଶ୍ରୀ ବଲ୍ଲଭ ବାବୁଙ୍କୁ ପଟେଇ ସାରିଲଣି ।" ତା ହେଲେ ତ ତମ କାମ ହେଲା । ସେହି ଦିନ କ୍ୟାବିନେଟ୍ ବୈଠକରେ ଦରମା ହାର ସମୀକରଣ ପାଶ୍‌ହୋଇ ୧୯୭୨ରେ ଗେଜେଟ୍‌ରେ ବାହାରିଲା । ଏ ଦାବୀ ପଛରେ ଏତେ ଅଧିକ ଆବେଗ ଜଡ଼ିତ ଥିଲା ଯେ, ଅଧାପନା/ ଅଧକ୍ଷ ପଦ ଛାଡ଼ି ବିଧାୟକ ହୋଇଥିବା ଅଧାପକ ବଳରାମ ସାହୁ (କଲେଜ ଶିକ୍ଷକ ସଂଘର ପ୍ରାକ୍ତନ ସମ୍ପାଦକ ଓ ସଭାପତି) ମୋତେ କୁଣ୍ଢାଇ ଧରି ଝରଝର ହୋଇ କାନ୍ଦି ପକାଇଲେ - କହିଲେ ଏତେ ଦିନେ ଆମେ ସଫଳ ହେଲେ ।

ସେହିବର୍ଷ ୧୯୭୪ରେ ଶିକ୍ଷା ଆଇନ୍ କାର୍ଯ୍ୟକାରୀ କରାଯିବାକୁ ଆମେ ଦାବି ଉଠାଇଥିଲୁ ଓ ପୂର୍ବରୁ ଶ୍ରୀ ଶରତ କର ତିଆରି କରିଥିବା ସର୍ଭିସ ରୁଲସ୍ ପରିବର୍ତ୍ତନ କରିବାକୁ ମଧ ଦାବୀ କଲୁ । ସେତେବେଳେ ବିଜୁ ପଟ୍ଟନାୟକ ବିପକ୍ଷ ଦଳ ନେତା ଥାନ୍ତି । ନନ୍ଦିନୀ ଦେବୀ ବିଜୁବାବୁଙ୍କ ଅଧକ୍ଷତାରେ ଏକ ହାଉସ କମିଟି ଗଠନ କଲେ । ତାଙ୍କ ସୁପାରିଶ କ୍ରମେ ନୂଆ ସର୍ଭିସ ରୁଲ ପ୍ରସ୍ତୁତ କରାଗଲା । କେବଳ ଶିକ୍ଷକ ମାନଙ୍କୁ ଅନ୍ୟ ରାଜ୍ୟପରି ରାଜନୈତିକ ଅଧିକାର ବ୍ୟତୀତ ଆମର ଅନ୍ୟ ଦାବୀ ଗ୍ରହଣ କରାଯାଇ ଏହା ପ୍ରସ୍ତୁତ ହୋଇଥିଲା । ବିହାର, ବଙ୍ଗଳା, ଉତ୍ତରପ୍ରଦେଶ ଓ କେରଳ ପ୍ରଭୃତି ରାଜ୍ୟରେ ଶିକ୍ଷକମାନେ ଚାକିରୀରେ ଥାଇ ନିର୍ବାଚନ ଲଢ଼ି ପାରୁଥିଲେ । କିନ୍ତୁ ଓଡ଼ିଶାରେ ଶିକ୍ଷକମାନଙ୍କୁ ସେହି ଅଧିକାରରୁ ବଞ୍ଚିତ କରାଗଲା ।

ଏଥିପୂର୍ବରୁ ୧୯୭୩ରେ ଆମେ ଅନ୍ୟ ଏକ ସଫଳତା ହାସଲ କରିଥିଲୁ । ସରକାର ବେସରକାରୀ ସ୍କୁଲ କଲେଜକୁ ବିଭିନ୍ନ ବ୍ୟୟ ପାଇଁ ସରକାର ଯେଉଁ ସହାୟତା ଦେଉଥିଲେ । ତାହାକୁ ଗ୍ରାଣ୍ଟଇନ୍ ଏଡ୍ କୁହାଯାଇଥିଲା । ଶିକ୍ଷକମାନଙ୍କ ବେତନ ବାବଦ ଗ୍ରାଣ୍ଟ, ବିଲଡ଼ିଂ ବାବଦ ଗ୍ରାଣ୍ଟ ଇତ୍ୟାଦି ଆମେ କହୁଥିଲୁ । ଆମେ ଦାବୀ କରିଥିଲୁ ଶିକ୍ଷକମାନଙ୍କ ବେତନ ବାବଦକୁ ଯେଉଁ ଅନୁଦାନ ଦିଆଯାଉଛି ତାହା ମ୍ୟାନେଜମେଣ୍ଟକୁ ନଦେଇ ସିଧା ସଳଖ ଶିକ୍ଷକମାନଙ୍କୁ ଦିଆଯାଉ । ସରକାରଙ୍କ ପକ୍ଷରୁ କୁହାଗଲା - ଏହା କାର୍ଯ୍ୟକାରୀ କରିବାକୁ ଶିକ୍ଷା ବିଭାଗରେ ଏତେ କର୍ମଚାରୀ ନାହାନ୍ତି - ଆମେ କହିଲୁ ବର୍ତ୍ତମାନ ଯେତିକି କର୍ମଚାରୀ ଅଛନ୍ତି ସେହିମାନେ ହିଁ ଏହି କାର୍ଯ୍ୟ ତୁଲାଇପାରିବେ । ଅଧିକ କର୍ମଚାରୀ ଦରକାର ପଡ଼ିବ ନାହିଁ । ସେତେବେଳେ ପୁରୀ ଜିଲ୍ଲାରେ ଶ୍ରୀ ଶିବରାମ

ପଟ୍ଟନାୟକ ସର୍କଲ ଇନ୍ସପେକ୍ଟର ଥାନ୍ତି । ସେ ଜଣେ ଅତି ଦକ୍ଷ ଏବଂ ସଚ୍ଚୋଟ ଅଫିସର ଥିଲେ । ପରୀକ୍ଷାମୂଳକ ଭାବେ ୧୯୭୩ ମସିହା ଏପ୍ରିଲ୍ ମାସରୁ ସେ ପୁରୀ ଜିଲ୍ଲାରେ ଡାଇରେକ୍ଟ ପେମେଣ୍ଟ ବା ପ୍ରତ୍ୟକ୍ଷ ବେତନ ଦେବା କାର୍ଯ୍ୟକରି ଦେଖାଇ ଦେଲେ । ପୁରା ଦରମା ନହେଉ ଯିଏ ଯେତିକି ଅଂଶ ୨/୩ ଅଂଶ ବା ୩/୪ ଅଂଶ ଅନୁଦାନ ଭାବେ ପାଉଥିଲେ, ସେତିକି ଟଙ୍କା ସିଧାସଳଖ ଶିକ୍ଷକ/ କର୍ମଚାରୀଙ୍କ ପାଖକୁ ଆସିଲା । ଶିବରାମ ବାବୁ ସେତକ ପ୍ରତି ଶିକ୍ଷକ ଅଣଶିକ୍ଷକ (କିରାଣି, ପିଅନ)ଙ୍କ ନାମରେ ପ୍ରତି ମାସର ଦରମା ମନି ଅର୍ଡ଼ର ଯୋଗେ ପଠାଇଦେଲେ । ୧୯୭୩ରେ ସଫଳତାର ସହିତ ପୁରୀ ଜିଲ୍ଲାରେ ପ୍ରତ୍ୟକ୍ଷ ବେତନ ଦାନ କାର୍ଯ୍ୟ ସମାହିତ ହେଲା ।

୧୯୭୪ରେ ଆମେ ନନ୍ଦିନୀ ଦେବୀଙ୍କ ଆଗରେ ପୁରୀ ଜିଲ୍ଲାର ଦୃଷ୍ଟାନ୍ତ ଥୋଇ ସମଗ୍ର ରାଜ୍ୟରେ ପୂର୍ଣ୍ଣ ଦରମାର ଡାଇରେକ୍ଟ ପେମେଣ୍ଟ ଦାବୀ କଲୁ । ସେତେବେଳେ ସେହି ପୁରୁଣା ଫର୍ମୁଲାରେ ୭୫ ଲକ୍ଷ ଟଙ୍କା ଭିତରେ ପ୍ରତ୍ୟକ୍ଷ ବେତନ ପ୍ରଦାନ କରାଯିବ (Direct Payment within ceiling of seventy five lakhs) କରାଯିବ ବୋଲି ସରକାର ଘୋଷଣା କଲେ ଏବଂ ତାହା କାର୍ଯ୍ୟକାରୀ ହେଲା । ୧୯୭୪ ମସିହା ମାର୍ଚ୍ଚ ୧୫ ତାରିଖରେ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରୀମଣ୍ଡଳରେ ୪ଜଣ ବରିଷ୍ଠ ମନ୍ତ୍ରୀ ବିନାୟକ ଆଚାର୍ଯ୍ୟ, ଯଦୁନାଥ ଦାଶ ମହାପାତ୍ର, ସୋମନାଥ ରଥ ଏବଂ ଜଗନ୍ନାଥ ପଟ୍ଟନାୟକ, ସଚିବାଳୟ ଗେଟ୍ ବାହାରେ ସମବେତ ହୋଇଥିବା ସହସ୍ର ସଂଖ୍ୟକ ଶିକ୍ଷକଙ୍କ ଆଗରେ ସରକାରୀ ଘୋଷଣା ପତ୍ରଟି ପାଠକରି ଆମକୁ ହସ୍ତାନ୍ତରିତ କଲେ ।"

ସେହିପରି ୨୦୦୭ ମସିହାରେ କଲିକତାରୁ ପ୍ରକାଶିତ 'ଅଭିମାନ' ପତ୍ରିକାକୁ ଶିକ୍ଷକ ଆନ୍ଦୋଳନର ଏହି ସଂଗ୍ରାମୀ ଯୋଦ୍ଧା ଯେଉଁ ସାକ୍ଷାତକାର ଦେଇଥିଲେ ସେଥିରେ ଉଲ୍ଲେଖ କରିଥିଲେ -

"ପ୍ରଥମରେ ସାରା ଓଡ଼ିଶାର ଶିକ୍ଷା ଓ ଶିକ୍ଷକ ସମାଜ ଅବହେଳିତ ଦୁଃସ୍ଥ ଅବସ୍ଥାରେ ଘରୋଇ ପରିଚାଳନା ସମିତି ମାନଙ୍କର କୋଠିଆ, ବେଠିଆ ଭଳି ଥିଲେ । ଦରମା ଓ ଅତ୍ୟନ୍ତ ନଗଣ୍ୟ ଥିଲା - ଚାକିରୀ ସର୍ତ୍ତ କିଛି ନଥିଲା । ରାତି ପାହିଲା ବେଳକୁ ବିନା କାରଣରେ ଚାକିରୀ ଚାଲିଯାଉଥିଲା । ସେ ଅବସ୍ଥା ନଜାଣିଲେ ଆପଣମାନେ ବୁଝିପାରିବେ ନାହିଁ । ଚାକିରୀରୁ ବହିଷ୍କାର ପାଇଁ ନୋଟିସ ମଧ୍ୟ ଦରକାର ହେଉନଥିଲା । ଗୋଟିଏ ପ୍ରତିଷ୍ଠିତ, ପ୍ରାଚୀନ କଲେଜରେ ପ୍ରସିଦ୍ଧ ଅଧ୍ୟାପକଙ୍କୁ "Your presence does not suit to the spirit of this institution - hence you services are dispensed with" (ଆପଣଙ୍କ ଉପସ୍ଥିତି ଏ ଅନୁଷ୍ଠାନର ଭାବମୂର୍ତ୍ତି ସହିତ ଖାପଖାଉନାହିଁ - ଏଣୁ ଆପଣଙ୍କୁ ବହିଷ୍କାର କରାଗଲା) ବୋଲି ନୋଟିସ ଦିଆଯାଉଥିଲା । ସମ୍ପୃକ୍ତ ଅଧ୍ୟାପକ ପରବର୍ତ୍ତୀ

କାଳରେ ପଶ୍ଚିମବଙ୍ଗର ଗୋଟିଏ ପ୍ରତିଷ୍ଠିତ ସମ୍ବାଦପତ୍ରରେ ସମ୍ପାଦକ ଥିଲେ । ଏ ସ୍ଥିତିକୁ ପରିବର୍ତ୍ତନ କରି, ସର୍ବନିମ୍ନ ଋକିରୀ ସର୍ତ୍ତ, ନିରାପତ୍ତା ଏବଂ ସର୍ବନିମ୍ନ ସ୍ୱୀକୃତ ବେତନ ଏବଂ ଶିକ୍ଷକ ଜଣେ ବୁଢ଼ା ହୋଇଗଲେ ହଡ଼ାବଳଦ ପରି କଂସେଇକୁ ବିକା ହେବା ପରି ବାହାରି ନଯାଇ ସାମାନ୍ୟ ପେନସନ, ଏତିକିପାଇଁ ବ୍ୟାପକ ଆନ୍ଦୋଳନ କରିବାକୁ ପଡ଼ିଥିଲା । ୟା ଠାରୁ ଅଧିକ କିଛି ମିଳି ମଧ୍ୟ ନାହିଁ । ପୀଢ଼ିର ଏବେର ଉଦାରୀକରଣ ଯୁଗରେ, ଯାହା ସବୁ ଲଢ଼େଇ ବଳରେ ମିଳିଥିଲା । ଏ ପୀଢ଼ିର ଶିକ୍ଷକ/ ଅଧ୍ୟାପକ ସେସବୁ ହରାଇଲେଣି । ଠିକା, ଚୁକ୍ତିଭିତ୍ତିକ ଶିକ୍ଷକ, ପାରା-ଶିକ୍ଷକ ଭାବେ ନିଯୁକ୍ତି ଦେଇ, ନାଁ ପୁରା ଦରମା, ନାଁ ଋକିରୀସର୍ତ୍ତ ନାଁ ପେନସନ୍ ଇତ୍ୟାଦି ସବୁଥିରୁ ବଞ୍ଚିତ କରାଯାଉଛି । ସାମୟିକ ଯାହା ପରିବର୍ତ୍ତନ ହୋଇଥିଲା ତାକୁ 'ଯୁଗାନ୍ତକାରୀ' କୁହନ୍ତୁ ବା ଯାହା କୁହନ୍ତୁ, ତାହା ଶିକ୍ଷକର ମାନ୍ୟତା ପାଇଁ ସର୍ବନିମ୍ନ ସ୍ୱୀକୃତି ଥିଲା ମାତ୍ର ।

ସମାଜର ପରିବର୍ତ୍ତନ ପାଇଁ ଶିକ୍ଷା ଏକ ହତିଆର ; ଯାହା ଶିକ୍ଷକ ବ୍ୟବହାର କରିଥାଏ । ଅପର ପକ୍ଷରେ, ଶିକ୍ଷକ ମଧ୍ୟ ଏକ ସାମାଜିକ ପ୍ରାଣୀ ଏବଂ ସମାଜର ସବୁ କାଳିମା କଳୁଷ ତାକୁ ମଧ୍ୟ ସ୍ପର୍ଶ କରିବାକୁ/ ପ୍ରଭାବିତ କରିବାକୁ ବାଧ୍ୟ । ଉଦାରୀକରଣ/ ଘରୋଇକରଣର ଏ ନିଆଁରୁ ଶିକ୍ଷକ ନିଜକୁ ବଞ୍ଚାଇବା କଷ୍ଟସାଧ୍ୟ । କାରଣ, ଶିକ୍ଷାଦାନ ଏକ ବେପାରରେ ପରିଣତ ହୋଇଗଲାବେଳେ, ଶିକ୍ଷକ ତ ଆଉ ଗୁରୁ ହୋଇ ରହଲାନାହିଁ ! ଜଣେ Vendor ବା ପାଠ ବିକ୍ରେତା ହୋଇଗଲା । ଯିଏ ଭଲ ଦାମ ଦେଇପାରିବ, ସିଏ ଭଲ ଦୋକାନରୁ ଭଲ ଶିକ୍ଷା ରୂପକ ମାଲ ପାଇପାରିବ । ସାଧାରଣ ମଣିଷଙ୍କ ପାଇଁ ଯେପରି ଔଷଧ/ ଡାକ୍ତର ନଥିବା ଡାକ୍ତରଖାନା, ସେଇଭଳି ଶିକ୍ଷକ ନଥିବା, ଭଙ୍ଗାଶ୍ରେଣୀ ଗୃହ, ଉପକରଣ ବିହୀନ ସ୍କୁଲ, କଲେଜ ରହିଲା । ତାକୁ ପରିବର୍ତ୍ତନ କରିବା ପାଇଁ, ଯେଉଁ ଦୃଢ଼ ମନୋବଳ, ସଂଗ୍ରାମ ଲୋଡ଼ା, ଏବେର ଶିକ୍ଷକଙ୍କ ପାଖରେ ହୁଏତ ତାହା ନାହିଁ । ସେମାନେ ବି ଉଦାରୀକରଣ ଦ୍ୱାରା ବାଇ ହୋଇଯାଉଛନ୍ତି । ସମାଜକୁ ପରିବର୍ତ୍ତନ କରିବେ କ'ଣ - ସମାଜ ତାଙ୍କୁ ପରିବର୍ତ୍ତନ କରି ଆଉ ଏକ ସୁବିଧାଭୋଗୀ, ସ୍ୱାର୍ଥପର ମଣିଷରେ ପରିଣତ କରିଦେଇଛି । ମୋର ଏ ପରିଣତ ବୟସରେ ଲଢ଼େଇ ତା'ରି ବିରୁଦ୍ଧରେ ।

ଆପଣଙ୍କ ଦୋଷାରୋପ ଆଂଶିକ ସତ୍ୟ । କାରଣ ସଙ୍ଗଠନ କରିବାର ଜୀବନବ୍ୟାପୀ ସାଧନା ମୋର, ସମାଜ ପରିବର୍ତ୍ତନ ପାଇଁ ହିଁ ଅଭିପ୍ରେତ । ବିଋରିଥିଲି ଶିକ୍ଷକର ପୂର୍ବୋକ୍ତ ଜୀବନ, ଜୀବିକା, ବଞ୍ଚିବାର ସମସ୍ୟାରୁ ନିଷ୍କୃତି ମିଳିଲେ, ସେମାନେ ସମାଜ ପରିବର୍ତ୍ତନ ପାଇଁ ଆଗୁଆନ୍ ହେବେ, କାରଣ ଜଣେ ଶିକ୍ଷକ ବା ଅଧ୍ୟାପକ ନିତିନିତି ନୂଆ ନୂଆ କଞ୍ଚା ମଣିଷଙ୍କ ସହିତ ମିଶୁଛି - ତାକୁ ଦୁର୍ନୀତି ବିରୁଦ୍ଧରେ ସତ୍ୟ ପାଇଁ ସମାଜ

ପରିବର୍ତ୍ତନ ପାଇଁ ସଂଗ୍ରାମୀ ହେବାକୁ ଶିକ୍ଷକ ହିଁ ପ୍ରରୋଚିତ / ପ୍ରରୋଦିତ କରାଇପାରିବ ।

ମାତ୍ର ଦୁର୍ଭାଗ୍ୟଜନକ ଭାବରେ ତାହା ସମ୍ଭବ ହେଲା ନାହିଁ । ସଂଘ, ସଙ୍ଗଠନ, ସଂଗ୍ରାମକୁ ସେମାନେ ବୃତ୍ତିରେ ଉପରକୁ ଚଢ଼ିବାକୁ, ଅଧିକ ପ୍ରାପ୍ତିର ମାଧ୍ୟମ ଭାବରେ ଗ୍ରହଣ କରିନେଲେ । ଏପରିକି ପରପୀଢ଼ିର ଶିକ୍ଷକଙ୍କ ପାଇଁ ମଧ୍ୟ ସେମାନେ ବାହାରିଲେ ନାହିଁ । କିନ୍ତୁ ମୁଁ ଆଶାବାଦୀ । କାରଣ, ଏବେ ବି ବହୁ ଶିକ୍ଷକ/ ଅଧ୍ୟାପକ ଅଛନ୍ତି, ଯେଉଁମାନେ ମୋର ଏ ଅର୍ନ୍ତବେଦନା ବୁଝିପାରନ୍ତି ଏବଂ ପରିବର୍ତ୍ତନ ପାଇଁ ଆଗଭର ହୋଇ କାମ କରୁଛନ୍ତି । ଆପଣଙ୍କୁ ଜଣାଇବା ଉଚିତ ମଣୁଛି ଯେ, ସଙ୍ଗଠନର ଏକ କର୍ତ୍ତବ୍ୟ ଭାବରେ, "ସମାଜ ପରିବର୍ତ୍ତନରେ ଶିକ୍ଷକର ଦାୟୀତ୍ୱ", 'ସମ୍ପ୍ରଦାୟିକତାବାଦ ବିରୁଦ୍ଧରେ ଶିକ୍ଷକ', 'ଶାନ୍ତି ପାଇଁ ଶିକ୍ଷକ', ପାଠ୍ୟକ୍ରମମାନଙ୍କୁ ସମାଜବାଦୀ ଅନୁଗାମୀ କରାଇବାରେ ଶିକ୍ଷକର ଦାୟିତ୍ୱ, 'ଶିକ୍ଷକର ଆଚରଣ ବିଧି', 'ଶିକ୍ଷାର କର୍ତ୍ତବ୍ୟ' ଏସବୁ ଉପରେ ଆଗରୁ ଧାରାବାହିକ ଏବଂ ଲଗାତର ଆଲୋଚନା, ଆଲୋଡ଼ନ ହେଉଥିଲା । ଏବେ ସେ ସବୁ ବନ୍ଦ ହୋଇଯାଇଛି ।

ସର୍ବଭାରତୀୟ କଲେଜ ବିଶ୍ୱବିଦ୍ୟାଳୟ ଶିକ୍ଷକ ସଂଘର ସମ୍ପାଦକ ଏବଂ ଦୀର୍ଘକାଳ ଧରି ଉପ-ସଭାପତି ରହି, ଭାରତବର୍ଷର ଅଧ୍ୟାପକମାନଙ୍କୁ ସଙ୍ଗଠିତ କରାଇ ୟୁଜିସି ସର୍ବଭାରତୀୟ ଦରମାହାର । ବୃତ୍ତିଗତ ଆଚରଣ ସଂହିତା ପ୍ରଣୟନ ଆଦି କରାଇଛି ଏବଂ ଏକାଧିକ ସର୍ବଭାରତୀୟ ଆନ୍ଦୋଳନରେ ନେତୃତ୍ୱ ନେଇଛି । ଅଧା ଜୀବନ ମୋର ରେଳରେ ବା ବିମାନରେ ବିତିଛି ।

ବିଶ୍ୱଶିକ୍ଷକ ସଂଘରେ ଉପ-ସଭାପତି ଏବେ ମଧ୍ୟ ଅଛି । ଭ୍ରମଣ ପାଇଁ ନୁହେଁ । କାମ କରିବା ଭିତରେ ବହୁ ଦେଶକୁ ଯିବାର ସୁଯୋଗ ପାଇଛି । ଜର୍ମାନ, ଜାପାନ, ଫ୍ରାନ୍ସ, ରୁଷିଆର ସମସ୍ତ ପ୍ରଦେଶ, ଚୀନ, ଆଫଗାନିସ୍ଥାନ, ବୁଲଗେରିଆ, ହଙ୍ଗେରୀ, ଚେକୋସ୍ଲୋଭାକିଆ, ରୁମାନିଆ, ଥାଇଲାଣ୍ଡ, ଫିଲିପାଇନ୍ସ, ଶ୍ରୀଲଙ୍କା, ବାଂଲାଦେଶ, ବେଲଜିୟମ, ଗ୍ରୀସ, ପର୍ତ୍ତୁଗାଲ, ଅଷ୍ଟ୍ରେଲିଆ ଆଦି ଦେଶରେ ସମ୍ମିଳନୀ ସଭାରେ ଯୋଗ ଦେଇଛି ଏବଂ କିଛିଦିନ ପାଇଁ ଦେଶଟାକୁ ଦେଖିଛି । ଅଭିଜ୍ଞତା ମାନଙ୍କରୁ କେତେକ ମୋର, 'ଦୁନିଆର ଚଲାପଥରୁ ସାଉଁଟା ମୋତିମାଣିକ'ରେ ଆଉ କେତେକ 'ହିରୋସୀମା ନାଗାସାକୀ ଆଉ ନୁହେଁ - ଆଉ ନୁହେଁ'ରେ ଲିପିବଦ୍ଧ କରିଛି । ବହୁଦେଶ ବୁଲିବାବେଳେ ମୋର ସବୁବେଳେ ମୋ ଦେଶ, ମୋ ପ୍ରଦେଶ ମନେ ପଡ଼ନ୍ତି - କାରଣ ସେମାନେ ତାଙ୍କ ଦେଶ ସବୁକୁ ସଜେଇ ସାଜେଇ ରଖିଛନ୍ତି । ଆମେ କିନ୍ତୁ ଆମର ସୁନ୍ଦର ଦେଶକୁ ହୀନିମାନିଆ, ନାରଖାର କରିରଖିଛୁ । ବିଦେଶର ଟୁରିଜିମ୍ କଂମ୍ପାନୀମାନେ ଭାରତକୁ ସେମାନେ ଆସିଲା ବେଳେ ଅଣ୍ଡରଲାଇନ୍ କରି ଏଠାରେ ପାଣି ପିଇବାକୁ ନିଷିଦ୍ଧ କରନ୍ତି ।

ଏଠା ପାଣି ଦୂଷିତ ଓ ବିଷାକ୍ତ । ବିଭବଶାଳୀ ଫ୍ରାନ୍ସ ରାସ୍ତାରେ ବା ଟୁରିଜିମ ସେଣ୍ଟରରେ ମୁଣ୍ଡରେ ତଗରା ମୁଣ୍ଡାଇ ଠିଆ ହୋଇଥିବା କୁଲି ରମଣୀର ଚିତ୍ର ପୋଷ୍ଟର ତଳେ INDE ବା ଇଣ୍ଡିଆ ବୋଲି ଲେଖାଯାଇ ପ୍ରଦର୍ଶିତ କରାଯାଏ । ଭାରତୀୟ ଭିକାରୀ, ବାବାଜୀ, ସାଧୁ, ଅସଂଖ୍ୟ ମଣିଷଙ୍କ ଜଙ୍ଗଲ, ଇଏ ଭାରତର ପରିଚୟ । ଭାରତ ସତେ ଯେମିତି ଏକ ମ୍ୟୁଜିୟମ । ଇନ୍ଦିରାଗାନ୍ଧୀଙ୍କ ଠାରୁ ସୋନିଆ ଗାନ୍ଧୀଙ୍କ ପର୍ଯ୍ୟନ୍ତ ସବୁଜାଣି ମଧ୍ୟ ତାଙ୍କର ପ୍ରଶ୍ନ ଆମକୁ "ଭାରତରେ ନାରୀ ସ୍ୱାଧୀନତା ଅଛି ?" "ଜଣେ ଝିଅ ନଜାଣି ନଚିହ୍ନି କିପରି ଜଣେ ପୁଅକୁ ଆଜୀବନ ବାହା ହୁଏ ?" 'ପୁଅମାନଙ୍କର ଯଦି ପ୍ରାକ୍ ବିବାହ ପ୍ୟୁବର୍ଟି ଅଛି କି ନାହିଁ ପଚରା ନଯାଏ, ଝିଅକୁ କାହିଁକି' "Pre-marital puberty" କଥା କୁହାଯାଏ ? - ପଚରନ୍ତି, ଆପଣଙ୍କ ରାସ୍ତାମାନଙ୍କରେ ତ ଅସଂଖ୍ୟ ଗାଈଗୋରୁ ଚାଲୁଥାନ୍ତି ମଣିଷ କେମିତି ଯାଇପାରନ୍ତି ? ଇତ୍ୟାଦି.... ।

ମୁଁ ସୁବକ୍ତା କି ତା ନୁହେଁ ମୁଁ ତ କହିପାରିବି ନାହିଁ । ଓଡ଼ିଶାର ସର୍ବଭାରତୀୟ, ଅନ୍ତର୍ଜାତୀୟ ସମ୍ମିଳନୀ କରିବା ପଛରେ ମୋର ଉଦ୍ଦେଶ୍ୟ ମୋ ପ୍ରଦେଶର ରାଜନେତା, ପ୍ରଶାସକମାନଙ୍କୁ ଚିନ୍ତାର ଖୋରାକ ଯୋଗାଇବା । ସେମାନଙ୍କୁ ଜଗତ ପ୍ରତି Expose କରାଇବା । ଏବେକାର ଉଦାରୀକରଣ/ ଜଗତୀକରଣ ଯୁଗରେ, ତାହା ମଧ୍ୟ ସମ୍ଭବ ହେଉନାହିଁ ।"

ସାରା ଦୁନିଆର ଶିକ୍ଷକ ନେତା : ଓଡିଶାରେ ବେସରକାରୀ ଶିକ୍ଷକ ଆନ୍ଦୋଳନର ନେତୃତ୍ୱ ନେଇ ଅସାଧାରଣ ସଂଗଠନ ଶକ୍ତିର ପରିଚୟ ଦେଇଥିବା ଅବନୀଙ୍କ ଯଶ ଓ ଖ୍ୟାତି କ୍ରମଶଃ ଦେଶ ବିଦେଶରେ ପରିବ୍ୟାପ୍ତ ହେବାରେ ଲାଗିଲା । ସର୍ବଭାରତୀୟ କଲେଜ ଓ ବିଶ୍ୱବିଦ୍ୟାଳୟ ଶିକ୍ଷକ ସଂଘର ସାଧାରଣ ସଂପାଦକ ରୂପେ ନିର୍ବାଚିତ ହୋଇ ସେ ଦେଶବ୍ୟାପୀ ଶିକ୍ଷକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ପ୍ରାୟ ୧୦ବର୍ଷ ଧରି ଏହି ପଦବୀରେ ରହିବା ପରେ ସେ ଉକ୍ତ ସଂଗଠନର ଉପସଭାପତି ରୂପେ ମଧ୍ୟ ଦୀର୍ଘକାଳ କାର୍ଯ୍ୟ କରିଥିଲେ । ଏହି ସମୟ ମଧ୍ୟରେ ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ ସମଗ୍ର ଭାରତର ଲକ୍ଷ ଲକ୍ଷ ଶିକ୍ଷକଙ୍କୁ ଐକ୍ୟବଦ୍ଧ କରାଇ ନେତୃତ୍ୱ ଦେଇ ସେମାନଙ୍କ ପାଇଁ ୟୁଜିସି ବେତନ ହାର ଲାଗୁ କରାଇବାରେ ସକ୍ଷମ ହୋଇଥିଲେ । ଏହାପରେ ବିଶ୍ୱ ଶିକ୍ଷକ ସଂଘରେ ମଧ୍ୟ ଅନେକ ବର୍ଷ ଧରି ଉପସଭାପତି ରୂପେ କାର୍ଯ୍ୟକରିବା ଭିତରେ ସେ ପୃଥିବୀର ବହୁ ରାଷ୍ଟ୍ରକୁ ବାରମ୍ବାର ଗସ୍ତ କରିଛନ୍ତି । ସାରା ଜଗତରେ ଉଡ଼ାଇଛନ୍ତି ଓଡ଼ିଶା ଶିକ୍ଷକ ମହାସଂଘର ବିଜୟ ବୈଜୟନ୍ତୀ । ତାଙ୍କରି ଏକନିଷ୍ଠ ସାଧନା ଓ ଦୃଢ଼ ନେତୃତ୍ୱ ଯୋଗୁଁ ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ଏକ ମର୍ଯ୍ୟାଦା ସମ୍ପନ୍ନ ଶିକ୍ଷକ ତଥା ଗଣସଂଗଠନର ମାନ୍ୟତା ଲାଭ କରିପାରିଛି ।

ଏବେ ଓଡ଼ିଶାରେ କାର୍ଯ୍ୟକାରୀ ହୋଇଥିବା ସର୍ବଶିକ୍ଷା ଅଭିଯାନ କାର୍ଯ୍ୟକ୍ରମ ପଛରେ ମଧ୍ୟ ରହିଛି ଏହି ମହାନ ଶିକ୍ଷକ ନେତାଙ୍କ ବଳିଷ୍ଠ ଅବଦାନ । 'ସମସ୍ତଙ୍କ ପାଇଁ ଶିକ୍ଷା' ଶୀର୍ଷକ ବିଶ୍ୱ ସମ୍ମିଳନୀରେ ଗୃହୀତ ପ୍ରସ୍ତାବ ଅନୁଯାୟୀ ଏହି ବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇଥିଲା । ଏହି ସମ୍ମିଳନୀରେ ଭାରତରୁ ପ୍ରତିନିଧି ରୂପେ ଯୋଗ ଦେଇଥିଲେ ଅବନୀ । ସୋଭିଏତ୍ ୟୁନିୟନର ବିଲୟ ଘଟିବା ପରେ ବିଶ୍ୱ ଶିକ୍ଷକ ସଂଗଠନ ଦୁର୍ବଳ ହେବା ଅବସ୍ଥାକୁ ଆସିଯାଇଥିଲା । ମାତ୍ର ସେହି ଘଡିସନ୍ଧି ମୁହୂର୍ତ୍ତରେ ଅଧ୍ୟାପକ ମୃଣ୍ମୟ ଭଟ୍ଟାଚାର୍ଯ୍ୟଙ୍କ ସହ ମିଶି ଅବନୀ ବରାଳ ହିଁ ବିଶ୍ୱ ଶିକ୍ଷକ ସଂଘକୁ ନେତୃତ୍ୱ ଦେଇ ପୁଣି ଶକ୍ତିଶାଳୀ କରାଇପାରିଥିଲେ । ଦିଲ୍ଲୀ ଠାରେ ୨୦୦୦ ଓ ୨୦୦୭ ମସିହାରେ ଅନୁଷ୍ଠିତ ବିଶ୍ୱ ଶିକ୍ଷକ ସଂଗଠନର ସମ୍ମିଳନୀ ମୁଖ୍ୟତଃ ଅବନୀଙ୍କ ନେତୃତ୍ୱ ଓ ସାଂଗଠନିକ ଦକ୍ଷତାର ପରିଚୟ ଦିଏ । ଶିକ୍ଷକ ମହାସଂଘରେ ଅବନୀଙ୍କ ସହ ଦୀର୍ଘ ଦିନ ଧରି ସହଯୋଦ୍ଧା ରୂପେ କାର୍ଯ୍ୟ କରି ଆସିଥିବା ଅନ୍ୟତମ ପ୍ରାଣପ୍ରତିଷ୍ଠାତା ବିବେକା ନନ୍ଦ ଦାଶ ତାଙ୍କ ସଂପର୍କରେ ସ୍ମୃତି ଚାରଣ କରି କହନ୍ତି - " ଆନ୍ଦୋଳନରେ ଜନସଂପୃକ୍ତିରୁ ମିଳିଲା ବିଶ୍ୱ ଶିକ୍ଷକ ସଂଗଠନରେ ଅବନୀ ଭାଇ ହେଲେ ଉପସଭାପତି । ଦେଶେ ଦେଶେ ଓଡ଼ିଶାର ଶିକ୍ଷକ ମହାସଂଘର ପରିଚୟ । ଓଡିଶାରେ ବିଶ୍ୱ ଶିକ୍ଷକ ସଂଗଠନର କାର୍ଯ୍ୟକ୍ରମ । ରୁଷ - ଭାରତ ଶିକ୍ଷକ ବିନିମୟ । ଓଡ଼ିଶାର ଶିକ୍ଷକମାନଙ୍କର ବିଶ୍ୱ ଶିକ୍ଷକ ସମ୍ମିଳନୀରେ ଅଂଶଗ୍ରହଣ । ନୂତନ ଉଦ୍ଦୀପନା, ଆଲୋଚନା ଓ ଆହ୍ୱାନ । ହିଁ ମିଳିଲା ସମବେତନ ହାର, ପ୍ରତ୍ୟକ୍ଷ ବେତନ ଦାନ, ଗୋଡିପ୍ରଥାର ବିଲୋପ, ପ୍ରତିମା ମିଶ୍ରଙ୍କ ଅନଶନରୁ ଶିକ୍ଷା ଟ୍ରିବୁନାଲ ଓ ଅନେକ କିଛି । ଥରେ ଜଣେ ବିଶିଷ୍ଟ ଲେଖକ, ରାଜନୀତିଜ୍ଞ ଓ ଶିକ୍ଷାମନ୍ତ୍ରୀ ପରିହାସରେ କହିଲେ ଜଟାୟୁର ପକ୍ଷଛେଦନ ହୋଇଛି । ଅବନୀ ଭାଇ କହିଲେ, ଜଟାୟୁର ପକ୍ଷ ଛେଦନ ଯେ କଲା ତାର ଅବସ୍ଥା ଯାହା ଘଟିଲା ସରକାରର ସେହି ଅବସ୍ଥା ହେବ ।"

ଅବନୀ ବରାଳଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଶିକ୍ଷକ ମହାସଂଘର ମୁଖପତ୍ର ରୂପେ ବିଗତ ୩୫ବର୍ଷରୁ ଉର୍ଦ୍ଧ୍ୱକାଳ ଧରି ନିରବଚ୍ଛିନ୍ନ ଭାବରେ ପ୍ରକାଶ ପାଇ ଆସୁଛି 'ଶିକ୍ଷା ସମସ୍ୟା' । ଶିକ୍ଷକ ସମାଜର ବିଭିନ୍ନ ସମସ୍ୟା ଏବଂ ମହାସଂଘର ଆନ୍ଦୋଳନାତ୍ମକ ଆଭିମୁଖ୍ୟ ଯଥାର୍ଥ ଭାବରେ ପ୍ରତିଫଳିତ ହୋଇଥାଏ ଏହି ପତ୍ରିକାରୁ । ଏହାର ସଂପାଦକ ଅବନୀ ବରାଳଙ୍କ ସୁଚିନ୍ତିତ ଓ ସାରଗର୍ଭକ ଲେଖାରେ ପ୍ରତି ସଂଖ୍ୟାର କଳେବର ପରିପୁଷ୍ଟ ହୋଇଥାଏ । ଅବନୀଙ୍କ ଅନ୍ୟ ଏକ ସାର୍ଥକ ଅବଦାନ ହେଉଛି 'ଶିକ୍ଷକ ମହାସଂଘ ଶିକ୍ଷା ପ୍ରତିଷ୍ଠାନ' । ଦୀର୍ଘ ୧୨ବର୍ଷ ଧରି ଏହି ସଂସ୍ଥା ସଫଳତାର ସହ ଚାଲିବା ପରେ ଏବେ ଏହା ବନ୍ଦ ହୋଇଯାଇଛି । ମାତ୍ର ସେଠାରେ ଏକ ଶିଶୁ ବିହାର ଏବେ କାର୍ଯ୍ୟ କରୁଛି ଯାହାକୁ ଏକଦା ଅବନୀ ବାବୁ ନିଜେ ଗଢ଼ିଥିଲେ ।

ମହାନ ଜନନାୟକ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ତାଙ୍କର ଆହ୍ୱାନ କ୍ରମେ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନୀକରଣ କରିବା ପାଇଁ ଅବନୀ ବରାଳ ହାତକୁ ନେଇଥିଲେ ଏକ ଅଭିନବ କାର୍ଯ୍ୟକ୍ରମ । ରାଜ୍ୟର ୧୮ଟି ଶିକ୍ଷକ ସଂଗଠନକୁ ଏକତ୍ରିତ କରାଇ ଜନସଚେତନତା ସୃଷ୍ଟି ଉଦ୍ଦେଶ୍ୟରେ ରାଜ୍ୟବ୍ୟାପୀ ଛଅ ହଜାର କିଲୋମିଟର 'ଜ୍ଞାନଜ୍ୟୋତି' ପରିକ୍ରମା କରାଯାଇଥିଲା । ମେଘାସନରୁ ମହେନ୍ଦ୍ରଗିରି ପର୍ଯ୍ୟନ୍ତ ସାରା ଓଡ଼ିଶାରେ ବୁଲିଥିବା ଏହି 'ଜ୍ଞାନଜ୍ୟୋତି' ରାଜ୍ୟର ପ୍ରାଥମିକ ଶିକ୍ଷା ପ୍ରସାର କ୍ଷେତ୍ରରେ ଅପୂର୍ବ ଜାଗରଣ ସୃଷ୍ଟି କରିପାରିଥିଲା । ୧୯୯୧ ମସିହାରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଏହି ଜ୍ଞାନଜ୍ୟୋତିକୁ ଅବନୀଙ୍କ ହାତରେ ଆନୁଷ୍ଠାନିକ ଭାବରେ ଅର୍ପଣ କରିଥିଲେ । ଏଥିରୁ ତାଙ୍କର ନେତୃତ୍ୱ ପ୍ରତି ବିଜୁବାବୁଙ୍କର ଯେଉଁ ଅତୁଟ ବିଶ୍ୱାସ ଓ ଆସ୍ଥା ଥିଲା ତାହା ପ୍ରମାଣିତ ହୋଇଛି ।

ଶିକ୍ଷକ ମହାସଂଘର ଅନ୍ୟତମ କର୍ଣ୍ଣଧାର ପ୍ରୟାତ ନେତା କୈଳାସ ମହାପାତ୍ର ଏକଦା ଅବନୀଙ୍କ ସଂପର୍କରେ ଏହି ଲେଖକକୁ କହିଥିଲେ - " ଅବନୀ ବରାଳ ଆଜି ଶିକ୍ଷକଙ୍କୁ ଖାଲି ଚାକିରି ସହିତ ସାମାଜିକ ନିରାପତ୍ତା ଦେଇନାହିଁ, ବହୁ ସାଧାରଣ ଶିକ୍ଷକଙ୍କୁ ନେଇ ବିଶ୍ୱ ଦରବାରରେ ଠିଆ କରାଇଛି । ହେଲେ କ'ଣ ହେବ, ଶିକ୍ଷକର ସେହି ହୀନମନ୍ୟତା, କାପୁରୁଷତା ଓ କର୍ମକୁଣ୍ଠତା ପୁଣି ତାର ଅଧଃପତନର କାରଣ ହେବାର ସମ୍ଭାବନା ଅବଶ୍ୟ ଦୂର ହୋଇନାହିଁ । କାରଣ ବହୁ ଆନ୍ଦୋଳନ ଓ ପ୍ରାପ୍ତି ପରେ ମଧ୍ୟ ଶିକ୍ଷକ ସମାଜର ମାନସିକତାରେ ପରିବର୍ତ୍ତନ ଆଣିବାରେ ସେ ସକ୍ଷମ ହୋଇ ପାରିନି ।" କୈଳାସ ବାବୁଙ୍କ ହୃଦୟ ଭିତର ଏହି କଥାପଦକ କେତେଦୂର ସତ, ତାହା ଆଜି ଧିରେ ଧିରେ ପ୍ରମାଣିତ ହେଉଛି । ଯେଉଁ ଶିକ୍ଷକ ମହାସଂଘ ଗଠନ କରି ଅବନୀ ସାରା ଜୀବନ ଲଢ଼େଇ ଚଳାଇଲେ, ସରକାର ଠାରୁ ଗୋଟି ଗୋଟି କରି ସବୁ ନ୍ୟାଯ୍ୟ ଦାବି ହାସଲ କରାଇଲେ, ଅମା ଅନ୍ଧକାର ଭିତରେ ସଢୁଥିବା ଶିକ୍ଷକଙ୍କ ପାଇଁ ଚାକିରି ସର୍ତ୍ତାବଳୀ ପ୍ରଣୟନ କରାଇଲେ, ସେମାନଙ୍କୁ ସିଧାସଳଖ ବେତନ ପ୍ରଦାନ ବ୍ୟବସ୍ଥା କଲେ, ସମାନ କାମ ପାଇଁ ସମାନ ଦରମା ନୀତିକୁ କାର୍ଯ୍ୟକାରୀ କରାଇଲେ, ଅବସରକାଳୀନ ସୁବିଧା ସୁଯୋଗର ବ୍ୟବସ୍ଥା କଲେ, କଲେଜ ଶିକ୍ଷକଙ୍କ ପାଇଁ ୟୁଜିସି ବେତନହାର ଲାଗି କରାଇଲେ, ସର୍ବୋପରି ରାଜ୍ୟର ଲକ୍ଷ ଲକ୍ଷ ଶିକ୍ଷକ ଓ ସେମାନଙ୍କ ପରିବାରବର୍ଗଙ୍କ ମୁହଁରେ ହସ ଫୁଟାଇଲେ, ସେହି ମହାସଂଘକୁ ଦୁର୍ବଳ କରିଦେବା ପାଇଁ ଆରମ୍ଭ ହୋଇଯାଇଛି ଷଡଯନ୍ତ୍ର । ଦିନେ ଅବନୀଙ୍କ ପଛରେ ଐକ୍ୟବଦ୍ଧ ଓ ସଂଗଠିତ ହୋଇ ଠିଆ ହୋଇଥିବା ଶିକ୍ଷକ ସମାଜ ଆଜି ବିଭେଦଗ୍ରସ୍ତ । ସବୁ ଉପକାର ପାଇସାରିବା ପରେ, ସ୍ୱାର୍ଥ ସାଧିତ ହେଲାପରେ ଶିକ୍ଷକ ସମାଜ କୃତଜ୍ଞ ରହିବା ତ

ଦୂରର କଥା, କେତେକ ଶିକ୍ଷକ ସଂଗଠନର ସଦସ୍ୟ ମହାସଂଘ ଆଡ଼ୁ ମୁହଁ ଫେରାଇବାକୁ ଉଦ୍ୟମ କରିଛନ୍ତି ବା କରୁଛନ୍ତି । ଏହାଠାରୁ ବଳି ସ୍ୱାର୍ଥପରତା ଓ ଦୁର୍ଭାଗ୍ୟଜନକ କଥା ଆଉ କ'ଣ ଥାଇପାରେ ?

ସମ୍ଭବତଃ ଶିକ୍ଷକ ମହାସଂଘର ଆଜିର ଦୃଶ୍ୟପଟକୁ ଲକ୍ଷ୍ୟ କରି ଓଡ଼ିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘର ପ୍ରାକ୍ତନ ସଭାପତି ପଦ୍ମନାଭ ବିଶ୍ୱାଳ କହନ୍ତି- "ସ୍ରୋତ ଅନୁକୂଳରେ ନୁହେଁ ବରଂ ସ୍ରୋତର ପ୍ରତିକୂଳରେ ଯାତ୍ରା କରିବାକୁ ଯେପରି ତାଙ୍କର ଜନ୍ମ । ଚଲାପଥ ତାଙ୍କର କଣ୍ଟକିତ । ସମାଲୋଚନା ତାଙ୍କର ସହଯାତ୍ରୀ, ସରକାରଙ୍କ କୋପଦୃଷ୍ଟି ତାଙ୍କରି ଉପରେ । ଆନ୍ଦୋଳନ କଲେ ବା ନକଲେ କିମ୍ବା ପ୍ରତ୍ୟାହାର କଲେ ଅଥବା ଅଧିକ ଦିନ ଚଳାଇ ରଖିଲେ ସେ (ଅବନୀ)ହିଁ ସମାଲୋଚନାର ଶରବ୍ୟ ହୁଅନ୍ତି । ଯାହାଙ୍କ ପାଇଁ ତାଙ୍କର ସଂଗ୍ରାମ ସେଇମାନେ ହିଁ ବେଶୀ ସମାଲୋଚନା କରିଥାନ୍ତି । ତଥାପି ଲକ୍ଷ୍ୟ ପଥରୁ ବିଚ୍ୟୁତ ହୋଇନାହାନ୍ତି । କୁକୁର ଭୁକିଲେ ହାତୀର ଗତିରୋଧ ନହେଲା ଭଳି ସେ କେବେ ଅଟକି ଯାଇନାହାନ୍ତି । ତାଙ୍କୁ ପ୍ରତିହତ, ତାଙ୍କ ଗତିବିଧିକୁ ପ୍ରତିରୋଧ, ତାଙ୍କ ସାଂଗଠନିକ ଭିତ୍ତିଭୂମିକୁ ଚୁରମାର କରିବାକୁ ଏବଂ ତାଙ୍କ ପତିଆରାକୁ ନଷ୍ଟଭ୍ରଷ୍ଟ କରିବାପାଇଁ ବିଭିନ୍ନ ସମୟରେ ସରକାରୀ ପ୍ରୋତ୍ସାହନରେ ସାଇନବୋର୍ଡ ସଂଗଠନ ଗଢ଼ି ଉଠିଛି । ହେଲେ ତାହା ତିଷ୍ଠି ରହିବା ସମ୍ଭବ ହୋଇନାହିଁ । ଏହାଦ୍ୱାରା ସେ ସାମାନ୍ୟତମ ବିଚଳିତ ମଧ୍ୟ ହୋଇନାହାନ୍ତି । ରାଜ୍ୟର ଅନ୍ୟତମ ବଳିଷ୍ଠ ସଂଗଠନ ଓଷ୍ଟା ତାଙ୍କଠାରୁ ଦୂରେଇ ଯାଇଥିଲା ସମୟକ୍ରମେ ତାହା ପୁଣି ତାଙ୍କ ପାଖକୁ ଫେରି ଆସିଲା । ସେ କିନ୍ତୁ ଅଟଳ, ଅଚଳ ମହାମେରୁ ସଦୃଶ ସ୍ଥିର ନିଶ୍ଚଳ ।"

ଗୌରବମୟ ସଂଗ୍ରାମୀ ଐତିହ୍ୟର ମୂକସାକ୍ଷୀ ରୂପେ ରାଜଧାନୀ ଭୌମନଗରର ସେଇ ପୁରୁଣା କୋଠାଘରେ ଶିକ୍ଷକ ମହାସଂଘର ମୁଖ୍ୟ କାର୍ଯ୍ୟାଳୟ ଏବେବି ରହିଛି । ସଞ୍ଜ ନଇଁଆସିବା ବେଳକୁ ସେଇଠି ଆସି ପହଞ୍ଚନ୍ତି କ୍ରାନ୍ତିବୀର ଅବନୀ ବରାଳ । ଯେଉଁଠି ଯେତେ ଯାହା କାର୍ଯ୍ୟଥିଲେ ବି ସେଇ କୋଠା ତାଙ୍କୁ ଆକର୍ଷିତ କରେ, କିଛି ମୁହୂର୍ତ୍ତ ସେଠି କଟାଇଦେଲେ ପ୍ରାଣଭରି ଆନନ୍ଦ ଅନୁଭବ କରନ୍ତି । ଆଗଭଳି ଆଉ ଗହଳ ଚହଳ ସେଠାରେ ଦେଖିବାକୁ ମିଳୁନାହିଁ । ସ୍ୱାର୍ଥ ସର୍ବସ୍ୱ ଜାତି ତାଙ୍କର ବହୁମୂଲ୍ୟ ଅବଦାନକୁ କ୍ରମେ ଭୁଲି ଆସୁଛି । ତଥାପି ଶିକ୍ଷକ ଆନ୍ଦୋଳନର ପିତାମହ ଭୀଷ୍ମଙ୍କ ମନରେ ନାହିଁ ଅବସାଦ ବା କ୍ଳାନ୍ତି । କେହି ଜଣେ ଶିକ୍ଷକ ବା ଶିକ୍ଷିକା ନିଜର କୌଣସି ସମସ୍ୟା ନେଇ ତାଙ୍କ ପାଖକୁ ଆସିଲେ, ତାଙ୍କୁ ପରାମର୍ଶ ଦେଇ ସବୁ ପ୍ରକାର ସାହାଯ୍ୟ କରିବାକୁ ସତେ ଯେପରି ତିଆର । ସାମୟିକ ବାଧା, ପ୍ରତିବନ୍ଧକ ଅବା ଚକ୍ରାନ୍ତ ସତ୍ତ୍ୱେ ଶିକ୍ଷକ ଆନ୍ଦୋଳନ ଇତିହାସରେ ଧ୍ରୁବତାରା ଭଳି ଚିର ଜାଜ୍ୱଲ୍ୟମାନ ହୋଇ ବଞ୍ଚିରହିବେ ଅବନୀ । ★

# ଶିକ୍ଷକ ଓ କର୍ମଚାରୀ ସଂଗଠନ ମଧ୍ୟରେ ସମନ୍ୱୟର ସେତୁ

●

ଓଡ଼ିଶାରେ ଶିକ୍ଷକ ଆନ୍ଦୋଳନର ନେତୃତ୍ୱ ନେଇ ଅପୂର୍ବ ସଫଳତା ହାସଲ କରିବା ସଂଗେ ସଂଗେ ସମଗ୍ର ଦେଶ ତଥା ବିଶ୍ୱରେ କ୍ରାନ୍ତିକାରୀ ଶିକ୍ଷକ ନେତା ରୂପେ ପରିଚୟ ଲାଭ କରିଥିବା ଅବନୀ ବରାଳଙ୍କ ଏହି ସାଫଲ୍ୟ ରାଜ୍ୟର ସରକାରୀ କର୍ମଚାରୀ ମଧ୍ୟବିତ୍ତ କର୍ମଜୀବି ସଂଗଠନ ଗୁଡ଼ିକୁ ବିଶେଷ ଆକର୍ଷିତ କରିଥିଲା । ଶିକ୍ଷକ ଆନ୍ଦୋଳନର ସଫଳ ପରୀକ୍ଷା କର୍ମଚାରୀ ସଂଗଠନମାନଙ୍କୁ ଏଭଳି ପ୍ରଭାବିତ କଲାଯେ ସେମାନେ ତାଙ୍କ ନେତୃତ୍ୱକୁ ଗ୍ରହଣ କରି ରାଜ୍ୟରେ ଶିକ୍ଷକ ଓ କର୍ମଚାରୀମାନଙ୍କୁ ନେଇ ଏକ ମିଳିତ ଆନ୍ଦୋଳନାତ୍ମକ ପନ୍ଥା ଗ୍ରହଣ କରିବାକୁ ଆଗଭର ହୋଇଥିଲେ । ପୂର୍ବରୁ ଓଡ଼ିଶାରେ ସରକାରୀ କର୍ମଚାରୀମାନଙ୍କର ସମୁଦାୟ ୩୪ଟି ସଂଘ ଓ ମହାସଂଘକୁ ନେଇ ଓଡ଼ିଶା ରାଜ୍ୟ ଅଣଗେଜେଟେଡ କର୍ମଚାରୀ ସମନ୍ୱୟ ସମିତି ଗଠନ କରାଯାଇଥିଲା । ଏହି ସମିତି ମାଧ୍ୟମରେ କେନ୍ଦ୍ରୀୟ ହାରରେ ମହଙ୍ଗାଭତ୍ତା ସମେତ ଅନେକ ସାଧାରଣ ଦାବି ହାସଲ ପାଇଁ ଅତୀତରେ ଅନେକ ଆନ୍ଦୋଳନ ହୋଇଥିଲା । ୧୯୭୦ ମସିହାରେ ଏହାର ପ୍ରଥମ ସମ୍ମିଳନୀରେ ସମ୍ବିଧାନ ଗୃହୀତ ହୋଇ ଏହାକୁ ଏକ ସଂଗ୍ରାମୀ ସଂଗଠନ ଭାବରେ ପ୍ରତିଷ୍ଠିତ କରାଗଲା । କର୍ମଚାରୀ ନେତା ସ୍ୱର୍ଗତ ପତିତ ପାବନ ପରିଡ଼ା ଏହାର ସଭାପତି ଏବଂ ଇଂ ସାରଦା ପ୍ରସାଦ ମହାନ୍ତି ସାଧାରଣ ସଂପାଦକ ରହିଥିଲେ । କର୍ମଚାରୀ ମାନଙ୍କର କେନ୍ଦ୍ରୀୟ ହାରରେ ମହଙ୍ଗାଭତ୍ତା ସମେତ ବହୁ ଦାବି ପୂରଣ ହେବା ସହିତ ଅନ୍ୟତମ ମୁଖ୍ୟ ଦାବି ସମନ୍ୱୟ ସମିତିକୁ ସରକାରୀ ସ୍ୱୀକୃତି ମିଳିଥିଲା । ମାତ୍ର ପରବର୍ତ୍ତୀ ସମୟରେ ଏହି ସଂଗଠନରେ ବିଭାଜନ ଘଟିଥିଲା । ସଚିବାଳୟରେ ଆନ୍ଦୋଳନ ପାଇଁ

ସ୍ୱର୍ଗତ ପରିଡ଼ାଙ୍କୁ ଗୋଟିଏ ମାମଲାରେ ଅଭିଯୁକ୍ତ କରାଇ ସରକାର ତାଙ୍କୁ ସଶ୍ରମ କାରାଦଣ୍ଡ ଦେଇଥିଲେ ଏବଂ ଚାକିରୀରୁ ତାଙ୍କୁ ବାହାର କରିଦିଆଯାଇଥିଲା । ପରବର୍ତ୍ତୀ କାଳରେ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ସ୍ୱର୍ଗତ ପରିଡ଼ାଙ୍କ ଉପରୁ ବହିଷ୍କାର ଆଦେଶ ପ୍ରତ୍ୟାହାର ଏବଂ ଦଣ୍ଡମୁକ୍ତ ଘୋଷଣା କରି ତାଙ୍କୁ ପୁନଃ ଅବସ୍ଥାପିତ କରାଯାଇଥିଲା । ବିଭାଜନ ଯୋଗୁଁ କର୍ମଚାରୀ ସମନ୍ୱୟ ସମିତି ନିଜର ଶକ୍ତି ଓ ସାମର୍ଥ୍ୟ ହରାଇଥିବା ବେଳେ ଶିକ୍ଷକ ମହାସଂଘର ନେତା ଅବନୀ ବରାଳଙ୍କ ସହଯୋଗରେ ରାଜ୍ୟରେ ଶିକ୍ଷକ ଓ କର୍ମଚାରୀମାନଙ୍କର ଗୋଟିଏ ମିଳିତ ସଂଗଠନ ଗଢ଼ିବାକୁ ନିଷ୍ପତ୍ତି ନିଆଗଲା । କେନ୍ଦ୍ରୀୟ ହାରରେ ଦରମା ଦାବିକୁ ମୁଖ୍ୟ ଦାବି ଭାବରେ ଗ୍ରହଣ କରି ସେଥିପାଇଁ ମିଳିତ ଆନ୍ଦୋଳନ ଚଳାଇବାକୁ ଶିକ୍ଷକ ଓ କର୍ମଚାରୀମାନେ ସଂକଳ୍ପ ଗ୍ରହଣ କରିଥିଲେ । ଉଭୟ ସଂଗଠନର ମିଳିତ ଶକ୍ତି ଆଗରେ ସରକାର ଯେପରି ମୁଣ୍ଡ ନୁଆଁଇବେ, ସେଥିପାଇଁ ରଣକୌଶଳ ପ୍ରସ୍ତୁତ କରିଥିଲେ ନିଜେ ଅବନୀ । ଏହି ମିଳିତ ସଂଗଠନର ନାମ ରଖାଯାଇଥିଲା STATE COUNCIL OF EMPLOYEES & TEACHERS' ORGANISATION (ସେଟୋ) । ଏହି ନବ ଗଠିତ ସଂଗଠନ ସାରା ରାଜ୍ୟରେ ଶିକ୍ଷକ ଓ କର୍ମଚାରୀଙ୍କ ମଧ୍ୟରେ ସୃଷ୍ଟି କରିଥିଲା ଅପୂର୍ବ ଜାଗରଣ । ରାଜ୍ୟବ୍ୟାପୀ ଶିକ୍ଷକ ଓ କର୍ମଚାରୀମାନଙ୍କ ମିଳିତ ଆନ୍ଦୋଳନରେ ସରକାରୀ କଳ ଥରହର ହୋଇଥିଲା । ଦୁଇ ସଂଗଠନରୁ ସ୍ୱର୍ଗତ ପତିତ ପାବନ ପରିଡ଼ା ଓ ଅବନୀ ବରାଳ ଏହାର ଆବାହକ ରହିଥିଲେ । ଶିକ୍ଷକ ଓ କର୍ମଚାରୀ ମାନଙ୍କର ମିଳିତ ପଟୁଆର ଓ ପ୍ରତିବାଦ ସଭା ଆୟୋଜନ କରାଯିବା ସଂଗେ ସଂଗେ ୧୯୮୯ ଅପ୍ରେଲ ୪ତାରିଖ ଦିନ ରାଜଧାନୀର ପିଏମଜି ଛକଠାରେ ଅନୁଷ୍ଠିତ ହୋଇଥିଲା ଏକ ବିଶାଳ ସମାବେଶ । ଏଥିରେ ଉଭୟ ସ୍ୱର୍ଗତ ପରିଡ଼ା ଓ ଅବନୀ ବରାଳଙ୍କର ଅଗ୍ନିବର୍ଷୀ ଉଦ୍‌ବୋଧନ ଏଭଳି ଉତ୍ସାହ ଉଦ୍ଦୀପନା ସୃଷ୍ଟି କରିଥିଲା ଯେ ଶିକ୍ଷକ କର୍ମଚାରୀମାନଙ୍କର ଦାବି ଆଗରେ ସରକାର ମୁଣ୍ଡ ନୁଆଁଇବାକୁ ବାଧ୍ୟ ହୋଇଥିଲେ । ଚଉଦ ଦିନ ଧରି ସଫଳତାର ସହ କାର୍ଯ୍ୟବନ୍ଦ ଆନ୍ଦୋଳନ ଚାଲିବା ପରେ ପରିଷଦର ସଂଘର୍ଷମୟ ଯାତ୍ରା ପଥରେ ଆସିଥିଲା ସଫଳତା ଏବଂ ରାଜ୍ୟର ସରକାରୀ କର୍ମଚାରୀ ଓ ଶିକ୍ଷକ ମାନଙ୍କ ପାଇଁ ଲାଗୁ ହୋଇଥିଲା କେନ୍ଦ୍ରୀୟ ହାରରେ ଦରମା ।

କେନ୍ଦ୍ର ସରକାର ୫୦ପ୍ରତିଶତ ମହଙ୍ଗାଭତ୍ତା ମୂଳ ଦରମାରେ ମିଶାଇ ଦେବାପରେ ବହୁ ରାଜ୍ୟ ସରକାର ତାଙ୍କ କର୍ମଚାରୀଙ୍କୁ ୫୦ପ୍ରତିଶତ ମହଙ୍ଗାଭତ୍ତା ମୂଳ ଦରମାରେ ମିଶାଇବାକୁ ଘୋଷଣା କରିଥିଲେ ମାତ୍ର ଓଡିଶା ସରକାର ଏହାକୁ ଗ୍ରହଣ କରିବାରେ ବିଳମ୍ବ କରିଚାଲିଲେ । ଅବନୀ ବରାଳଙ୍କ ନେତୃତ୍ୱ , ସହଯୋଗ ଓ ପ୍ରେରଣା ଲାଭ କରି ରାଜ୍ୟ ସଚିବାଳୟ କର୍ମଚାରୀ ସଂଘର ସାଧାରଣ ସଂପାଦକ ଲୋକନାଥ ରଥଙ୍କ

ନେତୃତ୍ୱରେ ପରିଚାଳିତ ଶିକ୍ଷକ - କର୍ମଚାରୀ ମିଳିତ ପରିଷଦର ଆନ୍ଦୋଳନ ଫଳରେ ରାଜ୍ୟ ସରକାର ୨୦୦୬ ଅପ୍ରେଲ ମାସରୁ ଏହାକୁ ଗ୍ରହଣ କରିଥିଲେ ।

କର୍ମଚାରୀମାନଙ୍କର ଦୁଃଖ ଦୁର୍ଦ୍ଦଶା ବୁଝିବାକୁ, ସେମାନଙ୍କର ସମସ୍ୟା ଦୂର କରିବାକୁ ଅବନୀ ବରାଳଙ୍କ ଆନ୍ତରିକତା ଓ ବ୍ୟାକୁଳତା କେତେ ଗଭୀର, ତାହାର ସୁଦୂରପ୍ରସାରୀ ଅବତାରଣା କରି ବିଶିଷ୍ଟ ଲେଖକ ଓ ଶିକ୍ଷାବିତ୍ ପଦ୍ମଜ ପାଲ କହନ୍ତି - "ଯେ କୌଣସି ବେଳେ ଯେ କୌଣସି ସ୍ଥାନରେ ତାଙ୍କ ସହ ଲୋକମାନେ ତଥା କର୍ମଚାରୀମାନେ ଆଲୋଚନା କରନ୍ତି । ସେ ବି ନିଜକୁ ଯେପରି ପ୍ରତି ମୁହୂର୍ତ୍ତରେ ପ୍ରସ୍ତୁତ କରି ରଖିଥାନ୍ତି ଅନ୍ୟର କଥା ବୁଝିବାକୁ ସମସ୍ୟା ଶୁଣିବାକୁ । ଏଭଳି ଅବସ୍ଥାରେ ମୁଁ ତାଙ୍କୁ ବି ଦେଖିଛି, ଯେତେବେଳେ କୌଣସି ମୃତ ବ୍ୟକ୍ତିର ଶବାଧାର ଉପରେ ଫୁଲମାଳଟିଏ ଦେଇ ବିମର୍ଷରେ ଠିଆ ହୋଇଥାନ୍ତି, ସେତେବେଳେ ମଧ୍ୟ ଚାକିରୀ, ବଦଳି, ଦରମା ସଂକ୍ରାନ୍ତୀୟ ପ୍ରଶ୍ନ ତାଙ୍କୁ କରାଯାଏ, ଯାହାର ଉତ୍ତର ସେ ଦିଅନ୍ତି ହସି ହସି । ସେ ହସ ହସ ମୁହଁ ସେତେବେଳେ ମଣିଷର ଅବିମୃଷ୍ୟକାରୀତା ଦେଖି ଖୁବ୍ କରୁଣ ଦେଖାଯାଉଥାଏ ।

କୁହନ୍ତି ମହାତ୍ମାଗାନ୍ଧୀ ଓ ନେହେରୁଙ୍କ ବ୍ୟକ୍ତିତ୍ୱ ଭିତରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ଥିଲା । ସେଇଟି ହେଉଛି, ଯେ କୌଣସି ବ୍ୟକ୍ତି ଯେତେବେଳେ ବି ମହାତ୍ମାଗାନ୍ଧୀଙ୍କ ସହ କୌଣସି କଥା ନେଇ ପରାମର୍ଶ କରିପାରୁଥିଲା । ମାତ୍ର ନେହେରୁଙ୍କ ବ୍ୟକ୍ତିତ୍ୱରେ ସେଇ ସହଜ କଥାଟି ସମ୍ଭବ ନଥିଲା । ଅନେକ କଥା ଲୋକେ ତାଙ୍କୁ କହି ପାରୁନଥିଲେ । ଅବନୀ ବାବୁଙ୍କ ବ୍ୟକ୍ତିତ୍ୱର ଏଇ ଦିଗଟି ମତେ ମହାତ୍ମାଗାନ୍ଧୀଙ୍କ ସରଳ ନିରାଡମ୍ବର ଭାବେ ସମସ୍ତଙ୍କ ଭିତରେ ପ୍ରତ୍ୟୟ ସୃଷ୍ଟି କରିପାରିବାର ମହାନ୍ ଦିଗଟି କଥା ମନେପକାଇଦିଏ ।" ବିଭିନ୍ନ ଶିକ୍ଷକ-କର୍ମଚାରୀ ଆନ୍ଦୋଳନର ଅଗ୍ରଭାଗରେ ରହି କାର୍ଯ୍ୟ କଲାବେଳେ ଅବନୀ ବରାଳଙ୍କ ନେତୃତ୍ୱର ପରାକାଷ୍ଠା ସମ୍ପର୍କରେ ସୂଚନା ଦେଇ ତାଙ୍କର ଜଣେ ଛାତ୍ର ତଥା ପରବର୍ତ୍ତୀ ଜୀବନରେ ବିଦ୍ୟୁତ୍ କର୍ମଚାରୀ ସଙ୍ଗଠନର ନେତା ଯତୀନ୍ଦ୍ର କୁମାର ରାୟ କହନ୍ତି - "ଶିକ୍ଷକ ଆନ୍ଦୋଳନ, ସରକାରୀ ଚାକିରିଆମାନଙ୍କ ଆନ୍ଦୋଳନ, ବିଦ୍ୟୁତ ଆନ୍ଦୋଳନ ଇତ୍ୟାଦିରେ ସାର୍ ନିଜେ ନେତୃତ୍ୱ ନେବା ଦେଖିଛି । ଭୟ ନାହିଁ, ଭ୍ରାନ୍ତି ନାହିଁ ଅଟଳ ମହାମେରୁ । ସଂଗ୍ରାମରେ ଶହ ଶହ ସଂଖ୍ୟାରେ ଶିକ୍ଷକ ଓ ଶ୍ରମିକ ପୁଲିସ ଦ୍ୱାରା ବନ୍ଧାହୋଇ ଲାଠିମାଡ଼ ଖାଉଥିବା ବେଳେ ସାର୍ କେବେ ଅସ୍ଥିର କିମ୍ବା ବିଚଳିତ ହେବାର ଦେଖାଯାଏ ନାହିଁ । ଖୁବ୍ ଦାମ୍ଭିକତାର ସହିତ ସମସ୍ତ ସମସ୍ୟାକୁ ସମାଧାନ କରିବାର ଦକ୍ଷତା ତାଙ୍କ ପାଖରେ ଥାଏ ।"

ରାଜ୍ୟ ସଚିବାଳୟ କର୍ମଚାରୀ ସଂଘର ସାଧାରଣ ସମ୍ପାଦକ ରୂପେ ଦୀର୍ଘକାଳ ଧରି କାର୍ଯ୍ୟ କରିଥିବା ଅନ୍ୟତମ ବରିଷ୍ଠ କର୍ମଚାରୀ ନେତା ମନ୍ମଥନାଥ ଦାସ ଅତୀତର

ସ୍ମୃତି ରୋମନ୍ଥନ କରି କହନ୍ତି - "୧୯୭୮ ମସିହା ବେଳକୁ ଥରେ ସଚିବାଳୟ ପ୍ରାଙ୍ଗଣରେ ହୋ ହୋ ଶୁଭିଲା । ମୁଁ ରାଜସ୍ୱ ବିଭାଗ ଝରକା ବାଟେ ଲକ୍ଷ୍ୟକଲି ଓ ସେଠାକୁ ଯାଇ ବୁଝିଲି ମିଃ. ଶାହା ଏସ୍.ପି. ପୋଲିସ୍ ଫୋର୍ସ ଧରି ସଚିବାଳୟ ଭିତରକୁ ପଶିଆସିଛନ୍ତି । ସଚିବାଳୟ କର୍ମଚାରୀଙ୍କ ଉପରେ ଗୋଟେ ଇନ୍‌କ୍ୱାରୀ କମିଟି ହୋମ୍ ସେକ୍ରେଟାରୀଙ୍କ ଅଧକ୍ଷତାରେ ବସିଲା । ପ୍ରତ୍ୟେକ ଦିନ ନେତାମାନେ ହୋମ୍ ସେକ୍ରେଟାରୀଙ୍କ ସାଙ୍ଗରେ ଆଲୋଚନା ପ୍ରାୟ ଚାଲିଥାଏ । ମୁଁ କିନ୍ତୁ ତାର ଫଳାଫଳ ଜାଣିବା ପାଇଁ ବାହାରେ ଲଣ୍ଡରଭଣ୍ଡର ହେଉଥାଏ । ନେତାମାନଙ୍କର ଦୃଷ୍ଟିଗୋଚର ହେଲା ସେମାନେ ମୋତେ ଧରିନେଇ ସଚିବାଳୟ ଅମଲା ସଂଘରେ ଯୁଗ୍ମ-ସମ୍ପାଦକ କରିଦେଲେ । ମୁଁ କିଛି ବୁଝି ପାରିଲିନାହିଁ, ଭାବିଲି କଲେଜରେ କର୍ମକର୍ତ୍ତା ହେବା ପାଇଁ ନିର୍ବାଚନର ସମ୍ମୁଖୀନ ହେବାକୁ ପଡିଥାଏ କିନ୍ତୁ ଏଠିକ'ଣ ପ୍ରଥା ବୁଝିବାକୁ ଚେଷ୍ଟା କଲି । ସଂଘ କାର୍ଯ୍ୟାଳୟକୁ ପ୍ରାୟ ପ୍ରତ୍ୟେକ ଦିନ ଯାଉଥାଏ ସେଠାରେ ୨ଜଣ ଜନନେତାଙ୍କୁ ଦେଖିଲି ଜଣେ ହେଉଛନ୍ତି ସତ୍ୟବାଦୀ ମିଶ୍ର, ଆଉ ଜଣେ ପତିତପାବନ ପରିଡା । ଧୀରେ ଧୀରେ ଦୁଇଜଣଙ୍କୁ ବୁଝିବାକୁ ଚେଷ୍ଟାକଲି ଓ ତୁଳନାକଲି । ଦେଖିଲି ଜଣେ ହେଉଛନ୍ତି ଜ୍ଞାନୀ ଓ କର୍ମଠ ଆଉ ଜଣେ ଜ୍ଞାନୀ, କର୍ମଠ ଓ ସାହସୀ । ତା'ପରେ ଅଜାଣତରେ ମୁଁ ପରିଡାବାବୁଙ୍କ ପ୍ରତି ଆକୃଷ୍ଟ ହୋଇଗଲି ।

ଏହି ଅବସରରେ ଦିନେ ପି.ଏମ୍.ଜି. ଛକରେ ଘୋଘା ଶୁଣି ସିଆଡେ ସାଇକେଲ୍ ଧରି ଚାଲିଲି ଦେଖିଲି ସମୁଦ୍ରଭଳି ଗର୍ଜନ ତର୍ଜନ କରି ଶିକ୍ଷକ ଧ୍ୱନିଦେଇ ବିଧାନସଭା ଆଡେ ମାଡି ଆସୁଛନ୍ତି ପୋଲିସ କର୍ଡ଼ନ କରିଛି । ମୁଁ ରାସ୍ତା କଡରେ ସାଇକେଲ୍ ଧରି ଛିଡା ହୋଇଥାଏ । ସଭା ଆରମ୍ଭ ହେଲା । ବକ୍ତୃତା ପରେ ବକ୍ତୃତା ଚାଲିଲା । ପ୍ରାୟ ଶେଷ ଆଡକୁ ଶୁଣିଲି କୈଳାସ ମହାପାତ୍ର, ଅବନୀ ବରାଳଙ୍କ ଭାଷଣ । ସେଠାରୁ ମୋ ମନେ ମନେ ଖୋଜୁଥିବା ମଣିଷଟିକୁ ପାଇଲି । ତାଙ୍କର ଭାଷଣରେ ଯେତିକି ମସଲା, ଯେତିକି ଶିକ୍ଷକମାନଙ୍କୁ ତତାଇବା ପାଇଁ ଥିଲା ଓ ସରକାରଙ୍କୁ ଚେତାବନୀ ସେତିକି ଥାଏ ମୁଁ ଭାବିଲି ଓଜନଦାର ମଣିଷଟିଏ । ତାଳିପରେ ତାଳି ମୁଁ ବି ଶେଷରେ ତାଳିରେ ସାମିଲ ହୋଇଗଲି । ମୁଁ ଭାବିଲି ଏ ଭଦ୍ରବ୍ୟକ୍ତିଙ୍କ ସାଙ୍ଗରେ ମିଶିଲେ ତାଙ୍କ ସମ୍ପର୍କରେ ଆହୁରି କିଛି ଜାଣିହେବ । କିମିତି ଜାଣିବି ? ମୋର ସହକର୍ମୀ ଅନୀଲ ମହାନ୍ତି, ଲୋକନାଥ ରଥ, ଶରତ ଦାସ ଏମାନଙ୍କୁ ପଚାରିଲି । କିଛି କିଛି ଜାଣିଲି । ତା'ପରେ ଆଉ ଟିକିଏ ଜାଣିବାକୁ ଇଚ୍ଛା ହେଲାରୁ ମୁଁ ଅନୀଲ ସହିତ ଯୋଗାଯୋଗ କଲି ଓ ତାହାଠାରୁ ଯାହା ବୁଝିଲି ସେ ଜଣେ ଟାଣୁଆ ଶିକ୍ଷକ ନେତା । ସେ ଆମ ସି.ପି.ଆଇ. କ୍ୟାଡରର ଜଣେ ସକ୍ରୀୟ ସଭ୍ୟ । ସେଠାରୁ ମୁଁ ତାଙ୍କୁ ପ୍ରଶ୍ନକଲି ଶିକ୍ଷକମାନଙ୍କ ନେତୃତ୍ୱ ନେଇ କୌଣସି ବ୍ୟକ୍ତିଗତ ରାଜନୀତି ଦଳରେ ସାମିଲ ହେବା କ'ଣ ଉଚିତ ? ସେ ମୋତେ ବାଦ

ଅର୍ଥାତ୍ ଲେନିନ୍ ବାଦ କାର୍ଲମାକ୍ସବାଦ ଆଦର୍ଶ ସମ୍ପର୍କରେ କହିଲେ ଏବଂ କହିଲେ କୌଣସି ନିର୍ଦ୍ଦିଷ୍ଟ ବାଦରେ ବିଶ୍ୱାସ କରିବା କିଛି ଭୂଲ୍ ନୁହେଁ, କାରଣ ସେମାନେ ଖଟିଖିଆ ମେହନତି ଜନତାର ଉତ୍‌ଥାନ ପାଇଁ ସଂଗ୍ରାମ କରୁଥିଲେ । ବୁଝିଲି ତଥାପି ରାଜନୀତିକ ଦଳରେ ସାମିଲ ହେବାକୁ ମୁଁ ଗ୍ରହଣ କରିପାରିଲି ନାହିଁ । କାରଣ ମୁଁ ବୁଝିଲି ଏହା ଫଳରେ ସଙ୍ଗଠନ ଭାଗ ଭାଗ ହୋଇଯିବ । ସେ ଯାହା ହେଉ ମୋ ପାଇଁ ଅବନୀ ବାବୁ ସେଦିନ ଠାରୁ ପୂଜ୍ୟ ଓ ନମସ୍ୟ ହୋଇ ରହିଲେ ଯଦିଓ ମୁଁ ତାଙ୍କୁ ବ୍ୟକ୍ତିଗତ ଭାବେ ଜାଣେନି ।

ସୁଯୋଗ ଆସିଲା ୧୯୮୯ ମସିହାରେ । କର୍ମଚାରୀମାନେ କେନ୍ଦ୍ର ହାରରେ ବେତନ ପାଇବା ପାଇଁ ସରକାରଙ୍କ ଠାରେ ଦାବୀ କଲେ । ସରକାରଙ୍କ ନଦେବାର ମନୋବୃତ୍ତି କର୍ମଚାରୀମାନଙ୍କୁ ବ୍ୟଥିତ କଲା - ସଂଗ୍ରାମ ଚାଲିଥାଏ କିନ୍ତୁ ସରକାର କିଛି ଶୁଣୁ ନଥାନ୍ତି । ଆମେ ଦିନେ କର୍ମଚାରୀ ଭବନରେ ବସି ଆଲୋଚନା କରୁଥାଉ । ମୁଁ ପ୍ରଥମେ ପ୍ରସ୍ତାବ ଦେଲି ଶିକ୍ଷକମାନଙ୍କୁ ଆମ ସହିତ ସାମିଲ କଲେ, ଆନ୍ଦୋଳନ ଯୋରଦାର ହେବ ସରକାର ଶୁଣିବାକୁ ବାଧହେବେ । କେତେକ ସଭ୍ୟ ପ୍ରତିବାଦ କଲେ କିନ୍ତୁ ପରିଡା ବାବୁ ନୀରବ ରହି ମୋ ସହିତ ପରେ ବ୍ୟକ୍ତିଗତ ଭାବେ ଆଲୋଚନା କଲେ । ସେ ତା'ପରେ ଅବନୀବାବୁଙ୍କ ସହିତ ବ୍ୟକ୍ତିଗତଭାବେ ଆଲୋଚନା କରି ମୋତେ ଜଣାଇବେ ବୋଲି କହିଲେ ଏବଂ ସେତେଦିନ ପର୍ଯ୍ୟନ୍ତ ଏକଥା ଗୋପନୀୟ । ଯାହାହେଉ ଅବନୀବାବୁ ରାଜିହେଲେ । ପରିଡାବାବୁ ଆମର କେତେକ ନେତାମାନଙ୍କୁ ବୁଝାଇଲେ ତା'ପରେ ଆମେ ସଚିବାଳୟର କେତେକ ବନ୍ଧୁ ଯଥା ଗଙ୍ଗାଧର ନନ୍ଦ, ଅନୀଲ ମହାନ୍ତି, ଲୋକନାଥ ରଥ, ଶରତ ଦାସ, ପରିଡା ବାବୁଙ୍କ ସଙ୍ଗେ ଶିକ୍ଷକ ମହାସଂଘ ଗଲୁ । ସେଠାରେ ଆଲୋଚନା କଲୁ । ପ୍ରାୟ ଉଭୟନେତା ସହମତହେଲେ ଓ କାର୍ଯ୍ୟକ୍ରମ ତୁରନ୍ତ ଆରମ୍ଭ କରିବା ପାଇଁ କହିଲେ । ସେଠାରୁ ସ୍ୱ ସ୍ୱ ସ୍ତରରେ ସଭାଡାକି ବିଶଦ ଆଲୋଚନା ହେଲା । ଆମେମାନେ ଆଗେଇ ଚାଲିଲୁ । ଏହି ସମୟରେ ସମନ୍ୱୟ ସମିତିର କେତେକ ମୁଖିଆ ତାଙ୍କର ରାଜନୈତିକ ଦୃଷ୍ଟିକୋଣରୁ ସେମାନେ ଖୋଲାଖୋଲି ପ୍ରତିବାଦ ନକଲେ ମଧ୍ୟ ଶିଖିମନାଇ କାର୍ଯ୍ୟ କଲେ, ତାଙ୍କୁ ମୁଁ ଡକାଇ ଶିକ୍ଷକ ମହାସଂଘ କାର୍ଯ୍ୟାଳୟକୁ ଗଲି ଅବନୀ ବାବୁଙ୍କ ସାଙ୍ଗରେ ଆଲୋଚନା ହେଲା । ଅବନୀ ବାବୁ ତାଙ୍କ କଳାରେ ଏପରିଭାବେ ସେମାନଙ୍କୁ ବୁଝାଇ ଦେଲେ ଯେ ମୁଁ ବହୁତ ଖୁସୀ ହେଲି ଓ ତାଙ୍କର ସାମନାରେ ମିଳାମିଶା ହୋଇଗଲା ।

ସେମାନେ ଗଲାପରେ ଆମେ କେତେଜଣ ରହିଲୁ ଓ ଅବନୀବାବୁଙ୍କ ସହ ଆଲୋଚନା କରି ଆମ ମନକଥା କହିଲୁ ଓ ସେ ଆମକୁ ଗୋଟିଏ ବାକ୍ୟରେ ବୁଝାଇଦେଇ କହିଲେ ସେ ଥରେ ମହାସମୁଦ୍ରରେ ଝାସ ଦେଇଦିଅନ୍ତୁ ତା'ପରେ ସେ ସ୍ରୋତରେ ସେ

ଭାଷିଯିବେ ନିଜକୁ ଅସହାୟ ଭାବିବେ "ତୁ ମନ୍ମଥ କାହିଁକି ଚିନ୍ତା କରୁଛୁ ଆଗେଇ ଚାଲ" ଆମେ ଜିତିବା ।

ଶିକ୍ଷକ କର୍ମଚାରୀ ସଂଘ ଆଗେଇ ଚାଲିଲା । ଦାବୀ ହାସଲ ହେଲା, ସରକାରଙ୍କର ପତନ ହେଲା, ଗଙ୍ଗାଧର ମହାପାତ୍ରଙ୍କୁ ଶିକ୍ଷକମାନେ ଯାଇ ବ୍ରହ୍ମଗୀରିରୁ ନେଇକରି ଆସିଲେ, ତାପରଦିନ ସକାଳୁ ଅର୍ଥମନ୍ତ୍ରୀ, ଅର୍ଥ ସଚିବ ଏମାନଙ୍କ ସହିତ ଆଲୋଚନା ହେଲା ସେମାନେ ରାଜି ହେଲେ କିନ୍ତୁ କେତେକ ବ୍ୟତିକ୍ରମ ସହିତ । ଆମେ କିନ୍ତୁ ସହମତ ହେଲୁନାହିଁ । ତା'ପରେ ଶିକ୍ଷକ ମହାସଂଘକୁ ଆସିଲୁ ବସି ଆଲୋଚନା କଲୁ, ସେତେବେଳେ ଅବନୀ ବାବୁ କହିଲେ ଗଙ୍ଗା ଭାଇନା ଖମ୍ଭଆଳୁଟା ବୁଝିଛନ୍ତି ତାକୁ ରବିଦାସ ଯାହା କହିବ ସେ ସେଇଆ କରିବେ । ସରକାର ବିଜ୍ଞପ୍ତିକୁ ଅପେକ୍ଷା, ବିଜ୍ଞପ୍ତି ବାହରିଲା ସରକାରଙ୍କ ପତନ ହେଲା ଇତ୍ୟାଦି ଇତ୍ୟାଦି ।

ସେତେବେଳେ ଆମର ଘନ ଘନ ଶିକ୍ଷକ ମହାସଂଘରେ ଆଲୋଚନା ଚାଲେ । ଯେତେବେଳେ ଅତି ବିରକ୍ତି ହୋଇଯାଆନ୍ତି ଅବନୀ ବାବୁଙ୍କ ରାଗ କେବଳ ସୀମୀତ ଭାଷା "ଖମ୍ଭଆଳୁ"ରେ ସୀମାବଦ୍ଧ ଯାହା, ଏକାଧାରରେ ହାସ୍ୟରୋଳ ସୃଷ୍ଟି କରେ ଓ ବିରକ୍ତିଭାବର ସୂଚନା ଦିଏ ।"

ଅବନୀ ବରାଳ ଶିକ୍ଷକ-କର୍ମଚାରୀ ମିଳିତ ସଂଘର ଆବାହକ ରୂପେ କାର୍ଯ୍ୟକରି ଦୁଇ ସଙ୍ଗଠନ ମଧ୍ୟରେ ସମନ୍ୱୟର ସେତୁ ରୂପେ କାର୍ଯ୍ୟ କଲାବେଳେ ତାଙ୍କର ଜଣେ ସହକର୍ମୀ ରୂପେ କାର୍ଯ୍ୟ କରିଥିଲେ ସଚିବାଳୟ କର୍ମଚାରୀ ସଂଘର ବରିଷ୍ଠ ନେତା ଲୋକନାଥ ରଥ । ତାଙ୍କର ଆତ୍ମୋତ୍ସର୍ଗ ମନୋଭାବରେ ଉଦାହରଣ ଦେଇ ସେ କହନ୍ତି - "ଦୀର୍ଘ ତିରିଶ ବର୍ଷ ଧରି କର୍ମଚାରୀ ଓ ଶିକ୍ଷକମାନଙ୍କର ସାମୂହିକ ସମସ୍ୟା ସମାଧାନ ପାଇଁ ମୁଁ ସାର୍‌ଙ୍କ ସହିତ କାମ କରିବା ସୁଯୋଗ ପାଇଛି । ଏକାଠି ଆନ୍ଦୋଳନ ପରିଚାଳନା କରିଛୁ । ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ବିଭିନ୍ନ ପଦାଧିକାରୀଙ୍କ ସହିତ ଦାବୀ ପୂରଣ ପାଇଁ ଆଲୋଚନା କରିଛୁ । ପ୍ରତ୍ୟେକ ଥର କିଛି ନା କିଛି ସୁଫଳ କର୍ମଚାରୀ ଓ ଶିକ୍ଷକମାନେ ପାଇଛନ୍ତି । ୧୯୭୯ ମସିହା ଆନ୍ଦୋଳନର 'କାମ ନାହିଁ ତ ଦରମା ନାହିଁ' କଳା ନୀତିରେ ରାଜ୍ୟର ଯେତେ ପ୍ରକାର କର୍ମଚାରୀ, ଶିକ୍ଷକ ଓ ଶ୍ରମିକଙ୍କର ଦରମା କଟିଥିଲା ତାହା ଫେରି ପାଇଛନ୍ତି । ୧୯୮୯ ମସିହାର ଚଉଦ ଦିନର କାର୍ଯ୍ୟ ବନ୍ଦ ଆନ୍ଦୋଳନ ଯୋଗୁଁ ଚତୁର୍ଥ କେନ୍ଦ୍ରୀୟ ବେତନ କମିଶନ ରାଜ୍ୟରେ ଲାଗୁ ହୋଇପାରିଛି । ସେହିଭଳି ୧୯୯୮ର ଆନ୍ଦୋଳନ ଫଳରେ ୫ମ କେନ୍ଦ୍ରୀୟ ବେତନ ଓ ୨୦୦୬ର ଆନ୍ଦୋଳନ ଫଳରେ ୫୦% ମହଙ୍ଗା ଭତ୍ତା ମୂଳ ଦରମାରେ ମିଶିବା ରାଜ୍ୟ କର୍ମଚାରୀ ଓ ଶିକ୍ଷକଙ୍କ

କ୍ଷେତ୍ରରେ ସମ୍ଭବ ହୋଇଛି । ଏଥିପାଇଁ ଅବନୀ ସାର୍‌ଙ୍କ ନିଷ୍ଠା ଓ ପ୍ରେରଣାକୁ ଭୁଲି ହେବନାହିଁ ।

ଅବନୀ ସାର୍‌ଙ୍କ ଭଳି ଆତ୍ମୋତ୍ସର୍ଗ କରି ଅନ୍ୟକୁ ସାହାଯ୍ୟ କରିବା ସହୃଦୟ ବ୍ୟକ୍ତି କ୍ୱଚିତ ଦେଖାଯାଆନ୍ତି । ତାଙ୍କର ସଙ୍ଗଠନ ପରିଚାଳନା ଓ ନେତୃତ୍ୱ ମଧ୍ୟ ଏହା ଉପରେ ଆଧାରିତ । ୧୯୮୧ ମସିହାରେ ସଚିବାଳୟ କର୍ମଚାରୀମାନଙ୍କର ୬୨ ଦିନର ଆନ୍ଦୋଳନ ଏହାର ଏକ ଜ୍ୱଳନ୍ତ ନିଦର୍ଶନ । ସଙ୍ଗଠନ ଗଠନ କରିବାର ଗଣତାନ୍ତ୍ରିକ ଅଧିକାର ଓ ନ୍ୟାଯ୍ୟ ପ୍ରାପ୍ୟ ପାଇଁ ସଚିବାଳୟ କର୍ମଚାରୀମାନେ ୧୯୮୧ ମସିହା ମେ ୧୫ ତାରିଖ ଠାରୁ ଅନିର୍ଦ୍ଦିଷ୍ଟ କାଳ ଆନ୍ଦୋଳନର ଡାକରା ଦେଲେ । ଏକ ପକ୍ଷରେ ଆନ୍ଦୋଳନକୁ ଦବାଇ ଦେବା ପାଇଁ ସରକାରଙ୍କ କର୍ମଚାରୀଙ୍କ ଉପରେ ଅକଥନୀୟ ଆକ୍ରମଣ ଓ ଅନ୍ୟ ପକ୍ଷରେ ତଥା କଥିତ କେତେକ କର୍ମଚାରୀ ସଙ୍ଗଠନର ଆନ୍ଦୋଳନକୁ ବିରୋଧ ଏକ ସଂଗୀନ ଅବସ୍ଥା ସୃଷ୍ଟି କରିଥିଲା । ସରକାରଙ୍କ ଭୟରେ ସଭା ପାଇଁ ଆନ୍ଦୋଳନରତ କର୍ମଚାରୀଙ୍କୁ ଭୁବନେଶ୍ୱରରେ ଘରଟିଏ ମଧ୍ୟ ମିଳିଲା ନାହିଁ । ଏ.ଜି. ରିକ୍ରେଏସନ୍ କ୍ଲବ ଥରଟିଏ ଦେଇଥିଲେ ଦ୍ୱିତୀୟଥରକୁ ସେମାନେ ମଧ୍ୟ ମନା କଲେ । ଏହିଭଳି ଏକ ସଂକଟ ସମୟରେ ଏକମାତ୍ର ନେତା ଶ୍ରୀ ଅବନୀ ବରାଳ ଆନ୍ଦୋଳନକୁ ଦୃଢ଼ ସମର୍ଥନ କରିବା ସହିତ ଶିକ୍ଷକ ମହାସଂଘ ଅଫିସକୁ ଆନ୍ଦୋଳନ ପରିଚାଳନାରେ ସବୁମନ୍ତେ ବ୍ୟବହାର କରିବାର ସୁଯୋଗ ଦେଇଥିଲେ । ତାଙ୍କରି ନେତୃତ୍ୱରେ ଶିକ୍ଷକ ମହାସଂଘ ହାଇକୋର୍ଟ ବିଶ୍ୱବିଦ୍ୟାଳୟ କର୍ମଚାରୀ ସଂଘ, ଇଲେକ୍ଟ୍ରିସିଟି ବୋର୍ଡ଼ ତଥା ଅନ୍ୟାନ୍ୟ ନିଗମ କର୍ମଚାରୀ ସଂଘ ଓ କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ ଆନ୍ଦୋଳନକୁ ସମର୍ଥନ କରିବା ସହିତ ରାଲି ଧାରଣା ମାଧ୍ୟମରେ ସରକାରଙ୍କୁ ଦୃଢ଼ ଜବାବ ଦେଇଥିଲେ । ତଦାନିନ୍ତନ ଅନେକ ଚିନ୍ତାନାୟକ ଆଶ୍ଚର୍ଯ୍ୟ ପ୍ରକଟ କରିଥିଲେ । ପର ପାଇଁ ପୁଅ ମୁଣ୍ଡ ଛୁଇଁବା ଭଳି ଅବନୀ ବାବୁ କାହିଁକି ଏଭଳି କରୁଛନ୍ତି ? ଏହାଦ୍ୱାରା ଅବନୀ ବାବୁ ବା ଶିକ୍ଷକ ମହାସଂଘ କି ଲାଭ ହେବ ? ଏଭଳି ଅନେକ ମନ୍ତବ୍ୟ ଦେବା ସହିତ କୁତ୍ସାରଟନା, ବିଭେଦ ପାଇଁ ଅନେକ ମଧ୍ୟ ଲାଗିପଡ଼ିଲେ । ଏହାକୁ ଭୃକ୍ଷେପ ନକରି ନିଜକୁ ବିପଦ ମୁହଁକୁ ଠେଲି ସେ ଶେଷ ପର୍ଯ୍ୟନ୍ତ ଆନ୍ଦୋଳନ ପଛରେ ଦୃଢ଼ ହୋଇ ଠିଆ ହୋଇଥିଲେ । ଏହାଦ୍ୱାରା ସେ ଏକ ମହାନ୍ ବାର୍ତ୍ତା ଜନସାଧାରଣଙ୍କୁ ଦେଇଥିଲେ । ଅନ୍ୟାୟର ନିରବ ଦ୍ରଷ୍ଟା ସାଜିବା ମଧ୍ୟ ଅନ୍ୟାୟ । ଏକ ପାଇଁ ଅନେକ କେବଳ ସ୍ଲୋଗାନ୍ ନୁହେଁ ବାସ୍ତବ । ତାଙ୍କର ଏହି ଭୂମିକା ପରବର୍ତ୍ତୀ ପର୍ଯ୍ୟାୟରେ ସମସ୍ତ କର୍ମଚାରୀ ଶିକ୍ଷକଙ୍କୁ ଗୋଟିଏ ମଞ୍ଚରେ ଠିଆ କରିପାରିଥିଲା । ଏହିଭଳି ବ୍ୟକ୍ତିଙ୍କୁ ମହାପୁରୁଷ ନକହି କ'ଣ କୁହାଯିବ ? ସୁନାକୁ ମାଜିଲା ଭଳି ଦିନ ଦିନକର ଘଟଣା ବର୍ଣ୍ଣନା କଲେ ଅବନୀ ସାରଙ୍କ ବ୍ୟକ୍ତିତ୍ୱ ଅଧିକ ଜାଜ୍ୱଲ୍ୟମାନ ହେବ । ଗୋଟିଏ ଗ୍ରନ୍ଥରେ ମଧ୍ୟ ତାହା ବର୍ଣ୍ଣନା କରିବା ସମ୍ଭବ ହେବନାହିଁ ।"

ଓଡ଼ିଶାରେ ଶିକ୍ଷକ କର୍ମଚାରୀମାନେ କେଉଁ ପୃଷ୍ଠଭୂମିରେ ଗୋଟିଏ ମଞ୍ଚତଳେ ଏକାଠି ହୋଇ ଏକ ମିଳିତ ଶକ୍ତି ଭାବରେ ସରକାରଙ୍କ ସହ ଲଢ଼େଇ କରି ଦାବି ହାସଲ କରିପାରିଲେ, ତାହାର ପୃଷ୍ଠଭୂମି ବର୍ଣ୍ଣନା କରି ଓଡ଼ିଶା ରାଜ୍ୟ ଅଣଗେଜେଟେଡ୍ କର୍ମଚାରୀ ସମନ୍ୱୟ ସମିତିର ପୂର୍ବତନ ସାଧାରଣ ସମ୍ପାଦକ ତଥା ଜଣେ ଲଢୁଆ କର୍ମଚାରୀ ନେତା ଅନିଲ୍ କୁମାର ମହାନ୍ତି କହନ୍ତି - "୧୯୬୦ ଦଶକରୁ ମଧ୍ୟବିତ୍ତ ଜନଗଣ, ଶ୍ରମିକ ଓ କର୍ମଚାରୀ, ଶିକ୍ଷକ ସଙ୍ଗଠନ ସ୍ୱସ୍ୱକ୍ଷେତ୍ରରେ ଆନ୍ଦୋଳନ ଚଳାଇ ସ୍ୱାଧୀନ ଭାରତର ନାଗରିକମାନଙ୍କ ସ୍ୱାଧୀନତା, ଅଧିକାର ସମସୁଯୋଗ ଓ ଜାତି ଧର୍ମବର୍ଣ୍ଣ ଲିଙ୍ଗ ଭେଦର ଊର୍ଦ୍ଧ୍ୱରେ ସଂହତି ଓ ଭାଇଚାରା ସୁନିଶ୍ଚିତ କରିବାକୁ ପ୍ରୟାସ କରୁଥିଲେ । ୧୯୭୦ ଦଶକ ବେଳକୁ ଯୌଥ ଅଭିଯାନର ଆବଶ୍ୟକତା କ୍ରମଶଃ ଉପଲବ୍ଧି କଲେ, ଶ୍ରମିକଙ୍କ କ୍ଷେତ୍ରରେ ବିଭିନ୍ନ କେନ୍ଦ୍ରୀୟ ଟ୍ରେଡ୍ୟୁନିୟନ, ଜାତୀୟ ଶ୍ରମଜୀବି ମହାସଂଘ ସମୂହ ମିଳିତ ଆନ୍ଦୋଳନ କରି ଯୌଥ ମୂଳଚାଲ ମାଧ୍ୟମରେ ସାମାଜିକ ଆର୍ଥିକ ନ୍ୟାୟ ପାଇଁ ସଂଗ୍ରାମରେ ଅଗ୍ରସର ହେବାବେଳେ କର୍ମଚାରୀଙ୍କ କ୍ଷେତ୍ରରେ ରାଜ୍ୟ ଅଣଗେଜେଟେଡ୍ କର୍ମଚାରୀ ସମନ୍ୱୟ ସମିତି, ଶିକ୍ଷକଙ୍କ କ୍ଷେତ୍ରରେ ଶିକ୍ଷକ ମହାସଂଘ ଯୌଥ ଆନ୍ଦୋଳନ ଦ୍ୱାରା ଶାସନ ନୀତିକୁ ଜନାଭିମୁଖୀ କରିବାକୁ ଲଗାତର ପ୍ରୟାସ କଲେ । ୧୯୭୯ ମସିହାରେ ଅଧ୍ୟାପକ ଅବନୀ ବରାଳ ଓ ପ୍ରୟାତ କର୍ମଚାରୀ ନେତା ସାଥୀ ରାଜେନ୍ଦ୍ର ରାଉତଙ୍କ ଆହ୍ୱାନରେ ଓଡ଼ିଶାର ପ୍ରାୟ ସମସ୍ତ କର୍ମଚାରୀ, ଶିକ୍ଷକ ଓ ଶ୍ରମିକ ସଙ୍ଗଠନମାନେ କଟକର ବାରବାଟୀ ଷ୍ଟାଡ଼ିୟମରେ ଏକତ୍ରିତ ହେଲେ । ଜନ୍ମନେଲା ଶ୍ରମିକ-କର୍ମଚାରୀ-ଶିକ୍ଷକ ମିଳିତ କ୍ରିୟାନୁଷ୍ଠାନ ସମିତି । ଆନ୍ଦୋଳନକୁ ଦବାଇବା ପାଇଁ "କାମ ନାହିଁ ତ ଦରମା ନାହିଁ" ନୀତିରେ ଆନ୍ଦୋଳନକାଳୀନ ବେତନ ଭତ୍ତା ଶ୍ରମିକ - କର୍ମଚାରୀ ଶିକ୍ଷକ ସଙ୍ଗଠନମାନେ ଫେରସ୍ତ ପାଇଲେ । ଏପରି ଯୌଥ ଜନସଭାର ପ୍ରଭାବରେ ସରକାରୀ ମନମୁଖୀ କାର୍ଯ୍ୟକଳାପରେ ଅଙ୍କୁଶ ଲାଗିଲା, ଗଣତାନ୍ତ୍ରିକ ଅଧିକାର ସଫଳ ରୂପ ନେଲା ଓ ପ୍ରଶାସନର ଅନମନୀୟ କଠୋର ମନୋଭାବର ପରିବର୍ତ୍ତନ ଘଟିବାକୁ ବାଧ୍ୟହେଲା । କିନ୍ତୁ ମନମୁଖୀ ବେପରୁଆ ଶାସନ ଚଳାଇ କ୍ଷମତା ଜାହିର କରୁଥିବା ଶକ୍ତି ଦଳମତ ନିର୍ବିଶେଷରେ ଏହି ଯୌଥଶକ୍ତି ବିରୁଦ୍ଧରେ ଏକଜୁଟ ହେଲେ, ମୁକାବିଲା ପାଇଁ ଅଣ୍ଟା ଭିଡ଼ିଲେ । ୧୯୮୧ ମସିହାରେ ସଚିବାଳୟ କର୍ମଚାରୀ ଆନ୍ଦୋଳନକୁ ଯେପରି ଦୃଢ଼ ସମର୍ଥନ ଶିକ୍ଷକ ମହାସଂଘ ଯୋଗାଇଲା ଓ ବିମୁଖ - ଉନ୍ମୁଖ ଉଭୟ ଶକ୍ତିର ସଂହତି ସୃଷ୍ଟି କରିପାରିଲା, ତାହା ବସ୍ତୁତଃ ମଧ୍ୟବିତ୍ତ-କର୍ମଚାରୀ-ଶ୍ରମିକ ଆନ୍ଦୋଳନ କ୍ଷେତ୍ରରେ ଶିକ୍ଷକ ମହାସଂଘକୁ କେନ୍ଦ୍ରୀୟ ସ୍ଥାନରେ ଦର୍ଶାଇଲା । ସୁତରାଂ ବିରୋଧୀ ପ୍ରତିକ୍ରିୟାଶୀଳ ଶକ୍ତିଙ୍କ ତରଫରୁ ଶିକ୍ଷକ ମହାସଂଘ ଉପରେ ଯୋଜନାବଦ୍ଧ ପ୍ରଚଣ୍ଡ ଆକ୍ରମଣ ଚାଲିଲା । ୧୯୮୪ରେ ଶିକ୍ଷକ ମହାସଂଘ ପରିସର

ପର୍ଯ୍ୟନ୍ତ ଲମ୍ବିଆସିଲା ନିଷେଧାଦେଶ ୧୪୪ ଧାରା । ଶିକ୍ଷକ ମହାସଂଘ ମୁକାବିଲା କଲା, ସମସ୍ତ ଶ୍ରମିକ-କର୍ମଚାରୀ ସାମିଲ ହୋଇଗଲେ ଶିକ୍ଷକ ଶକ୍ତି ବିଜୟ ଲାଭ କଲା । ଅନେକ ସମସ୍ୟାର ସମାଧାନ ହେଲା, ରହିଗଲା କିନ୍ତୁ ଅନେକ । ୧୯୮୭ରେ ଅନୁରୂପ ସରକାରୀ ଆକ୍ରମଣ ହେଲା - ମୁକାବିଲାରେ ବିଜୟୀ ହେଲେ ଶିକ୍ଷକ ଶକ୍ତି, ସଂଘଶକ୍ତି । ୧୯୮୮ରେ ଗୁରୁଦିବସରେ ଆନ୍ଦୋଳନର ତୀବ୍ରତା ମଧ୍ୟରେ ଓଡ଼ିଶା ରାଜ୍ୟ କର୍ମଚାରୀ ଓ ଶିକ୍ଷକ ପରିଷଦ ଗଠନ କରାଗଲା । ମାତ୍ର ୪ଟି ଜରୁରୀ ଦାବୀ ନେଇ ଯଥା - କେନ୍ଦ୍ରୀୟ ବେତନହାର ରାଜ୍ୟରେ ଅବିକଳ ପ୍ରଚଳନ, ୟୁଜିସି ହାରରେ ବେତନ ଭତ୍ତା ଓ ସୁବିଧା ସୁଯୋଗ, ସମସ୍ତ ଶିକ୍ଷକ କର୍ମଚାରୀଙ୍କୁ ବୋନସ ପ୍ରଦାନ ଓ ସଂଘକାର୍ଯ୍ୟ ହେତୁ ହୋଇଥିବା ଆକ୍ରୋଶମୂଳକ କାର୍ଯ୍ୟାନୁଷ୍ଠାନ ପ୍ରତ୍ୟାହାର ଦାବୀନେଇ ଏପ୍ରିଲ-୪ ୧୯୮୯ରେ ଯେଉଁ ଆନ୍ଦୋଳନ ହେଲା, ତା'ର ଫଳଶ୍ରୁତି ହେଉଛି ରାଜ୍ୟ କର୍ମଚାରୀ-ଶିକ୍ଷକମାନଙ୍କ କ୍ଷେତ୍ରରେ କେନ୍ଦ୍ରୀୟ ଚତୁର୍ଥ ବେତନହାର ପ୍ରଚଳନ । ପୁନଶ୍ଚ ୧୯୯୬ରୁ କେନ୍ଦ୍ର ସରକାରଙ୍କ ପଞ୍ଚମ ବେତନ କମିଶନ ଭିତ୍ତିରେ ସଂଶୋଧିତ ବେତନଭତ୍ତା ରାଜ୍ୟରେ ପ୍ରଚଳନ ପାଇଁ ଯୌଥ ଆନ୍ଦୋଳନ ବ୍ୟାପକ କରିବା ଆବଶ୍ୟକ ହେଲା । ସରକାରୀ କଳର କୌଶଳରେ ଅନେକ ସଂଘ ସେତେବେଳେ ଉକ୍ତ ଯୌଥ ଆନ୍ଦୋଳନରୁ ଦୂରେଇ ରହିବାକୁ ପ୍ରତିକ୍ରିୟାଶୀଳ ଶକ୍ତିମାନେ ପ୍ରୟାସ କରୁଥାନ୍ତି । ମାତ୍ର ଶିକ୍ଷକ ମହାସଂଘର ଆହ୍ୱାନରେ ସଂଗଠିତ ହେଲା ଆହୁରି ଏକ ବିଶାଳ ମଞ୍ଚ 'କନ୍‌ଫେଡେରେସନ୍ ଅଫ୍ ଗେଜେଟେଡ୍ ଆଣ୍ଡ ନନ୍‌ଗେଜେଟେଡ୍ ଏମ୍ପ୍ଲୟିଜ୍ ଆଣ୍ଡ ଟିଚର୍ସ ଅରଗାନାଇଜେସନସ୍' - ସଂକ୍ଷେପରେ କଗ୍‌ନେଟ୍ COGNETO । ଏହି ସଂଗଠନ ତଳେ ଏକଜୁଟ୍ ହେଲେ ସବୁ ଶିକ୍ଷକ, କର୍ମଚାରୀ ସଙ୍ଗଠନ ୧୯୯୮ରେ । ୦୧.୦୧.୯୬ରୁ ବକେୟା ପାଉଣା ସହ ରାଜ୍ୟରେ ପୂର୍ବନୀତି ବଜାୟରଖି କେନ୍ଦ୍ରୀୟ ପଞ୍ଚମ ବେତନହାର କାର୍ଯ୍ୟକାରୀ ହେଲା । ଏବେ ଏହା ପ୍ରଚଳିତ ଅଛି । ଏଥିରେ ରଖାଯାଇଥିବା ଅସଙ୍ଗତି ଦୂରୀକରଣ ପାଇଁ ଯୌଥ ଓ ସୁନିର୍ଦ୍ଦିଷ୍ଟ ଆନ୍ଦୋଳନ ଲୋଡ଼ା । ତାହା କେବଳ ସମ୍ଭବ ହେବ, ଆହୁରି ବଳିଷ୍ଠ ଶିକ୍ଷକ ମହାସଂଘର ଆହ୍ୱାନରେ ।"

ନୂତନ ସହସ୍ରାବ୍ଦୀର ମହୋତ୍ସବ ମଧ୍ୟରେ ଶ୍ରମଜୀବି, ବୁଦ୍ଧିଜୀବି, କର୍ମଜୀବିଙ୍କ ପାଇଁ ଘନେଇ ଆସିଥିଲା ସଂସ୍କାର ପ୍ରକ୍ରିୟା ନାମରେ ଏକ କାଳରାତ୍ରୀ । ଅବିଚାରିତ ପଦବୀ ବିଜ୍ଞାପନ, ଘରୋଇ ଠିକାଦାରଙ୍କୁ ସରକାରୀ କାର୍ଯ୍ୟରେ ନିଯୁକ୍ତି, ରାଷ୍ଟ୍ରୀୟ ଉଦ୍ୟୋଗ ବିଲୋପନ, ଶ୍ରମିକ ଛଟେଇ, ଶିକ୍ଷକ ବେତନଭତ୍ତା ବନ୍ଦ କରିବା, ବ୍ଲକଗ୍ରାଣ୍ଟ ନାମରେ ଅନୁଦାନ ବନ୍ଦ କରିବା, ପ୍ରଦତ୍ତ ସୁବିଧା ସୁଯୋଗ ପ୍ରତ୍ୟାହାର କରିନେବା ଆଦି ଶ୍ରମିକ - କର୍ମଚାରୀମାରଣ ନୀତି ସମଗ୍ର ଜନସଭାକୁ ବିଧ୍ୱସ୍ତ, ବିଚଳିତ ଓ କିଂ କର୍ତ୍ତବ୍ୟ ବିମୁଢ଼ କରିଦେଲା । ମାତ୍ର ଶିକ୍ଷକ ମହାସଂଘ ପ୍ରଶ୍ନକଲା ଓଡ଼ିଶାକୁ କିଏ ଶାସନ କରୁଛି -

ଡି.ଏଫ୍.ଆଇ.ଡ଼ି. ନା ଓଡ଼ିଶା ସରକାର ? ପ୍ରକାଶିତ ସରକାରୀ ଶ୍ୱେତପତ୍ରର ଗୂଢ଼ ରହସ୍ୟ ଜନସାଧାରଣଙ୍କ ଆଗରେ ଖୋଲି ଦେଲା ଶିକ୍ଷକ ମହାସଂଘର ମୁଖପତ୍ର 'ଶିକ୍ଷାସମସ୍ୟା' । ୨୦୦୨ ମାର୍ଚ୍ଚ ମାସରେ ପୁନଶ୍ଚ ଯୌଥ ଆନ୍ଦୋଳନ କରାଗଲା ନବଗଠିତ ଶ୍ରମିକ-କର୍ମଚାରୀ-ଶିକ୍ଷକ ମିଳିତ କ୍ରିୟାନୁଷ୍ଠାନ ସମିତି ନେତୃତ୍ୱରେ ଏଇ ଜନବିରୋଧୀ ଆର୍ଥିକ ସଂସ୍କାର ବିରୁଦ୍ଧରେ । ଏହି ପର୍ଯ୍ୟାୟ ଆନ୍ଦୋଳନରୁ କେତେକ କର୍ମଚାରୀ ସଙ୍ଗଠନ ନିବୃତ୍ତ ରହିବାକୁ ଉଚିତ ମନେକଲେ । ସେମାନଙ୍କର ମୋହଭଙ୍ଗ ହେବାକୁ ବିଳମ୍ବ ହେଲାନାହିଁ ।

୨୦୦୫ ମସିହା ଅକ୍ଟୋବରରେ କର୍ମଚାରୀ-ଶିକ୍ଷକ ମିଳିତ ମଞ୍ଚ ଗଠନ ହେଲା । ପ୍ରମୁଖ ସଙ୍ଗଠନର ମୁଖିଆ ୫ ଜଣଙ୍କୁ ନେଇ ଗଠିତ ହେଲା ଆବାହକ ମଣ୍ଡଳୀ । ଶିକ୍ଷକ ମହାସଂଘର ପ୍ରତିନିଧିତ୍ୱ କଲେ ଜନସଂଗ୍ରାମର ମହାନାୟକ ଅଧ୍ୟାପକ ଅବନୀ ବରାଳ । ଡିସେମ୍ବର ୧୬, ୨୦୦୫ ଦିନ ଲକ୍ଷାଧିକ ଶ୍ରମିକ-କର୍ମଚାରୀଙ୍କ ବିଶାଳ ସମାବେଶ ତରଫରୁ ସ୍ମାରକପତ୍ର ଗ୍ରହଣ କଲେ ବିଧାନ ସୌଧରେ ମାନ୍ୟବର ମୁଖ୍ୟମନ୍ତ୍ରୀ । ପ୍ରତିଶ୍ରୁତି ଦେଲେ ମିଳିତ ମଞ୍ଚକୁ ଆଲୋଚନା ନିମନ୍ତେ ନିମନ୍ତ୍ରିତ କରିବେ, ସମସ୍ୟାର ସମାଧାନ କରିବେ । ମାତ୍ର ଶାସନ କଳରେ ପ୍ରତିକ୍ରିୟାଶୀଳ ଶକ୍ତିଙ୍କ ଯୋଜନାନୁଯାୟୀ ମିଳିତ ମଞ୍ଚକୁ ବିଭେଦଗ୍ରସ୍ତ କରିବାକୁ ୩ଟି ସଂଗଠନକୁ ଆଲୋଚନା ପାଇଁ ନିମନ୍ତ୍ରଣ କରାଗଲା । ମାତ୍ର ସବୁସଂଗଠନ ମିଳିତଭାବେ ଏହାର ବିରୋଧ କଲେ । ୨୦୦୬ ଫେବୃୟାରୀ-୧୫ରେ ପୁନଶ୍ଚ ବିଶାଳ ସମାବେଶରେ ଘୋଷଣା କରାଗଲା ଦାବୀ ପୂରଣ କର, ନଚେତ୍ ମାର୍ଚ୍ଚ-୩୦ରେ କାର୍ଯ୍ୟବନ୍ଦ । ସରକାର ନରମିଲେ, ମାର୍ଚ୍ଚ-୨୧ରେ ଆଲୋଚନା ହେଲା, ପୂର୍ବ ପ୍ରତିଶ୍ରୁତିକୁ ଆଂଶିକ ପୂରଣ କରି ୦୧.୦୪.୦୪ ପରିବର୍ତ୍ତେ ୦୧.୦୪.୦୬ ରୁ ୫୦ ପ୍ରତିଶତ ମହଙ୍ଗାଭତ୍ତା ମୂଳବେତନ ସହ ପ୍ରଦାନ କରାଗଲା । ଏଲ୍.ଟି.ସି. ବ୍ୟବସ୍ଥା ପୁନଶ୍ଚ ପ୍ରଚଳିତ ହେଲା । ଆଜି ଓଡ଼ିଶାର ଶ୍ରମଜୀବି, କର୍ମଜୀବିମାନେ ବୃତ୍ତିଗତ ସମସ୍ୟା, ବିସ୍ଥାପନ ସମସ୍ୟା ଆଦି କ୍ଷେତ୍ରରେ ଯାହାଙ୍କ ଉପରେ ଭରଷା ରଖି ଲଢ଼େଇକୁ ଆସିପାରନ୍ତି, ସେ ହେଉଛନ୍ତି ଅଧ୍ୟାପକ ଅବନୀ ବରାଳ ।"

ରାଜ୍ୟ ଅଣଗେଜେଟେଡ୍ କର୍ମଚାରୀ ସମନ୍ୱୟ ସମିତିର ପ୍ରାକ୍ତନ ମୁଖ୍ୟ ଉପଦେଷ୍ଟା ନରସିଂହ ଆଚାରୀ ଶ୍ରମିକ-କର୍ମଚାରୀ-ଶିକ୍ଷକଙ୍କ ମିଳିତ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ୧୯୮୧ ମସିହାରେ ଓଡ଼ିଶା ସଚିବାଳୟର କର୍ମଚାରୀମାନେ ଦୀର୍ଘ ୬୧ ଦିନ ଧରି ଯେଉଁ ଐତିହାସିକ ଆନ୍ଦୋଳନ ଚଳାଇ ରଖିଥିଲେ, ସେଥିରେ ଅବନୀଙ୍କ ମହତ୍ତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ଉଲ୍ଲେଖ କରି ସେ କହନ୍ତି – "ରାଜ୍ୟ ଅଣ-ଗେଜେଟେଡ୍ କର୍ମଚାରୀ ସମନ୍ୱୟ ସମିତି ପକ୍ଷରୁ ସନ ୧୯୭୧ରୁ ୧୯୭୪ ଯାଏଁ ଓଡିଶାର କର୍ମଚାରୀ

ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ପତିତପାବନ ପରିଡାଙ୍କ ନେତୃତ୍ୱରେ ଗଢ଼ିଉଠିଥିଲା ବିରାଟ କର୍ମଚାରୀ ଆନ୍ଦୋଳନ । ସେତେବେଳେ ସ୍ୱ ସ୍ୱ ସ୍ତରରେ ଯେଉଁ ଆନ୍ଦୋଳନମାନ ହେଉଥିଲା କେବଳ ରାଜଧାନୀ କାହିଁକି ସମଗ୍ର ଓଡିଶାର ବ୍ଲକ୍ ତହସିଲ ମଧ୍ୟ ପ୍ରକମ୍ପିତ ହେଉଥିଲା । କାରଣ ଶିକ୍ଷକମାନେ ଅଧିକାଂଶ ବ୍ଲକ ଘେରାଉ କରୁଥିଲେ ।

ଂ ବନମାଳୀ ବ୍ରହ୍ମଚାରୀଙ୍କ ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ରୀଯୁକ୍ତ ଦାଶରଥି ନାୟକ ସଭାପତିତ୍ୱରେ ଓ ଅବନୀବାବୁଙ୍କ ଦୃଢ଼ ନେତୃତ୍ୱରେ ଓଡିଶାର ବେସରକାରୀ କଲେଜ ଶିକ୍ଷକ ସଂଘରୁ ଆରମ୍ଭକରି ମାଧ୍ୟମିକ, ନିମ୍ନ ମାଧ୍ୟମିକ ଓ ପ୍ରାଥମିକ ଶିକ୍ଷକ ଯାଏଁ ଏକାଠି ହୋଇ ଏକ ମିଳିତ ମଞ୍ଚ ଗଠନ କରି ସରକାରଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲେ । ଅବନୀବାବୁଙ୍କ ସହଯୋଗୀ ଶିକ୍ଷକ ନେତା ଂ କୈଳାସ ଚନ୍ଦ୍ର ମହାପାତ୍ର, ଅର୍ଜ୍ଜୁନ ଦାଶ, ବିବେକାନନ୍ଦ ଦାଶ, ଶାରଦା ପ୍ରସନ୍ନ ମହାପାତ୍ର, ଜମେଶ୍ୱର ପୃଷ୍ଟି ଭଳି ଅନେକ ଶିକ୍ଷକ ନେତା ସ୍ୱତଃପ୍ରବୃତ ହୋଇ ସହଯୋଗର ହାତ ବଢ଼ାଇ ଦେଇଥିଲେ ଅବନୀବାବୁଙ୍କୁ । ଫଳରେ ଶିକ୍ଷକ ମହାସଂଘ ଏକ ଏକକ ବୃହତ୍ତର ମହାସଂଘରେ ରୂପାୟିତ ହୋଇ ଶିକ୍ଷକମାନଙ୍କର ବହୁ ଗୁରୁତ୍ୱପୂର୍ଣ୍ଣ ଦାବି ସମୂହକୁ ହାସଲ କରିବା ପାଇଁ ଆନ୍ଦୋଳନର ସୂତ୍ରପାତ ହେଲା । ଲଗାତର ଭାବେ ଅନେକବାର ଆନ୍ଦୋଳନ ହେଲା, ବହୁନେତା ଓ ଶିକ୍ଷକମାନେ କାରାବରଣ କଲେ ଓ ଲାଠିମାଡ ଖାଇ ରକ୍ତାକ୍ତ ଓ ଜଖମ ହୋଇ ଡାକ୍ତରଖାନାରେ ଚିକିତ୍ସିତ ହେଲେ ତଥାପି ସେମାନଙ୍କର ମନବଳ ଦୃଢ଼ ଥିଲା । ତା'ର ଏକ ମାତ୍ର କାରଣ ହେଲା ସେନାପତିଙ୍କ ହିମତ୍ । ସେ ସମସ୍ତ ଘଟଣାମାନଙ୍କୁ ଦୋହରାଇଲେ ଲେଖାର କଳେବର ବୃଦ୍ଧିହେବ ସେ ସମସ୍ତ ଆନ୍ଦୋଳନ ମଧ୍ୟରୁ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଲେ ଯଥେଷ୍ଟ ହେବ ।

ସନ୍ ୧୯୮୪ ମସିହା ଜେଲ ଭରୋ ଆନ୍ଦୋଳନ । ବିଧାନ ସଭା ଘେରାଉ । ସେହି ଆନ୍ଦୋଳନ ଥିଲା ଏକ ଐତିହାସିକ ଆନ୍ଦୋଳନ । ଏବେ ବି ମନେ ପଡିଲେ ଦେହରେ ଶୀହରଣ ସୃଷ୍ଟି ହେଉଛି । ଦିନେ ନୁହେଁ ଦୁଇଦିନ ନୁହେଁ କ୍ରମାଗତ ଦୁଇମାସର ଆନ୍ଦୋଳନ । ମୋର ମନେପଡୁଛି ସନ୍ ୧୯୮୪, ଅକ୍ଟୋବର ମାସ ୨୦ ତାରିଖ ଦିନର ଘଟଣା । ରାଜ୍ୟ ବିଧାନସଭା ଘେରାଉ ଆନ୍ଦୋଳନ-ରାଜଧାନୀର ସମସ୍ତ ମୁଖ୍ୟରାସ୍ତା ୧୪୪ ଧାରା ଜାରି କରାଯାଇଛି, ପୁଲିସରେ ଛାଉଣୀ ହୋଇଛି ସମଗ୍ର ରାଜଧାନୀ, ଅଦ୍ଭୁତ ସେ ଦୃଶ୍ୟ । କିଏ କେଉଁଠି ଥିଲେ ଲକ୍ଷ ଲକ୍ଷ ଶିକ୍ଷକବନ୍ଧୁ ଚରିଆଡୁ ମାଡିଆସିଲେ ବିଧାନସଭା ଆଡକୁ । ସେହି ଆନ୍ଦୋଳନର ସେନାଧ୍ୟକ୍ଷ ଥିଲେ ଅବନୀବାବୁ । ସମଗ୍ର ରାଜଧାନୀର ମୁଖ୍ୟ ରାସ୍ତାମାନ ଲୋକାରଣ୍ୟ । ମାଳ ମାଳ ରଙ୍ଗବେରଙ୍ଗର ବ୍ୟାନର ସାଙ୍ଗକୁ ହଜାର ହଜାର ସଂଖ୍ୟାର ପ୍ଲାକାର୍ଡ ସହ ସରକାରୀ ବିରୋଧୀ ସ୍ଲୋଗାନରେ ଗଗନ

ପବନ ମୁଖରିତ ହେଉଥାଏ । ମୋ ମନ ଆଉ ଅଫିସରେ ରହିଲା ନାହିଁ । ଅଫିସ ଛାଡ଼ି ରାଜରାସ୍ତାକୁ ଓହ୍ଲାଇ ଆସିଲି । କେବଳ ମୁଁ କାହିଁକି ସଚିବାଳୟ ଓ ମୁଖ୍ୟ ଦପ୍ତରରୁ ଆରମ୍ଭ କରି ପ୍ରତ୍ୟେକ ଅଫିସ ଦପ୍ତରରୁ ଓହ୍ଲାଇ ଆସିଥିଲେ ସେହି ଭାସମାନ ସମୁଦ୍ର ଲହଡ଼ି ସଦୃଶ ଲୋକାରଣ୍ୟ ଦୃଶ୍ୟ ଦେଖିବାକୁ । କର୍ଡନଭାଙ୍ଗିବା ପାଇଁ ବିଧାନସଭା ଗୃହଆଡେ ମାଡ଼ି ଆସୁଥାନ୍ତି ଶିକ୍ଷକ ବନ୍ଧୁମାନେ । ସେତେବେଳେ ମୋର ଶିକ୍ଷାଗୁରୁ କବିଗୁରୁ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଖୋର୍ଦ୍ଧା ପାଇକ ବିଦ୍ରୋହ ସମୟର ଏକ ଦେଶାତ୍ମବୋଧକ କବିତାର ଏକ ପଂକ୍ତିକୁ ଉଦ୍ଧାରକରି ମନକୁମନ ଆବୃତ୍ତି କରିପକାଇଲି । ତାହା ଏବେ ବି ବିସ୍ମୃତ ହୋଇନାହିଁ ।

ମୋର ସ୍ପଷ୍ଟ ମନେହେଲା ସେହି ଅବନୀ ବାବୁ ଶିକ୍ଷକ ଜାତି ପାଇଁ ଯେଉଁ ଆହ୍ୱାନ ଦେଇଥିଲେ ଫଳରେ ଓଡ଼ିଶାର ପ୍ରତି କୋଣ ଓ ଅନୁକୋଣରୁ ଚାଲିଆସିଥିଲେ ଶିକ୍ଷକ ବନ୍ଧୁମାନେ । ତାହା ହିଁ ଥିଲା ଶିକ୍ଷକ ମହାସଂଘର ଏକ ଐତିହାସିକ ଆନ୍ଦୋଳନ । ଯଦି ଠିକଣା ସମୟରେ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ, ଶ୍ରୀମତୀ ନନ୍ଦିନୀ ଶତପଥୀ, ଲୋକନାଥ ଚୌଧୁରୀ ଭଳି ଅନ୍ୟାନ୍ୟ ନେତାମାନେ ଉପସ୍ଥିତ ରହିନଥାନ୍ତେ, ତେବେ ପରିସ୍ଥିତି ଅଣାୟତ୍ତ ହୋଇଥାନ୍ତା । ସେ ଦିନ କେତେ ଶିକ୍ଷକଙ୍କ ମୁଣ୍ଡ ମଧ୍ୟ ରାଜରାସ୍ତାରେ ଗଡ଼ିଥାନ୍ତା । ହଜାର ହଜାର ଶିକ୍ଷକ ଲାଠିମାଡ଼ ଖାଇ ଖଣ୍ଡିଆ ଖାବରା ହୋଇଥାନ୍ତେ । କାରଣ ସରକାରଙ୍କ ଜିଦ୍ ଶିକ୍ଷକମାନଙ୍କୁ ଦମନ କରି ଆନ୍ଦୋଳନକୁ ଫସର ଫଟାଇବା ।

ଓଡ଼ିଶାରେ କେହି ଯଦି ଶିକ୍ଷକ, କର୍ମଚାରୀ ଓ ଶ୍ରମଜୀବିମାନଙ୍କୁ ସେମାନଙ୍କୁ ନାଯ୍ୟ ଓ ନ୍ୟାୟୋଚିତ ଦାବୀ ହାସଲ ନିମନ୍ତେ ଆନ୍ଦୋଳନାଭିମୁଖୀ କରାଇ ପାରିଛନ୍ତି, ସେ ହେଉଛନ୍ତି ଅବନୀ କୁମାର ବରାଳ ଓ ପତିତପାବନ ପରିଡ଼ା । ଠିକ୍ ମୁଦ୍ରାର ଦୁଇପାର୍ଶ୍ୱ ଭଳି । ଦିନ ଥିଲା ସେମାନେ ଯଦି ରାସ୍ତାରେ ଚାଲିଯାଉଥିଲେ ଗର୍ଭିଣୀ ଗାଈ ମଧ୍ୟ ବାଟଭାଙ୍ଗି ଚାଲିଯାଉଥିଲା । ୧୯୮୧ ମସିହା ଘଟଣା ସଚିବାଳୟର ଅମଲାମାନଙ୍କର ଚାଲିଲା ୬୧ ଦିନ ବ୍ୟାପି ଆନ୍ଦୋଳନ । ଯଦିଓ ଅବନୀବାବୁ ରାଜ୍ୟ ସଚିବାଳୟର କର୍ମଚାରୀ ନୁହଁନ୍ତି ତଥାପି ଏକ କର୍ମଚାରୀ ସଙ୍ଗଠନର ଆନ୍ଦୋଳନ ଯେପରି ସଫଳ ହେବ ସେଥିନିମନ୍ତେ ସେ ସମସ୍ତ ସମୟ ଦାନକରି ତାର ସୁପରିଚାଳନା କରିଥିଲେ । ଓଡ଼ିଶାରେ ଅନେକ ଆନ୍ଦୋଳନ ହୋଇଯାଇଛି ଇତିହାସ ହିଁ ତାର ମୁକସାକ୍ଷୀ । ସମସ୍ତ ଘଟଣାବଳୀକୁ ସ୍ଥାନ ଦେଇହେବନାହିଁ । କେବଳ ଓଡ଼ିଶା ନୁହେଁ କି ଭାରତ ବର୍ଷ ନୁହେଁ ସମଗ୍ର ବିଶ୍ୱର ଏକ ଅପ୍ରତିଦ୍ୱନ୍ଦୀ ନେତା ବିଶ୍ୱ ଶିକ୍ଷକ ସଂଘର ଉପସଭାପତି ବିଶ୍ୱର ବିଭିନ୍ନ ରାଷ୍ଟ୍ର ଗସ୍ତକରି ଓଡ଼ିଶାର ସୁନାମ ଆଣିବାରେ ସେ ଜଣେ ଅନନ୍ୟ ଓଡ଼ିଆ । ଶିକ୍ଷକ ଜାତି ବିଶେଷ କରି ତାଙ୍କର ସେହି ଗୌରବ ପାଇଁ ନିଜକୁ ଗୌରବାନ୍ୱିତ ମନେ କରିବା କଥା । କିନ୍ତୁ ଅତ୍ୟନ୍ତ

ଦୁଃଖ ଓ ପରିତାପର ବିଷୟ ଆଜିକାଲି କର୍ମଚାରୀ ହେଉ ଅବା ଶିକ୍ଷକ ନେତା ହୁଅନ୍ତୁ ସେମାନଙ୍କ ନାଯ୍ୟ ଦାବୀକୁ ସରକାରଙ୍କ ଠାରେ ଉପସ୍ଥାପନ କରି ଗଣତାନ୍ତ୍ରିକ ପଦ୍ଧତିରେ ଆନ୍ଦୋଳନ କରି ହାସଲ କଲାଭଳି ନେତା ଆଉ ନାହାନ୍ତି । ଅପର ପକ୍ଷରେ ତଥାକଥିତ ନେତାମାନେ ହୀନ ଚକ୍ରାନ୍ତକରି ଅର୍ଥ ଓ ନେତୃତ୍ୱ ମୋହରେ ସଙ୍ଗଠନକୁ ଦ୍ୱିଧାଗ୍ରସ୍ତ କରିଚାଲିଛନ୍ତି । ଆନ୍ଦୋଳନର ଡାକରା ଦେଇ ବିଧାୟକ, ଏମ୍.ପି.ମାନଙ୍କ ଶରଣାପନ୍ନ ହୋଇ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରସ୍ଥ ହୋଇ 'ଆମକୁ ରକ୍ଷା କରନ୍ତୁ' 'ଆମକୁ ବଞ୍ଚାନ୍ତୁ' ଆମେ ବଞ୍ଚିଲେ ସଙ୍ଗଠନ ବଞ୍ଚିବ । କିନ୍ତୁ ଅବନୀବାବୁ ସେ ସ୍ତରର ନେତା ନୁହଁନ୍ତି । ଯାହା ନିଷ୍ପତ୍ତି ହୁଏ ତାକୁ ସେ ଅକ୍ଷର ଅକ୍ଷରରେ ପାଳନ କରି କାର୍ଯ୍ୟକାରୀ କରନ୍ତି । କାହା ପାଖରେ ଶରଣାପନ୍ନ ହୁଅନ୍ତିନାହିଁ । ବରଂ ସରକାର ମୁଣ୍ଡ ନୁଆଁନ୍ତି । ଫଳରେ ଶିକ୍ଷକମାନଙ୍କର ଅନେକ ଦାବୀ ପୂରଣ ସେ କରାଇପାରିଛନ୍ତି । ତନ୍ମଧ୍ୟରୁ ପ୍ରତ୍ୟକ୍ଷ ଦରମାପ୍ରାପ୍ତିରୁ ଆରମ୍ଭକରି ୟୁଜିସି ବେତନ ହାର, ସରକାରୀ ବେସରକାରୀ କର୍ମଚାରୀଙ୍କ ସମହାରର ବେତନ ପ୍ରଦାନ ସହ ସମସ୍ତ ପ୍ରାଥମିକ, ମାଧ୍ୟମିକ, ନିମ୍ନମାଧ୍ୟମିକ ଶିକ୍ଷକଙ୍କୁ ସରକାରୀ କର୍ମଚାରୀ ଘୋଷଣା ଭଳି ଅନେକ ଦାବି । ଏତଦ ଭିନ୍ନ ରାଜ୍ୟ ସରକାରୀ କର୍ମଚାରୀଙ୍କ ନିମନ୍ତେ କେନ୍ଦ୍ର ହାରରେ ବେତନ ଭତ୍ତା ପ୍ରଦାନ ନିମନ୍ତେ ଶିକ୍ଷକ କର୍ମଚାରୀ ମିଳିତ ପରିଷଦ ଗଠନ କରି ପ୍ରଥମେ ୧୯୮୯ ମସିହାରେ, ଜୁନ୍ ୨୦୦୫ ଓ ତା. ୧୫.୦୨.୨୦୦୬ରେ ବିଶାଳ କର୍ମଚାରୀ ସମାବେଶ କରି ୫୦ ଭାଗ ମହଙ୍ଗା ଭତ୍ତାକୁ ବେତନରେ ସାମିଲ କରିବା ଓ କେନ୍ଦ୍ର ସହ ସମତୁଲ ବେତନ ପ୍ରଦାନ କରିବାରେ ଶ୍ରୀଯୁକ୍ତ ବରାଳଙ୍କ ଦାନ ଓ ଭୂମିକାକୁ ସର୍ବାଗ୍ରେ ମନେପଡେ ।"

ବିଦ୍ୟାଳୟ ଓ ମହାବିଦ୍ୟାଳୟର ଶ୍ରେଣୀ ଗୃହରେ ପିଲାମାନଙ୍କୁ ପାଠ ପଢ଼ାଉଥିବା ଶିକ୍ଷକ ଏବଂ ସରକାରୀ ଦପ୍ତରରେ ଫାଇଲ ଘଷ କରୁଥିବା କର୍ମଚାରୀ ଦୁଇଟି ବିପରୀତମୁଖୀ ରାସ୍ତାର ପଥିକ । ଶିକ୍ଷକ ସମାଜର କାର୍ଯ୍ୟଧାରା ଠାରୁ କର୍ମଚାରୀ ଗୋଷ୍ଠୀର କାର୍ଯ୍ୟଧାରା ସମ୍ପୂର୍ଣ୍ଣ ଭିନ୍ନ । ତଥାପି ଏହି ଦୁଇ ବିପରୀତମୁଖୀ ଧାରାର ଲକ୍ଷ ଲକ୍ଷ ଲୋକଙ୍କୁ ଏକତାର ମନ୍ତ୍ରରେ ବାନ୍ଧିରଖି ମିଳିତ ଲଢ଼େଇର ରାସ୍ତାରେ ଠିଆ କରାଇବାର ଅଦ୍ଭୁତ କଳା ଅବନୀଙ୍କୁ ଭଲ ଭାବରେ ଜଣାଥିଲା । ଓଡ଼ିଶାରେ ଅବନୀ ବରାଳ ସଫଳତାର ସହ ଆରମ୍ଭ କରିଥିବା ଏହି ମିଳିତ ଅଭିଯାନ ଏବଂ ସେ ଆପଣେଇ ଥିବା ରଣକୌଶଳ ସମ୍ଭବତଃ ସମଗ୍ର ଦେଶରେ ଅନନ୍ୟ । ଏଥିପାଇଁ ଓଡ଼ିଶାର ଜନସଂଗ୍ରାମର ଇତିହାସରେ ଏକ କାଳଜୟୀ ବ୍ୟକ୍ତିତ୍ୱ ରୂପେ ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଆଜି ରାଜ୍ୟର ଲକ୍ଷ ଲକ୍ଷ ଶିକ୍ଷକ-କର୍ମଚାରୀ ଓ ଶ୍ରମଜୀବି ଜନସାଧାରଣଙ୍କର ସେ ଜପାମାଳି ହୋଇ ରହିଛନ୍ତି ।



## କଠୋର ଅନୁଶାସନରେ ବିଶ୍ୱାସୀ ଦୃଢ଼ମନା କମ୍ୟୁନିଷ୍ଟ



ବିଗତ ଶତାବ୍ଦୀର ପଞ୍ଚମ ଓ ଷଷ୍ଠ ଦଶକରେ ଓଡ଼ିଶା ସମେତ ସମଗ୍ର ଦେଶରେ କମ୍ୟୁନିଷ୍ଟ ମତବାଦ ଅଗଣିତ ଛାତ୍ର, ଯୁବକ, କୃଷକ, ଶ୍ରମଜୀବି ଜନସାଧାରଣ ଏବଂ ବୁଦ୍ଧିଜୀବି ଶ୍ରେଣୀଙ୍କୁ ପ୍ରଭାବିତ କରିଥିଲା । ମହାନ ଦାର୍ଶନିକ କାର୍ଲମାର୍କ୍ସଙ୍କ ଦ୍ୱାରା ପ୍ରଚାରିତ ଶ୍ରେଣୀହୀନ, ଶୋଷଣହୀନ ସମାଜ ପ୍ରତିଷ୍ଠାର ମହାମନ୍ତ୍ରକୁ କାର୍ଯ୍ୟ କ୍ଷେତ୍ରରେ ପରିଣତ କରି ବିପ୍ଳବୀ ବୀର ଲେନିନ୍‌ଙ୍କ ନେତୃତ୍ୱରେ ୧୯୧୭ ମସିହାରେ ସଂଘଟିତ ହୋଇଥିଲା ବିଶ୍ୱର ପ୍ରଥମ ସମାଜବାଦୀ ବିପ୍ଳବ ଏବଂ ସେହି ବିପ୍ଳବର ଅଗ୍ନିଗର୍ଭରୁ ଜନ୍ମ ନେଇଥିଲା ସମାଜବାଦୀ ସୋଭିଏତ୍ ୟୁନିୟନ୍ । ଶୋଷିତ, ଲାଞ୍ଛିତ, ଅବହେଳିତ ଅବସ୍ଥାରେ ପଡ଼ି ରହିଥିବା ସର୍ବହରା ମଣିଷ ଯୁଗ ଯୁଗର ଶୋଷଣ, କଷଣ, ଅତ୍ୟାଚାରର ଅନ୍ତ ଘଟାଇ ପ୍ରତିଷ୍ଠା କରିଥିଲେ ଏକ ଶ୍ରେଣୀହୀନ, ଶୋଷଣମୁକ୍ତ ରାଷ୍ଟ୍ର ସୋଭିଏତ୍ ରୁଷ । ଏହି ବିପ୍ଳବ ପରେ ସମାଜବାଦୀ ରୁଷ ବିଭିନ୍ନ କ୍ଷେତ୍ରରେ ପ୍ରଗତି ହାସଲ କରିଚାଲିଥିବା ବେଳେ ବିଶ୍ୱର କୋଣ ଅନୁକୋଣରେ ସମାଜବାଦର ତୂର୍ଯ୍ୟନାଦ ଶୁଣାଗଲା । ଭାରତରେ ବ୍ରିଟିଶ ସାମ୍ରାଜ୍ୟବାଦ ଏବଂ ଔପନିବେଶିକବାଦ ବିରୋଧରେ ମୁକ୍ତି ସଂଗ୍ରାମ ଚଳାଇଥିବା ଅଗଣିତ ଯୁବକ ମାର୍କ୍ସ ଓ ଲେନିନ୍‌ଙ୍କ ଚିନ୍ତାଧାରା ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ସାମ୍ୟବାଦ ଆଡ଼କୁ ଆକୃଷ୍ଟ ହୋଇଥିଲେ । ରୁଷ ବିପ୍ଳବର ସଫଳତା ସେମାନଙ୍କୁ ସ୍ୱାଧୀନତା ସଂଗ୍ରାମକୁ ସଶସ୍ତ୍ର ଓ ଶାଣିତ କରିବା ଲାଗି ପ୍ରେରଣା ଯୋଗାଇଲା । ଡାଙ୍ଗେ, ମୁଜାଫର ଅହମ୍ମଦ, ଡକ୍ଟର ଗଙ୍ଗାଧର ଅଧିକାରୀ, ଘାଟେ, ସୌକତ୍‌ଉସ୍ମାନୀ ଓ ମିରାଜକରଙ୍କ ଭଳି କେତେକ ମୁକ୍ତି

ପାଗଳ ତରୁଣ ଦେଶପ୍ରେମୀଙ୍କ ଉଦ୍ୟମରେ ୧୯୨୫ ମସିହାରେ ବିଧିବଦ୍ଧ ଭାବରେ ଗଠିତ ହେଲା ଭାରତୀୟ କମ୍ୟୁନିଷ୍ଟ ପାର୍ଟି । କାନପୁର ଷଡ଼ଯନ୍ତ ମାମଲା, ମିରଟ୍ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲାରେ ଅଭିଯୁକ୍ତ ବହୁ ତରୁଣ ବିପ୍ଳବୀ ଦେଶବ୍ୟାପୀ କମ୍ୟୁନିଷ୍ଟ ମତବାଦର ପ୍ରଚାର ଓ ପ୍ରସାର କ୍ଷେତ୍ରରେ ଆପଣାକୁ ଉତ୍ସର୍ଗ କରିଥିଲେ । କ୍ରମଶଃ ଭାରତର ବହୁ ରାଜ୍ୟରେ ଖୁବ ଗୋପନରେ କମ୍ୟୁନିଷ୍ଟ ପାର୍ଟିର ଶାଖା ଗଠନ କରାଯାଇଥିଲା । ବ୍ରିଟିଶ ସରକାର କମ୍ୟୁନିଷ୍ଟମାନଙ୍କ ଉତ୍‌ଥାନରେ ଏପରି ଆତଙ୍କିତ ହୋଇପଡ଼ିଥିଲେ ଯେ, ପାର୍ଟିକୁ ବେଆଇନ୍ ଘୋଷଣା କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ କଠୋର ହସ୍ତରେ ଦମନ କରୁଥିଲେ । ତେଣୁ ଯେଉଁମାନେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟପଦ ଗ୍ରହଣ କରିବାକୁ ଚାହୁଁଥିଲେ, ଖୁବ୍ ଗୋପନରେ ତାହା କରୁଥିଲେ । ୧୯୩୬ ମସିହାରେ ଶେଷ ଭାଗ ବେଳକୁ ଓଡ଼ିଶାର ତିନିଜଣ ଦେଶପ୍ରେମୀ ସଂଗ୍ରାମୀ ଯୁବକ ଭିନ୍ନ ଭିନ୍ନ ସମୟରେ କଲିକତାକୁ ଯାଇ ଗୁପ୍ତ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ । ସେମାନେ ଥିଲେ - ଭଗବତୀ ଚରଣ ପାଣିଗ୍ରାହୀ, ପ୍ରାଣନାଥ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକ । ଏହି ତିନିଜଣଙ୍କୁ ନେଇ ବିଧିବଦ୍ଧ ଭାବରେ ଓଡ଼ିଶାରେ ଏକ କମ୍ୟୁନିଷ୍ଟ ପାର୍ଟି ଜନ୍ମ ନେଇଥିଲା ଏବଂ ପରେ ପରେ ଅନ୍ୟ ନେତାମାନେ ଏଥିରେ ଯୋଗ ଦେଇଥିଲେ । ରାଜ୍ୟରେ ସ୍ୱାଧୀନତା ସଂଗ୍ରାମ, ଛାତ୍ର ଆନ୍ଦୋଳନ, ଯୁବ ଆନ୍ଦୋଳନ, କୃଷକ ଓ ଶ୍ରମିକ ଆନ୍ଦୋଳନ, ଗଡ଼ଜାତ ପ୍ରଜାମଣ୍ଡଳ ଆନ୍ଦୋଳନ ସର୍ବୋପରି ଶାନ୍ତି ଓ ମୈତ୍ରୀ ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କର ଗୌରବମୟ ଭୂମିକା ରହିଥିଲା ।

ବିଂଶ ଶତାବ୍ଦୀର ପଞ୍ଚମ ଦଶକ ବେଳକୁ ଓଡ଼ିଶାର ବିଭିନ୍ନ ବିଦ୍ୟାଳୟ ଓ ମହାବିଦ୍ୟାଳୟରେ ଅଧ୍ୟୟନରତ ବହୁ ମେଧାବୀ ଛାତ୍ର ଓ ଯୁବକ ସାମ୍ୟବାଦୀ ଚେତନାରେ ଉଦ୍‌ବୁଦ୍ଧ ହୋଇ କମ୍ୟୁନିଷ୍ଟ ପାର୍ଟି ଆଡ଼କୁ ଆକୃଷ୍ଟ ହୋଇଥିଲେ । ସଦ୍ୟ ସ୍ୱାଧୀନତା ହାସଲ କରିଥିବା ଭାରତରେ କଂଗ୍ରେସ ନେତୃତ୍ୱାଧୀନ ସରକାରର ପୁଞ୍ଜିପତି ତୋଷଣ ନୀତିକୁ ବିରୋଧକରି ଛାତ୍ର ଓ ଯୁବଗୋଷ୍ଠୀ କମ୍ୟୁନିଷ୍ଟ ମତବାଦକୁ ଗ୍ରହଣ କରିବା ପାଇଁ ଅଧିକ ଆଗ୍ରହୀ ହୋଇଥିଲେ । ଠିକ୍ ସେତିକିବେଳେ କଟକର ଖ୍ରୀଷ୍ଟ ମହାବିଦ୍ୟାଳୟରେ ନାମ ଲେଖାଇଥିବା ୧୭ ବର୍ଷ ବୟସର କିଶୋର/ ତରୁଣ ଅବନୀ ବରାଳ ଏହି ମହାସ୍ରୋତରୁ ଦୂରେଇ ରହିବେ ବା କିପରି ? ଛାତ୍ରସଂଘ ଗଣତାନ୍ତ୍ରିକ ଯୁବସଂଘର (ଷ୍ଟୁଡେଣ୍ଟସ୍ ଫେଡେରେସନ୍)ର କାର୍ଯ୍ୟକଳାପ ମଧ୍ୟରୁ ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟପଦ ଗ୍ରହଣ କରିଥିଲେ ୧୯୫୨ ମସିହାରେ । ରାଜ୍ୟରେ କମ୍ୟୁନିଷ୍ଟ ଆନ୍ଦୋଳନର ମହାରଥୀ ଗୁରୁଚରଣ, ଶରତ ପଟ୍ଟନାୟକ, ରାମକୃଷ୍ଣ ପତିଙ୍କ ନିକଟରେ କମ୍ୟୁନିଷ୍ଟ ପାର୍ଟି ସଭ୍ୟପଦ

ଗ୍ରହଣ କରିବା ବେଳେ ୧୭ ବର୍ଷ ବୟସ୍କ ଅବନୀ ଯେଉଁ ମାନବବାଦୀ ଦର୍ଶନ ଓ ଆଦର୍ଶବାଦରେ ଦୀକ୍ଷିତ ହୋଇଥିଲେ, ସାରା ଜୀବନ ସେଥିରୁ ପଛକୁ ହଟି ନାହାନ୍ତି । ଆଜି ବାର୍ଦ୍ଧକ୍ୟରେ ଉପନୀତ ହୋଇଥିଲେ ବି ନିଜକୁ ଜଣେ 'କମ୍ୟୁନିଷ୍ଟ' କହିବା ବେଳେ ସେ ଯେଉଁ ଗର୍ବ ଓ ଆନନ୍ଦ ଅନୁଭବ କରନ୍ତି, ତାହା ଖୁବ୍ କମ୍ ପାର୍ଟି ସଭ୍ୟଙ୍କ ଠାରେ ଦେଖିବାକୁ ମିଳେ ।

ତାଙ୍କର ସମସାମୟିକ ଅନେକ ବନ୍ଧୁ ଯଥା - ହରିଶ୍ଚନ୍ଦ୍ର ବକ୍ସିପାତ୍ର, ମନୋଜ ଦାସ, ବିଶ୍ୱମ୍ଭର ସାମନ୍ତ, ବ୍ରଜନାଥ ରଥ, ଗିରିଜା ଭୂଷଣ ପଟ୍ଟନାୟକ ପ୍ରମୁଖ ଛାତ୍ର ଜୀବନରେ ମାର୍କ୍ସବାଦ ପ୍ରତି ଆକୃଷ୍ଟ ହୋଇଥିଲେ । ମାତ୍ର ସେମାନଙ୍କ ମଧ୍ୟରୁ ଅନେକ ପରବର୍ତ୍ତୀ ସମୟରେ ବିଭିନ୍ନ କାରଣରୁ ଏଥିରୁ ଦୂରେଇ ଯାଇଛନ୍ତି । ମାତ୍ର ଅବନୀ ବରାଳ କୌଣସି ସମୟରେ ନିଜର ମୂଳ ନୀତି ଓ ଆଦର୍ଶ ସହ ସାଲିସ କରିନାହାନ୍ତି । ଆଜି ୭୯ ବର୍ଷ ବୟସରେ ମଧ୍ୟ ପାର୍ଟିର ସମସ୍ତ ଗଣଆନ୍ଦୋଳନ ଓ ସଂଗ୍ରାମର ଅଗ୍ରଭାଗରେ ରହି କାର୍ଯ୍ୟ କଲାବେଳେ ତାଙ୍କ ଠାରେ ଲକ୍ଷ୍ୟ କରାଯାଏ ଯୁବ ସୁଲଭ ଉଦ୍ଧାମତା ଓ କର୍ମ ପ୍ରବଣତା । କୌଣସି ସମୟରେ ଦଳରେ ବିଶୃଙ୍ଖଳାକୁ ସେ ବରଦାସ୍ତ କରନ୍ତି ନାହିଁ ଏବଂ କଠୋର ଅନୁଶାସନରେ ବିଶ୍ୱାସୀ ହୋଇ ଜଣେ ନୀତିନିଷ୍ଠ କମ୍ୟୁନିଷ୍ଟ ରୂପେ ନିଜକୁ ପ୍ରତିଷ୍ଠିତ କରାଇ ପାରିଛନ୍ତି ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟି (ସି.ପି.ଆଇ.) ଉତ୍କଳ ରାଜ୍ୟ ପରିଷଦର ସମ୍ପାଦକ ଦିବାକର ନାୟକ ପାର୍ଟିର ଭୀଷ୍ମ ପିତାମହ ଅବନୀ ବରାଳଙ୍କ କଠୋର ଅନୁଶାସନ ଓ ଦୃଢ଼ତାର ଅନୁଭୂତି ବର୍ଣ୍ଣନା କରି କହନ୍ତି - "ସାରା ଓଡ଼ିଶା ତାଙ୍କୁ ଜାଣେ ଶିକ୍ଷକ ନେତା ଭାବରେ ; ଆଉ ତା'ସହିତ ସମସ୍ତେ ଜାଣନ୍ତି ସେ ଜଣେ କମ୍ୟୁନିଷ୍ଟ । ଶିକ୍ଷକ ନେତାମାନଙ୍କ ମଧ୍ୟରେ ଅନେକ କମ୍ୟୁନିଷ୍ଟ ଅଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ବେଶ୍ ଜଣାଶୁଣା ଖ୍ୟାତନାମା ଶିକ୍ଷକନେତା, ଯେଉଁମାନେ ଅଗଣନ ଶିକ୍ଷକ ଆନ୍ଦୋଳନର ନେତୃତ୍ୱ ନେଇଛନ୍ତି ; ଭାରତର ଶିକ୍ଷକ ଆନ୍ଦୋଳନରେ ଓଡ଼ିଶା ପାଇଁ ଗୌରବ ଓ ପ୍ରତିଷ୍ଠା ଆଣିଛନ୍ତି । କିନ୍ତୁ ଶିକ୍ଷକ ଓ କମ୍ୟୁନିଷ୍ଟନେତା କହିଲେ ଓଡ଼ିଶାବାସୀ କେବଳ ଜଣଙ୍କୁ ହିଁ ବୁଝନ୍ତି - ଅବନୀ ବରାଳ ।

ଅବଶ୍ୟ ସେ ତାଙ୍କ ନାଁ ଦସ୍ତଖତ କଲାବେଳେ ଅବନୀ କୁମାର ବରାଳ ବୋଲି ଲେଖନ୍ତି । କିନ୍ତୁ ବିଜୟାନନ୍ଦ ପଟ୍ଟନାୟକ ଲୋକମୁଖରେ ଏବଂ ଶେଷରେ ତାଙ୍କ ନିଜ ଓ ସମସ୍ତଙ୍କ ପାଖରେ 'ବିଜୁ ପଟ୍ଟନାୟକ' ହୋଇଗଲା ଭଳି ଅବନୀସାରଙ୍କ ନାମରେ କେହି 'କୁମାର' ଶବ୍ଦ ଲଗାଇ କହିବା ମୁଁ କୁତ୍ରାପି ଶୁଣିନାହିଁ । କମ୍ୟୁନିଷ୍ଟ ପାର୍ଟିରେ ତାଙ୍କୁ ସମସ୍ତେ

(ମୋ ସମେତ) 'ସାର୍' ବୋଲି ସମ୍ବୋଧନ କରନ୍ତି । ସେଇ ସାର୍ ବା ଅବନୀ ସାର୍ କିଭଳି କେବଳ ଓଡ଼ିଶା ନୁହେଁ ସମଗ୍ର ଭାରତବର୍ଷର ସର୍ବମାନ୍ୟ ଓ ସର୍ବଶ୍ରେଷ୍ଠ ଶିକ୍ଷକନେତା, ତାହା ବର୍ଣ୍ଣନା କରିବା ଏହି ଲେଖାର ଉଦ୍ଦେଶ୍ୟ ନୁହେଁ । ଉଦ୍ଦେଶ୍ୟ ହେଉଛି - ସେ ବିଶ୍ୱାସ କରୁଥିବା କମ୍ୟୁନିଜିମ୍‌ର ଆଦର୍ଶକୁ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ରୂପରେ ରୂପାୟିତ କରିଛନ୍ତି ; ସେ ଯେଉଁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ, ତା'ର ଗଠନତନ୍ତ୍ର ଓ ଶୃଙ୍ଖଳାକୁ କିଭଳି ଜୀବନର ପ୍ରତିଟି ପଦକ୍ଷେପରେ ପାଳନ କରି ଆସିଛନ୍ତି ଏବଂ ଅନ୍ୟମାନଙ୍କୁ ପାଳନ କରିବା ପାଇଁ ବାଧ୍ୟ କରିଛନ୍ତି, ସେ ସମ୍ପର୍କରେ ସମ୍ୟକ୍ ଆଲୋଚନା କରିବା ।

୧୯୬୯ ମସିହାରେ ମୁଁ ମ୍ୟାଟ୍ରିକ୍ ପାଶ୍‌କରି ଭଦ୍ରକ କଲେଜରେ ନାମ ଲେଖାଇଲି । ସେଇ ବର୍ଷଟି ଥିଲା ଛାତ୍ର ଆନ୍ଦୋଳନ ଓ ଶିକ୍ଷକ ଆନ୍ଦୋଳନର ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ । ରେଭେନ୍‌ସା କଲେଜର ଛାତ୍ର ପ୍ରଦୀପ୍ତ ମିଶ୍ର ପୋଲିସ ଗୁଳିରେ ପ୍ରାଣ ହରାଇବା ପରେ ସାରା ଓଡ଼ିଶାରେ ଦୁର୍ବାର ଛାତ୍ର ଆନ୍ଦୋଳନ ଚାଲିଥାଏ । ଅନ୍ୟପକ୍ଷରେ ଶିକ୍ଷକମାନଙ୍କର ବିଭିନ୍ନ ଦାବି ଉପରେ ଶିକ୍ଷକ ମହାସଂଘ ପକ୍ଷରୁ ଶିକ୍ଷାମନ୍ତ୍ରୀ ବନମାଳି ପଟ୍ଟନାୟକଙ୍କ ବାସଭବନ ସମ୍ମୁଖରେ ଚାଲିଥିବା ଅହୋରାତ୍ର ଗଣଧାରଣାକୁ ସ୍ୱତନ୍ତ୍ର ଓ ଜନକଂଗ୍ରେସ ସରକାର ଧାରଣାସ୍ଥଳୀରେ ମଦ ବୋତଲ ଫିଙ୍ଗି ଶିକ୍ଷକମାନଙ୍କୁ ବାଡ଼େଇ ଧାରଣାଟେଣ୍ଟ ଭାଙ୍ଗିଦେବା ପରେ ସମଗ୍ର ରାଜ୍ୟରେ ଚାଲିଥାଏ ବ୍ୟାପକ ଶିକ୍ଷକ ଆନ୍ଦୋଳନ । ଅବନୀ ବରାଳଙ୍କ ନାଁ ପ୍ରତିଦିନ ଖବର କାଗଜରେ ବାହାରୁଥାଏ । ସେତେବେଳେ ଭଦ୍ରଖର ଗାନ୍ଧି ପଡ଼ିଆରେ ଶିକ୍ଷକମାନଙ୍କର ଏକ ବିରାଟ ସଭାକୁ ଆସିଥାଆନ୍ତି ଅବନୀ ବରାଳ । ଆମେ ଛାତ୍ରମାନେ ମଧ୍ୟ ସେ ସଭାକୁ ଯାଇଥାଉ । ଅବନୀ ସାର୍‌ଙ୍କୁ ଦେଖିବାର ସୌଭାଗ୍ୟ ମୋର ସେଇଦିନ ହେଲା, କିନ୍ତୁ ଦୂରରୁ । ସଭା ସରିବା ପରେ ଆମେ ମେସ୍‌କୁ ଆସିଲୁ । ବିଜ୍ଞାନ ମନ୍ଦିର ମେସ୍ ସେତେବେଳେ ଏ.ଆଇ.ଏସ୍.ଏଫ୍. ଓ ଛାତ୍ର ଆନ୍ଦୋଳନର ଦୁର୍ଗ ଥାଏ । ସଭା ଶେଷ ହେବାର ଅଧଘଣ୍ଟା ପରେ କମ୍ୟୁନିଷ୍ଟ ପାର୍ଟିର ଜିଲ୍ଲା ସମ୍ପାଦକ ସୟଦ ଅବଦୁଲ କାଦର ଅବନୀ ସାର୍‌ଙ୍କୁ ସାଥିରେ ଧରି ତାଙ୍କରି ଗାଡ଼ିରେ ପହଞ୍ଚିଲେ ଆମ ମେସ୍‌ରେ । ଆମେ ବିସ୍ମୟରେ ଅଭିଭୂତ ହୋଇଗଲୁ । ଛାତ୍ର ଆନ୍ଦୋଳନ ସମ୍ପର୍କରେ କେଇପଦ କଥା ହୋଇ ସେ ଶିକ୍ଷକନେତାମାନଙ୍କର ଏକ ବୈଠକକୁ ଗଲେ, ସାଙ୍ଗରେ କାଦର ବାବୁ । ମୋର ଏ କଥା ଲେଖିବାର କାରଣ ହେଉଛି - ଅବନୀ ସାର୍ ଶିକ୍ଷକ ଆନ୍ଦୋଳନ ସଂକ୍ରାନ୍ତରେ ଓଡ଼ିଶାର ଯେଉଁ ସ୍ଥାନକୁ ଯାଉଥିଲେ, ସେଠାକାର କମ୍ୟୁନିଷ୍ଟ ନେତାମାନଙ୍କୁ ନିଶ୍ଚୟ ଭେଟୁଥିଲେ । ଗୋପନରେ ନୁହେଁ, ପ୍ରକାଶ୍ୟରେ ଡେଙ୍ଗୁରା ବଜାଇ । କିଛି କାମ

ନଥିଲେ ବି ଖୋଜି ଖୋଜି ସେମାନଙ୍କୁ ଭେଟୁଥିଲେ, ଅନ୍ୟମାନଙ୍କୁ ଜଣାଇ ଦେବା ପାଇଁ ସେ ପ୍ରଥମେ ଜଣେ କମ୍ୟୁନିଷ୍ଟ, ତା'ପରେ ଶିକ୍ଷକନେତା ବା ଆଉ କିଛି । ୧୯୭୨ ମସିହାରେ ମୁଁ କଲେଜ ୟୁନିୟନ ସମ୍ପାଦକ ଥିବାବେଳେ ଅବନୀ ସାର୍ ୟୁନିଅନ୍‌ର ବାର୍ଷିକ ଉତ୍ସବରେ ମୁଖ୍ୟ ବକ୍ତା । ସେତେବେଳେ ମଧ୍ୟ ସେ କାଦର ବାବୁଙ୍କୁ ଡାକି ଏ.ଆଇ.ଏସ୍.ଏଫ୍.ର ସ୍ୱତନ୍ତ୍ର ବୈଠକ କରାଇଥିଲେ । ଉଦ୍ଦେଶ୍ୟ ହେଉଛି ଏ.ଆଇ.ଏସ୍.ଏଫ୍. ମଧ୍ୟ ଶକ୍ତିଶାଳୀ ହେଉ ।

୧୯୭୪ ମସିହାରେ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିବାବେଳେ ଦୁର୍ବାର ଶିକ୍ଷକ ଆନ୍ଦୋଳନ ଫଳରେ ଶିକ୍ଷକମାନଙ୍କୁ ପ୍ରତ୍ୟକ୍ଷ ଦରମା ପ୍ରଦାନ ବ୍ୟବସ୍ଥାର ପ୍ରଚଳନ ହେଲା । ଅନେକ ଶିକ୍ଷକଙ୍କର ଧାରଣା, ଏହା ନନ୍ଦିନୀ ଶତପଥିଙ୍କ ଅବଦାନ । କିନ୍ତୁ ଏହି ଧାରଣା ସମ୍ପୂର୍ଣ୍ଣ ଭୁଲ୍ । ପ୍ରତ୍ୟକ୍ଷ ଦରମା ବ୍ୟବସ୍ଥା ହୋଇପାରିଥିଲା କମ୍ୟୁନିଷ୍ଟ ପାର୍ଟି ଯୋଗୁଁ । ଏଥିରେ ଅବନୀ ବରାଳ, ଲୋକନାଥ ଚୌଧୁରୀ ଓ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟନେତା ନୀଲମ୍ ରାଜଶେଖର ରେଡ୍ଡି, ଭୁପେଶ ଗୁପ୍ତଙ୍କର ପ୍ରମୁଖ ଅବଦାନ ଥିଲା । ପି.ଏମ୍.ଜି. ଛକରେ ହଜାର ହଜାର ଆନ୍ଦୋଳନକାରୀ ଶିକ୍ଷକ ଓ ଶିକ୍ଷୟତ୍ରୀମାନଙ୍କ ଉପରେ ନିର୍ମ୍ମମ ଲାଠି ଚାଳନା ହେବା ପରେ ପାର୍ଟିର ଶିକ୍ଷକ ବିଭାଗ ଦାୟିତ୍ୱରେ ଥିବା ରାଜଶେଖର ରେଡ୍ଡିଙ୍କ ସହିତ ଅବନୀ ସାର୍ ଫୋନ୍‌ରେ କଥା ହେଲେ । ତା'ପରେ ସି.ପି.ଆଇ. ବିଧାୟକ ଦଳର ନେତା ଲୋକନାଥ ଚୌଧୁରୀଙ୍କ ସହିତ ଆଲୋଚନା କଲେ । ସେତେବେଳେ ସି.ପି.ଆଇ.ର ୭ଜଣ ଏମ୍.ଏଲ୍.ଏ. ଥାଆନ୍ତି ଏବଂ ସେମାନଙ୍କ ସମର୍ଥନ ଉପରେ ନନ୍ଦିନୀ ଶତପଥୀଙ୍କ ସଂଖ୍ୟାଲଘୁ ସରକାର ନିର୍ଭର କରୁଥାଏ । ଅବନୀ ସାର୍‌ଙ୍କ ସହିତ ଆଲୋଚନା ପରେ ତାଙ୍କର ଉପସ୍ଥିତିରେ ଲୋକନାଥ ବାବୁ ମୁଖ୍ୟମନ୍ତ୍ରୀଙ୍କୁ ଫୋନ୍ କଲେ - "ଆଜି ତମେ ଶିକ୍ଷକମାନଙ୍କ Direct Payment ଫାଇଲରେ ଦସ୍ତଖତ ନକଲେ, ଆସନ୍ତା କାଲି ସି.ପି.ଆଇ. ସରକାରରୁ ସମର୍ଥନ ପ୍ରତ୍ୟାହାର କରିବ । ଏହାପରେ Direct Payment ଘୋଷଣା ହେଲା । ଏଣୁ ଏହା ହୋଇପାରିଥିଲା ଅବନୀ ବରାଳଙ୍କ ବିଚକ୍ଷଣ ନେତୃତ୍ୱ ଓ ସୁଦକ୍ଷ ରାଜନୈତିକ ଗୋଟିଚାଳନା ବା କିସ୍ତିଦେବା ଯୋଗୁଁ ।"

-"୧୯୭୮ ମସିହାରେ ମୁଁ କଟକରେ ଥିବା କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର 'ନୂଆ ଦୁନିଆ'ରେ ଯୋଗଦେବା ପରେ ଅବନୀ ସାର୍‌ଙ୍କ ସହିତ ପ୍ରାୟ ପ୍ରତି ସପ୍ତାହରେ ଦେଖାହୁଏ । କାରଣ ସେ ନୟାସଡ଼କରେ ଥିବା 'ଓଷ୍ଟା' ଅଫିସ୍‌କୁ ଅଧିକାଂଶବେଳେ ଆସନ୍ତି ଏବଂ କଟକ ଆସିଲେ ଗୁରୁଚରଣ ପଟ୍ଟନାୟକ ଓ ଅନନ୍ତ ପଟ୍ଟନାୟକଙ୍କୁ ସାକ୍ଷାତ କରନ୍ତି । ସେ ଆସିଲେ ନୂଆ ଦୁନିଆ ଅଫିସରେ ଗୁରୁଚରଣ ବାବୁ, ଅନନ୍ତ ବାବୁ,

ଗୋବିନ୍ଦ ମହାନ୍ତି, ନନ୍ଦକିଶୋର ପଟ୍ଟନାୟକ ଓ କୃଷ୍ଣପ୍ରସାଦ ପଟ୍ଟନାୟକଙ୍କ ସହିତ ଗୋଲ ଟେବୁଲ ବୈଠକ ହୁଏ । ମୋର ବୟସ କମ୍ ହେଲେ ମଧ୍ୟ ସେ ବୈଠକରେ ମୋତେ ସ୍ନେହର ସହିତ ସାମିଲ କରାଯାଏ । ସେଠାରେ ଅତୀତର ବହୁ ଐତିହାସିକ ଘଟଣାର ସ୍ମୃତିଚାରଣ ଓ ଆଲୋଚନା ହୁଏ ।"

ସେହିପରି କମ୍ୟୁନିଷ୍ଟ ପାର୍ଟି ଜାତୀୟ ପରିଷଦର ସଦସ୍ୟ ତଥା ଯୁବନେତା ରାମକୃଷ୍ଣ ପଣ୍ଡା, ଅବନୀ ବାବୁଙ୍କ ପ୍ରତି ଛାତ୍ର ଓ ଯୁବ ସମାଜର ଯେଉଁ ଗଭୀର ଶ୍ରଦ୍ଧା ଓ ଭକ୍ତି ରହିଛି ତାହାର ଦୃଷ୍ଟାନ୍ତ ଦେଇ କହନ୍ତି - "ଅବନୀ ବରାଳ ଏକ ଅନନ୍ୟ ମଣିଷ । ଶିକ୍ଷକ ନେତା, ସାହିତ୍ୟିକ, ସାଂସ୍କୃତିକ କର୍ମୀ ଏବଂ ସର୍ବୋପରି ଜଣେ ନିରୋଳା କମ୍ୟୁନିଷ୍ଟ । ସମସ୍ତଙ୍କ ଆଦରର, ସମ୍ମାନର ଅବନୀ ସାର୍ । ଛାତ୍ର ଜୀବନରୁ ଏଇ ଆଦର୍ଶ ପ୍ରତି ଝୁଙ୍କ । ଛାତ୍ର ନେତାରୁ ନାଟକ, ସଙ୍ଗୀତ, ଗଣନାଟ୍ୟ ସଂଘ ପୁଣି କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର ନୂଆ ଦୁନିଆ ସହ ସମ୍ପୃକ୍ତି, ପ୍ରାଣନାଥ ବାବୁଙ୍କ ଇଚ୍ଛାରେ ଖୋର୍ଦ୍ଧା କଲେଜର ଅଧ୍ୟାପକ, ଶିକ୍ଷକ ସଂଗଠକ ଓ ଓଡ଼ିଶାର ଅବିସମ୍ବାଦିତ ଶିକ୍ଷକ ନେତା । ଶିକ୍ଷକ ନେତା ଭାବରେ ସାଧାରଣ ଶ୍ରମିକ କର୍ମଚାରୀ - ଟ୍ରେଡ୍ ୟୁନିଅନ୍ ନେତାଙ୍କ ପରି ସେ କେବଳ ଟ୍ରେଡ୍ ୟୁନିଅନ୍ କରନ୍ତି ନାହିଁ, ଅଧିକନ୍ତୁ ଓଡ଼ିଶାରେ ଶିକ୍ଷାର ବିକାଶ, ସମସ୍ତଙ୍କୁ ଶିକ୍ଷା ଓ ଶିକ୍ଷାୟତନର ସୁରକ୍ଷା ପାଇଁ ଛାତ୍ର - ଶିକ୍ଷକ ଓ ବୁଦ୍ଧିଜୀବିମାନଙ୍କ ସମ୍ପୃକ୍ତିରେ ଏକ ନୂଆ ବ୍ୟବସ୍ଥା ତିଆରି କରିବାକୁ ଅନବରତ ଉଦ୍ୟମ ଜାରି ରଖିଛନ୍ତି । ଶିକ୍ଷା ବ୍ୟବସ୍ଥା ସହ ନିଜକୁ ଏକାକାର କରିଦେଇ ଥିବା ଏହି ମଣିଷଟି ଯେପରି ଶିକ୍ଷାର ଏକ ଜୀବନ୍ତ "ଏନ୍‌ସାଇକ୍ଲୋପେଡ଼ିଆ" । ଶିକ୍ଷକ ନେତା ଭାବରେ କେବଳ ଓଡ଼ିଶା ନୁହେଁ, ବିଶ୍ୱ ଶିକ୍ଷକ ଆନ୍ଦୋଳନର ନେତୃତ୍ୱ ନେବାର ଗୌରବ ହାସଲ କରି ବିଶ୍ୱର ବିଭିନ୍ନ ଦେଶ (ବୋଧହୁଏ ଓଡ଼ିଆ ଭାବେ ସର୍ବାଧିକ) ପରିଭ୍ରମଣ କରିବା, ସେଠାକାର ଶିକ୍ଷା ବ୍ୟବସ୍ଥାକୁ ଅନୁଶୀଳନ କରି ଓଡ଼ିଶାରେ ଏହି ଅଭିଜ୍ଞତାକୁ କାର୍ଯ୍ୟକାରୀ କରିବାର ଜୀବନ ତମାମ ଉଦ୍ୟମ ଜାରି ରଖିଛନ୍ତି । ପ୍ରାଥମିକ ଠାରୁ ବିଶ୍ୱବିଦ୍ୟାଳୟ ଶିକ୍ଷକ କର୍ମଚାରୀମାନଙ୍କ ଶିକ୍ଷକ ମହାସଂଘ ପରି ଗୋଟିଏ ମଞ୍ଚରେ ଏକାଠି କରି ରଖିବା ବିଶ୍ୱରେ ଅନନ୍ୟ ।"

-"ଆଜି ଜଗତୀକରଣ ନାଆଁରେ ସାରା ଦେଶରେ ସଂଗଠିତ ହେବା ଓ ସଙ୍ଗଠନ କରିବାର ଅଧିକାରକୁ ଛଡ଼ାଇନେବାକୁ ଉଦ୍ୟମ ଜାରୀ ରହିଛି । ରାଜନୀତିର ପଶାପାଲିରେ ଓଡ଼ିଶାରେ ଶିକ୍ଷକ ଆନ୍ଦୋଳନ ମଧ୍ୟ ଖଣ୍ଡ ବିଖଣ୍ଡିତ ହୋଇଛି । ଅବନୀ ସାର୍ ଏଥିରେ ବ୍ୟଥିତ ହୋଇଛନ୍ତି କିନ୍ତୁ ବିଚଳିତ ହୋଇନାହାନ୍ତି । ଶିକ୍ଷକ ନେତା ଭାବରେ ସାଧାରଣରେ ପରିଚିତ ସାର୍‌ଙ୍କ ସାହିତ୍ୟ ଓ ସଂସ୍କୃତି ପ୍ରତି ଅବଦାନ ମଧ୍ୟ କିଛି କମ୍ ନୁହେଁ । ହିରୋସୀମା-

ନାଗାସାକିର ବିଭୀଷିକାର ବର୍ଣ୍ଣନା କିମ୍ବା ମଞ୍ଚ କନ୍ୟାର କାହାଣୀ ଅତି ନିଛକ ଓ ଜୀବନ୍ତ ହୋଇଉଠେ ସାର୍‌ଙ୍କ ଲେଖନୀରେ । ତୋଷାମଦ ଓ ଖୋସାମଦଠାରୁ ଦୂରରେ ଥିବା ସାରଙ୍କୁ ତଥାକଥିତ ସାହିତ୍ୟିକର ସ୍ୱୀକୃତି ନମିଳିଥିଲେ ମଧ୍ୟ ତାଙ୍କର ସାହିତ୍ୟ ପ୍ରତି ଅବଦାନ ସର୍ବସ୍ୱୀକୃତ ।

ଅବନୀ ସାର ଛାତ୍ର ଜୀବନରୁ ମାର୍କ୍ସବାଦ ଓ ଲେନିନ୍‌ବାଦ ପ୍ରତି ଅଙ୍ଗୀକାରବଦ୍ଧ । ସମସ୍ତ ପ୍ରଥିତଯଶା କମ୍ୟୁନିଷ୍ଟଙ୍କ ବ୍ୟକ୍ତିଗତ ସାହଚର୍ଯ୍ୟର ପ୍ରଭାବ ସାର୍‌ଙ୍କୁ ଜନସାହିତ୍ୟ ଓ ସଂସ୍କୃତିର ପ୍ରଚାର ପ୍ରସାର ପାଇଁ ଜୀବନ ତମାମ୍ ପ୍ରେରଣା ଦେଇଆସିଛି । ବହୁ ସାହିତ୍ୟିକ ସାଂସ୍କୃତିକ କର୍ମୀ ବୁଦ୍ଧିଜୀବିଙ୍କ ମନରେ ସାଧାରଣ ମଣିଷ ପ୍ରତି ଦରଦ ସୃଷ୍ଟିକରି ସେମାନଙ୍କୁ ବାମପନ୍ଥୀ ଆନ୍ଦୋଳନ ଓ ଆଦର୍ଶ ଆଡ଼କୁ ଆକୃଷ୍ଟ କରାଇବାରେ ସାର୍ ନିପୁଣ । ଏଭଳି ଏକ ମଣିଷର ସଂସ୍ପର୍ଶରେ ଆସିବା ସୌଭାଗ୍ୟର କଥା । ଛାତ୍ର ସଂଘର ରାଜ୍ୟ ସମ୍ପାଦକ ଥିବାବେଳେ ସାର୍ ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଓ ଛାତ୍ର ବିଭାଗର ଦାୟିତ୍ୱରେ । ଶିକ୍ଷା ସମସ୍ୟାକୁ ସଠିକ୍ ଭାବରେ ବୁଝିବାରେ ସାର୍ ହିଁ ପଥ ପ୍ରଦର୍ଶକ । ଛାତ୍ରମାନଙ୍କୁ ସଂଗଠିତ କଲାବେଳେ ଓ ଆନ୍ଦୋଳନ ସମୟରେ ସାର୍‌ଙ୍କ ପରାମର୍ଶ ଅମୋଘ ଅସ୍ତ୍ର । ରାଜ୍ୟ ସମ୍ପାଦକ ଥିଲାବେଳେ ସାର୍‌ଙ୍କ ସହ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ଗସ୍ତ କରିବା ସମୟରେ ଆନ୍ଦୋଳନ ପରିଚାଳନା କରିବାର ଅଭିଜ୍ଞତା ଓ କୌଶଳ ଠାରୁ ଗାଡ଼ି ମଧ୍ୟରେ ପାଲା, ଦାଶକାଠିଆ ଓ ଗଣ କବିଙ୍କ ଗୀତିନାଟ୍ୟର ଅବିକଳ ପରିବେଷଣ ଆଜି ମଧ୍ୟ ଏକ ଅନନ୍ୟ ଅନୁଭୂତି । ୧୯୯୯ ମସିହାର ମହାବାତ୍ୟା ବେଳେ ତୁରନ୍ତ ଲୋକଙ୍କ ପାଖରେ ପହଞ୍ଚିବା, ରିଲିଫ୍ କାର୍ଯ୍ୟ ପରିଚାଳନା ଯିଏ ଦେଖିଚି ସାର୍‌ଙ୍କ ଭିତରେ ଥିବା ଦରଦୀ ହୃଦୟଟିକୁ ନିଶ୍ଚୟ ଅନୁଭବ କରିଛି । ବାତ୍ୟା ପରବର୍ତ୍ତୀ ଛାତ୍ର ଆନ୍ଦୋଳନରେ ମଧ୍ୟ ସାର୍‌ଙ୍କ ପରାମର୍ଶ ଆମ ପାଇଁ ବାଟ ବତାଇଥିଲା । ବ୍ୟକ୍ତିଗତ ଭାବରେ ସେ ଆମ ପାଇଁ ନେତା ଓ ଅଭିଭାବକ ।

ସାର୍‌ଙ୍କ ସହ ଅନେକ ଥର ମତାନ୍ତର ହୋଇଛି । ସାରଙ୍କ କ୍ରୋଧ ପୁଣି କ୍ରୋଧ ଭିତରେ ଲୁଚିଥିବା ଆତ୍ମୀୟତା ଆମ ସମ୍ପର୍କକୁ ନିବିଡ଼ତର କରି ଗଢ଼ିତୋଳିଛି, ଯୁବପିଢ଼ୀକୁ ତିଆରି କରିବାରେ ସେ ଆନନ୍ଦ ପାଆନ୍ତି । "ଟୋକାଗୁଡ଼ାକ ମଦନ ଭୁଷୁଣ୍ଡାଙ୍କ ପରି ବୁଲୁଛ, ପଢୁନାହଁ, ଲେଖୁନାହଁ", କହି କହି ପ୍ରବର୍ତ୍ତାନ୍ତି । ନୂଆ କଥା କରିବା ପାଇଁ ସେ ଜଣେ ପୋଖତ ଅଭିଜ୍ଞ କମ୍ୟୁନିଷ୍ଟ, ତାଙ୍କ ପାଖରୁ ଅନେକ କଥା ଶିଖିବାର ଅଛି, ଅନୁକରଣ କରିବାର ଅଛି ।"

କମ୍ୟୁନିଷ୍ଟ ପାର୍ଟିର ସଭ୍ୟପଦ ଗ୍ରହଣ କରିବା ପରେ ସାହିତ୍ୟିକ ଅବନୀ ବରାଳ ୧୯୫୬-୫୭ ମସିହାରେ ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର 'ନୂଆ ଦୁନିଆ'ର ସମ୍ପାଦକ ମଣ୍ଡଳୀରେ କାର୍ଯ୍ୟ କରିଥିଲେ । 'ନୂଆ ଦୁନିଆ' ପୃଷ୍ଠାରେ ତାଙ୍କର ନିୟମିତ ସ୍ତମ୍ଭଗୁଡ଼ିକ ଖୁବ୍ ଲୋକପ୍ରିୟ ହୋଇପାରିଥିଲା । ସେହି ସମୟରେ ପ୍ରଖ୍ୟାତ ସାହିତ୍ୟିକ ତଥା ବାମପନ୍ଥୀ ଆନ୍ଦୋଳନ ସହ ସମ୍ପୃକ୍ତ ଥିବା ମନୋଜ ଦାସ ଓ ବ୍ରଜନାଥ ରଥ ମଧ୍ୟ 'ନୂଆ ଦୁନିଆ'ରେ ଧାରାବାହିକ ଭାବରେ ଲେଖୁଥିଲେ । ପ୍ରାଣନାଥ କଲେଜରେ ଅଧ୍ୟାପନା ଏବଂ ଦୁର୍ବାର ଶିକ୍ଷକ ଆନ୍ଦୋଳନର ନେତୃତ୍ୱ ନେବାବେଳେ ମଧ୍ୟ ଅବନୀ ତାଙ୍କର ଅତି ପ୍ରିୟ କମ୍ୟୁନିଷ୍ଟ ପାର୍ଟିକୁ ଭୁଲି ନାହାନ୍ତି । ପୂର୍ବରୁ ବର୍ଣ୍ଣିତ ହୋଇଛି ଯେ, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ତଥା ବିଶିଷ୍ଟ ବୈଜ୍ଞାନିକ ଡକ୍ଟର ପ୍ରାଣକୃଷ୍ଣ ପରିଜା ଖୋର୍ଦ୍ଧା କଲେଜକୁ ଯାଇ ତଦନ୍ତ କଲାବେଳେ ଅବନୀ ନିଜର 'କମ୍ୟୁନିଷ୍ଟ' ପରିଚୟକୁ ନଲୁଚାଇ ତାଙ୍କୁ ସ୍ପଷ୍ଟ ଜଣାଇ ଦେଇଥିଲେ ଯେ, ସେ କମ୍ୟୁନିଷ୍ଟ ମତବାଦରେ ସମ୍ପୂର୍ଣ୍ଣ ବିଶ୍ୱାସୀ । କିନ୍ତୁ କଲେଜରେ ପାଠ ପଢ଼ାଇବା ସହ ତାହାର କୌଣସି ସମ୍ପର୍କ ନାହିଁ । ପ୍ରାଣନାଥ କଲେଜରେ ଅଧ୍ୟାପନା କରୁଥିବାବେଳେ ୧୯୭୧ ମସିହାରୁ ସି.ପି.ଆଇ ରାଜ୍ୟ କାର୍ଯ୍ୟକାରୀ କମିଟିର ସଭ୍ୟ ରହି ଆସିଥିବା ବେଳେ ୧୯୯୦ରେ ଜାତୀୟ ପରିଷଦର ସଭ୍ୟ ହୋଇଥିଲେ । ତେବେ ଏହି ସମସ୍ତ ଦାୟିତ୍ୱ ସେ ସମ୍ପାଦନ କରିଥିଲେ 'ଅବିନାଶ ବର୍ମା' ନାମକ ଏକ ଛଦ୍ମ ନାମରେ । ରାଜ୍ୟ ସରକାରଙ୍କ ଗୁଇନ୍ଦା ସଂସ୍ଥା ସେତେବେଳେ ସି.ପି.ଆଇ କାର୍ଯ୍ୟକାରୀ କମିଟିରେ ସ୍ଥାନ ପାଇଥିବା ଅବିନାଶ ବର୍ମା ନାମକ ଲୋକଟିକୁ ଖୋଜି ବାହାର କରିବାକୁ ନାକେଦମ ହୋଇଥିଲେ । ସେମାନେ ବା କାହିଁକି ଜାଣିବେ ପ୍ରାଣନାଥ କଲେଜ, ଖୋର୍ଦ୍ଧାରେ ପାଠ ପଢ଼ାଉଥିବା ମଣିଷଟି ଅବିନାଶ ବର୍ମା ବୋଲି ? ପରିଶେଷରେ ୧୯୯୪ ମସିହାରେ ଅଧ୍ୟାପକ ଚାକିରୀରୁ ଅବସର ନେବା ପରେ ରାଜ୍ୟ ନେତୃତ୍ୱରେ ଅଗ୍ରଗାମୀ ଭୂମିକା ଗ୍ରହଣ କରିଥିଲେ ।

୧୯୯୫-୯୬ ବର୍ଷ ସି.ପି.ଆଇ. ରାଜ୍ୟ ଶାଖା ପାଇଁ ଥିଲା ଏକ ଘଡ଼ିସନ୍ଧି ମୁହୂର୍ତ୍ତ । ୧୯୯୦ ନିର୍ବାଚନରେ ବିଜୁ ପଟ୍ଟନାୟକଙ୍କ ଜନତା ଦଳ ସହ ସି.ପି.ଆଇ ଏବଂ ସି.ପି.ଏମ୍ ଏହି ଦୁଇ ବାମପନ୍ଥୀ ଦଳର ଯେଉଁ ମେଣ୍ଟ ହୋଇଥିଲା, ୧୯୯୫ ନିର୍ବାଚନରେ ତାହା ଭାଙ୍ଗି ଯାଇଥିଲା । ସବୁ ଦଳ ଅଲଗା ନିର୍ବାଚନ ଲଢ଼ିଥିଲେ । ଫଳରେ ଏହି ନିର୍ବାଚନରେ ଜନତା ଦଳର ପରାଜୟ ଘଟିଲା । କଂଗ୍ରେସ ଦଳ ଓଡ଼ିଶାର ଶାସନ ଗାଦି ଦଖଲ କରିବା ସହିତ ଜାନକୀ ବଲ୍ଲଭ ପଟ୍ଟନାୟକ ତୃତୀୟ ଥର ମୁଖ୍ୟମନ୍ତ୍ରୀ ହୋଇଥିଲେ । ସି.ପି.ଆଇ ବିଧାନସଭାରେ କେବଳ ଗୋଟିଏ ଆସନ ଜିତିଥିଲା ।

ବ୍ରଜରାଜନଗର ନିର୍ବାଚନ ମଣ୍ଡଳୀରୁ ପ୍ରବୀଣ ତଥା ଜନପ୍ରିୟ କମ୍ୟୁନିଷ୍ଟ ନେତା ପ୍ରସନ୍ନ କୁମାର ପଣ୍ଡା ଷଷ୍ଠଥର ପାଇଁ ବିଜୟୀ ହୋଇଥିଲେ । ତାହା ହିଁ ଥିଲା ତାଙ୍କ ଜୀବନର ଶେଷ ନିର୍ବାଚନ । ୧୯୯୬ ମଇ ମାସରେ ଲୋକସଭା ପାଇଁ ଅନୁଷ୍ଠିତ ସାଧାରଣ ନିର୍ବାଚନରେ ସି.ପି.ଆଇ.ର କୌଣସି ପ୍ରାର୍ଥୀ ବିଜୟୀ ହୋଇନଥିଲେ । ଦୁଇ ଦୁଇଟି ନିର୍ବାଚନରେ କମ୍ୟୁନିଷ୍ଟ ପାର୍ଟିକୁ ଯେଉଁ ଧକ୍କା ଲାଗିଲା ସେଥିରେ ବୀତସ୍ପୃହ ହୋଇ ସି.ପି.ଆଇ. ରାଜ୍ୟ ଶାଖାର ମୁଖ୍ୟ (ସମ୍ପାଦକ) ପଦରୁ ବରିଷ୍ଠ ନେତା ଲୋକନାଥ ଚୌଧୁରୀ ଅବ୍ୟାହିତ ନେବାକୁ ଚାହିଁଲେ । ତାଙ୍କ ସ୍ଥାନରେ ରାଜ୍ୟ ପାର୍ଟିର ସର୍ବୋଚ୍ଚ ପଦବୀ ସମ୍ପାଦକ ଦାୟିତ୍ୱ ଗ୍ରହଣ କରିଥିଲେ ଶିକ୍ଷକ ଆନ୍ଦୋଳନର ଅଦ୍ୱିତୀୟ ନେତା ଅବନୀ ବରାଳ ।

କମ୍ୟୁନିଷ୍ଟ ପାର୍ଟି ରାଜ୍ୟ ଶାଖାର ସମ୍ପାଦକ ଦାୟିତ୍ୱ ଗ୍ରହଣ କରିବା ପରେ ପାର୍ଟିକୁ ସଙ୍ଗଠିତ ତଥା ଚଳଚଞ୍ଚଳ କରିବା ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କରିଥିଲେ ଅବନୀ । ଏଥିପାଇଁ ରାଜ୍ୟର ସବୁ ଜିଲ୍ଲାକୁ ବାରମ୍ବାର ଗସ୍ତକରି ପାର୍ଟି କ୍ଲାସ, କର୍ମୀ ସମାବେଶ ଓ ଜନସଭା ଆଦିର ଆୟୋଜନ କରାଇଲେ । ଗୋଟିଏ ପଟେ ଶିକ୍ଷକ ମହାସଂଘ ଭଳି ଏକ ବୃହତ୍ ଗଣସଙ୍ଗଠନର ନେତୃତ୍ୱ ଏବଂ ଅନ୍ୟପଟେ ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ମୁଖ୍ୟ, ଏହି ଦୁଇ ଗୁରୁ ଦାୟିତ୍ୱ ସମ୍ଭାଳିବା ତାଙ୍କ ପକ୍ଷରେ ଭୀଷଣ କଷ୍ଟକର ହୋଇଥିଲେ ମଧ୍ୟ ସେ ଖୁବ୍ ଦକ୍ଷତାର ସହ ଦୁଇ କାର୍ଯ୍ୟ ସମ୍ପାଦନ କରିଥିଲେ । ଅବନୀ ରାଜ୍ୟ ପାର୍ଟିର ସମ୍ପାଦକ ଥିବାବେଳେ ଦୁଇଜଣ ସହ ସମ୍ପାଦକ କାର୍ଯ୍ୟ କରିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଦିବାକର ନାୟକ ପରବର୍ତ୍ତୀ ସମୟରେ ରାଜ୍ୟ ପାର୍ଟିର ସମ୍ପାଦକ ହୋଇଥିଲେ । ଅନ୍ୟ ଜଣେ ସହସମ୍ପାଦକ ଥିଲେ ନିମାପଡ଼ା ଅଞ୍ଚଳର ଟାଣୁଆ ଯୁବନେତା ଅକ୍ଷୟ କୁମାର ପ୍ରଧାନ । ତେବେ ଏହି ପଦବୀରେ ରହି କାର୍ଯ୍ୟ କରୁଥିବା ବେଳେ ତାଙ୍କର ଅକାଳ ବିୟୋଗ ଘଟିଥିଲା, ଯାହା ପାର୍ଟିର ସାଥୀ ଓ ସହକର୍ମୀମାନଙ୍କୁ ମ୍ରିୟମାଣ କରିଥିଲା ।

ପାର୍ଟିର ରାଜ୍ୟ ସମ୍ପାଦକ ରୂପେ ୬ ବର୍ଷ କାର୍ଯ୍ୟ କରିବା ଭିତରେ ଅବନୀ ପାର୍ଟିର ମୁଖ୍ୟ ଦପ୍ତର ଭଗବତୀ ଭବନରେ ଏକ ପାଠାଗାର ପ୍ରତିଷ୍ଠା କରିବା ପାର୍ଟିରେ କମ୍ପ୍ୟୁଟର ଲଗାଇବା ଆଦି ସହିତ ପୁରୁଣା ରେକର୍ଡ଼ ଏବଂ ପତ୍ରପତ୍ରିକା ଆଦିର ସଂରକ୍ଷଣ ଉପରେ ଗୁରୁତ୍ୱ ଦେଇଥିଲେ । ନୂତନ ପୀଢ଼ିର କମ୍ୟୁନିଷ୍ଟ ମାନଙ୍କୁ ଅଧିକ ପଢ଼ିବାକୁ ଓ ପାର୍ଟିର ଇତିହାସ, ବିଶ୍ୱ ଇତିହାସ ଆଦି ଜାଣିବା ପାଇଁ ସେ ବରାବର ପରାମର୍ଶ ଦେଉଥିଲେ । ତାଙ୍କର ନେତୃତ୍ୱ ସମୟରେ ୧୯୯୭ ଅଗଷ୍ଟ ୧୫ ତାରିଖ ଦିନ ଦେଶବ୍ୟାପୀ ପାଳିତ ହୋଇଥିଲା ଭାରତର ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷ ପୂର୍ତ୍ତି ଉତ୍ସବ । ଏହି ଅବସରରେ ପାର୍ଟିର ମୁଖ୍ୟ ଦପ୍ତର ଭଗବତୀ ଭବନ ଠାରେ ରାଜ୍ୟ ସମ୍ପାଦକ ଆୟୋଜନ କରିଥିଲେ

ସ୍ୱାଧୀନତା ସଂଗ୍ରାମର ଯୋଦ୍ଧାମାନଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଏକ ଭବ୍ୟ ଉତ୍ସବ । ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନର ଅଗ୍ରଭାଗରେ ରହି ଆସିଥିଲା କମ୍ୟୁନିଷ୍ଟ ପାର୍ଟି । ସେଦିନ ଉତ୍ସବରେ ବାମପନ୍ଥୀ ଆନ୍ଦୋଳନ ସହ ଜଡ଼ିତ ଥିବା କିଛି ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀଙ୍କୁ ଯେପରି ଉତ୍ସାହ ଓ ଆନ୍ତରିକତାର ସହ ସମ୍ବର୍ଦ୍ଧିତ କରାଗଲା, ତାହା ଏକ ସ୍ମରଣୀୟ ପରିବେଶ ସୃଷ୍ଟି କରିଥିଲା । ସଂଗ୍ରାମୀ ବନ୍ଧୁମାନେ ଦୀର୍ଘଦିନର ବ୍ୟବଧାନ ପରେ ପରସ୍ପରକୁ ଭେଟି ଖୁବ୍ ଆନନ୍ଦିତ ହୋଇଥିଲେ । ପ୍ରତ୍ୟେକଙ୍କୁ ମାନପତ୍ର ଓ ଉପଢ୍ୌକନ ଦିଆଯାଇ ସମ୍ବର୍ଦ୍ଧିତ କରାଯାଇଥିଲା ।

ଅବନୀ ବରାଳ ରାଜ୍ୟ ସମ୍ପାଦକ ଥିବାବେଳେ ପାର୍ଟିର ସହସମ୍ପାଦକ ଥିବା ଦିବାକର ନାୟକ ତାଙ୍କର କାର୍ଯ୍ୟଶୈଳୀ ସମ୍ପର୍କରେ ସୂଚନା ଦେଇ କହନ୍ତି - "ଅବନୀ ବରାଳ ଶିକ୍ଷକ ଆନ୍ଦୋଳନରେ ସର୍ବଭାରତୀୟ ସ୍ତରରେ ଅଗ୍ରଣୀ ଭୂମିକା ନେଉଥିବାରୁ କମ୍ୟୁନିଷ୍ଟପାର୍ଟିର ସର୍ବୋଚ୍ଚନୀତି ନିର୍ଦ୍ଧାରଣକାରୀ ସଂସ୍ଥା ଜାତୀୟ ପରିଷଦରେ ସ୍ଥାନ ନେଇଥିଲେ ଶିକ୍ଷକ ଫ୍ରଣ୍ଟରୁ । ଚାକିରୀରୁ ଅବସର ଗ୍ରହଣ କରିବା ପରେ ରାଜନୈତିକ ଭାବେ ଏକ ଘଡ଼ି ସନ୍ଧି ସମୟରେ ୧୯୯୬ ମସିହାରେ ତାଙ୍କୁ ରାଜ୍ୟପାର୍ଟିର ମୁଖ୍ୟ ବା ରାଜ୍ୟ ସମ୍ପାଦକ ରୂପେ ନିର୍ବାଚିତ କରାଯାଇଥିଲା । ତତ୍‌କାଳୀନ ରାଜ୍ୟ ସମ୍ପାଦନ ଲୋକନାଥ ଚୌଧୁରୀଙ୍କ ସ୍ଥାନରେ ସେ ସମ୍ପାଦକ ହୋଇଥିଲେ । ମୁଁ ଉଭୟଙ୍କ ସମ୍ପାଦକତ୍ୱରେ ସହସମ୍ପାଦକ ଥିଲି । ମୁଁ ଦେଖିଛି ସେ କିଭଳି ଦକ୍ଷତାର ସହିତ ସମ୍ପାଦକର ଦାୟିତ୍ୱ ତୁଲାଇଛନ୍ତି । ସେ ସମୟରେ ସେ ଶିକ୍ଷକ ମହାସଂଘର ମଧ୍ୟ ସାଧାରଣ ସମ୍ପାଦକ । ସେତେବେଳେ କିଛି ଶିକ୍ଷକ ନେତା ଅନ୍ୟ ରାଜନୈତିକ ଦଳର ପ୍ରରୋଚନାରେ ପ୍ରଚାର ଚଳେଇଥିଲେ । କମ୍ୟୁନିଷ୍ଟ ପାର୍ଟିର ଷ୍ଟେଟ୍ ସେକ୍ରେଟାରୀ ଶିକ୍ଷକ ମହାସଂଘର ସାଧାରଣ ସମ୍ପାଦକ କିଭଳି ହେବେ ? ସେଇ ନିନ୍ଦୁକଙ୍କ ମଧ୍ୟରୁ ଜଣେ ଦୁଇ ଜଣଙ୍କୁ ମୁଁ ସର୍ବଜନ ସମ୍ମୁଖରେ କହିଥିଲି - ଅବନୀ ବରାଳ କ'ଣ ଗୁପ୍ତ କମ୍ୟୁନିଷ୍ଟ ? ଶିକ୍ଷକ ଆନ୍ଦୋଳନ ଆରମ୍ଭରୁ ସେ କମ୍ୟୁନିଷ୍ଟ ନେତା ହିସାବରେ ଜଣାଶୁଣା । ୧୯୭୧ ରୁ ରାଜ୍ୟ କାର୍ଯ୍ୟକାରୀ କମିଟିର ସଭ୍ୟ ଓ ୧୯୯୦ରୁ ଜାତୀୟ ପରିଷଦର ସଭ୍ୟ । ଡାଇରେକ୍ଟ ପେମେଣ୍ଟ କରାଇବା ବେଳେ ତମେ ତ କମ୍ୟୁନିଷ୍ଟ ବୋଲି ନାକ ଟେକୁନଥିଲ ?

ଅବନୀ ସାର୍ ସେଇ ୬ ବର୍ଷ କିଭଳି ଦ୍ୱୈତ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି ତାହା ନିଜେ ନଦେଖିଲେ ବୁଝିବା କଷ୍ଟକର । ଦିନ ୧୦ଟାରେ ପାର୍ଟି ଅଫିସକୁ ଆସିବେ । ୨ଟା ପର୍ଯ୍ୟନ୍ତ କାମ କରିବେ । ବିଭିନ୍ନ ଜିଲ୍ଲା ପାର୍ଟି ସଙ୍ଗଠନ ଓ ପାର୍ଟିର ଯାବତୀୟ କଥା ବୁଝିବେ, ଆମମାନଙ୍କୁ ନିର୍ଦ୍ଦେଶ ଦେବେ । ପାର୍ଟି ଅଫିସରେ ତାଙ୍କୁ ଦେଖିଲେ ମନେହେବ

ନାହିଁ ଯେ ସେ ଶିକ୍ଷକନେତା ୫ଟାରେ ଯିବେ ଶିକ୍ଷକ ମହାସଂଘ ଅଫିସ । ସେଠାରେ ରାତି ୧୦ । ସେଠାରେ ସେ ଶିକ୍ଷକ ମହାସଂଘ ନେତା । ଏଭଳି ଦୁଇଟି ଦାୟିତ୍ୱ ନିଷ୍ଠାର ସହିତ ସର୍ବୋତ୍ତମ ଭାବେ ସମ୍ପାଦନ କରିବା ଓଡ଼ିଶାରେ ଅନ୍ୟ କାହାଦ୍ୱାରା ସମ୍ଭବ ତାହା ମୁଁ କଳ୍ପନା କରିପାରିନାହିଁ । ତାଙ୍କ ସାଥିରେ ସହସମ୍ପାଦକ ହିସାବରେ ମୁଁ ଓଡ଼ିଶାର ବିଭିନ୍ନ ଜିଲ୍ଲାକୁ ପାର୍ଟିର ବିଭିନ୍ନ କାର୍ଯ୍ୟକ୍ରମରେ ଯାଇଛି । ମୁଁ ଶାଖା ସମ୍ପାଦକ ଓ ଜୋନ୍ ସମ୍ପାଦକ ସ୍ତରରୁ ଆସିଥିବାରୁ ସଙ୍ଗଠନ ସମ୍ପର୍କରେ ତାଙ୍କଠାରୁ ଅଧିକ ଜାଣିଛି ବୋଲି ମନ ଭିତରେ ଧାରଣା ଥିଲା । କିନ୍ତୁ ତାଙ୍କ ସହିତ ବିଭିନ୍ନ ଜିଲ୍ଲା ଓ ଜୋନ୍ ସ୍ତରୀୟ କାର୍ଯ୍ୟକ୍ରମରେ ଯୋଗ ଦେବା ପରେ ଜାଣିଲି, ମୋର ଏ ଧାରଣା ଭୁଲ୍ । ପାର୍ଟି ସଙ୍ଗଠନର ଟିକିନିଖି ଦୋଷ ଓ ଦୁର୍ବଳତା ଏବଂ ତାକୁ ସୁଧାରିବାର ଲେନିନ୍‌ବାଦୀ ପଦ୍ଧତି ସମ୍ପର୍କରେ ସେ ଖୁବ୍ ପୋଖତ, ଅଭିଜ୍ଞ । ୨୦୦୮ କଟକ ରାଜ୍ୟ ସମ୍ମିଳନୀରେ ତାଙ୍କ ନାଁ ସମ୍ପାଦକ ମଣ୍ଡଳୀ ପାଇଁ ଆସିବାରୁ ସେ ନିଜ ନାଁ ପ୍ରତ୍ୟାହାର କରିନେଇ କହିଲେ - ମୁଁ ପାର୍ଟି ପାଇଁ କମ୍ ସମୟ, ଶିକ୍ଷକ ମହାସଂଘ ପାଇଁ ଅଧିକ ଦେଉଛି । ମୁଁ କାର୍ଯ୍ୟକାରୀ କମିଟିରେ ଅଛି । ସମ୍ପାଦକ ମଣ୍ଡଳୀରେ ରହିବି ନାହିଁ । ଅନ୍ୟ ଜଣକୁ ନିଅ । ପାର୍ଟିକୁ ପ୍ରାଣଠାରୁ ଅଧିକ ଭଲପାଉ ନଥିଲେ ଜଣେ ଏଭଳି କହିବ ନାହିଁ । ବର୍ତ୍ତମାନ ମଧ୍ୟ କମ୍ୟୁନିଷ୍ଟ ପାର୍ଟି ତାଙ୍କୁ ଯେଉଁ ଦାୟିତ୍ୱ ଅର୍ପଣ କରୁଛି ତାହା ସେ ସୁଚାରୁରୂପେ ସମ୍ପାଦନ କରୁଛନ୍ତି । ଆହୁରି ଅନେକ ବର୍ଷ ସେ କମ୍ୟୁନିଷ୍ଟପାର୍ଟି ଓ ଶିକ୍ଷକ ସମାଜ ପାଇଁ ପଥ ପ୍ରଦର୍ଶକ ହୋଇରହିବେ ବୋଲି ମୁଁ ଆଶା କରୁଛି ।"

କମ୍ୟୁନିଷ୍ଟ ପାର୍ଟିର ବହୁଶାଖା ସଂଗଠନର କାର୍ଯ୍ୟ ସହ ଜଡ଼ିତ ରହି ସୁଦ୍ଧା ଅବନୀ ବରାଳ କିପରି ଦକ୍ଷତାର ସହ ସମସ୍ତ କାର୍ଯ୍ୟ ସୂଚାରୁ ରୂପେ ସମ୍ପାଦନ କରନ୍ତି, ତାହା ଅନେକ ସମୟରେ ବିସ୍ମୟ ସୃଷ୍ଟି କରିଥାଏ । ନିଜେ ଅବନୀ ବାବୁ ବେଳେ ବେଳେ ପରିହାସରେ କହନ୍ତି - "ମୁଁ କେତେ ପ୍ରକାର ରୂପ ନେବି, ପୋଷାକ ପିନ୍ଧିବି ?" ଗୁରୁଚରଣ ପଟ୍ଟନାୟକ (ଯାହାକୁ ସେ ଗୁରୁ ମାନନ୍ତି) ହସି ହସି କହନ୍ତି - "ତମେ ପରା ଅଭିନେତା ! କେତେବେଳେ ରଜା ଭୂମିକାରେ, କେତେବେଳେ ମନ୍ତ୍ରୀ ଓ କଟୁଆଳ । ତମେ ତ ସବୁ ରୋଲ୍ ପାଇଁ ଫିଟ୍ । ଆମେ ହେଲୁ ବ୍ରାଣ୍ଡେଡ୍ ଲୋକ । ଆମେ କ'ଣ ଏତେ ରୋଲ୍ କରିପାରିବୁ ? ଓଡ଼ିଶାର ପ୍ରଥମ କମ୍ୟୁନିଷ୍ଟ ଗୁରୁଚରଣ ପଟ୍ଟନାୟକଙ୍କର ଏହି ପରିହାସରୁ ଜଣାଯାଏ, ରାଜ୍ୟ କମ୍ୟୁନିଷ୍ଟପାର୍ଟି ବିଭିନ୍ନ ଫ୍ରଣ୍ଟରେ ସୂଚାରୁ ରୂପେ ଦକ୍ଷତାର ସହିତ ଦାୟିତ୍ୱ ସମ୍ପାଦନ କରିପାରିବାର କିଭଳି ଭରସା ରଖିଥିଲା ତାଙ୍କ ଉପରେ । ସେହିପରି ଉତ୍କଳ ମହିଳା ସମିତିର ନେତ୍ରୀ ନିରଦପ୍ରଭା ପଟ୍ଟନାୟକ ତାଙ୍କ କାର୍ଯ୍ୟ ଶୈଳୀର ଚମତ୍କାରୀତାରେ

ମୁଗ୍ଧ ହୋଇ କହନ୍ତି – "ଅବନୀବାବୁ କେଉଁ ବିଭାଗ ତୁମେ ଛାଡିଛ ? ଶୁଣୁ ଶୁଣୁ ଅବନୀବାବୁ ଜଣେ ପ୍ରତିଷ୍ଠିତ ନେତା, ନିଷ୍ଠାପର ସାମ୍ୟବାଦୀକର୍ମୀ କମ୍ୟୁନିଷ୍ଟ ଦଳ ବିଶେଷକରି ଦଳିତ ଅତ୍ୟାଚରିତ ନିଷ୍ପେଷିତ ଜନତାଙ୍କର ନେତା । ଓଡିଶା କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ କମିଟିର ସମ୍ପାଦକ । ଖବର ପାଇଁ ମୁଁ ଖୁସି ହୋଇ କହିଥିଲି – ଏଥର ପାର୍ଟି ଠିକ୍ ଚଲିବ । ମହିଳା ସମିତିର ଶାଖା ଖୋଲିବା ସହଜ ହେବ । କେତେ ଅଭୁଲା ସ୍ମୃତି ମନେ ପଡିଯାଉଛି । ରାଜ୍ୟ ସମ୍ମିଳନୀ ଚଲିଥାଏ, ମୋ' ନାଁ ଡକା ହେଲା, ଶୁଣି କାବା ହୋଇଗଲି । ଅବନୀ ବାବୁ ମତେ ସମ୍ବର୍ଦ୍ଧିତ କଲେ । ଫେରେ ୨୦୦୫ ଡିସେମ୍ବର ମାସରେ, ହସି ହସି ଆସି ମତେ ସମ୍ବର୍ଦ୍ଧିତ କଲେ । ପକ୍ଷାଘାତ ଯୋଗୁଁ ମୁଁ ମଞ୍ଚ ଉପରକୁ ଯାଇପାରିଲି ନାହିଁ ; ରାଜ୍ୟ ସ୍ତରୀୟ ୮୦ତମ ବାର୍ଷିକ ସମାରୋହରେ !

ମନେ ପଡୁଛି ମହାବାତ୍ୟା ପରେ ରିଲିଫ ଜିନିଷ ବାଣ୍ଟି ଘରେ ଆସି ଭାରତୀୟ କମ୍ୟୁନିଷ୍ଟ ପାର୍ଟି ସାଧାରଣ ସମ୍ପାଦକ କମ୍ରେଡ ଏ.ବି. ବର୍ଦ୍ଧନଙ୍କ ସାଙ୍ଗେ ଶ୍ରୀଯୁକ୍ତ ଗୋବିନ୍ଦ ବାବୁ, ଅବନୀ ବାବୁ ଓ ଅନ୍ୟମାନେ । ମହିଳା ସମିତି କାର୍ଯ୍ୟ ଶୁଣି ସେମାନେ ବହୁତ ଖୁସି ହେଲେ । ଅବନୀ ବାବୁଙ୍କର ବଡ ଅବଦାନ ୧୯୭୧ ମସିହା ସେପ୍ଟେମ୍ବର ୫ ତାରିଖ ଗୁରୁଦିବସ ଦିନ ଗଢ଼ା ହେଲା "ନିଖିଳ ଉତ୍କଳ ଶିକ୍ଷକ ମହାସଂଘ" ତାଙ୍କ ନେତୃତ୍ୱରେ । ଆନ୍ଦୋଳନ କେବଳ ଶିକ୍ଷକଙ୍କ ପାଇଁ କରୁନଥିଲେ । ଛାତ୍ରମାନଙ୍କ ପାଇଁ ମଧ୍ୟାହ୍ନ ଭୋଜନ, ଫ୍ରି ଏଜୁକେସନ୍ ପ୍ରଚଳନ ପାଇଁ, ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ଜନ ସଚେତନା ଲାଗି ଚଲିଥିଲା ଆନ୍ଦୋଳନ, ବିଶେଷ କରି ପ୍ରାଥମିକ ଶିକ୍ଷା ପାଇଁ । "ଜ୍ଞାନ ଜ୍ୟୋତି" ସମଗ୍ର ରାଜ୍ୟରେ ପରିକ୍ରମା କରାଇ ଜନସଚେତନତା ସୃଷ୍ଟି କରିଥିଲେ ସେ । ଅବନୀ ବାବୁଙ୍କ ନେତୃତ୍ୱରେ ସମଗ୍ର ଦେଶରେ ଏକ ଜାଗରଣ ସୃଷ୍ଟି ହେଲା । ଅବନୀ ବାବୁ ଶିକ୍ଷକମାନଙ୍କ ଉନ୍ନତି ପାଇଁ ସର୍ବଦା କାର୍ଯ୍ୟରତ । ଏବେ ବି ଶିକ୍ଷକ ମହାସଂଘ ଅଫିସ ତାଙ୍କର କର୍ମକ୍ଷେତ୍ର । ସେହିଠାରେ ରହି ଶିକ୍ଷକମାନଙ୍କୁ ପ୍ରେରଣା ଦେଇ ଚଲିଛନ୍ତି ସେ ।"

ଶିକ୍ଷକ ମହାସଂଘ ଓ କମ୍ୟୁନିଷ୍ଟ ପାର୍ଟିର ଗୁରୁ ଦାୟିତ୍ୱ ମୁଣ୍ଡାଇବା ତାଙ୍କ ପକ୍ଷରେ କ୍ରମଶଃ କଷ୍ଟସାଧ ହୋଇପଡ଼ିବାରୁ ଅବନୀ ବରାଳ ୨୦୦୧ ମସିହା ବେଳକୁ ସି.ପି.ଆଇ. ରାଜ୍ୟ ପରିଷଦର ସମ୍ପାଦକ ପଦରୁ ବିଦାୟ ନେବାକୁ ଚହିଁଥିଲେ । ତାଙ୍କ ସ୍ଥାନରେ ସମ୍ପାଦକ ଦାୟିତ୍ୱ ଗ୍ରହଣ କରିଥିଲେ ରାଜ୍ୟରେ ଶ୍ରମିକ ଆନ୍ଦୋଳନର ପ୍ରବୀଣ ଓ ବୟୋଜ୍ୟେଷ୍ଠ ନେତା ତଥା ପୂର୍ବତନ ସାଂସଦ ଦ୍ୟୁତିକୃଷ୍ଣ ପଣ୍ଡା । ତେବେ ସମ୍ପାଦକ ଦାୟିତ୍ୱରୁ ଅବ୍ୟାହତି ନେଇଥିଲେ ହେଁ ପାର୍ଟି ନେତୃତ୍ୱର ଶୀର୍ଷ ସ୍ଥାନରେ ରହି ସମସ୍ତ ଆନ୍ଦୋଳନ ଓ ଗଣ

ସଂଗ୍ରାମରେ ସେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ପାର୍ଟିର ନୂତନ କର୍ମକର୍ତ୍ତାମାନଙ୍କୁ ଆବଶ୍ୟକ ସ୍ଥଳେ ପରାମର୍ଶ ଦେଉଥିଲେ ଏବଂ ନୀତି ନିର୍ଦ୍ଧାରଣ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଥିଲେ । ୨୦୦୪ ଏବଂ ୨୦୦୯ ମସିହା ସାଧାରଣ ନିର୍ବାଚନରେ କମ୍ୟୁନିଷ୍ଟ ପାର୍ଟିର ପ୍ରାର୍ଥୀ ମନୋନୟନ ଠାରୁ ଆରମ୍ଭ କରି ଅନ୍ୟ ରାଜନୈତିକ ଦଳ ସହ ଆସନ ବୁଝାମଣା ସମ୍ପର୍କରେ ନିଷ୍ପତ୍ତି ନେବା ଓ ଆଲୋଚନା କରିବାର ଦାୟିତ୍ୱ ମୁଖ୍ୟତଃ ତାଙ୍କ ଉପରେ ହିଁ ନ୍ୟସ୍ତ କରାଯାଇଥିଲା । ବିଶେଷକରି ଓଡ଼ିଶାରେ ବି.ଜେ.ଡ଼ି. ଓ ବି.ଜେ.ପି. ମେଣ୍ଟ ଭାଙ୍ଗିଯିବା ପରେ ୨୦୦୯ରେ ଯେଉଁ ନିର୍ବାଚନ ଅନୁଷ୍ଠିତ ହେଲା, ସେଥିରେ ବିଜେଡି ନେତା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ସହ ସି.ପି.ଆଇ.ର ଆସନ ବୁଝାମଣା ଦାୟିତ୍ୱ ମୁଖ୍ୟତଃ ଅବନୀଙ୍କ ଉପରେ ହିଁ ନ୍ୟସ୍ତ କରାଯାଇଥିଲା । ତାଙ୍କର ରଣକୌଶଳ ଏବଂ ସାଙ୍ଗଠନିକ ଦକ୍ଷତା ଯୋଗୁଁ ଏହି ନିର୍ବାଚନରେ ସି.ପି.ଆଇ. ଛତ୍ରପୁର ବିଧାନସଭା ଆସନ ଏବଂ ଜଗତସିଂହପୁର ଲୋକସଭା ଆସନରେ ବିଜୟୀ ହୋଇପାରିଥିଲା । ରାଜ୍ୟ ପାର୍ଟିର ନେତୃତ୍ୱରୁ କେଉଁ ପରିସ୍ଥିତିରେ ସେ ବିଦାୟ ନେଇଥିଲେ ତାହାର ପୃଷ୍ଠଭୂମି ବର୍ଣ୍ଣନା କରି ନିଜେ ଅବନୀ କହନ୍ତି – "ମୁଁ କଲେଜରେ ପଢ଼ିବାକୁ ଆରମ୍ଭ କରିବା ଦିନୁ ବାମପନ୍ଥୀ ଏବଂ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ । ବହୁକାଳରୁ ମୁଁ କମ୍ୟୁନିଷ୍ଟ ପାର୍ଟିର ଜାତୀୟ ପରିଷଦର ସଭ୍ୟ ମଧ୍ୟ ଥିଲି । ସେହି କ୍ରମରେ ହଠାତ୍ ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ ସମ୍ପାଦକ ପଦ ସମ୍ଭାଳିବାକୁ ପଡ଼ିଲା । ସଦାବେଳିଆ ଦଳର କାର୍ଯ୍ୟ କରିବା ଏବଂ ଶିକ୍ଷକ ମହାସଂଘର ହୋଲ ଟାଇମ୍ କାମ କରିବା ସମ୍ଭବ ହେଲା ନାହିଁ, ଯଦିଓ ରାଜନୈତିକ ବାଧା ବା ସଙ୍ଗଠନର ବାଧା କିଛି ନଥିଲା । କାରଣ ଶିକ୍ଷକ ସମାଜ ମୋର ରାଜନୈତିକ ମତବାଦ ଭଲ ଭାବରେ ଜାଣିଛନ୍ତି । ମାତ୍ର ଦୁଇଟି ହୋଲଟାଇମ କାମ କିପରି କରିପାରନ୍ତି ? ସେଥିପାଇଁ ସେହି ସମୟରେ ଶିକ୍ଷକ ସଙ୍ଗଠନର ବାଧା ଉପୁଜିଲା । ମୋ ଗଢ଼ା ଶିକ୍ଷକ ସଂଘ ଅଧିକ ପ୍ରିୟ ବୋଲି ମୁଁ ପାର୍ଟି ସମ୍ପାଦକ ପଦ ଛାଡ଼ିଦେଲି । ଏବେ ମଧ୍ୟ, ନେତୃତ୍ୱରେ ଥିଲେ ବି, ଏହା ମୋର ମହାସଂଘ ଦାୟିତ୍ୱରେ କୌଣସି ବାଧକତା ଆଣୁନାହିଁ ।"

ଅବନୀଙ୍କ ସମ୍ପାଦକତ୍ୱ ସମୟର ସବୁଠାରୁ ଉଲ୍ଲେଖନୀୟ ତଥା ଅବିସ୍ମରଣୀୟ ଅଧ୍ୟାୟ ଥିଲା ୧୯୯୯ ମସିହାର ମହାବାତ୍ୟା ସମୟରେ ତାଙ୍କ ନେତୃତ୍ୱରେ ପରିଚାଳିତ କମ୍ୟୁନିଷ୍ଟ ପାର୍ଟି ଓ ଶିକ୍ଷକ ମହାସଂଘର ସେବା ଓ ସାହାଯ୍ୟ କାର୍ଯ୍ୟକ୍ରମ । ନିଜ ଜୀବନକୁ ବିପନ୍ନ କରି ସେ ଯେପରି ନିଷ୍ଠାପର ଭାବରେ ସମସ୍ତ ବାତ୍ୟାବିଧ୍ୱସ୍ତ ଅଞ୍ଚଳ ବୁଲି ସେବା ଓ ସାହାଯ୍ୟ କାର୍ଯ୍ୟକ୍ରମକୁ ପରିଚାଳନା କରିଥିଲେ ତାହା ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ।



## ବାତ୍ୟା ଓ ବନ୍ୟା
## ଦୁର୍ଗତଙ୍କ ଦୁର୍ଦ୍ଦିନର ସାଥୀ



ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାର ଚିର ସହଚର ଏବଂ ପ୍ରତି ଦୁଇ ତିନିବର୍ଷ ବ୍ୟବଧାନରେ କୌଣସି ନା କୌଣସି ବିପର୍ଯ୍ୟୟ ରାଜ୍ୟରେ ଧନ ଜୀବନର ପ୍ରଭୁତ କ୍ଷତି ସାଧନ କରିଥାଏ । କେଉଁବର୍ଷ ବନ୍ୟା ତ ଆଉ କେଉଁ ବର୍ଷ ବାତ୍ୟା ବା ମରୁଡ଼ି ରାଜ୍ୟର ଅର୍ଥନୀତିକୁ ଦୋହଲାଇ ଦେଇଥାଏ । ବିଗତ ଶତାବ୍ଦୀର ପ୍ରାକୃତିକ ବିପର୍ଯ୍ୟୟ ମଧ୍ୟରେ ରାଜ୍ୟରେ ସର୍ବାଧିକ କ୍ଷତି ସାଧନ କଲାଭଳି ଯଦି କୌଣସି ମହାପ୍ରଳୟ ସଂଘଟିତ ହୋଇଥିଲା, ତେବେ ତାହା ହେଉଛି ୧୯୯୯ ମସିହାର ମହାବାତ୍ୟା । ରାଜ୍ୟ ତଥା ସମଗ୍ର ଦେଶରେ ଶିହରଣ ସୃଷ୍ଟି କରିଥିବା ଏହି ବାତ୍ୟା ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳକୁ ଛାରଖାର କରିଦେଇଥିଲା । ରାଜ୍ୟର ଅର୍ଥନୀତିକୁ ଏହା ସମ୍ପୂର୍ଣ୍ଣ ଦୋହଲାଇ ଦେଇଥିଲା । ୧୯୯୯ ଅକ୍ଟୋବର ୨୪ ତାରିଖ ବେଳକୁ ବଙ୍ଗୋପସାଗରର ଆଣ୍ଡାମାନ ଉପକୂଳରେ ସୃଷ୍ଟି ହୋଇଥିଲା ଏହି ବାତ୍ୟା । ସମୁଦ୍ର ଭିତରେ ୪/୫ ଦିନ ରହିବା ବେଳେ ଖୁବ୍ ଭୟଙ୍କର ରୂପ ନେଇ ଏହା ଘନୀଭୂତ ହୋଇଥିଲା । ୨୮ ତାରିଖ ରାତି ସୁଦ୍ଧା ଏହା ଓଡ଼ିଶା ଉପକୂଳର ନିକଟତର ହେବା ସହିତ ବର୍ଷା ଆରମ୍ଭ ହୋଇଯାଇଥିଲା । ୨୯ ସକାଳ ୯ଟା ସୁଦ୍ଧା ଓଡ଼ିଶା ଉପକୂଳରେ ଆରମ୍ଭ ହୋଇଯାଇଥିଲା ମହାବାତ୍ୟାର ତାଣ୍ଡବ ଲୀଳା । ସାରାଦିନ, ସାରାରାତି, ପୁଣି ୩୦ ତାରିଖ ଦିନସାରା ଭୀଷଣ ଗର୍ଜନ କରି ପବନ ବହିବା ସଙ୍ଗେ ସଙ୍ଗେ ଅବିରାମ ଗତିରେ ଲାଗି ରହିଥିଲା ବର୍ଷା । ରାଜଧାନୀ ଭୁବନେଶ୍ୱର, କଟକ ସମେତ ଉପକୂଳବର୍ତ୍ତୀ ଜିଲ୍ଲାର ବହୁ ଅଞ୍ଚଳ ମହାପ୍ରଳୟରେ ଧ୍ୱସ୍ତବିଧ୍ୱସ୍ତ

ହୋଇଯାଇଥିଲା । ଟେଲିଫୋନ, ବିଦ୍ୟୁତ୍, ଗମନାଗମନ ବ୍ୟବସ୍ଥା ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା । ସମଗ୍ର ଅଞ୍ଚଳ ଦୀର୍ଘଦିନ ଧରି ସମ୍ପୂର୍ଣ୍ଣ ଅନ୍ଧକାର ମଧ୍ୟରେ ରହିବା ସହିତ ଜଳଯୋଗାଣ ବ୍ୟବସ୍ଥା ବ୍ୟାହତ ହୋଇଥିଲା । ବଡ଼ ବଡ଼ ଘର, ଗଛ, ବିଦ୍ୟୁତ ଖୁଣ୍ଟଗୁଡ଼ିକ ଧରାଶାୟୀ ହୋଇଥିଲା । ଗୋଟିଏ ଅଞ୍ଚଳର ଲୋକେ ଅନ୍ୟ ଅଞ୍ଚଳର ଅବସ୍ଥା ଜାଣିବା ସମ୍ଭବପର ହେଉନଥିଲା । ଖାଦ୍ୟ, ପାନୀୟ ଓ ଜାଳେଣୀ ଅଭାବରୁ ଚାରିଆଡ଼େ ହାହାକାର ପଡ଼ିଯାଇଥିଲା । ଏହା ସପ୍ତାହେ ପୂର୍ବରୁ ଅକ୍ଟୋବର ୧୮ ତାରିଖ ଦିନ ଦକ୍ଷିଣ ଓଡ଼ିଶାରେ, ବ୍ରହ୍ମପୁର/ ଗୋପାଳପୁର/ ଛତ୍ରପୁର ଆଦି ଅଞ୍ଚଳରେ ଏକ ପ୍ରଚଣ୍ଡ ବାତ୍ୟା ବ୍ରହ୍ମପୁର ସହରର ଆଖପାଖ ଅଞ୍ଚଳକୁ ବିଧ୍ୱସ୍ତ କରିଦେଇଥିଲା ।

ଦୀର୍ଘ ତିରିଶ ଘଣ୍ଟାରୁ ଅଧିକ ସମୟ ଧରି ପ୍ରବାହିତ ହୋଇଥିବା ଏହି ମହାବାତ୍ୟା ଯୋଗୁଁ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହୋଇଥିଲା ଜଗତ୍‌ସିଂହପୁର ଜିଲ୍ଲାର କୁଜଙ୍ଗ, ଏରସମା, ପାରାଦ୍ୱୀପ ଓ ବାଲିକୁଦା ଆଦି ଅଞ୍ଚଳ । ଏରସମା ଅଞ୍ଚଳରେ ସମୁଦ୍ର ଜୁଆର ମାଡ଼ି ଆସିବା ଫଳରେ ହଜାର ହଜାର ମଣିଷ ଓ ଗୃହପାଳିତ ପଶୁ ଭାସିଯାଇ ପ୍ରାଣ ହରାଇଲେ । ସରକାରୀ ରେକର୍ଡ଼ ପତ୍ରରେ ମହାବାତ୍ୟାଜନିତ ମୃତ୍ୟୁ ସଂଖ୍ୟା ଦଶହଜାର ଦର୍ଶାଯାଇଥିଲେ ସୁଦ୍ଧା ବେସରକାରୀ ହିସାବ ଅନୁଯାୟୀ ଏହି ସଂଖ୍ୟା ଯଥେଷ୍ଟ ଅଧିକ ଥିଲା । ଏହି ବିଭୀଷିକା ସମ୍ବାଦ ଦେଶ ବିଦେଶରେ ପ୍ରଚାରିତ ହେବା ପରେ ଚାରିଆଡୁ ଓଡ଼ିଶାକୁ ସାହାଯ୍ୟ, ସହାନୁଭୂତି ଓ ସମର୍ଥନର ସୁଅ ଛୁଟିଥିଲା । ବିଭିନ୍ନ ରାଜ୍ୟ ସରକାର, ସ୍ୱେଚ୍ଛାସେବୀ ସଙ୍ଗଠନ ଏବଂ ରାଜନୈତିକ ଦଳ ସାହାଯ୍ୟ ଓ ଉଦ୍ଧାର କାର୍ଯ୍ୟରେ ସହଯୋଗର ହାତ ବଢ଼ାଇଥିଲେ ।

ଓଡ଼ିଶା ଇତିହାସର ଏହି ଘୋର ଦୁର୍ଦ୍ଦିନ ସମୟରେ ସି.ପି.ଆଇ ରାଜ୍ୟ ସମ୍ପାଦକ ଥାଆନ୍ତି ଅବନୀ ବରାଳ । ବିପନ୍ନ ଲୋକଙ୍କ ଅକଥନୀୟ ଦୁର୍ଦ୍ଦଶା ତାଙ୍କର ଦରଦୀ ହୃଦୟକୁ ବିଚଳିତ କରି ପକାଇଥିଲା । ଦଳର ସମସ୍ତ ଶାଖା ସଂଗଠନର କର୍ମକର୍ତ୍ତା ଓ ସଭ୍ୟମାନଙ୍କୁ ଏକଜୁଟ୍ କରାଇ ସାହାଯ୍ୟ ଓ ଉଦ୍ଧାର କାର୍ଯ୍ୟରେ ନିୟୋଜିତ କରାଇଥିଲେ ଅବନୀ । ବାତ୍ୟାର ପ୍ରକୋପ ସାମାନ୍ୟ ହ୍ରାସ ପାଇବା ମାତ୍ରେ ସେ ନିଜେ ଲମ୍ଫ ପ୍ରଦାନ କରିଥିଲେ ରିଲିଫ କାର୍ଯ୍ୟକ୍ରମରେ । ମହାବାତ୍ୟା ଯୋଗୁଁ ଧ୍ୱସ୍ତ ବିଧ୍ୱସ୍ତ ହୋଇଥିବା ଗୋଟିଏ ପରେ ଗୋଟିଏ ଅଞ୍ଚଳକୁ ନିଜର ସାଥୀ ଓ ସହକର୍ମୀଙ୍କ ସହ ଯାଇ ପରିସ୍ଥିତି ଅନୁଧ୍ୟାନ କରିଥିଲେ । ମଧ୍ୟାହ୍ନ ଭୋଜନ କେନ୍ଦ୍ର, ଲୁଗାପଟା, ବାସନ-କୁସନ ବିତରଣ ଚଳାଯାଇଥିଲା । କମ୍ୟୁନିଷ୍ଟ ପାର୍ଟି ଉଦ୍ୟମରେ ସଂଗୃହୀତ ସାହାଯ୍ୟ ସାମଗ୍ରୀଗୁଡ଼ିକୁ ନେଇ ବିପନ୍ନ ଜନସାଧାରଣଙ୍କ ମଧ୍ୟରେ ବାଣ୍ଟିଥିଲେ । ରାଜ୍ୟର ବିଭୀଷିକା ସମ୍ପର୍କରେ ପାର୍ଟିର କେନ୍ଦ୍ରୀୟ ନେତୃତ୍ୱକୁ ଅବଗତ

କରାଇବା ପରେ ବିଭିନ୍ନ ରାଜ୍ୟରୁ ପାର୍ଟିର ସାଥୀମାନେ ସାହାଯ୍ୟ ସଂଗ୍ରହ କରି ପଠାଇଥିଲେ । ପାର୍ଟିର କେନ୍ଦ୍ରୀୟ ସମ୍ପାଦକ କମ୍ରେଡ ଏ.ବି.ବର୍ଦ୍ଧନ ବାତ୍ୟା କ୍ଷୟକ୍ଷତି ଅନୁଧ୍ୟାନ କରିବା ପାଇଁ ଓଡ଼ିଶାରେ ଆସି ପହଞ୍ଚିଲେ । ତାଙ୍କୁ ସାଥୀରେ ନେଇ ଅବନୀ ଜଗତସିଂହପୁର ଜିଲ୍ଲାର ସର୍ବାଧିକ କ୍ଷତିଗ୍ରସ୍ତ ଏରସମା ଅଞ୍ଚଳ ଗସ୍ତ କରିଥିଲେ । ସେହି ଜିଲ୍ଲାର ବିଶିଷ୍ଟ କମ୍ୟୁନିଷ୍ଟ ନେତା ସଂଗ୍ରାମୀ ଗୋବିନ୍ଦଚନ୍ଦ୍ର ମହାନ୍ତି ପ୍ରମୁଖ ସେମାନଙ୍କ ସହ ରହିଥିଲେ ।

ବନ୍ୟା ଓ ବାତ୍ୟା ସମୟରେ ସାହାଯ୍ୟ କାର୍ଯ୍ୟ ପରିଚାଳନା କଲାବେଳେ ତାଙ୍କ ଠାରେ ଯେପରି ଉତ୍ସାହ, ସାହସ ଓ ଦମ୍ଭ ପ୍ରକାଶ ପାଇଥାଏ, ତାହା ଅନ୍ୟମାନଙ୍କୁ ମଧ୍ୟ ଖୁବ୍ ପ୍ରେରଣା ଯୋଗାଏ । ତାଙ୍କ ସହ ବାତ୍ୟା ବିପନ୍ନ ଅଞ୍ଚଳକୁ ଯାଇ ସାହାଯ୍ୟ କାର୍ଯ୍ୟରେ ସହଯୋଗ କରିଥିବା ଜଣେ କନିଷ୍ଠ ସାଥୀ ତଥା ସି.ପି.ଆଇ. ଖୋର୍ଦ୍ଧା ଜିଲ୍ଲା ଶାଖାର ପୂର୍ବତନ ସହସମ୍ପାଦକ ପ୍ରଫୁଲ୍ଲ ତ୍ରିପାଠୀ ସେହି ସ୍ମୃତି ବର୍ଣ୍ଣନା କରି କହନ୍ତି - "ବାତ୍ୟା ଓ ବନ୍ୟା ସମୟରେ ଶିକ୍ଷକ ମହାସଂଘ, ଉତ୍କଳ ମହିଳା ସମିତି, ଅଖିଳ ଭାରତ ଛାତ୍ର ଓ ଯୁବସଂଘ, କମ୍ୟୁନିଷ୍ଟ ପାର୍ଟି ମିଳିମିଶି ଚାନ୍ଦା ଆଦାୟ କରି ସାର୍‌ଙ୍କ ନେତୃତ୍ୱରେ କାକଟପୁର, ଏରସମା, କୁଜଙ୍ଗ ଅଞ୍ଚଳରେ ରିଲିଫ ଦେବାକୁ ଯାଇଛୁ । ସାର୍‌ଙ୍କ ସାଙ୍ଗରେ ଗଲେ କାମ କରିବାକୁ ଉତ୍ସାହଥାଏ । ଥରେ କାକଟପୁର ଯାଇଥାଉ । ଘାଇ ଭାଙ୍ଗିଛି, ଗୋଟିଏ ଟ୍ରକ୍ ଜିନିଷ ନେଇଥାଉ । ପାଣିରେ ପଶି ଯିବାକୁ ହେବ । ପ୍ୟାଣ୍ଟ ସାର୍ଟ ଭିଜିଯିବ, କିଏ ଆଗେ ଯିବ ? ସାର୍ ଆଗ ପଶିଗଲେ ଓ ଜିନିଷ ମୁଣ୍ଡରେ ରଖି ସେପଟକୁ ନେଲେ । ଆଉ କାହାକୁ କହିବାକୁ ପଡ଼ିଲାନି । ସେପଟକୁ ଜିନିଷ ଚାଲିଗଲା । ସେ ଗାଁର ପୂର୍ବତନ ବିଧାୟକ ଗତିକୃଷ୍ଣ ସ୍ୱାଇଁଙ୍କ ଘର ପାଟପୁର, ତାଙ୍କର ଲୋକେ ସବୁ ନେଲେ ଓ ପ୍ରତ୍ୟେକ ଲୋକଙ୍କୁ ୧୪ ପଡ଼ାରେ ସମଭାବରେ ଗାଁ ମାଧ୍ୟମରେ ବାଣ୍ଟିଦେଲେ ।"

୧୯୯୯ ମହାବାତ୍ୟା ପରେ ପରେ ଜଗତ୍‌ସିଂହପୁର ଜିଲ୍ଲାରେ ତାଙ୍କର ଗସ୍ତ ଏବଂ ସାହାଯ୍ୟ ବଣ୍ଟନ କାର୍ଯ୍ୟକ୍ରମରେ ଅନ୍ୟତମ ସହଯୋଗୀ ଥିଲେ ଅବିଭକ୍ତ କଟକ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ପୂର୍ବତନ ସମ୍ପାଦକ ତଥା କୁଜଙ୍ଗ ଅଞ୍ଚଳର ପୁରୁଖା ନେତା ଲୋକନାଥ ସାମଲ । ଯେପରି ସାହସ ଓ ଦୃଢ଼ତା ନେଇ ଅବନୀ ବାତ୍ୟାଞ୍ଚଳରେ ସେବା ଓ ସାହାଯ୍ୟ କାର୍ଯ୍ୟ ଚଳାଇ ରଖିଥିଲେ ଏବଂ ଅସାମାଜିକ ଲୋକଙ୍କ ଦୌରାତ୍ମ୍ୟକୁ ଭ୍ରୂକ୍ଷେପ ନକରି ପ୍ରକୃତ ଦୁର୍ଗତ ଲୋକଙ୍କ ପାଖରେ ପହଞ୍ଚୁଥିଲେ, ତାହାର ସୂଚନା ଦେଇ ଲୋକନାଥ କହନ୍ତି - "୧୯୯୯ ମସିହାର ଲୋକସଭା ନିର୍ବାଚନ ପୂର୍ବରୁ ସାଥି ଅବନୀ ବାବୁ ଓଡ଼ିଶା ରାଜ୍ୟର କମ୍ୟୁନିଷ୍ଟ ପାଟିର ସମ୍ପାଦକ ଥାନ୍ତି । ସେହି ସମୟରେ

ସାଥି ବରାଳ ମୋତେ ଭୁବନେଶ୍ୱର ଭଗବତୀ ଭବନରେ ରହିବା ପାଇଁ ବାଧ୍ୟକଲେ ଏବଂ ମୁଁ ଏହି ନିର୍ବାଚନ ସମୟତକ ସେଠାରେ ରହିବି ବୋଲି ପ୍ରତିଶ୍ରୁତି ଦେଲି ଏବଂ ରହିଲି । କିନ୍ତୁ ଠିକ୍ ନିର୍ବାଚନ ପରେ ପରେ ୧୯୯୯ ଅକ୍ଟୋବର ମହାବାତ୍ୟା ଆସିଗଲା । ଏଥିରେ ଓଡ଼ିଶାର ଅଧାଅଧି ଛାରଖାର ହୋଇଗଲା । ମାନବିକ ଦୃଷ୍ଟି କୋଣରୁ ମୁଁ ଲୋକସଭା ନିର୍ବାଚନ ପରେ ଭଗବତି ଭବନ ଛାଡ଼ି ପାରିଲି ନାହିଁ । ଅକ୍ଟୋବର ୨୯ ଓ ୩୦ ମହାବାତ୍ୟା ପରେ ସାଥି ବରାଳ ପାରାଦ୍ୱୀପ ଆସିବାକୁ ଚାହିଁଲେ । କଟକ ପାରାଦ୍ୱୀପ ରାସ୍ତା ଓ ଚଣ୍ଡିଖୋଲ ପାରାଦ୍ୱୀପ ରାସ୍ତା ବାତ୍ୟା ଅବରୋଧ ଥିବାରୁ ୩୧ ତାରିଖ ଦିନ ଆସିବା ସମ୍ଭବ ହେଲା ନାହିଁ । ୩୧ ତାରିଖ ଦିନ ଚଣ୍ଡିଖୋଲ ପାରାଦ୍ୱୀପ ରାସ୍ତାକୁ ଏକପାଖିଆ ଭାବେ ସଫା କରାଗଲା । ନଭେମ୍ବର ୧ ତାରିଖ ଦିନ ଅବନୀ ବାବୁ ଏବଂ ମୁଁ ପାରାଦ୍ୱୀପ ଅଭିମୁଖେ ଆସିଲୁ । ବଡ଼ଚଣା ଥାନା ଦୁଇ ତିନି କିଲୋମିଟର ଅଛି ଆମେ ଦେଖିବାକୁ ପାଇଲୁ - କିଛିଲୋକ ସାଇକେଲ୍‌ରେ ଏବଂ ମୁଣ୍ଡରେ ରିଲିଫ୍ ବସ୍ତାମାନ ଧରି ଚାଲିଛନ୍ତି । ବଡ଼ଚଣା ଥାନା ପାଖରେ ଦେଖିଲୁ ଗୋଟିଏ ରିଲିଫ୍ ଟ୍ରକ୍ ଲୁଟ୍ ହେଉଛି ଏବଂ ପାଖରେ ଗୋଟିଏ ପୋଲିସ୍ ଜିପ୍‌ରେ କିଛି ପୋଲିସ୍ ବସିଛନ୍ତି ଏବଂ କେତେଜଣ ପାଖରେ ଛିଡ଼ା ହୋଇଛନ୍ତି । ଏହାପରେ ଆମେ ଚଣ୍ଡିଖୋଲ ଦେଇ ପାରାଦ୍ୱୀପର ବିଭିନ୍ନ ସ୍ଥାନ ବୁଲାବୁଲି କରି କିଛି ଲୋକଙ୍କ ସହ କଥାହୋଇ ପୁଣି ଭୁବନେଶ୍ୱର ଫେରିଲୁ । ଫେରିଲା ସମୟରେ ମାର୍ଶାଘାଇର ଯଦୁପୁରଠାରେ ଆଠ ଦଶଜଣ ଯୁବକ ରାସ୍ତା ଉପରେ ଗୋଟିଏ ଗୋଟିଏ ଠେଙ୍ଗାଧରି ଠିଆ ହୋଇଛନ୍ତି । ଆମ ଗାଡ଼ି ସେଠାରେ ଅଟକିଲାକ୍ଷଣି ସେମାନେ ଆମ ପାଖକୁ ଚାଲିଆସିଲେ ଏବଂ ଆମ ପାଖରେ କ'ଣ ଅଛି ସବୁ ଆମକୁ ଦିଅ ବୋଲି ଜୁଲମ କଲେ । ଅବନୀ ବାବୁ ସେମାନଙ୍କୁ ଆମ ପରିଚୟ ଦେବା ସହିତ, ପଚାରିଲେ ତୁମେ ସବୁ ତୁମ ପରିଚୟ ଦିଅ ଏବଂ ତୁମମାନଙ୍କର ଗାଁ ନାଁ କୁହ । ଏହାପରେ ଯୁବକମାନଙ୍କର ଦଳପ୍ରତି ଅନ୍ୟମାନଙ୍କୁ ରାସ୍ତା ଅବରୋଧ ହଟାଇବା ପାଇଁ କହିଲେ ଏବଂ ଆମ ଗାଡ଼ି ଆଗକୁ ଚାଲିଲା । ଆମ ଦୁଇ ତିନି କିଲୋମିଟର ଯିବା ପରେ ପୁଣି ସେହିଭଳି ଏକ ଘଟଣା ଘଟିଲା । ଆମେ ସେହିଭଳି ଭାବରେ ତାଙ୍କୁ ଅତିକ୍ରମ କରି ଚଣ୍ଡିଖୋଲ ଦେଇ ଭୁବନେଶ୍ୱରରେ ପହଞ୍ଚିଲୁ । ଭୁବନେଶ୍ୱରରେ ପହଞ୍ଚି ଆମେ ସିଧା ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ପହଞ୍ଚିଲୁ । ଆଉ ଯେଉଁଠି ଯା ହେଉ ନହେଉ ମୁଖ୍ୟମନ୍ତ୍ରୀଙ୍କ ବାସଭବନଟି କଡ଼ା ସୁରକ୍ଷା ବଳୟରେ ଅଛି, ଆମକୁ ସିକ୍ୟୁରିଟି ମୁଖ୍ୟମନ୍ତ୍ରୀଙ୍କ ସହିତ ଦେଖାହୋଇପାରିବ ନାହିଁ କହିବାରୁ ତାଙ୍କରି ଫୋନ୍‌ରେ ମୁଖ୍ୟମନ୍ତ୍ରୀଙ୍କୁ ଫୋନ୍ କରିବାକୁ କହିଲେ ସିକ୍ୟୁରିଟିଙ୍କ ଦୟାରୁ ଅବନୀ ବାବୁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଗିରିଧାରୀ ଗମାଙ୍ଗଙ୍କୁ

ଟେଲିଫୋନ୍‌କରି ଆମେ ଯିବା ସମୟର ଓ ଆସିବା ସମୟର ଘଟଣା ବର୍ଣ୍ଣନା କଲେ । ଅପର ପାର୍ଶ୍ୱରୁ କେବଳ ସାର୍ ସାର୍ ଶବ୍ଦ ଶୁଭୁଥାଏ ।

ଅବନୀ ବାବୁ କହିଲେ କ'ଣ ଆପଣ ସାର୍ ସାର୍ କହୁଛନ୍ତି ଆପଣଙ୍କ ଥାନା ପାଖରେ ପୋଲିସ୍ ଉପସ୍ଥିତିରେ ରିଲିଫ୍ ସାମଗ୍ରୀ ଲୁଟ୍ ହେଉଛି । ବାହାରେ କେହି ଲୋକ ପାରାଦ୍ୱୀପ କୁଜଙ୍ଗ ଅଞ୍ଚଳରେ ଥିବା ସେମାନଙ୍କର ସମ୍ପର୍କୀୟକୁ ଭେଟିବାକୁ ଗଲାବେଳେ ଏବଂ ରାଜନୀତିକ ଦଳର କେହି ନେତା ସେଇ ରାସ୍ତାରେ ଗଲାବେଳେ ଅସାମାଜିକ ଲୋକଙ୍କ ଦ୍ୱାରା ଅତ୍ୟାଚରିତ ହେଉଛନ୍ତି । ଏପରି ଅବସ୍ଥାରେ ଆପଣ ଏବଂ ସରକାର ବିହିତ ପଦକ୍ଷେପ ନିଅନ୍ତୁ ନଚେତ୍ ରିଲିଫ୍ ସାମଗ୍ରୀ ସେହିସବୁ ଅଞ୍ଚଳକୁ କେମିତି ପଠାଇ ପାରିବେ ତୁରନ୍ତ ଦେଖନ୍ତୁ । ଏହାର ବ୍ୟବସ୍ଥା କରନ୍ତୁ ମୋତେ ସାର୍ ସାର୍ କହିବା ଦରକାର ନାହିଁ । ଏହା ପରେ ଆମେ ଭଗବତୀ ଭବନକୁ ଫେରିଲୁ ।

୨ ତାରିଖ ଦିନ ଭାରତ ବର୍ଷର କମ୍ୟୁନିଷ୍ଟ ପାର୍ଟିର ଜେନେରାଲ ସେକ୍ରେଟାରୀ ଭୁବନେଶ୍ୱରରେ ପହଞ୍ଚିଲେ ଏବଂ ତାଙ୍କୁ ଧରି ଅବନୀ ବାବୁ ଏବଂ ମୁଁ ପାରାଦ୍ୱୀପ ଗଲୁ । ପାରାଦ୍ୱୀପର ବାତ୍ୟା କ୍ଷତିଗ୍ରସ୍ତ ଅଞ୍ଚଳ ବୁଲାବୁଲି କରି କେତେକ ସାଧାରଣ ଲୋକ କିଛି ବନ୍ଦର କର୍ତ୍ତୃପକ୍ଷଙ୍କ ସହ କଥାବାର୍ତ୍ତା ହୋଇ ଭୁବନେଶ୍ୱର ଫେରିଲୁ । ଏହି ଦ୍ୱିତୀୟ ଦିନ ଆମେ ପାରାଦ୍ୱୀପ ଯିବା ଏବଂ ଫେରିବା ବାଟରେ ଯାଉଥିବା ରିଲିଫ୍ ଗାଡ଼ି ଗୁଡ଼ିକରେ ବନ୍ଧୁକ ଧରି ଗୋରଖା ପୋଲିସ୍ ଅଛନ୍ତି ଏବଂ ପାରାଦ୍ୱୀପରୁ ଚଣ୍ଡିଖୋଲ ଭିତରେ ବନ୍ଧୁକଧରି ପୋଲିସ୍ ପେଟ୍ରୋଲିଙ୍ଗ ଚାଲିଛି । ଏହାକୁ ଦେଖି କେନ୍ଦ୍ର ସେକ୍ରେଟାରୀ ଅବନୀ ବାବୁଙ୍କୁ କହିଲେ, ଯାହାହେଉ ଆପଣଙ୍କ ମୁଖ୍ୟମନ୍ତ୍ରୀ ଭଲ ବନ୍ଦୋବସ୍ତ କରିଛନ୍ତି । ଅବନୀ ବାବୁ ହସି ଗତ ୧ ତାରିଖରେ ସମୁଦାୟ ଘଟଣା କେନ୍ଦ୍ର ପାର୍ଟିସହ ସେକ୍ରେଟାରୀଙ୍କୁ ବୁଝାଇଲେ । ପରେ ଗାଡ଼ି ଭିତରେ ଗୁଡ଼ାଏ ହସ ହେଲା ।

ଅବନୀ ବାବୁଙ୍କର ମୁଖ୍ୟମନ୍ତ୍ରୀଙ୍କ ସହିତ କଥାବାର୍ତ୍ତା ଆରମ୍ଭରୁ ମୋତେ ଲାଗୁଥାଏ, ଜଣେ ଶିକ୍ଷକ କ୍ଲାସ୍‌ରେ କୌଣସି ବିଷୟ ପଢ଼ାଇଲା ବେଳେ ପିଲାଙ୍କ ଉପରେ ରାଗିକରି ଯେଉଁଭଳି ଭାବରେ କଥା କୁହନ୍ତି ଏବଂ ପିଲା କେବଳ ସାର୍ ସାର୍ କହୁଥାନ୍ତି । ଉପରୋକ୍ତ କେତୋଟି ବର୍ଣ୍ଣନାରୁ ସାଥି ବରାଳଙ୍କର ନିଜ ଉପରେ ଥିବା ଆସ୍ଥା ଓ ଦୃଢ଼ ନେତୃତ୍ୱ ଯେ କେତେ ମଜବୁତ ତାହା ବୁଝାପଡ଼େ । ବାଟରେ ଅସାମାଜିକ ଲୋକଙ୍କୁ ଦୃଢ଼ ଭାବରେ ବିରୋଧ କରିବା ସମୟରେ ମୁଁ ଖୁବ୍ ଡ଼ରି ଯାଇଥାଏ । କାରଣ, ଏହିସବୁ ଲୋକ କେତେବେଳେ କାହାର ହୋଇନଥାନ୍ତି ।"

ଅକ୍ଟୋବର ୨୯ ଓ ୩୦ ତାରିଖ ମହାବାତ୍ୟାର ଠିକ୍ ଦଶଦିନ ପୂର୍ବରୁ ପବିତ୍ର ଶାରଦୀୟ ମହାସପ୍ତମୀ ଓ ମହାଷ୍ଟମୀ ତିଥିରେ ସମଗ୍ର ଗଞ୍ଜାମ ଜିଲ୍ଲାରେ ଦେଖାଦେଇଥିଲା ଅନ୍ୟ ଏକ ଭୟଙ୍କର ଘୂର୍ଣ୍ଣିବାତ୍ୟା । ଏଥିରେ ବ୍ରହ୍ମପୁର, ଛତ୍ରପୁର ସମେତ ଆଖପାଖର ବହୁ ଗ୍ରାମ ବିଶେଷ ଭାବରେ କ୍ଷତିଗ୍ରସ୍ତ ହୋଇଥିଲା । ବ୍ରହ୍ମପୁର ସହରରେ ଅନେକ ଘର ଭାଙ୍ଗି ଯାଇଥିଲା ଓ ବିଦ୍ୟୁତ୍ ସଂଯୋଗ ବ୍ୟାହତ ହୋଇଥିଲା । ଏହି ବାତ୍ୟା ବିଭୀଷିକା ପରେ ଅବନୀ ସେଠାରେ ମଧ୍ୟ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ସାହାଯ୍ୟ ଓ ଉଦ୍ଧାର କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିଥିଲେ । ଜିଲ୍ଲାର ନେତା ଓ କର୍ମୀମାନଙ୍କୁ ରିଲିଫ୍ କାର୍ଯ୍ୟରେ ନିୟୋଜିତ କରାଇଥିଲେ ।

ଅବନୀଙ୍କ ଯୁବାବସ୍ଥାରେ ୧୯୫୫ ମସିହା ସେପ୍ଟେମ୍ବର ମାସରେ ମହାନଦୀ ଏବଂ ଏହାର ଶାଖାନଦୀଗୁଡ଼ିକରେ ନାହିଁନଥିବା ପ୍ରଳୟଙ୍କରୀ ବନ୍ୟା ମାଡ଼ି ଆସି ଉପକୂଳ ଓଡ଼ିଶାରେ ଖଣ୍ଡ ପ୍ରଳୟ ଘଟାଇଥିଲା । ଦେବୀ (କାଠଯୋଡ଼ି) ନଦୀରେ ଥିବା ସୁଦୃଢ଼ ଓ ସୁରକ୍ଷିତ ବନ୍ଧ 'ଦଳେଇଘାଇ' ଭାଙ୍ଗିଯିବା ଫଳରେ ଅବିଭକ୍ତ କଟକ ଜିଲ୍ଲାର ବିସ୍ତୃତ ଅଞ୍ଚଳ କ୍ଷତିଗ୍ରସ୍ତ ହୋଇଥିଲା । ଏହି ବନ୍ୟାରେ ଧନ ଜୀବନର ବ୍ୟାପକ କ୍ଷତି ଘଟିଥିଲା । ସେତେବେଳେ ୨୦ବର୍ଷ ବୟସର ଅବନୀ କଟକର ଜଣେ କଲେଜ ଛାତ୍ର ଓ ତରୁଣ କମ୍ୟୁନିଷ୍ଟ । ପାର୍ଟି ନେତୃତ୍ୱରେ ଗଠନ କରାଯାଇଥିବା ଗଣ ରିଲିଫ୍ କମିଟି ସହ ସମ୍ପୃକ୍ତ ରହି ସେ ବିପନ୍ନଙ୍କ ପାଇଁ ଚାନ୍ଦା ସଂଗ୍ରହ କାର୍ଯ୍ୟରେ ନିୟୋଜିତ ହୋଇଥିଲେ । ସମସାମୟିକ ଛାତ୍ରନେତାଙ୍କ ସହ ଦୁର୍ଗତ ଅଞ୍ଚଳରେ ବୁଲି ସାହାଯ୍ୟ ଓ ଥଇଥାନ୍ କାର୍ଯ୍ୟକୁ ପରିଚାଳନା କରିଥିଲେ । କଟକ ସହରରେ ଚାନ୍ଦା ସଂଗ୍ରହ ବେଳେ କଳାକାର ଓ ସଙ୍ଗୀତଜ୍ଞଙ୍କୁ ନେଇ ରାଜରାସ୍ତା ଉପରେ ଶୋଭାଯାତ୍ରା ବାହାର କରାଯାଇଥିଲା ।

ତାଙ୍କର ସାରା ଜୀବନ ଜନସେବା ଓ ସମାଜସେବା ପାଇଁ ଉତ୍ସର୍ଗୀକୃତ ହୋଇଆସିଛି । ଦୁଃସ୍ଥ, ଅସହାୟ ଓ ଅଭାବୀ ମଣିଷର ଦୁଃଖରେ ଭାଗିଦାର ହେବା, ତା ଆଖିରୁ ଲୁହ ପୋଛିଦେବା ଜଣେ କମ୍ୟୁନିଷ୍ଟର ପବିତ୍ର କର୍ତ୍ତବ୍ୟ ରୂପେ ଧରାଯାଇଥାଏ । ସେହି ଦାୟିତ୍ୱକୁ ନିଷ୍ଠା ଓ ଆନ୍ତରିକତାର ସହ ସମ୍ପାଦନ କରି ଅବନୀ ଜଣେ ନୀତିନିଷ୍ଠ କମ୍ୟୁନିଷ୍ଟ ରୂପେ ନିଜକୁ ପ୍ରତିପାଦନ କରିଛନ୍ତି । ଓଡ଼ିଶାର ଜନମାନସରେ ସେ ଦୁର୍ଗତ ମଣିଷର ସାଥୀ ଭାବରେ ବିଶେଷ ଲୋକପ୍ରିୟତା ଅର୍ଜନ କରିପାରିଛନ୍ତି ।



# ପୋସ୍କୋ ବିରୋଧୀ ଲଢ଼େଇରେ ଜନଗଣଙ୍କ ସହ



ଓଡ଼ିଶାରେ ଗଚ୍ଛିତ ଥିବା ବିପୁଳ ପ୍ରାକୃତିକ ସମ୍ପଦ ପ୍ରତି ଲୋଭାତୁର ଦୃଷ୍ଟି ରଖି ଦକ୍ଷିଣ କୋରିଆର ବୃହତ୍ ଲୌହ ଦାନବ ବୋଲି ପ୍ରଚାରିତ ସଂସ୍ଥା ପୋସ୍କୋ ଓଡ଼ିଶା ଉପକୂଳର ପାରାଦ୍ୱୀପ ନିକଟରେ ଏକ ଇସ୍ପାତ ପ୍ରକଳ୍ପ ସ୍ଥାପନ ନିମନ୍ତେ ୨୦୦୫ ମସିହା ଜୁନ୍ ୨୨ ତାରିଖ ଦିନ ବୁଝାମଣା ପତ୍ର ସ୍ୱାକ୍ଷର କରିଥିଲା । ଅତୀତ ଇତିହାସର ଇଷ୍ଟଇଣ୍ଡିଆ କମ୍ପାନୀ ଭଳି ଏହି କମ୍ପାନୀର ଏକମାତ୍ର ଲକ୍ଷ୍ୟ ଥିଲା ଓଡ଼ିଶାର ଖଣିଜ ଓ ଜଳ ସମ୍ପଦକୁ ଲୁଣ୍ଠନ କରି ଏହାର ପରିଣାମ ସ୍ୱରୂପ ଭବିଷ୍ୟତରେ ଆମ ରାଜ୍ୟକୁ ସମ୍ପୂର୍ଣ୍ଣ ନିଃସ୍ୱ କରିବା । ପାରାଦ୍ୱୀପ ନିକଟବର୍ତ୍ତୀ କୁଜଙ୍ଗ ଅଞ୍ଚଳରେ ବିସ୍ତୃତ ଶସ୍ୟଶ୍ୟାମଳା ଜମି ଉପରେ କାରଖାନା ସ୍ଥାପନ ପାଇଁ ପ୍ରସ୍ତାବ ରଖାଯାଇଥିଲା । ଏହି ଅଞ୍ଚଳର ଅର୍ଥନୀତି ମୁଖ୍ୟତଃ କୃଷିଭିତ୍ତିକ ହୋଇଥିବାରୁ ଧାନଚାଷ, ପାନବରଜ ଓ ମତ୍ସ୍ୟଚାଷ କରି ସ୍ଥାନୀୟ ଲୋକେ ଜୀବିକା ନିର୍ବାହ କରନ୍ତି । ପୋସ୍କୋ କମ୍ପାନୀର ବୃହତ୍ ଇସ୍ପାତ ପ୍ରକଳ୍ପ ସ୍ଥାପନ ଫଳରେ ଆଖପାଖ ଗ୍ରାମାଞ୍ଚଳର ଜନସାଧାରଣ ନିଜର ଭିଟାମାଟି ହରାଇବା ସଙ୍ଗେ ସଙ୍ଗେ 'ଧାନ-ପାନ-ମୀନ'କୁ ନେଇ ଚାଲିଥିବା ସେମାନଙ୍କ ଅର୍ଥନୀତି ବିପନ୍ନ ହେବ ବୋଲି ଆଶଙ୍କା ପ୍ରକାଶ ପାଇଥିଲା । ତେଣୁ ଆଖପାଖ ଗ୍ରାମଗୁଡ଼ିକର ଆବାଳ-ବୃଦ୍ଧ-ବନିତା ପ୍ରସ୍ତାବିତ ପୋସ୍କୋ ପ୍ରକଳ୍ପ ବିରୋଧରେ ଆରମ୍ଭ କରିଛନ୍ତି ପ୍ରବଳ ଲଢ଼େଇ । ୨୦୦୫ ମସିହା ଜୁନ୍ ୨୨ ତାରିଖରେ ପୋସ୍କୋ ସହିତ ବୁଝାମଣା ପତ୍ର (ଏମ୍.ଓ.ୟୁ) ସ୍ୱାକ୍ଷରର ଏକମାସ ନପୂରୁଣୁ ଜୁଲାଇ ୧୧ ତାରିଖ ଦିନ ସି.ପି.ଆଇ.ର ଜଣେ ସଂଗ୍ରାମୀ ନେତା, ବୌଦ୍ଧିକ ଚେତନାରେ

ସମୃଦ୍ଧ ବ୍ୟକ୍ତିତ୍ୱ ଅଭୟ ସାହୁଙ୍କ ନେତୃତ୍ୱରେ ଗଢ଼ି ଉଠିଥିଲା 'ପୋସ୍କୋ ପ୍ରତିରୋଧ ସଂଗ୍ରାମ ସମିତି' । ସେହିଦିନ ଠାରୁ ପୋସ୍କୋ ବିରୋଧୀ ସଂଗ୍ରାମର ଧାରା ଅବ୍ୟାହତ ରହିଆସିଛି ଏବଂ ଏହି ସଂଗ୍ରାମର ଅଗ୍ରଭାଗରେ ରହିଛି ଭାରତୀୟ କମ୍ୟୁନିଷ୍ଟ ପାର୍ଟି । ରାଜ୍ୟରେ କ୍ଷମତାସୀନ ବିଜୁ ଜନତା ଦଳ ବ୍ୟତୀତ ଅନ୍ୟ ସମସ୍ତ ରାଜନୈତିକ ଦଳ ବିଶେଷ କରି ବାମପନ୍ଥୀ ଦଳଗୁଡ଼ିକ ତଥା ରାଜ୍ୟର ସିଭିଲ ସୋସାଇଟିର ବୁଦ୍ଧିଜୀବି ସଦସ୍ୟ ଗଣ ପୋସ୍କୋ ବିରୋଧୀ ଆନ୍ଦୋଳନକୁ ନୈତିକ ସମର୍ଥନ ଯୋଗାଇ ଆସିଛନ୍ତି ।

ଆଠ ବର୍ଷର ପୋସ୍କୋ ବିରୋଧୀ ଲଢ଼େଇରେ ଏକାଧିକ ସଂଗ୍ରାମୀ ସହିଦ୍ ହୋଇଛନ୍ତି । ଆନ୍ଦୋଳନର ସାରଥୀ ଅଭୟ ସାହୁ ତିନି ତିନିଥର ବନ୍ଦୀଶାଳାକୁ ଯାଇଛନ୍ତି । ତାଙ୍କ ଅବର୍ତ୍ତମାନରେ ରାଜ୍ୟ କମ୍ୟୁନିଷ୍ଟ ଦଳର ନେତା ଦିବାକର ନାୟକ, ଆଶିଷ କାନୁନ୍‌ଗୋ, ରାମକୃଷ୍ଣ ପଣ୍ଡା, ଏନ୍. ନାରାୟଣ ରେଡ୍ଡୀ ଓ ପ୍ରଶାନ୍ତ ପାଇକରାୟ ପ୍ରମୁଖ ବାରମ୍ବାର ପ୍ରସ୍ତାବିତ ପୋସ୍କୋ ଅଞ୍ଚଳକୁ ଯାଇ ସଂଗ୍ରାମର ମଶାଲକୁ ଜଳାଇ ରଖିଛନ୍ତି । ମାତ୍ର ଏହି ସମସ୍ତ ଆନ୍ଦୋଳନ ପଛରେ ଅଟଳ ଲୌହସ୍ତମ୍ଭ ଭଳି ଠିଆ ହୋଇଛନ୍ତି କମ୍ୟୁନିଷ୍ଟ ପାର୍ଟିର ଭୀଷ୍ମ ପିତାମହ ଅବନୀ ବରାଳ । ବୟସ ତାଙ୍କର ଗତିରୋଧ କରିପାରିନାହିଁ । ପୋସ୍କୋର ସଂଗ୍ରାମୀ ଜନଗଣଙ୍କ ନିକଟକୁ ଏକାଧିକବାର ଯାଇ ସେମାନଙ୍କୁ ସାହସ ଦେଇଛନ୍ତି, ନୈତିକ ବଳ ଯୋଗାଇଛନ୍ତି । ପୋସ୍କୋ ପ୍ରକଳ୍ପ ସ୍ଥାପନ କରାଯିବା ଦ୍ୱାରା ଭିଟାମାଟି ହରାଉଥିବା ଗ୍ରାମବାସୀ ଓ ଜନସାଧାରଣଙ୍କ ସମସ୍ୟାକୁ ନେଇ ଗଣମାଧ୍ୟମ ଓ ସମ୍ବାଦପତ୍ର ପୃଷ୍ଠାରେ ସ୍ୱର ଉତ୍ତୋଳନ କରିଛନ୍ତି । ରାଜ୍ୟର ଅନ୍ୟ ଅଞ୍ଚଳର ଜନସାଧାରଣଙ୍କୁ ପୋସ୍କୋ କମ୍ପାନୀର ମନ୍ଦ ଉଦ୍ଦେଶ୍ୟ ଜନସାଧାରଣଙ୍କ ଦାବୀ ଓ ସରକାରଙ୍କ ଅଭିସନ୍ଧି ସମ୍ପର୍କରେ ସଚେତନ କରାଇବାକୁ ଉଦ୍ୟମ କରିଛନ୍ତି ।

ସଂଗ୍ରାମୀ ନେତା ଅଭୟ କାରାରୁଦ୍ଧ ହେବା ସତ୍ତ୍ୱେ ଆନ୍ଦୋଳନ ମରିନାହିଁ । ମରିବ ନାହିଁ । ସ୍ଥାନୀୟ ନେତା ଶିଶିର ମହାପାତ୍ରଙ୍କ ନେତୃତ୍ୱରେ ପୁଣି ମୁଣ୍ଡ ଟେକିଛି ପୋସ୍କୋ ପ୍ରତିରୋଧ ସଂଗ୍ରାମ ସମିତିର ଦୁର୍ବାର ଆନ୍ଦୋଳନ । ଏହି ଆନ୍ଦୋଳନରେ ଅବନୀ ବରାଳଙ୍କ ମହତ୍ତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ସୂଚନା ଦେଇ ମହିଳା ବ୍ରିଗେଡ୍‌ର ସାହସିନୀ ନେତ୍ରୀ ମନୋରମା ଖଟୁଆ କହନ୍ତି – "୨୦୦୫ ମସିହା ଜୁନ୍ ୨୨ ତାରିଖରେ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ପୋସ୍କୋ ଚୁକ୍ତିନାମାରେ ଦସ୍ତଖତ କରିଥିଲେ । ଜୁଲାଇ ୧୧ ତାରିଖରେ ପୋସ୍କୋ କମ୍ପାନୀ ବିରୋଧରେ ଅଭୟ ସାହୁଙ୍କ ନେତୃତ୍ୱରେ ପୋସ୍କୋ ପ୍ରତିରୋଧ ସଂଗ୍ରାମ ସମିତି ଗଢ଼ି ଉଠିଲା ଢ଼ିଙ୍କିଆ ଘରିଦେଶରେ । ସେହି ଆନ୍ଦୋଳନରେ ଅବନୀ ବାବୁ ସମ୍ପୃକ୍ତ । ଏକାଧିକବାର ଢ଼ିଙ୍କିଆ ଘରିଦେଶକୁ ଅବନୀ

ବାବୁ ଆସିଛନ୍ତି ଏବଂ ତାଙ୍କ ବକ୍ତବ୍ୟରେ ସେ କହିଛନ୍ତି ଯେଉଁ ସ୍ଥାନରେ ଆନ୍ଦୋଳନ ସଫଳ ହୋଇଛି, ସେଠାରେ ମହିଳାମାନେ ଆଗରେ ଅଛନ୍ତି । ପୋସ୍କୋ ଆନ୍ଦୋଳନରେ ଯେହେତୁ ମହିଳାମାନେ ଆଗରେ ଅଛନ୍ତି, ତେଣୁ ପୋସ୍କୋ କମ୍ପାନୀ ନିଶ୍ଚୟ ହଟିବ ।"

ପୋସ୍କୋ ପ୍ରତିରୋଧ ସଂଗ୍ରାମ ସମିତିର ମୁଖ୍ୟ ଅଭୟ ସାହୁ ଜେଲ୍‌ରୁ ଅବନୀଙ୍କ ମହନୀୟତା ଓ ପୋସ୍କୋ ବିରୋଧୀ ସଂଗ୍ରାମ ପ୍ରତି ତାଙ୍କ ଅବଦାନର ସ୍ମୃତିଚାରଣ କରି କହନ୍ତି - "ପ୍ରାୟ ୮ ମାସ ହେବ ମୁଁ ଚୌଦ୍ୱାର ଜେଲ୍‌ରେ ଅଛି । ପୋସ୍କୋ ଇସ୍ପାତ କାରଖାନା ବିରୁଦ୍ଧରେ ଲଢ଼େଇ କରି ଜେଲ୍ ଭୋଗିବାକୁ ପଡ଼ିଛି । ମୋର ମୁକ୍ତି ପାଇଁ ପାର୍ଟିର ଯେଉଁ କମିଟି ହୋଇଛି ସେ କମିଟିର ମୁଖ୍ୟ ହେଉଛନ୍ତି ସାର୍ । ମୁଁ ଜେଲ୍‌ରୁ ଅନୁମତି ନେଇ ମଝିରେ ମଝିରେ ସାର୍‌ଙ୍କ ସଙ୍ଗେ ମୋର କେଶ୍ ଓ ଜାମିନ୍ ସମ୍ପର୍କରେ କଥା ହୁଏ । ବଡ଼ ଆଶାବାଦୀ ମଣିଷ । ତାଙ୍କ କଥାରେ ନୈରାଶ୍ୟର ଚିହ୍ନ ନଥାଏ । ଯେମିତି ତାଙ୍କ ଅକ୍ତିଆରରେ ସବୁ ଅଛି । ଦୁଃସାଧ ବୋଲି କିଛି ନାହିଁ । ଆଇନଠୁ ଆରମ୍ଭ କରି ଅନୁଶାସନ ପର୍ଯ୍ୟନ୍ତ ସବୁ ମାଲୁମ୍ । ଆଉ ଯଦି ଖଣ୍ଡେ ସିଗାରେଟ୍ ଲଗାଇଦେଲେ, ତାହା ହେଲେ ମିନିଟିକର କଥା ସେକେଣ୍ଡରେ ହୋଇଯିବ । ଏତେ ସ୍ପଷ୍ଟବାଦୀ ଓ ଆଶାବାଦୀ ମଣିଷ ମୁଁ ମୋ ଜୀବନରେ କ୍ୱଚିତ୍ ଦେଖିଛି ।"

ଆଜି ସାର୍‌ଙ୍କ ବିଷୟରେ ଲେଖିଲା ବେଳେ ଅନେକ ସ୍ମୃତି ମୋତେ ଘାଣ୍ଟି ଚକଟି ପକାଉଛି । ଭାବୁଛି, ଲେଖିବି ଯେତେକଥା ମନକୁ ଆସୁଛି । ହେଲେ ଲେଖାଲେଖିରେ ଯେ ମୁଁ ବିପିଏଲ୍ ବା ଦାରିଦ୍ର୍ୟର ସୀମାରେଖା ତଳେ । ଦାରିଦ୍ର୍ୟର ସୀମାରେଖା ତଳେ ଥିବା ମଣିଷଟି ୨ ଟଙ୍କାରେ ୨୫ କିଲୋ ଚାଉଳ ପାଇଲା ଭଳି କିନ୍ତୁ ଖୋରାକ ନଥାଇ ଯେ ମୁଁ ଏତେ ଭଲ ଲେଖା ଲେଖିବି, ଭାବିଲା ବେଳେ ମନ ଛିନ୍‌ଛିନ୍ ଲାଗୁଛି । କାରଣ ମୋତେ ଆଉ କିଏ କ'ଣ ଭାବନ୍ତି ? ମୁଁ ସେକଥା କହିପାରିବିନି । କିନ୍ତୁ ସାର୍‌ଙ୍କ ବିଚାରରେ ମୁଁ କୁଆଡ଼େ ଜଣେ ପ୍ରଚଣ୍ଡ ବାଗ୍ମୀ ଓ ଜଣେ ପ୍ରଗଳ୍ଭ ଓ ରାଜନୈତିକ ବକ୍ତା ।"

ପୋସ୍କୋ ପ୍ରତିରୋଧ ସଂଗ୍ରାମ ସମିତି ଢିଙ୍କିଆ ଓ ଆଖପାଖ ଅଞ୍ଚଳରେ ଲଢ଼େଇ ଜାରି ରଖିଥିବା ବେଳେ ରାଜ୍ୟବ୍ୟାପୀ ଜନସଚେତନତା ସୃଷ୍ଟି ଏବଂ ବିଭିନ୍ନ ରାଜନୈତିକ ଦଳ ସହ ସମନ୍ୱୟ ପ୍ରତିଷ୍ଠା କରି ଏହି ଆନ୍ଦୋଳନକୁ ଅଧିକ ଗତିଶୀଳ କରିବା ଉଦ୍ଦେଶ୍ୟରେ ଗଠିତ ହୋଇଛି ଅନ୍ୟ ଏକ ସଙ୍ଗଠନ 'ପୋସ୍କୋ ପ୍ରତିରୋଧ ସମନ୍ୱୟ ସମିତି' । ଏହି ସଙ୍ଗଠନର ସଭାପତି ଅଛନ୍ତି ଅବନୀ ବରାଳ । ୨୦୧୦ ମସିହାରେ ସଭାପତି ରୂପେ ଅବନୀ ରାଜ୍ୟ ସଚିବାଳୟରେ ମୁଖ୍ୟମନ୍ତ୍ରୀ ନବୀନ୍ ପଟ୍ଟନାୟକଙ୍କୁ ସାକ୍ଷାତ କରି ପୋସ୍କୋ

ପ୍ରକଳ୍ପକୁ ଅନ୍ୟତ୍ର ସ୍ଥାନାନ୍ତର କରିବା ପାଇଁ ଦୀର୍ଘ ସମୟ ଧରି ଯୁକ୍ତି ବାଢ଼ିଥିଲେ । ଏହି ଆଲୋଚନା ବେଳେ ଏରସମା ବିଧାୟକ ପ୍ରଶାନ୍ତ ମୁଦୁଲି ମଧ୍ୟ ଉପସ୍ଥିତ ଥିଲେ । ପୋସ୍କୋ ବିରୋଧରେ ଅବନୀଙ୍କ ଟାଣୁଆ ଯୁକ୍ତି ଆଗରେ ନିଜେ ମୁଖ୍ୟମନ୍ତ୍ରୀ ଓ ବିଧାୟକ ଅପ୍ରସ୍ତୁତ ହୋଇପଡ଼ିଥିଲେ ।

ପୋସ୍କୋ ଅଞ୍ଚଳରେ କମ୍ପାନୀ ଦଲାଲଙ୍କ ବୋମା ମାଡ଼ରେ ପ୍ରାଣ ହରାଇଥିବା ତିନି ସହିଦଙ୍କ ଶବ ସତ୍କାର ସମୟରେ ୧୪୪ ଧାରାକୁ ଭ୍ରୂକ୍ଷେପ ନକରି ଅବନୀଙ୍କ ନେତୃତ୍ୱରେ ଶ୍ମଶାନ ଘାଟରେ ଯେଉଁ ବିଶାଳ ସମାବେଶ ଆୟୋଜିତ ହୋଇଥିଲା, ତାହା ପୋସ୍କୋ ବିରୋଧୀ ଆନ୍ଦୋଳନ ପ୍ରତି ତାଙ୍କର ଗଭୀର ନିଷ୍ଠା ଓ ଅଙ୍ଗୀକାରବଦ୍ଧତାକୁ ପୁଣି ଥରେ ପ୍ରମାଣିତ କରିଥିଲା । ଛାତ୍ର ଜୀବନରୁ ଗଣସଂଗ୍ରାମର ବନ୍ଧୁର ପଥରେ ପାଦ ଥାପିଥିବା ଏହି ଦୁର୍ବାର ଯୋଦ୍ଧା ଆଜି ୭୯ ବର୍ଷ ବୟସରେ ମଧ୍ୟ ସେହିଭଳି କର୍ମଠ, ଚଳଚଞ୍ଚଳ ଓ ଅବିଚଳିତ ଭାବରେ ନେତୃତ୍ୱ ଦେଇଚାଲିଛନ୍ତି ଏହି ଭିଟାମାଟି ସୁରକ୍ଷା ଆନ୍ଦୋଳନକୁ ।



# ଉଦାର ମାନବିକ ଗୁଣାବଳୀର କେତୋଟି ଝଲକ୍



୧୯୯୫ ମସିହା ସେପ୍ଟେମ୍ବର ମାସର ଘଟଣା । ଏହି ଲେଖକ ସେତେବେଳେ 'ସମାଜ'ର ସମ୍ବାଦ ବିଭାଗ ମୁଖ୍ୟ ଭାବରେ କାର୍ଯ୍ୟ କରୁଥାଏ । ଖବରକାଗଜ କହିଲେ ଲୋକେ 'ସମାଜ'କୁ ହିଁ ବୁଝୁଥାନ୍ତି । ଆଜିକାଲି ଭଳି ମୋବାଇଲ ଫୋନ୍ ପ୍ରଚଳନ ଆରମ୍ଭ ହୋଇନଥାଏ । ସରକାରୀ ଟେଲିଫୋନ୍ ଯୋଗାଯୋଗର ଏକମାତ୍ର ମାଧ୍ୟମ । ବୈଦ୍ୟୁତିକ ଗଣମାଧ୍ୟମ (ଟିଭି ଚ୍ୟାନେଲ୍) ପ୍ରାୟତଃ ନଥିଲା । ସରକାରୀ ନିୟନ୍ତ୍ରଣାଧୀନ ଦୂରଦର୍ଶନରେ ସନ୍ଧ୍ୟା ସମୟରେ ଓଡ଼ିଆ ଭାଷାରେ କେବଳ ଗୋଟିଏ ମାତ୍ର ସମ୍ବାଦ ପ୍ରସାରଣ କରାଯାଉଥାଏ । ସେପ୍ଟେମ୍ବର ୨୧ ତାରିଖ ସକାଳ ୧୦ଟା । ଟେଲିଫୋନ୍ ହଠାତ୍ ବାଜି ଉଠିଲା । ରିସିଭର୍ ଉଠାଇବା କ୍ଷଣି ସେପଟୁ ଶୁଣିବାକୁ ମିଳିଲା 'କିଏ ପ୍ରଦୋଷ', ମୁଁ ଅବନୀ ବରାଳ କହୁଛି । ଫିରୋଜାବାଦ ଷ୍ଟେସନ ପାଖର ଏକ ପି.ସି.ଓ. ରୁ କହୁଛି । କାଲି ରାତିରେ ଏଠି ଏକ ଭୟଙ୍କର ରେଳ ଦୁର୍ଘଟଣା ଘଟିଛି । ଆମେ ସବୁ ସଂସଦ ଘେରଉ କାର୍ଯ୍ୟକ୍ରମରେ ଭାଗ ନେବା ପାଇଁ ପୁରୁଷୋତ୍ତମ ଏକ୍ସପ୍ରେସରେ ଦିଲ୍ଲୀ ଆସୁଥିଲୁ, ରାତିରେ ଏଠି କାଳିନ୍ଦୀ ଏକ୍ସପ୍ରେସ୍ ଟ୍ରେନ୍ ସହ ଧକ୍କା ହୋଇଛି । ଦୁଇ ଟ୍ରେନ୍‌ରେ ଥିବା ବହୁଲୋକ ମରିଛନ୍ତି । ଆମେ ସବୁ ଠିକ୍ ଅଛୁ । ଆମ ଭିତରୁ କେବଳ ରବି (ନିଖିଳ ଉତ୍କଳ ବେସରକାରୀ କଲେଜ ଶିକ୍ଷକ ସଂଘର ସଭାପତି) ଆହତ ହୋଇଛନ୍ତି । ତାଙ୍କୁ ଫିରୋଜାବାଦ ଜିଲ୍ଲା ସଦର ହସ୍‌ପିଟାଲକୁ ନିଆଯାଇଛି ବୋଲି ଶୁଣିଲି । ଏବେ ଦେଖିବାକୁ ଯାଉଛି । ଆମେ ଦୁର୍ଘଟଣାରୁ ଅଳ୍ପକେ ବର୍ତ୍ତିଥିବାର ଖବର 'ସମାଜ'ରେ ଦେଇଦେବ ।

ଅନ୍ୟ ଖବରକାଗଜ ବାଲାଙ୍କୁ କହି ବାହାର କରାଇଦେବ । କାରଣ ସେଠି ସମସ୍ତେ ବ୍ୟସ୍ତ ହେଉଥିବେ । ଅବନୀ ବରାଳଙ୍କ ଠାରୁ ଏହି ଖବର ପାଇ ସଙ୍ଗେ ସଙ୍ଗେ ବହୁ ବନ୍ଧୁଙ୍କୁ ଟେଲିଫୋନ୍ କରି ଜଣାଇଦେଲି ସେମାନେ ନିରାପଦରେ ଥିବା ଜାଣି ସମସ୍ତେ ଖୁବ୍ ଖୁସି ହୋଇଥିଲେ । କାରଣ ଏହି ଟ୍ରେନ୍ ଦୁର୍ଘଟଣା ଥିଲା ସ୍ୱାଧୀନ ଭାରତ ଇତିହାସରେ ସବୁଠାରୁ ଭୟାବହ ଦୁର୍ଘଟଣା ଏବଂ ଏଥିରେ ଶହ ଶହ ଲୋକ ପ୍ରାଣ ହରାଇଥିଲେ । ଏହାପରେ ୩/୪ ଦିନ ଧରି ଏହି ଦୁର୍ଘଟଣାର ବିଭୀଷିକାମୟ ଚିତ୍ର ଗଣ ମାଧ୍ୟମର ପୃଷ୍ଠା ମଣ୍ଡନ କରି ପ୍ରକାଶିତ ହୋଇଥିଲା । ତତ୍କାଳୀନ ପ୍ରଧାନମନ୍ତ୍ରୀ ପି.ଭି. ନରସିଂହ ରାଓ ଦୂରଦର୍ଶନରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ବାର୍ତ୍ତା ଶୁଣାଇଥିଲେ ।

ଫିରୋଜାବାଦ ଡାକ୍ତରଖାନାରେ ଚିକିତ୍ସା ପାଇଁ ଭର୍ତ୍ତି ହୋଇଥିବା ଆହତ ଶିକ୍ଷକନେତା ରବୀନ୍ଦ୍ର ନାଥ ରାୟଙ୍କ ପାଖେ ପାଖେ ରହି ତାଙ୍କର ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ ଅବନୀ । ସେଠାରେ ସାମାନ୍ୟ ସୁସ୍ଥ ହେବା ପରେ ତାଙ୍କୁ ସାଙ୍ଗରେ ନେଇ ଭୁବନେଶ୍ୱରକୁ ଆସିବା ପର୍ଯ୍ୟନ୍ତ ପ୍ରତି ମୁହୂର୍ତ୍ତରେ ଦରଦୀ ପ୍ରାଣ ଅବନୀ ସେବା ଓ ସହଯୋଗର ହାତ ବଢ଼ାଇଥିଲେ । କୃତଜ୍ଞତାଭରା ହୃଦୟରେ ସେହି ଘଟଣା ବର୍ଣ୍ଣନା କରି ରବୀନ୍ଦ୍ରନାଥ କହନ୍ତି - "୧୯୯୫ ମସିହା ଅଗଷ୍ଟ ୨୦ ତାରିଖ ମୋ ଜୀବନର ଏକ ଅବିସ୍ମରଣୀୟ ଦିନ । ଅଖିଳ ଭାରତ ବିଶ୍ୱବିଦ୍ୟାଳୟ ଓ କଲେଜ ଶିକ୍ଷକ ମହାସଂଘ ତରଫରୁ ସଂସଦ ଘେରାଉ ପାଇଁ ଡାକରା ଦିଆଯାଇଥାଏ । ମୁଁ ସେତେବେଳେ ବ୍ୟାସନଗର କଲେଜ, ଯାଜପୁର ରୋଡ଼ରେ ଅଧ୍ୟାପନା କରୁଥାଏ । ଓଡ଼ିଶାରୁ ଶ୍ରୀଯୁକ୍ତ ବରାଳଙ୍କ ସମେତ ମୁଁ, ଅଧ୍ୟାପକ ରମେଶ ସିଂହ, ଅଧ୍ୟାପକ ଅମୀୟ ମହାନ୍ତି ଓ ଅଧ୍ୟାପକ ଅମୂଲ୍ୟ ପଣ୍ଡା ଏକ ଜାତୀୟ ସେମିନାର ସହ ଘେରାଉ କାର୍ଯ୍ୟକ୍ରମରେ ଯୋଗ ଦେବାକୁ ପୁରୁଷୋତ୍ତମ ଏକ୍ସପ୍ରେସ୍‌ରେ ଦିଲ୍ଲୀ ଯାଉଥାଉ । ମୁଁ ଥାଏ ଏସ୍-୩ ବଗିରେ, ରମେଶ ସିଂହ ଓ ଶ୍ରୀଯୁକ୍ତ ବରାଳ ଥାଆନ୍ତି ଏସ୍-୬ ବଗିରେ, ଅମୀୟ ମହାନ୍ତି ଓ ଅମୂଲ୍ୟ ପଣ୍ଡା ଏସ୍-୫ ବଗିରେ ଥାଆନ୍ତି । କାଳର କରାଳ ଆହ୍ୱାନରେ ଫିରୋଜାବାଦ ରେଳ ଷ୍ଟେସନରେ ପୁରୁଷୋତ୍ତମ ଏକ୍ସପ୍ରେସ ଦୁର୍ଘଟଣାଗ୍ରସ୍ତ ହେଲା । ମୁଁ ସେ ଦୁର୍ଘଟଣାରେ ଅତି ମାତ୍ରାରେ ଆହତ ହୋଇଥାଏ । ମୁଁ ଏକ ଭିନ୍ନ ବଗିରେ ଥିବାରୁ ଦୁର୍ଘଟଣା ପରେ ଶ୍ରୀଯୁକ୍ତ ବରାଳ ମୋତେ ଠାବ କରିପାରିନଥିଲେ । ମାତ୍ର ସେ ବହୁତ ବ୍ୟସ୍ତ ହୋଇ ମୋତେ ଖୋଜିବାକୁ ଆରମ୍ଭ କଲେ । ଅଧ୍ୟାପକ ରମେଶ ସିଂହଙ୍କ ଠାରୁ ଶୁଣିବାକୁ ପାଇଲି ମୃତକମାନଙ୍କୁ ଘୋଡ଼ାଯାଇଥିବା କପଡ଼ା ଉଠାଇ ସେ ଭୋ ଭୋ ହୋଇ କାନ୍ଦିବାକୁ ଆରମ୍ଭ କଲେ ଓ ବହୁ ଚେଷ୍ଟା ପରେ ଦିନ ୧୦.୩୦ ମିନିଟ୍‌ରେ ସ୍ଥାନୀୟ ଫିରୋଜାବାଦ ଜିଲ୍ଲା ସଦର

ମହକୁମା ହସ୍‌ପିଟାଲ୍‌ରେ ମୋତେ ଦୁଇଦିନ ରହିବାକୁ ପଡ଼ିଲା । ତା'ପରେ ଏକ ସ୍ୱତନ୍ତ୍ର ଟ୍ରେନ୍‌ରେ ମୋତେ ଅଣାଗଲା ଭୁବନେଶ୍ୱର । ସାଥିରେ ଆସିଲେ ଶ୍ରୀଯୁକ୍ତ ବରାଳ ଫିରୋଜବାଦଠାରୁ ଫୋନ୍ ଯୋଗେ ତତ୍‌କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜଗନ୍ନାଥ ରାଉତଙ୍କ ସହିତ ଯୋଗାଯୋଗ କରି ଭୁବନେଶ୍ୱର ଷ୍ଟେସନରୁ ହସପିଟାଲ ଯିବା ପାଇଁ ଆମ୍ବୁଲାନ୍‌ସ ଓ କ୍ୟାପିଟାଲ ହସ୍‌ପିଟାଲରେ ଏକ ସ୍ୱତନ୍ତ୍ର କ୍ୟାବିନ୍‌ର ବ୍ୟବସ୍ଥା କରିସାରିଥିଲେ । ମୁଁ ଭୁବନେଶ୍ୱରରେ ପହଞ୍ଚିଲା ବେଳକୁ ମୋର ପରିବାରର ଲୋକ, ଶୁଭେଚ୍ଛୁ ଓ ବନ୍ଧୁମାନେ ଶ୍ରୀଯୁକ୍ତ ବରାଳଙ୍କ ଠାରୁ ଖବର ପାଇ ଭୁବନେଶ୍ୱର ରେଳ ଷ୍ଟେସନରେ ଅପେକ୍ଷା କରିଥାନ୍ତି । ସେମାନେ ସମସ୍ତେ ମୋ ସହିତ କ୍ୟାପିଟାଲ୍ ହସ୍‌ପିଟାଲକୁ ଯାଇଥିଲେ । ମୁଁ କ୍ୟାପିଟାଲ ହସ୍‌ପିଟାଲରେ ମାସାଧିକ କାଳ ରହି ଚିକିତ୍ସିତ ହେଲି । କ୍ୟାପିଟାଲ ହସପିଟାଲରେ ରହିବା ସମୟ ମଧ୍ୟରେ ଏମିତି କେଉଁଦିନ ନାହିଁ, ଯେଉଁ ଦିନ ଶ୍ରୀଯୁକ୍ତ ବରାଳ ମୋତେ ଦେଖା କରିନାହାନ୍ତି । ହସ୍‌ପିଟାଲରେ ଶ୍ରୀଯୁକ୍ତ ବରାଳଙ୍କ ଉପସ୍ଥିତି ମୋତେ ସାହସ ଓ ସାନ୍ତ୍ୱନା ପ୍ରଦାନ କରୁଥିଲା ଓ ମୁଁ ସୁସ୍ଥ ଅନୁଭବ କରୁଥିଲି ।"

ଖୋର୍ଦ୍ଧା କଲେଜରେ ଓଡ଼ିଆ ବିଭାଗର ଅନ୍ୟ ଅଧ୍ୟାପକମାନେ କୋର୍ସ ସାରିପାରିବେନି । ବିଭାଗୀୟ ମୁଖ୍ୟ ଅବନୀ ନିଜେ ପିଲାଙ୍କୁ ପଚାରି ବୁଝି ଘରକୁ ଡାକି କୋର୍ସ ସାରିବେ । ଆତ୍ମୀୟତାର ବନ୍ଧନରେ ଓଡ଼ିଆ ଅନର୍ସ ପିଲାଙ୍କୁ ବାନ୍ଧି ରଖନ୍ତି । ତାଙ୍କ ବିଭାଗର ଜନୈକା ଛାତ୍ରୀ ତଥା ପରବର୍ତ୍ତୀ ଜୀବନରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର ଡକ୍ଟର ସଂଘମିତ୍ରା ମିଶ୍ର ସେହି ସ୍ମୃତି ବଖାଣି କହନ୍ତି - "ସାର୍ କେବେ ରାଗିବା ମୁଁ ଦେଖିନି । ହସି ହସି ବେଶ୍ ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ସେ ହାଲୁକା କରିଦିଅନ୍ତି । ଅନର୍ସ କୋର୍ସ ସରିନି, "ଆରେ, କିଏ କ'ଣ ପଢ଼ାଇ ସାରି ନାହାନ୍ତି ଦେଖିଲ ? କୋର୍ସ ସାରିବେନି ଯଦି ଏତେ ଆବୁରା ପଡ଼ିବେ କାହିଁକି ମୂଳରୁ ? ହଉ ଘରକୁ ଆସ । କୋର୍ସ ସାରିଦେବା" ଏତିକିରୁ ସରିଯାଏ ବିଭାଗ ମୁଖ୍ୟଙ୍କ ସହକର୍ମୀମାନଙ୍କ ପ୍ରତି ଆକ୍ଷେପ । ଆମେ ଗଲୁ ସାର୍‌ଙ୍କ ଘରକୁ, ସାରଙ୍କ ଘର ତ ନୁହେଁ ଆମ ପାଇଁ ସକଳ ପ୍ରଶ୍ନର ସମ୍ଭାବ୍ୟ ଉତ୍ତର ସତେ କି ? ଆମେ ଷୋହଳ ଜଣ ଅନର୍ସ ପିଲା, ଚଉଦ ଜଣ ପ୍ରାୟ ଯାଉ । କେବେ ସାର୍ କଲେଜରୁ ଫେରି ନଥାନ୍ତି । ଅପା (ସାର୍‌ଙ୍କ ସହଧର୍ମିଣୀ ଅଧ୍ୟାପିକା ଆଦରମଣି ବରାଳ) ଆମକୁ ମୁଢ଼ି, ବାଦାମ, ମିକଶ୍ଚର ଦିଅନ୍ତି । ଉଭୟ ଘରେ ନଥିଲେ ବି ଆମେ ଅପେକ୍ଷା କରୁଥାଉ ଓ ମୁଢ଼ି ଟିଣ ଶେଷ କରିଦେଉ । ସାର୍ ଆସି ନିର୍ବିକାର ଭାବେ ପାଠ ପଢ଼ାନ୍ତି । ଚାହା ପିଅନ୍ତି, ଆମକୁ ଦିଅନ୍ତି । ସେଠି ବରା ପକୁଡ଼ି ମଧ୍ୟ ଖାଉ । ରବିବାର ଭଳି ଛୁଟିଦିନରେ ସାର୍ ଦାଢ଼ି କାଟୁ କାଟୁ ପାଠ ପଢ଼ାଇ ଦିଅନ୍ତି ।

ଆଜି ଦୀର୍ଘକାଳ ଅଧ୍ୟାପନା କରିବା ପରେ ମଧ୍ୟ ମୁଁ ଭାବେ ସାର୍ ଏମିତି ପଢ଼ାଇ ପାରୁଥିଲେ କେମିତି ? ମୁଁ ହୋଇଥିଲେ ରାଗିଯାଉ ଥାଆନ୍ତି । ମାନସିଂ, ସଚ୍ଚିରାଉତରାୟ, ଗଡ଼ନାୟକ, ବୈକୁଣ୍ଠନାଥ, କାଳିନ୍ଦୀଚରଣଙ୍କ ଠାରୁ ରବି ସିଂହଙ୍କ ପର୍ଯ୍ୟନ୍ତ ସବୁ କବିତା ସାର୍‌ଙ୍କର ମୁଖସ୍ଥ ।

ଏହି ପାଠପଢ଼ାକୁ ସାର୍‌ଙ୍କ ଘରକୁ ଯିବାବେଳେ ହିଁ ସାର୍‌ଙ୍କ ପରିବାର ସହିତ ପରିଚୟ ହେଲା ଆତ୍ମୀୟତା ବଢ଼ିଲା । ମୋ ଛୋଟ ଝିଅ ମାମା ସାର୍‌ଙ୍କୁ ଜୋଇଁ ବୋଲି ଡାକିଲା । ଆଉ ଅପା ପାଲଟିଗଲେ ତାର ପ୍ରିୟ 'ସଉତୁଣୀ' । ଯେଉଁ ଦିନ ସେ ସାର୍‌ଙ୍କ ଘରକୁ ଯିବ ସେଦିନ ଆମ ପାଠ ବନ୍ଦ । ସାର୍ ତା' ସାଙ୍ଗରେ ଖେଳିବେ । କହିଲେ 'କହ ମୁଁ ଭାରି ସୁନ୍ଦର', ସେ ଥରେ ସାର୍‌ଙ୍କ ସିଗାରେଟ୍ ଖାଇଦେଇଥିଲା ।"

୧୯୯୯ ମସିହା ମହାବାତ୍ୟାରେ ସର୍ବସ୍ୱ ହରାଇ ଟ୍ରାଉଜର ଖଣ୍ଡିଏ ପିନ୍ଧି ଏରସମାର ଗୋଟିଏ ସ୍କୁଲ ଘରର ଆଶ୍ରୟ ସ୍ଥଳରେ ମୁଣ୍ଡ ଗୁଞ୍ଜିଥିଲେ କମ୍ୟୁନିଷ୍ଟ ନେତା ଅଭୟ ସାହୁ । ତାଙ୍କ ପାଖରେ ଦେବଦୂତ ଭଳି ପହଞ୍ଚିଥିଲେ ଅବନୀ । ସାଙ୍ଗରେ ନେଇଥିବା ପଞ୍ଜାବୀ, ଟ୍ରାଉଜର, ଚଦର ସହ କିଛି ଟଙ୍କା ତାଙ୍କୁ ଦେଇଆସିଲେ । ଆବେଗଭରା ଭାଷାରେ ନିମ୍ନରେ ତାହା ବର୍ଣ୍ଣନା କରିଛନ୍ତି ଅଭୟ ସାହୁ – "ସାର୍ ହେଉଛନ୍ତି ଦୁଃଖର ସାହାରା, ଦୁର୍ଦ୍ଦିନର ସାଥୀ । ନଲୋଡ଼ିଲେ, ନଖୋଜିଲେ ବି ସେ ପହଞ୍ଚିପାରନ୍ତି । ଆଶ୍ୱାସନା ଦିଅନ୍ତି । ଭରସା ହୋଇ ଛିଡ଼ା ହୁଅନ୍ତି । ହାକ୍ ବାକ୍ କରି ଦୁଖକୁ ଭୁଲିଯିବାକୁ ମର୍ମଭେଦୀ ବଚନ କୁହନ୍ତି । ତେଣୁ ଦୁଃଖ ବେଳର କଥା ଲେଖିବାକୁ ମନ ବଳୁଛି । ୧୯୯୯ ଅକ୍ଟୋବର ୨୯ ମହାବାତ୍ୟା ବେଳର କଥା । ମହାବାତ୍ୟାରେ ସାରା ଏରସମା ବ୍ଲକ୍‌ରେ ଅଭୂତପୂର୍ବ ଓ ଅକଳ୍ପନୀୟ କ୍ଷୟକ୍ଷତି ହୋଇଥାଏ । ଖାଲି ଧନ ନୁହେଁ, ଘରଦ୍ୱାର, ଆସବାବପତ୍ର, ଧାନ ଚାଉଳ କିଛି ନଥାଏ । ସବୁ ଭାସିଯାଇଥାଏ । ମୋର କୋଠାଘର ମଧ୍ୟ ଭୁଷୁଡ଼ି ପଡ଼ିଥାଏ । ନିଃସ୍ୱ ଓ ବେସାହାରା ହୋଇ ମୁଁ ଅନ୍ୟମାନଙ୍କ ସହିତ ଗୋଟିଏ ସ୍କୁଲ ପରେ ଆଶ୍ରୟ ନେଇଥାଏ । ତଥାପି ମୋତେ ଏରସମାରୁ ଡଙ୍ଗା ସାହାଯ୍ୟରେ ଆସି ଅନ୍ୟମାନଙ୍କ ପାଇଁ କାମ କରିବାକୁ ପଡୁଥାଏ । ମୋର ଜଳ ଜଳ ହୋଇ ମନେ ପଡ଼ିଯାଉଛି । ସାର୍ ୨/୪ଟା ପଞ୍ଜାବୀ, ଟ୍ରାଉଜର, ଖଣ୍ଡେ ଚାଦର ଧରିଯାଇ ଏରସମାରେ ପହଞ୍ଚି ମୋତେ ଦେଲେ ଏବଂ କିଛି ଟଙ୍କା ଦେଲେ । ମୁଁ ଗାମୁଛା ପିନ୍ଧିଥାଏ । ଦିନରେ ବକ୍ତେ ରିଲିଫ୍ ରନ୍ଧା ଖାଦ୍ୟ ଖାଉଥାଏ । ସେହିଦିନ ଠାରୁ ସାର୍‌ଙ୍କ ଟ୍ରାଉଜର ପଞ୍ଜାବୀ ପିନ୍ଧିଲି, ସାର୍‌ଙ୍କ ଟଙ୍କାରେ ମୋ ପୁଅକୁ ପଠାଇ ରାହାମା ହାଟରୁ ପିଆଜ, ଅଟା, ଲୁଣ ଓ ଆଳୁ କିଣି ରିଲିଫ୍ ଚାଉଳ ରୋଷେଇ କରି ମୋର ପରିବାର ଖରାବେଳେ ବକ୍ତେ ଖାଇବାକୁ

ଆରମ୍ଭ କଲେ । ଅଜଳା ଚୁଲି ପୁଣି ଜଳିଲା ସାର୍‌ଙ୍କ ସାହାଯ୍ୟରେ । ଗାମୁଛା ଛାଡ଼ି ପୋଷାକ ପିନ୍ଧିଲି ସାର୍‌ଙ୍କ ସାହାଯ୍ୟରେ ।"

ଓଡ଼ିଶାର ଶିକ୍ଷକ ସମାଜ ଉପରେ ତାଙ୍କର ରହିଥିବା ଅଖଣ୍ଡ ପ୍ରଭାବ ଏବଂ ଶିକ୍ଷକମାନଙ୍କର ତାଙ୍କ ପ୍ରତି ରହିଥିବା ଗଭୀର ଶ୍ରଦ୍ଧା ଓ ଭକ୍ତିର ଗୋଟିଏ ସୁନ୍ଦର ଉଦାହରଣ ଦେଇ ଓଷ୍ଟାର ସମ୍ପାଦକ ପ୍ରକାଶଚନ୍ଦ୍ର ମହାନ୍ତି କହନ୍ତି – "ସେଦିନ ଥାଏ ଓଷ୍ଟାର ପ୍ରଶ୍ନପତ୍ର ବିତରଣ କାର୍ଯ୍ୟକ୍ରମ ଭୁବନେଶ୍ୱର ଭୌମନଗରସ୍ଥ ଶିକ୍ଷକ ମହାସଂଘ ଅଫିସରେ । ୧୯୮୯ ମସିହାର କଥା । ସେହିବର୍ଷ ଜୁଲାଇ ମାସରେ ମୁଁ ଆରମ୍ଭ କରିଥାଏ ମୋର ଶିକ୍ଷକତା । ନଭେମ୍ବର ମାସରେ ଅନୁଷ୍ଠିତ ହେବାକୁ ଥିବା ଷାଣ୍ମାସିକ ପରୀକ୍ଷାର ପ୍ରଶ୍ନପତ୍ର ଆଣିବା ପାଇଁ ମୁଁ ବି ଯାଇଥାଏ ସେଠାକୁ । ସେତେବେଳେ ଅବିଭକ୍ତ ପୁରୀ ଜିଲ୍ଲା ପାଇଁ ଗୋଟିଏ ମାତ୍ର ପ୍ରଶ୍ନପତ୍ର ବିତରଣ କେନ୍ଦ୍ର ଶିକ୍ଷକ ମହାସଂଘ ଅଫିସରେ ହିଁ ଥାଏ । ଆଜିକାଲି ଅବଶ୍ୟ ଏଭଳି କେନ୍ଦ୍ରମାନଙ୍କର ସଂଖ୍ୟା ବହୁତ ବଢ଼ିଗଲାଣି । ସମୟ ମଧ୍ୟାହ୍ନ । ପ୍ରଶ୍ନପତ୍ର ପ୍ୟାକେଟ୍‌ର ତ୍ରୁଟି ଅଥବା ବିତରଣ ଦାୟିତ୍ୱରେ ଥିବା ସାଥୀଙ୍କର ତତ୍‌ପରତାର ଅଭାବରୁ ହେଉ ଶିକ୍ଷକମାନଙ୍କୁ ପ୍ରଶ୍ନପତ୍ର ପ୍ରଦାନରେ ବିଳମ୍ବ ଘଟୁଥାଏ । ଏଭଳିସ୍ଥିତିରେ ଅନେକ ଶିକ୍ଷକ ଓ କର୍ମଚାରୀ ହୋ ହଲ୍ଲା କରୁଥାଆନ୍ତି । ସେ କଥା ଭାବିଲାବେଳକୁ ଲାଗୁଛି ଆଜି ଏ କାର୍ଯ୍ୟ କିପରି ଖୁବ୍ ସୁରୁଖୁରୁରେ ହୋଇଯାଉଛି ।

ଦିନ ବଢ଼ିବା ସାଙ୍ଗକୁ ଶିକ୍ଷକମାନଙ୍କର ସମାଗମ ମଧ୍ୟ ବଢ଼ିଚାଲିଲା । ପ୍ରାୟ ଦୁଇ ବା ଅଢ଼େଇଟା ବେଳକୁ ମହାସଂଘ କାର୍ଯ୍ୟାଳୟର ସିଡ଼ି ବାଟଘର ତଳରାସ୍ତା ସବୁ ଲୋକାରଣ୍ୟ ହୋଇଗଲା । ପ୍ରଶ୍ନପତ୍ର ପ୍ରାପ୍ତିର ବିଳମ୍ବଜନିତ ଶିକ୍ଷକଙ୍କ ବିରକ୍ତି ଉଗ୍ରରୂପ ଧାରଣା କଲା । କିଛି ଶିକ୍ଷକ ଦୁଷ୍ଟାମୀ କରିବାକୁ ଯାଇ ମହାସଂଘ କାର୍ଯ୍ୟାଳୟର ତାଜା ଉପରୁ କିଛି ବହିପତ୍ର ଉଠାଇ ନିଜ ନିଜର ବ୍ୟାଗ୍‌ରେ ଭର୍ତ୍ତି କରୁଥିଲେ । ଏହି ଅନୁପଯୁକ୍ତ ଦୃଶ୍ୟ ମୋ ମନରେ କ୍ରୋଧ ସଞ୍ଚାର କରୁଥିଲା । ତଥାପି ସ୍ୱର ନରମେଇ କହିଲି – ଆଜ୍ଞା ଏହି ବହିଗୁଡ଼ିକ ନେଇଗଲେ କ'ଣ ପିଲା ପରୀକ୍ଷା ଦେଇଦେବେ ? କିଛି ବନ୍ଧୁ ଚାପା ଗଳାରେ ମୋତେ ସମର୍ଥନ କରୁଥିଲେ ମଧ୍ୟ ସେ ଦୁଷ୍ଟଙ୍କ ଉପରେ ଯା'ର କିଛି ବି ପ୍ରଭାବ ପଡ଼ିନଥିଲା । ମୁଁ ଭାବୁଥାଏ, ଏମାନଙ୍କୁ ଜବତ କଲାଭଳି ଲୋକ କ'ଣ ଏଠାରେ କେହି ନାହାଁନ୍ତି ? ଭାବନା ସରିନାହିଁ ଜଣେ ବ୍ୟକ୍ତି ଗାଡ଼ିରୁ ଓହ୍ଲାଇ ପଡ଼ିଲେ । ଅଳ୍ପ ଉଚ୍ଚତା ବିଶିଷ୍ଟ, ଗୋଲ ମୁହଁ, ଗୁରୁଗମ୍ଭୀର ଚେହେରା, ପିନ୍ଧିଥାନ୍ତି ଧଳାଧୋତି, ଅଧାଭଙ୍ଗା କାମିଜ୍ । କାନ୍ଧରେ ପଡ଼ିଥାଏ ସୁନ୍ଦର ଭାବରେ ଭଙ୍ଗାଯାଇଥିବା ଖଣ୍ଡେ ଧଳା ଗାମୁଛା । ଚେହେରାରୁ ବ୍ୟକ୍ତିତ୍ୱର କିଛିଟା ଆଭାସ ମିଳୁଥାଏ । ସେ ବ୍ୟକ୍ତି ଜଣକ କିଏ, ସେ କ'ଣ କରନ୍ତି,

କେଉଁଠି ରହନ୍ତି ସେ ବିଷୟରେ ମୁଁ କିଛି ଜାଣିନଥାଏ । ଗାଡିରୁ ଓହ୍ଲାଇ ସେହି ବ୍ୟକ୍ତି ଜଣକ ପରିସ୍ଥିତିକୁ ଦେଖିଲେ ଏବଂ ସହଜ ତଥା ସରଳ ଢ଼ଙ୍ଗରେ ପଚାରିଲେ କ'ଣ ହୋଇଛି ? କୈଳାଶ ବାବୁଙ୍କୁ ଫୋନ୍ କରିଛ ? ମୁଁ ଲକ୍ଷ୍ୟ କଲି ନିଆଁରେ ପାଣି ପଡିଲା ପରି ହଠାତ୍ ପରିସ୍ଥିତି ଶାନ୍ତ ହୋଇଗଲା । ସମସ୍ତେ ନୀରବ ହୋଇଗଲେ । କେହି କହୁ ବା ନିଜର ନଜର ପଡୁ, ଯେମିତି ବି ହେଉ ଶିକ୍ଷକଙ୍କର ବହିପତ୍ର ଉଠାଇବା ଦୃଶ୍ୟ ତାଙ୍କ ଦୃଷ୍ଟିକୁ ଆସିଲା । ଖୁବ୍ ବିରକ୍ତ ହେଲେ । ତା'ପରେ ପଚାରିଲେ କିଏ କିଏ ବହି ନେଇଛ ? ମୋ ସହିତ ନୀରବ ଥିବା କିଛି ଶିକ୍ଷକ କହିଲେ ଆଜ୍ଞା, ଅନେକଙ୍କ ପାଖରେ ବହି ରହିଛି । ପରେ ଦେଖିଲି ସେମାନେ ସୁନାପିଲା ପରି ଆପଣାଛାଏଁ ନମ୍ରତାର ସହିତ ବହିପତ୍ର ସବୁ କାଢ଼ି ଥୋଇଦେଲେ । ମୁଁ ମନେ ମନେ ଭଗବାନଙ୍କ ଧନ୍ୟବାଦ ଦେଲି । କୌଣସି ଶିକ୍ଷକଙ୍କଠାରେ ଏପରି ସ୍ୱଭାବ ନରହୁ ବୋଲି ପ୍ରାର୍ଥନା କଲି । ଦୀର୍ଘ ସମୟଧରି ଚାଲିଥିବା ଏ ବିଶୃଙ୍ଖଳା ମାତ୍ର ଦୁଇପଦ କଥାରେ ହିଁ ଶେଷ ହୋଇଗଲା । ମୋତେ ଖୁବ୍ ଆଶ୍ଚର୍ଯ୍ୟ ଲାଗୁଥିଲା । ଶିକ୍ଷକମାନଙ୍କ ଉପରେ ସେଦିନର ସେହି ବ୍ୟକ୍ତିଙ୍କର ପ୍ରଭାବ ମୋତେ ଭାବବିହ୍ୱଳ କରୁଥିଲା । ଅନ୍ୟମାନଙ୍କୁ ପଚାରି ବୁଝିଲି ଯେ ବ୍ୟକ୍ତିଜଣକ ହେଉଛନ୍ତି ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ସାଧାରଣ ସମ୍ପାଦକ ଶ୍ରୀଯୁକ୍ତ ଅବନୀ କୁମାର ବରାଳ ।"

ଖୋର୍ଦ୍ଧାରେ ଅବସ୍ଥାନ କରୁଥିବା ସମୟରେ ଅବନୀ ବରାଳ 'ସମୟ' ନାମକ ଏକ ପତ୍ରିକା ପ୍ରକାଶ କରୁଥିଲେ । ପରବର୍ତ୍ତୀ ସମୟରେ ଓଡ଼ିଶାର ଉପମୁଖ୍ୟମନ୍ତ୍ରୀ ହୋଇଥିବା ବିଶିଷ୍ଟ କଂଗ୍ରେସ ନେତା ବସନ୍ତ କୁମାର ବିଶ୍ୱାଳ ସେହି ନାମରେ ଗୋଟିଏ ଦୈନିକ ସମ୍ବାଦପତ୍ର ପ୍ରକାଶ କରିବାକୁ ଚାହିଁଥିଲେ । ମାତ୍ର କେନ୍ଦ୍ର ସରକାରଙ୍କ ଆର୍.ଏନ୍.ଆଇ. ରେଜିଷ୍ଟ୍ରେସନ ନିୟମ ଅନୁଯାୟୀ ଯଦି ଗୋଟିଏ ନାମରେ କୌଣସି ସମ୍ବାଦପତ୍ର ଓ ପତ୍ରିକା ପ୍ରକାଶ ପାଉଥାଏ, ତେବେ ଅନ୍ୟ କେହି ତାହା ନେଇପାରିବେ ନାହିଁ । ତେଣୁ ବସନ୍ତ ବିଶ୍ୱାଳ ତାଙ୍କ ସମ୍ବାଦପତ୍ରର ନାମ 'ସମୟ' ରଖିବା ସମ୍ଭବପର ହୋଇପାରିଲା ନାହିଁ । ମାତ୍ର ଉଦାର ହୃଦୟର ଅବନୀ ବରାଳଙ୍କ ପାଖକୁ ବସନ୍ତ ବିଶ୍ୱାଳଙ୍କ ଲୋକ ଯାଇ ଯେତେବେଳେ ଏହି ବିଷୟ ଜଣାନ୍ତି, ସେ ତତ୍କ୍ଷଣାତ୍ ନିଜର ପତ୍ରିକା 'ସମୟ'ର ନାମଟିକୁ ବସନ୍ତ ବିଶ୍ୱାଳଙ୍କୁ ଦେଇ ଦେଇଥିଲେ, ଯାହାର ଫଳଶ୍ରୁତି ସ୍ୱରୂପ ଆଜି ରାଜଧାନୀ ଭୁବନେଶ୍ୱରରୁ ପ୍ରକାଶିତ ହେଉଛି ବସନ୍ତ ବିଶ୍ୱାଳଙ୍କ ଦୈନିକ ସମ୍ବାଦପତ୍ର 'ସମୟ' । ଏହି ହସ୍ତାନ୍ତର ବିନିମୟରେ କୌଣସି ଅର୍ଥ ଗ୍ରହଣ କରିବାକୁ ଅବନୀ ରୋକ୍‌ଠୋକ୍ ମନା କରିଥିଲେ । ଏହି ଘଟଣା ବର୍ଣ୍ଣନା କରି ସେଦିନର ପ୍ରତ୍ୟକ୍ଷଦର୍ଶୀ ବରିଷ୍ଠ ସାମ୍ବାଦିକ ପ୍ରଭୁ କଲ୍ୟାଣ ମହାପାତ୍ର କହନ୍ତି – "ବହୁମୁଖୀ ପ୍ରତିଭାର ଅଧିକାରୀ ଅବନୀବାବୁ ମଧ୍ୟ ଜଣେ ବିଶାଳ ହୃଦୟବାନ ବ୍ୟକ୍ତିତ୍ୱ । ଗୋଟିଏ ଛୋଟିଆ ଘଟଣାର ଅବତାରଣା । ତାଙ୍କର

ସେହି ମହନୀୟ ଗୁଣକୁ ପ୍ରତିପାଦନ କରିପାରିବ । ନବେ ଦଶକର ଦ୍ୱିତୀୟାର୍ଦ୍ଧ ସମୟର କଥା । ସେତେବେଳେ ଉପମୁଖ୍ୟମନ୍ତ୍ରୀ ବସନ୍ତ କୁମାର ବିଶ୍ୱାଳ କେତେକ ବିଶେଷ କାରଣରୁ ନିଜର ଗୋଟିଏ ଖବରକାଗଜ ପ୍ରକାଶ କରିବାକୁ ଚାହିଁଲେ । ସେଥିପାଇଁ ସେ ଭଲ ନାଁଟିଏ ଖୋଜୁଥାଆନ୍ତି । 'ସମୟ' ନାଁ ଟି ତାଙ୍କର ବେଶ୍ ପସନ୍ଦଯୋଗ୍ୟ ହେଲା । କିନ୍ତୁ ଖବରକାଗଜ ପଞ୍ଜିକରଣ ହେଉଥିବା ସଂସ୍ଥା ଆର.ଏନ.ଆଇ. (ରେଜିଷ୍ଟ୍ରାର ଅଫ ନ୍ୟୁଜପେପର୍ସ ସୋସାଇଟି ଅଫ ଇଣ୍ଡିଆ)ରୁ ସେ ଜାଣିବାକୁ ପାଇଲେ ଯେ, ଖୋର୍ଦ୍ଧା ଅଞ୍ଚଳର ଜଣେ ବ୍ୟକ୍ତି 'ସମୟ' ନାମରେ ଗୋଟିଏ ପତ୍ରିକା ବାହାର କରୁଛନ୍ତି । ତେଣୁ ପ୍ରସ୍ତାବିତ ତାଙ୍କ ଖବରକାଗଜ ପାଇଁ ସେହି ନାଁ ଟି ମିଳିପାରିବ ନାହିଁ ବୋଲି ଜାଣି ସେ ନିରାଶ ହୋଇପଡିଥିଲେ । ଏହି ସମୟରେ ବସନ୍ତବାବୁଙ୍କ ପ୍ରସ୍ତାବିତ ଖବରକାଗଜର ମୁଦ୍ରାକର (ପବ୍ଲିଶର) ଦାୟିତ୍ୱ ତୁଲାଉଥିବା ଅମିତାଭ ସ୍ୱାଇଁ ମୋର ବଡ ଭାଇ (ଗୁରୁକଲ୍ୟାଣ)ଙ୍କୁ ସାଙ୍ଗରେ ଧରି ମୋ ବାସଭବନକୁ ଆସିଲେ । ଅମିତାଭ ବାବୁ ମୋତେ କହିଲେ, "ସମୟ" ନାମକ ଗୋଟିଏ ପତ୍ରିକା ଅବନୀ ବାବୁ ଇତ୍ୟାଦି ପ୍ରକାଶ କରୁଛନ୍ତି ଏବଂ ତା'ର ପ୍ରକାଶକ ହେଉଛନ୍ତି ଖୋର୍ଦ୍ଧା ଅଞ୍ଚଳର ଜଣେ ବ୍ୟକ୍ତି, ଯିଏକି ଅବନୀବାବୁଙ୍କର ଅତ୍ୟନ୍ତ ଅନୁଗତ । ଅବନୀବାବୁ ଯଦି ସମ୍ପୃକ୍ତ ବ୍ୟକ୍ତିଙ୍କୁ ପଦଟିଏ, କହିବେ, ସେ ଆମକୁ 'ସମୟ' ନାମଟି ଦେଇଦେବେ । ଏଥିଲାଗି ସମ୍ପୃକ୍ତ ବ୍ୟକ୍ତିଙ୍କୁ ଆମେ ଆର୍ଥିକ ମୂଲ୍ୟ ଦେବାକୁ ପ୍ରସ୍ତୁତ ଅଛୁ । ତେବେ ଏହି ପ୍ରସ୍ତାବଟି ଅବନୀବାବୁଙ୍କ ନିକଟରେ ପହଞ୍ଚାଇବା ଲାଗି ଆମେ ଆପଣଙ୍କ ପାଖକୁ ଆସିଛୁ । କାରଣ ଆମେ ବିଭିନ୍ନ ମହଲରୁ ଖବର ପାଇଛୁ ଯେ, ଆପଣଙ୍କୁ ଅବନୀବାବୁ ବହୁତ ଭଲ ପାଆନ୍ତି । ଅନ୍ୟପକ୍ଷରେ ଆପଣଙ୍କ ବଡଭାଇ ମଧ୍ୟ ପ୍ରସ୍ତାବିତ ଖବରକାଗଜର ସମ୍ବାଦ ବିଭାଗ ମୁଖ୍ୟ ପଦବୀରେ ଅଧିଷ୍ଠିତ ହୋଇଛନ୍ତି । ଏହା ଶୁଣିବା ପରେ ମୁଁ ଅଗତ୍ୟା ଅବନୀବାବୁଙ୍କ ନିକଟକୁ ବାହାରିଲି ଓ ତାଙ୍କ ନିକଟରେ ପହଞ୍ଚି ସବୁ କଥା ଜଣାଇଲି । ପ୍ରତ୍ୟୁତ୍ତରରେ ଅବନୀବାବୁ ସେମାନଙ୍କୁ କେବଳ ଏତିକି କହିଲେ, "ପ୍ରଭୁ କଲ୍ୟାଣକୁ ଧରି ଆପଣମାନେ ମୋ ନିକଟକୁ ଆସିଛନ୍ତି । ମୁଁ କ'ଣ ଏହି ପ୍ରସ୍ତାବକୁ ଏଡାଇଦେଇ ପାରିବି ? ତେବେ 'ସମୟ' ପତ୍ରିକାର ସତ୍ୱାଧିକାରୀ ଅନେକ ଏବଂ ସମସ୍ତଙ୍କ ସହିତ ଯୋଗାଯୋଗ ଓ ପ୍ରବର୍ତ୍ତାଇବା ଲାଗି ମୋତେ କିଛିଦିନ ସମୟ ଦିଅନ୍ତୁ । ଅନ୍ୟ ପକ୍ଷରେ 'ସମୟ' ନାମଟି ନେବାଲାଗି ବସନ୍ତ ବିଶ୍ୱାଳଙ୍କ ନିକଟରୁ ଅର୍ଥ ଗ୍ରହଣ ପ୍ରସ୍ତାବକୁ ସେ ରୋକ୍‌ଠୋକ୍ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।"

ଏହାର କିଛିଦିନ ପରେ ମୁଁ ଅମିତାଭ ବାବୁଙ୍କୁ ଫୋନ୍ କଲି । 'ସମୟ' ନାମଟି ହସ୍ତାନ୍ତର ହୋଇଛି କି ନାହିଁ ଜାଣିବା ପାଇଁ । ଅମିତାଭ ବାବୁ ମୋତେ କହିଲେ, ଇତିମଧ୍ୟରେ 'ସମୟ' ନାମଟି ହସ୍ତାନ୍ତରିତ ହୋଇସାରିଛି । ଖୁବ୍‌ଶୀଘ୍ର 'ସମୟ' ନାମରେ ଖବରକାଗଜ ପ୍ରକାଶ ପାଇବ । ଏହି ନାମ ହସ୍ତାନ୍ତରରେ ସହଯୋଗ କରିଥିବାରୁ ସେ

ମୋତେ ସାଧୁବାଦ ଜଣାଇଥିଲେ । ପ୍ରତ୍ୟୁତ୍ତରରେ ମୁଁ ତାଙ୍କୁ ଦର୍ଶାଇଥିଲି ଯେ, ଏଥିନେଇ ଯଦି କୌଣସି ବ୍ୟକ୍ତିଙ୍କୁ ଧନ୍ୟବାଦ ଜଣାଇବା କଥା, ସେ ହେଉଛନ୍ତି ଅବନୀବାବୁ । କାରଣ ଆପଣ ଟଙ୍କା ଦ୍ୱାରା ଏହି ନାମ ଖରିଦ କରିପାରିନଥାନ୍ତେ ।

ପରବର୍ତ୍ତୀ କାଳରେ ଜଣେ ସାମ୍ବାଦିକ ବନ୍ଧୁଙ୍କ ନିକଟରୁ ଖବର ପାଇଲି ଯେ, 'ସମୟ' ଖବର କାଗଜରେ ଅବନୀବାବୁଙ୍କ ଲେଖା କିମ୍ବା ତାଙ୍କ ସମ୍ପର୍କିତ କୌଣସି ଖବର ପ୍ରକାଶ ପାଉନାହିଁ । ସେଥିଯୋଗୁଁ ଅବନୀବାବୁ ଭୀଷଣ ମନ ଦୁଃଖ କରୁଛନ୍ତି । ସେହି ସାମ୍ବାଦିକ ବନ୍ଧୁଙ୍କୁ ମୁଁ 'ସମୟ'ର ନାମ ହସ୍ତାନ୍ତର ସମ୍ପର୍କିତ ଘଟଣାଟି କହିଲି ଓ ସେଥିରେ ଅବନୀବାବୁଙ୍କ ମହତ୍ୱପୂର୍ଣ୍ଣ ଭୂମିକା ବିଷୟ ଉଲ୍ଲେଖ କଲି ।"

ରାଜ୍ୟର ଶହେଟି ବାଳିକା ଉଚ୍ଚ ବିଦ୍ୟାଳୟରେ ଦୀର୍ଘବର୍ଷ ଧରି ଅବୈତନିକ ଗୋତି ଶ୍ରମିକ ଭଳି ଖଟି ଚାଲିଥିବା ଶିକ୍ଷକ, ଶିକ୍ଷିକା ଓ ଶିକ୍ଷାକର୍ମୀମାନଙ୍କର ହୃଦୟର ବ୍ୟଥାକୁ ମର୍ମେ ମର୍ମେ ଅନୁଭବ କରି ସେମାନଙ୍କ ଆଖିର ଲୁହ ପୋଛି ଦେବାକୁ ଅବନୀ ବରାଳଙ୍କ ଅବଦାନକୁ ମନେପକାଇ ଶିକ୍ଷୟିତ୍ରୀ ବନ୍ଦନା ପଣ୍ଡା କହନ୍ତି - "ତାଙ୍କର ଅନ୍ୟ ଏକ ମାନସକଳିକା ୧୦୦ ବାଳିକା ବିଦ୍ୟାଳୟରେ ଦୀର୍ଘ ୨୫ବର୍ଷ ଅବୈତନିକ ଭାବରେ ଖଟି ଆସୁଥିବା ସମସ୍ତ ଶିକ୍ଷକ, ଶିକ୍ଷିକା ତଥା କର୍ମକର୍ତ୍ତା ଗଣଙ୍କ ପାଇଁ ସେ ଯାହା କରିଛନ୍ତି ତାହା ଅବର୍ଣ୍ଣନୀୟ ତଥା ଅଭୂଲା ସ୍ମୃତି ହୋଇରହିଯିବ । ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି ସଦା ତାଙ୍କ ହାତ ଆମ ମସ୍ତକରେ ଆଶିର୍ବାଦ ହୋଇ ରହିଥାଉ ।

ମନେପଡେ ୨୦୦୨ ମସିହା ମାର୍ଚ୍ଚ ମାସ ୨୫ ତାରିଖ, ୧୦୦ ବାଳିକା ଉଚ୍ଚବିଦ୍ୟାଳୟ ତରଫରୁ ଅନଶନ କାର୍ଯ୍ୟକ୍ରମର ଶୁଭାରମ୍ଭ । ମୋ ନାମ ମଧ୍ୟ ସେଥିରେ ଥାଏ । କେଉଁ ସୁଦୂର ବରୀ(ବାଲିବିଲି) ମାଟିରୁ ଧାଇଁ ଯାଇଥାଏ ଛୋଟ ଛୁଆଟିକୁ ଛାଡି । ପୁତୁରାର ବ୍ରତୋପନୟନ ଉପଲକ୍ଷେ ଘନ ଘନ ଖବର ପହଞ୍ଚୁଥାଏ ଅନଶନ ଛାଡି ଚାଲି ଆସିବାକୁ । ୫ଦିନ ପରେ ବାଧ୍ୟ ହେଲି ଅନିଚ୍ଛାସତ୍ତ୍ୱେ ଆସିବାକୁ । ଅଧାଦରଗଡ଼ା ଓ ଦେଉଳର ମୁଣ୍ଡି ମରିଲାନି ସତ, କିନ୍ତୁ ସରକାରଙ୍କର ନିଦ ଭାଙ୍ଗିଗଲା । ସେ ସମୟରେ ସାର୍‌ଙ୍କର ପ୍ରତିଟି ବାକ୍ୟ, ପ୍ରତିଟି ଶବ୍ଦ ଆମର ଉପକାରରେ ଆସିଛି ଏବଂ ତା'ପରେ ମଧ୍ୟ, ଆଉ ଆଜି ମଧ୍ୟ । ତାଙ୍କର ପ୍ରଚଣ୍ଡ ଆଶାବାଦୀତା ଆମର ପାଥେୟ ହୋଇରହିଛି ଓ ରହିଥିବ ମଧ୍ୟ ।"

ଉପରୋକ୍ତ ସମସ୍ତ ଅନୁଭୂତି, ଅଭିଜ୍ଞତା ଓ ମର୍ମଭେଦୀ କାହାଣୀ ପ୍ରମାଣ କରୁଛି ଯେ, ଅବନୀ କିପରି ଜୀବନର ପ୍ରତିଟି ମୁହୂର୍ତ୍ତ ଜନସେବାରେ ନିଜକୁ ଉତ୍ସର୍ଗ କରିଛନ୍ତି, ଉଦାର ହୃଦୟରେ ମାନବବାଦର ଜୟଗାନ କରିଛନ୍ତି । ଜଣେ ମଣିଷ ଭଳି ମଣିଷ ରୂପେ ଜନସାଧାରଣଙ୍କ ହୃଦୟ ଭିତରେ ସେ ଆଜି ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ହୋଇପାରିଛନ୍ତି ।

## ଚାଲିଛି, ଚାଲିବି
## ନପଡ଼ିବି ଥକି...



ଦୀର୍ଘ ଷାଠିଏ ବର୍ଷର ଯାତ୍ରା - ଲମ୍ବା ରାସ୍ତା ଖାଲ ଢ଼ିପରେ ପରିପୂର୍ଣ୍ଣ । ତାହାରି ଭିତରେ ଅସୁମାରୀ ସ୍ମୃତି ଓ ଅନୁଭୂତି । ସବୁକୁ ସାଉଁଟିଲେ ଏକ ବିଶାଳ ଗ୍ରନ୍ଥ ହେବ । ସାରା ଜୀବନ ଲଢ଼େଇ ଭିତରେ କଟିଛି, ତଥାପି ଥକି ଯାଇନାହାନ୍ତି । ଅନେକ ସାଥୀ ସହକର୍ମୀ ଦୁନିଆରୁ ବିଦାୟ ନେଇସାରିଲେଣି, ଆହୁରି କେତେକ ସ୍ୱାର୍ଥବାଦୀ ବନ୍ଧୁ ଓ ସହକର୍ମୀ ପାଖରୁ ଦୂରେଇ ଯାଇଛନ୍ତି । ସମସ୍ତ ଲଢ଼େଇରେ ସଫଳତାର ଜୟମାଲ୍ୟ ପିନ୍ଧି ଆସିଥିବା ତାଙ୍କର ହାତଗଢ଼ା ଶିକ୍ଷକ ମହାସଂଘକୁ ଦୁର୍ବଳ କରିଦେବା ପାଇଁ ପ୍ରତି ମୁହୂର୍ତ୍ତରେ ଚାଲିଛି ଷଡ଼ଯନ୍ତ୍ର । ଗୋଟିଏ ପଟେ ପ୍ରଶାସନିକ କଳ, ଅନ୍ୟପଟେ ସ୍ୱାର୍ଥ ସର୍ବସ୍ୱ ମୁଷ୍ଟିମେୟ ଶିକ୍ଷକ ଗୋଷ୍ଠୀ, ଦୁଇପଟୁ ଅହରହ ଆକ୍ରମଣ । ଯେଉଁ ସଂଗଠନକୁ ଦିନେ ସେ ନିଜର ଲହୁ ଲୁହ ଦେଇ ଗଢ଼ିଥିଲେ, ଆଜି ତାଙ୍କରି ଜୀବଦ୍ଦଶାରେ ତାହା ଶ୍ରୀହୀନ ହୋଇପଡ଼ିଛି । ତାଙ୍କର ଅତିପ୍ରିୟ କମ୍ୟୁନିଷ୍ଟ ପାର୍ଟି, ଯାହା ସହିତ ତାଙ୍କର ୬୦ ବର୍ଷର ଆତ୍ମିକ ନିବିଡ଼ ସମ୍ପର୍କ ରହିଆସିଛି । ସେହି ସଂଗଠନ ବି କ୍ରମଶଃ ଦୁର୍ବଳ ହୋଇପଡୁଛି । ସମୟେ ସମୟେ ନୀତି ଓ ଆଦର୍ଶରେ ବିଚ୍ୟୁତି ଘଟୁଥିବାରୁ ବ୍ୟଥିତ ହେଉଛନ୍ତି ।

ଯେଉଁ ଜନସଂସ୍କୃତି, ଗଣଅଭିମୁଖୀ ପ୍ରଗତିଶୀଳ ନାଟ୍ୟ ଆନ୍ଦୋଳନ ଏବଂ ଜନବାଦୀ ସାହିତ୍ୟର ପ୍ରସାର ପାଇଁ କୈଶୋର ଓ ଯୌବନର ପ୍ରାରମ୍ଭରୁ ସେ ଆପଣାକୁ ଉତ୍ସର୍ଗ କରିଆସିଛନ୍ତି, ତାହା ଆଜି ବିଲୁପ୍ତ ପ୍ରାୟ । ତଥାପି ଯାତ୍ରାପଥରେ ସେ ଅବିଚଳିତ । ମନରେ ଦୁର୍ବାର ଆଶା - ସମାଜବାଦ ନିଶ୍ଚିତ ଭାବେ ପ୍ରତିଷ୍ଠା କରାଯିବ, ଶିକ୍ଷକ ସମାଜ

ପୁଣି ଐକ୍ୟବଦ୍ଧ ହେବେ, ସଂସ୍କୃତି ଓ ନାଟକ ଆଦିରେ ଲୋକଙ୍କ ସ୍ୱର ଶୁଣାଯିବ । କେହି ଶୁଣନ୍ତୁ ବା ନଶୁଣନ୍ତୁ, ଆସନ୍ତୁ ବା ନଆସନ୍ତୁ 'ଏକ୍‌ଲା ଚଲୋ' ନୀତିରେ ଆଗେଇ ଚାଲିଛନ୍ତି । ମନରେ ତାଙ୍କର ଶତସିଂହର ପରାକ୍ରମ । ୪୩, ଭୌମନଗରର ସେଇ ପୁରୁଣା ଦୋମହଲା କୋଠାରେ ବସି ନୂଆ ଦୁନିଆ ପ୍ରତିଷ୍ଠାର ସ୍ୱପ୍ନ ଆଙ୍କି ଚାଲିଛନ୍ତି ଓଡ଼ିଶାର ଅନ୍ୟତମ ମହାନାୟକ, କ୍ରାନ୍ତିର ରୂପକାର ଅବନୀ ବରାଳ । ତାଙ୍କୁ ଦେଖି ମନେପଡ଼େ ବିଶିଷ୍ଟ ଇଂରାଜୀ କବି ରବର୍ଟ ଫ୍ରଷ୍ଟ୍‌ଙ୍କ କବିତାର ସେଇ ଦୁଇଧାଡ଼ି ।

'ଚାଲିବାକୁ ଅଛି ପଥ ବହୁଦୂର
ଆହୁରି କେତେ ଯେ ବାକୀ
ଚାଲିଛି, ଚାଲିବି ନପଡ଼ିବି ଥକି
ମୁଦିବା ଆଗରୁ ଆଖି' ।



# ସହାୟକ ପୁସ୍ତକ ଓ ପତ୍ରପତ୍ରିକା

୧. ଅବନୀ ବରାଳ (ଜନ୍ମ ଦିବସର ଅଭିନନ୍ଦନିକା-୨୦୦୭)

୨. ଜଣେ ନିଆରା ମଣିଷ-୨୦୦୮

୩. ଛୋଟରୁ ବଡ଼ ସଭିଙ୍କ ଆପଣାର-୨୦୦୯

୪. କ୍ରାନ୍ତିର ରୂପକାର-୨୦୧୦

୫. ପଥିକୃତ ନାୟକ-୨୦୧୧

୬. ସାଲିସ୍ ବିହୀନ ସଂଗ୍ରାମୀ-୨୦୧୨

୭. ଓଡ଼ିଶା ରାଜନୈତିକ ଇତିହାସର କେତୋଟି ଅଭୁଲା ଅଧ୍ୟାୟ
ପ୍ରଦୋଷ ପଟ୍ଟନାୟକ

୮. ଜନତାର ସାଥୀ ପ୍ରାଣନାଥ - ଗଣେଶ୍ୱର ମିଶ୍ର

୯. ସାପ୍ତାହିକ 'ସ୍ୱଦେଶ', ଅଭିମାନ (କଲିକତା) - ୨୦୦୭

୧୦.'କଳିଙ୍ଗ' ଓ 'ସମାଜ' - ତା.୦୮.୦୯.୧୯୬୯



ଏଇ ଲେଖକଙ୍କର....

୧. ଓଡ଼ିଶା ରାଜନୈତିକ ଇତିହାସର କେତୋଟି ଅଭୁଲା ଅଧ୍ୟାୟ
ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ

୨. ଅସୀ ନୁହେଁ ମସୀ

୩. ଜଣେ ବିରଳ ବିପ୍ଳବୀର କାହାଣୀ



ଶ୍ରୀ ପ୍ରଦୋଷ ପଟନାୟକ

ଓଡ଼ିଶାର ଅନ୍ୟତମ ପ୍ରଖ୍ୟାତ ଯଶ
ସାମ୍ବାଦିକ, ସ୍ତମ୍ଭକାର ଓ ଲେଖକ
ଅତୀତରେ 'ଦୈନିକ ସମାଜ' ର
ବାର୍ତ୍ତା ସଂପାଦକ ରହି
ଅବସର ନେଲାପରେ ବର୍ତ୍ତମାନ
'ଓଡ଼ିଶା ଭାସ୍କର' ର ମୁଖ୍ୟ ସଂପାଦକ
ଭାବରେ ଅବସ୍ଥାପିତ ।

